# ବିନାଶ ବାଟରେ
# ବିକାଶର ରାଜନୀତି



ପ୍ରଫୁଲ୍ଲ ସାମନ୍ତରା

Digitized by srujanika@gmail.com



"..... ଶ୍ରୀ ପ୍ରଫୁଲ୍ଲ ସାମନ୍ତରା 'ବିକାଶର ରାଜନୀତି' ବହିଟି ଲେଖିବା ଦ୍ୱାରା ଓଡ଼ିଶା ରାଜନୈତିକ ସାହିତ୍ୟରେ ବେଶ୍ ଏକ ଅଭାବ ପୂରଣ କରିବା ପାଇଁ ସଫଳ ହୋଇ ପାରିଛନ୍ତି । ଭାରତ ସରକାର ଓ ରାଜ୍ୟ ସରକାରମାନେ ମିଶି ବିକାଶ ଆଳରେ ଯେଉଁ ଧ୍ୱଂସ ଲୀଳା କରି ଚାଲିଛନ୍ତି, ତା'ର ଯେତେ ନିନ୍ଦାକଲେ ବି ତା' କମ୍ ହେବ । ..... ଶ୍ରୀ ସାମନ୍ତରା ଓଡ଼ିଶାରେ ଚାଲିଥିବା ଜନ ଆନ୍ଦୋଳନଗୁଡ଼ିକ ସହ ସକ୍ରିୟ ରୂପେ ଜଡ଼ିତ ଥିବାରୁ ଏ ସମ୍ପର୍କରେ ଏକ ନିଖୁଣ ଚିତ୍ର ଦବାରେ ବେଶ୍ ସଫଳ ହୋଇ ପାରିଛନ୍ତି । ବ୍ରିଟିଶ୍ ସାମ୍ରାଜ୍ୟବାଦ୍ ବିରୁଦ୍ଧରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ଆନ୍ଦୋଳନ ଚାଲିଥିଲା ତା' ଫଳରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । ଆଜି ଯେତେବେଳେ ବିଦେଶୀ ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ଦେଶର ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ନିମନ୍ତ୍ରଣରେ ଆମ ଦେଶର ଜଳ, ଜଙ୍ଗଲ ଓ ଜମିକୁ ଅକ୍ତିଆର କରି ଚାଲିଛନ୍ତି, ସେତେବେଳେ କ'ଣ ଆମେ ନୀରବଦ୍ରଷ୍ଟା ହୋଇ ରହିବା ? ମୋର ଦୃଢ଼ ବିଶ୍ୱାସ ଯେ ପ୍ରଫୁଲ୍ଲ ସାମନ୍ତରାଙ୍କ ଏ ବହି ଆମ ଓଡ଼ିଶା ପାଠକ ଓ ପାଠିକାମାନଙ୍କୁ ଏସବୁ ମୌଳିକ ସମସ୍ୟା ସମ୍ପର୍କରେ ଚିନ୍ତା କରିବାକୁ ବିଶେଷ ପ୍ରେରଣା ଦେବ ।"

... ରବି ରାୟ

ଲୋକସଭାର ପୂର୍ବତନ ବାଚସ୍ପତି

Digitized by srujanika@gmail.com

# ବିକାଶର ରାଜନୀତି

*ଲେଖକ :*
ପ୍ରଫୁଲ୍ଲ ସାମନ୍ତରା
ହିଲ୍‌ପାଟଣା, ବ୍ରହ୍ମପୁର - ୭୬୦୦୦୫

# BIKASHAR RAJANITI

*ପ୍ରଥମ ସଂସ୍କରଣ :*
୨୦୦୮

By
*Prafulla Samantara*
E-mail : psamantara@rediffmail.com

*ପ୍ରକାଶକ :*
ଲୋହିଆ ଏକାଡ଼େମୀ ଟ୍ରଷ୍ଟ
ଏ/୩, ୟୁନିଟ୍-୯,
ଭୁବନେଶ୍ୱର - ୭୫୧୦୨୨

*First Edition :*
2008

*ମୁଦ୍ରଣ :*
ସିଦ୍ଧବୀର ଅଫସେଟ୍
ବ୍ରହ୍ମପୁର - ୭୬୦ ୦୦୩

*Published by :*
Lohiya Academy Trust
A/3 Unit 9, Bhubaneswar -
751022

ମୂଲ୍ୟ : ୧୮୦ ଟଙ୍କା

*Printed by :*
Sidhaveer Offset
Berhampur - 3 (GM.)

Price : Rs. 180/-

Digitized by srujanika@gmail.com

ରବି ରାୟ
ପୂର୍ବତନ ବାଚସ୍ପତି, ଲୋକସଭା
୧୪୭, ନର୍ଥ ଆଭେନ୍ୟୁ
ନୂଆଦିଲ୍ଲୀ – ୧୧୦ ୦୦୧

କଲ୍ୟାଣ ନଗର
କଟକ–୧୩
ତା. ୭.୩.୨୦୦୮

# ମୁଖବନ୍ଧ

ଲୋକଶକ୍ତି ଅଭିଯାନର ବିଶିଷ୍ଟ କର୍ମକର୍ତ୍ତା ଶ୍ରୀ ପ୍ରଫୁଲ୍ଲ ସାମନ୍ତରା 'ବିକାଶର ରାଜନୀତି' ବହିଟି ଲେଖିବା ଦ୍ୱାରା ଓଡ଼ିଶା ରାଜନୈତିକ ସାହିତ୍ୟରେ ବେଶ୍ ଏକ ଅଭାବ ପୂରଣ କରିବା ପାଇଁ ସଫଳ ହୋଇ ପାରିଛନ୍ତି । ଭାରତ ସରକାର ଓ ରାଜ୍ୟ ସରକାରମାନେ ମିଶି ବିକାଶ ଆଳରେ ଯେଉଁ ଧ୍ୱଂସ ଲୀଳା କରି ଚାଲିଛନ୍ତି, ତା'ର ଯେତେ ନିନ୍ଦାକଲେ ବି ତା' କମ୍ ହେବ । ଶ୍ରୀ ସାମନ୍ତରା ଧାରାବାହିକ ଭାବରେ ଓଡ଼ିଶା ସମେତ ବାହାର ରାଜ୍ୟମାନଙ୍କରେ ଉଦାରୀକରଣ ବିରୁଦ୍ଧରେ ଚାଲିଥିବା ଜନ ଆନ୍ଦୋଳନମାନଙ୍କରେ ଯେପରି ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି ଆମ ରାଜ୍ୟରେ ଅନ୍ୟ କୌଣସି ବ୍ୟକ୍ତି ତା' କରି ନଥିବେ ।

ଆମ ଦେଶରେ ଏକ ଲିଖିତ ସମ୍ବିଧାନ ରହିଛି । ତା'ର ପ୍ରାଥମିକ ପ୍ରସ୍ତାବନାରେ ସ୍ପଷ୍ଟ ରୂପେ କୁହାଯାଇଛି ଯେ ଭାରତ ବର୍ଷ ଏକ ଗଣତାନ୍ତ୍ରିକ, ସମାଜବାଦୀ ଓ ଧର୍ମ ନିରପେକ୍ଷ ରାଷ୍ଟ୍ର ହୋଇ ରହିବ; କିନ୍ତୁ ସବୁଠାରୁ ଲଜ୍ଜା ଓ ପରିତାପର ବିଷୟ ଯେ ସମ୍ବିଧାନର ମୌଳିକ ଲକ୍ଷ୍ୟକୁ ତିଳେମାତ୍ର ଭ୍ରୂକ୍ଷେପ ନକରି ଉଭୟ କେନ୍ଦ୍ର ସରକାର ଓ ରାଜ୍ୟ ସରକାରମାନେ ତାକୁ ଖୋଲାଖୋଲି ଉଲ୍ଲଘଂନ କରି ଚାଲିଛନ୍ତି । ବିଶ୍ୱ ବାଣିଜ୍ୟ ସଙ୍ଘ ଓ ବିଶ୍ୱ ବ୍ୟାଙ୍କ ଭଳି ସଂସ୍ଥାମାନଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ଭାରତକୁ ତଳିତଳାନ୍ତ କରିବା ହିଁ ଏମାନଙ୍କର ଏକମାତ୍ର ଧ୍ୟେୟ । ସବୁଠାରୁ ପରିତାପର ବିଷୟ ଯେ ଆମ ଦେଶର ଜଳ, ଜଙ୍ଗଲ, ଜମିକୁ ବିଦେଶୀମାନଙ୍କ ହାତରେ ଟେକି ଦେବାପାଇଁ ଏମାନେ ତିଳେ ମାତ୍ର କୁଣ୍ଠା ବୋଧ କରନ୍ତି ନାହିଁ ।

Digitized by srujanika@gmail.com

ଏହା ଏକ ଚରମ ବିଡ଼ମ୍ବନା ଯେ ପ୍ରାୟ ଦେଢ଼ଶହ ବର୍ଷ ତଳେ ଇଷ୍ଟ ଇଣ୍ଡିଆ ଭଳି ବିଦେଶୀ କମ୍ପାନୀ ଆମ ଦେଶକୁ ବେପାର କରିବାକୁ ଆସି ଆମ ଦେଶର ଶାସକ ହୋଇଗଲା । ଆମ ପାଇଁ ସବୁଠୁଁ ଜଟିଳ ପ୍ରଶ୍ନ ହେଉଛି ଯେ ସତେ କ'ଣ ଇତିହାସର ପୁନରାବୃତ୍ତି ହେଉଛି । ଆମ ରାଜ୍ୟରେ ପୋସ୍କୋ, ବେଦାନ୍ତ ଭଳି ବିଦେଶୀ କମ୍ପାନୀମାନେ ଯଥାକ୍ରମେ କୁଜଙ୍ଗ ଓ ପୁରୀର ନିକଟବର୍ତ୍ତୀ ଗାଁ ମାନଙ୍କରେ ଚାଷୀମାନଙ୍କ ଇଚ୍ଛା ବିରୁଦ୍ଧରେ ସେମାନଙ୍କ ଜମିକୁ ହଡ଼ପ୍ କରିବା ପାଇଁ ଯେଉଁ ଚକ୍ରାନ୍ତ ଚଳେଇଛନ୍ତି ତା' ବିରୁଦ୍ଧରେ ସେଠାକାର ଚାଷୀମାନେ ତାଙ୍କ ଜମି ନ ଛାଡ଼ିବା ପାଇଁ ସଂଗ୍ରାମ ଜାରି ରଖିଛନ୍ତି । ରାଜ୍ୟ ସରକାର ଦେଶର ସମ୍ବିଧାନ ଓ ନିୟମ କାନୁନକୁ ଅମାନ୍ୟ କରି ବିଦେଶୀ କମ୍ପାନୀକୁ ସମସ୍ତ ପ୍ରକାର ସାହାଯ୍ୟ କରିବାରେ ଲାଗି ପଡ଼ିଛନ୍ତି । ସୁଖର କଥା ଯେ ଏ ଅଞ୍ଚଳର ଚାଷୀମାନେ ତାଙ୍କ ଶାନ୍ତିପୂର୍ଣ୍ଣ ଓ ଅହିଂସକ ଲଢ଼େଇକୁ ଜାରି ରଖିବା ପାଇଁ ବଦ୍ଧପରିକର ।

ଶ୍ରୀ ସାମନ୍ତରା ଓଡ଼ିଶାରେ ଚାଲିଥିବା ଏହି ଜନ ଆନ୍ଦୋଳନଗୁଡିକ ସହ ସକ୍ରିୟ ରୂପେ ଜଡ଼ିତ ଥିବାରୁ ଏ ସମ୍ପର୍କରେ ଏକ ନିଖୁଣ ଚିତ୍ର ଦବାରେ ବେଶ୍ ସଫଳ ହୋଇ ପାରିଛନ୍ତି ।

ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ଅନ୍ଦୋଳନ ଚାଲିଥିଲା ତା' ଫଳରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । ଆଜି ଯେତେବେଳେ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଦେଶର ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ନିମନ୍ତ୍ରଣରେ ଆମ ଦେଶର ଜଳ, ଜଙ୍ଗଲ ଓ ଜମିକୁ ଅକ୍ତିଆର କରି ଚାଲିଛନ୍ତି, ସେତେବେଳେ କ'ଣ ଆମେ ନୀରବଦ୍ରଷ୍ଟା ହୋଇ ରହିବା ?

ମୋର ଦୃଢ଼ ବିଶ୍ୱାସ ଯେ ପ୍ରଫୁଲ୍ଲ ସାମନ୍ତରାଙ୍କ ଏ ବହି ଆମ ଓଡ଼ିଆ ପାଠକ ଓ ପାଠିକାମାନଙ୍କୁ ଏସବୁ ମୌଳିକ ସମସ୍ୟା ସମ୍ପର୍କରେ ଚିନ୍ତା କରିବାକୁ ବିଶେଷ ପ୍ରେରଣା ଦେବ ।

Digitized by srujanika@gmail.com

# ପ୍ରକାଶକଙ୍କ କଲମରୁ ...

ଶ୍ରଦ୍ଧେୟ ବଂଧୁ ଶ୍ରୀ ପ୍ରଫୁଲ୍ଲ ସାମନ୍ତରା ଜୟପ୍ରକାଶ ଆନ୍ଦୋଳନରେ ସକ୍ରୀୟ ଭାଗ ନେଇଥିଲେ । ଛାତ୍ର ଜୀବନର ଶେଷଭାଗରେ ଜରୁରୀକାଳୀନ ପରିସ୍ଥିତିରେ 'ମିସା'ରେ ଗିରଫହୋଇ ଏକବର୍ଷ କାଳ ଜେଲ୍‌ରେ କଟେଇଥିଲେ । ପରବର୍ତ୍ତୀ ସମୟରେ 'ଜନତା' ଦଳରେ ଯୋଗଦେଇ ଦଳର କର୍ମକର୍ତ୍ତା ମଧଥିଲେ; ମାତ୍ର, ପ୍ରଚଳିତ ରାଜନୀତିର ଗତାନୁଗତିକ ଧାରାରେ ବେଶୀଦିନ ନିଜକୁ ବାନ୍ଧିରଖି ପାରିଲେ ନାହିଁ । ଗାନ୍ଧୀ-ଲୋହିଆ-ଜୟପ୍ରକାଶଙ୍କ ଆଦର୍ଶରେ ଅନୁପ୍ରାଣିତ ପ୍ରଫୁଲ୍ଲବାବୁ ଯଥା ସ୍ଥିତିବାଦୀ ରାଜନୀତିଠାରୁ ନିଜକୁ ଦୂରେଇ ନେଇ ଗାନ୍ଧିଜୀଙ୍କ ପୂର୍ଣ୍ଣ ସ୍ୱରାଜ, ଲୋହିଆଙ୍କ ସପ୍ତକ୍ରାନ୍ତି ଓ ଜୟ ପ୍ରକାଶଙ୍କ ସଂପୂର୍ଣ୍ଣ କ୍ରାନ୍ତିର ଆଦର୍ଶକୁ ଗ୍ରହଣକଲେ । ଦେଶରେ ପରିବର୍ତ୍ତନ ନିମନ୍ତେ କ୍ରାନ୍ତିର ପଥକୁ ବାଛିନେଲେ । ସେଥିପାଇଁ 'ଲୋକଶକ୍ତି' ର ନିର୍ମାଣ ଦିଗରେ ସର୍ବଭାରତୀୟ ସ୍ତରରେ "ଲୋକଶକ୍ତି ଅଭିଯାନ"ର ସ୍ଥାପନା କରିବାପାଇଁ ଓଡ଼ିଶାରୁ ଶ୍ରୀ ରବିରାୟଙ୍କ ସହିତ ତାଙ୍କର ବିଶେଷ ଯୋଗଦାନ ଥିଲା । "ଲୋକଶକ୍ତି ଅଭିଯାନ" ଓଡ଼ିଶା ଶାଖାର ସେ ମୁଖ୍ୟ ।

ନବେ ଦଶକରେ ଦେଶରେ ଜାଗତୀକରଣ, ଉଦାରୀକରଣ ଆଦି ପ୍ରକ୍ରିୟାର ପ୍ରାରମ୍ଭରୁ ପ୍ରଫୁଲ୍ଲବାବୁ ତାର ଦୃଢ଼ ବିରୋଧ କରିଆସିଛନ୍ତି । ଆଜି, ଉକ୍ତ ପ୍ରକ୍ରିୟା ବିକଟାଳ ରୂପ ଧାରଣକରି ଦେଶକୁ ଦ୍ରୁତଗତିରେ ଧ୍ୱଂସ ପଥରେ ଆଗେଇ ନେଉଛି । ଦେଶ ବର୍ତ୍ତମାନ ବହୁଦେଶୀୟ କମ୍ପାନୀମାନଙ୍କ ଦ୍ୱାରା ସଂପୂର୍ଣ୍ଣ କବଳିତ ହୋଇ ଲୁଟ୍ ହେବାରେ ଲାଗିଛି । ଶାସକଶ୍ରେଣୀ – ସେ ସରକାରୀ ପକ୍ଷ ହୁଅନ୍ତୁ ବା ବିରୋଧୀଦଳ ହୁଅନ୍ତୁ, ସମସ୍ତେ ବିଦେଶୀ ସାମ୍ରାଜ୍ୟବାଦୀ ତଥା କମ୍ପାନୀମାନଙ୍କର ଦଲାଲ ସାଜିଛନ୍ତି । ଦରିଦ୍ର ଓଡିଶାରାଜ୍ୟ ସର୍ବପ୍ରଥମେ ଓ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହେଉଛି । ଜମି, ଜଳ, ଜଙ୍ଗଲ, ଖଣିଜ ସମ୍ପଦରେ ପରିପୂର୍ଣ୍ଣ ଆମର ପାହାଡ ପର୍ବତମାଳା – ପ୍ରାକୃତିକ ସଂପଦର ଅଧିକାରୀ ଆମରାଜ୍ୟ ଉପରେ ସାମ୍ରାଜ୍ୟବାଦୀ ଓ ବହୁଦେଶୀୟ କମ୍ପାନୀମାନଙ୍କର ବିଶେଷ ନଜର ପଡ଼ିଛି । ଆମ ପ୍ରାକୃତିକ ସମ୍ପଦକୁ ଶାଗ ମାଛ ମୂଲ୍ୟରେ ହାତେଇବାପାଇଁ କମ୍ପାନୀମାନଙ୍କର ଧାଡ଼ି ଲାଗିଛି । ଦୁର୍ଭାଗ୍ୟର କଥା ଯେ ଆମରାଜ୍ୟର ସରକାର, ଅମଲାତନ୍ତ୍ର-ତଥା ବିରୋଧୀ ରାଜନୈତିକ ଦଳମାନଙ୍କ ମଧ୍ୟରୁ ଅନେକ ସେମାନଙ୍କର ଦଲାଲ୍ ସାଜି ସେମାନଙ୍କୁ ସବୁ ପ୍ରକାର ସାହାଯ୍ୟ ସହଯୋଗ କରୁଛନ୍ତି ।

ଏଭଳି ପରିସ୍ଥିତିରେ, ସାରାଦେଶରେ ତଥା ଓଡ଼ିଶାରେ ଯେଉଁ କେତେକ ବ୍ୟକ୍ତିବିଶେଷ, ଛୋଟ ଛୋଟ ଦଳ ବା ଗୋଷ୍ଠୀ ଏଭଳି ପ୍ରକ୍ରିୟାର ପ୍ରତିରୋଧ ପାଇଁ ଲୋକଶକ୍ତିକୁ ସଚେତନ ଓ ସଂଗଠିତ କରି ପ୍ରତିରୋଧକୁ ଶକ୍ତିଶାଳୀ କରି ଗଢ଼ି ତୋଳିବାରେ ଜୀବନ ପଣ କରି ସଂଗ୍ରାମ କରୁଛନ୍ତି ସେମାନଙ୍କ ଭିତରେ ଶ୍ରଦ୍ଧେୟ ପ୍ରଫୁଲ୍ଲବାବୁ ଜଣେ ଆଗଧାଡ଼ିର ସଂଗ୍ରାମୀ ।

ନିକଟ ଅତୀତରେ ଓଡ଼ିଶାରେ ଜମି, ଜଳ, ଜଙ୍ଗଲ, ଖଣି ଖାଦାନ ତଥା ଦରିଦ୍ର ଜନସାଧାରଣ ଓ ନିରୀହ ଆଦିବାସୀ ଜନଗଣଙ୍କ ଜୀବନ ଜୀବିକାର ସୁରକ୍ଷା ନିମନ୍ତେ ଯେତେ

Digitized by srujanika@gmail.com

ଯେତେ ଜନ ଆନ୍ଦୋଳନ ହୋଇଛି ଏବଂ ଏବେ ମଧ୍ୟ ଚାଲୁରହିଛି, ସବୁଥିରେ ପ୍ରଫୁଲ୍ଲବାବୁଙ୍କର ସକ୍ରୀୟ ଯୋଗଦାନ ରହିଛି । ନୂତନଭାବରେ ବର୍ତ୍ତମାନ ଯେଉଁ ସ୍ଥାନରେ କମ୍ପାନୀମାନଙ୍କ ତରଫରୁ ଲୋକଙ୍କ ଜୀବନ-ଜୀବିକା ଉପରେ ଆକ୍ରମଣ ହେଉଛି, ସେସବୁ ସ୍ଥାନର ଲୋକେ ଆସି ପ୍ରଫୁଲ୍ଲ ବାବୁଙ୍କ ପାଖରେ ପହଁଞ୍ଚୁଛନ୍ତି । ପ୍ରଫୁଲ୍ଲ ବାବୁ ମଧ୍ୟ ନିଜ ଜୀବନକୁ ବାଜି ଲଗାଇ ସମସ୍ତ ପ୍ରକାର ଭୟ ଓ ପ୍ରଲୋଭନର ଉର୍ଦ୍ଧ୍ୱକୁ ଉଠି ଦୁଃଖୀ, ଅସହାୟ ମଣିଷ ପାଖରେ ଯାଇ ଠିଆ ହେବାରେ କୌଣସି କାର୍ପଣ୍ୟ କରୁନାହାଁନ୍ତି । ପୀଡିତ ମଣିଷପାଇଁ ପ୍ରଫୁଲ୍ଲବାବୁ ଭରସା ଓ ଆଶ୍ୱାସନାର ଉତ୍ସ ।

ଏ ପୁସ୍ତିକାଟିରେ ଓଡିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ଚାଲିଥିବା ଜନ ଆନ୍ଦୋଳନଗୁଡ଼ିକର ମୂଳ ସମସ୍ୟା, ଲୋକଙ୍କ ଜୀବନ ଜୀବିକା ଉପରେ ହେଉଥିବା ଆକ୍ରମଣର ସ୍ୱରୂପ ଏବଂ ସଫଳ ପ୍ରତିରୋଧ କରି ସେଗୁଡ଼ିକୁ ପ୍ରତିହତ କରି ନ ପାରିଲେ ସେଗୁଡ଼ିକର ଭୟଙ୍କର ପରିଣତି ସଂପର୍କରେ ଲୋକଙ୍କୁ ସଚେତନ ତଥା ସାବଧାନ କରିଦିଆଯିବା ସଙ୍ଗେ ସଙ୍ଗେ ସଂଗଠିତ ପ୍ରତିରୋଧ ପାଇଁ ଆହ୍ୱାନ ଦିଆଯାଇଛି । ପ୍ରଫୁଲ୍ଲବାବୁଙ୍କ ଲେଖାଗୁଡ଼ିକ କେବଳ ଶୁଷ୍କ ପରିସଂଖ୍ୟାନ ଆଧାରିତ ନୁହେଁ । ମଣିଷକୁ ଭଲପାଇବାର ଆବେଗ ଉଚ୍ଛ୍ୱାସଭରା ଭାବନାତ୍ମକ ସମ୍ବେଦନଶୀଳତାରେ ଲେଖାଗୁଡ଼ିକ ପ୍ରାଣବନ୍ତ । କାରଣ, ଯେଉଁ ଜଙ୍ଗଲ, ପାହାଡ଼, ଝରଣା କଥା ସେ ଲେଖିଛନ୍ତି, ଯେଉଁ ଆଦିବାସୀ ନିରୀହ ଜନଗଣଙ୍କ ଦୁଃଖ ଦୁର୍ଦ୍ଦଶା ସେ ବର୍ଣ୍ଣନା କରିଛନ୍ତି; ସେ ସମସ୍ତ ସେ ନିଜେ ବୁଲି ଦେଖିଛନ୍ତି, ଗାଆଁ ଗାଆଁ ବୁଲି ସେମାନଙ୍କ ସାଙ୍ଗରେ ଦିନ ରାତି କଟେଇଛନ୍ତି ଓ ସେମାନଙ୍କର ଦୁଃଖ ଯନ୍ତ୍ରଣାକୁ ଅଙ୍ଗେ ଅଙ୍ଗେ ନିଜ ଅନୁଭବରେ ଆଣିଛନ୍ତି, ସେଇଥିପାଇଁ ତାଙ୍କର ଲେଖାଗୁଡ଼ିକ ପ୍ରଭାବଶାଳୀ ଓ ଲୋକଙ୍କୁ ଅନୁପ୍ରାଣିତ କରିବାରେ ସଫଳ ପ୍ରମାଣିତ ହୋଇଛି । ଶାସକ ଗୋଷ୍ଠୀ ତଥା କମ୍ପାନୀମାନଙ୍କ ପାଇଁ ଓ ପ୍ରଚଳିତ ବିକାଶର ପ୍ରବକ୍ତାମାନଙ୍କ ପାଇଁ ଏହା ଏକ ଆହ୍ୱାନ ।

ପ୍ରଫୁଲ୍ଲ ବାବୁଙ୍କୁ ଅନେକ ପରିବେଶବିତ୍‌ରୂପେ ଜାଣନ୍ତି ଯେହେତୁ ସେ ପ୍ରାକୃତିକ ସଂପଦର ସଂରକ୍ଷଣ ଓ ସୁରକ୍ଷା ପାଇଁ ସଂଗ୍ରାମରତ । ପ୍ରାକୃତିକ ପରିବେଶ ମାଟିର ମଣିଷମାନଙ୍କ ଜୀବନ ଓ ଜୀବିକାର ମୂଳ ଉତ୍ସ । ପ୍ରାକୃତିକ ସଂବଳଗୁଡ଼ିକର ସୁରକ୍ଷା ବିସ୍ଥାପନ ବିରୋଧୀ ଜନ ଆନ୍ଦୋଳନମାନଙ୍କର ଆଧାର ରୂପେ ପ୍ରତିପାଦିତ କରିଛନ୍ତି ଲେଖାମାନଙ୍କରେ । ଏହି ଲେଖାମାନଙ୍କରେ ବିଶ୍ୱ ଜଗତୀକରଣ ନାମରେ ସାମ୍ରାଜ୍ୟବାଦର ବିକାଶ ରାଜନୀତି ଆମ ପରିବେଶକୁ ଧ୍ୱଂସକରି କିପରି ବିକାଶର ଖେଳ ଖେଳୁଛନ୍ତି ତାରି ଉପରେ କେତେକ ପ୍ରବନ୍ଧ ଆଧାରିତ । ଏହି ପୁସ୍ତକ ବିକଳ୍ପ ବିକାଶ ସହ ବିକଳ୍ପ ରାଜନୀତିର ଅନ୍ୱେଷଣରେ ଚିନ୍ତା ଓ ଚେତନା ପାଇଁ ରାସ୍ତା ଦେଖାଇବ ବୋଲି ବିଶ୍ୱାସ । ଏଭଳି ଜଣେ ସଂଗ୍ରାମୀ ବଂଧୁଙ୍କର ଲେଖାଗୁଡ଼ିକୁ ସଂକଳିତ ତଥା ପ୍ରକାଶ କରିବା ଦ୍ୱାରା ଆମେ ଆମର କର୍ତ୍ତବ୍ୟ କରିବା ସଙ୍ଗେ ସଙ୍ଗେ ଆନନ୍ଦ ଓ ଆତ୍ମତୃପ୍ତିଲାଭ କରୁଛୁ ।

*ସାରଦାଚରଣ ମହାନ୍ତି*

*ସମ୍ପାଦକ, 'ଲୋହିଆ ଏକାଡେମୀ'*





Digitized by srujanika@gmail.com

# ପ୍ରସଙ୍ଗକ୍ରମେ ......

ବିକାଶ କହିଲେ ଏବେ ପ୍ରଶ୍ନବାଚୀ ହୋଇଛି । ବିକାଶ କାହାପାଇଁ ଓ କାହିଁକି ? ବିକାଶ କଥା କହି ବହୁଜନଙ୍କୁ କୁହାଯାଉଛି, ଦେଶର ସ୍ୱାର୍ଥ ପାଇଁ ତ୍ୟାଗ କରିବାକୁ ପଡ଼ିବ । ଦେଶର ସ୍ୱାର୍ଥ କାହାକୁ କୁହାଯିବ ? ଦେଶ କହିଲେ କେବଳ ଏକ ଭୌଗୋଳିକ ସୀମାକୁ ବୁଝାଏ ନାହିଁ । ସେହି ସୀମା ଭିତରେ ଥିବା ତାର ସମସ୍ତ ଜନତା ହିଁ ଏକ ଜାତି ରୂପେ ପରିଚୟ ଦିଅନ୍ତି ଯାହାକୁ ଏକ ରାଷ୍ଟ୍ର କୁହାଯାଏ ।

ଭାରତର ସମ୍ବିଧାନର ମୁଖବନ୍ଧ ଅନୁଯାୟୀ ଏବେ ବି ଆମ ଦେଶ ଏକ ସ୍ୱାଧୀନ ଗଣତାନ୍ତ୍ରିକ, ସାଧାରଣତନ୍ତ୍ର, ସମାଜବାଦୀ, ଧର୍ମ ନିରପେକ୍ଷ, ସାର୍ବଭୌମ ରାଷ୍ଟ୍ର । ଆମ ରାଜନୈତିକ ଦଳମାନଙ୍କ ପ୍ରଥମ କର୍ତ୍ତବ୍ୟ ଆମ ଦେଶର ସାର୍ବଭୌମତ୍ୱ ଓ ସ୍ୱାଧୀନତାକୁ ଅକ୍ଷୁନ୍ନ ରଖିବା । ଆମ ସଂବିଧାନର ମୌଳିକ ନୀତି ଓ ଲକ୍ଷ୍ୟର ବିପରୀତ ଦିଗରେ ବିକାଶର ଧାରା ଚାଲିଛି । ସେହି ବିକାଶର ଚାବିକାଠି ଆମ ଗଣତାନ୍ତ୍ରିକ ବ୍ୟବସ୍ଥାର ବାହାରକୁ ଯାଇ ଆଉ କାହା ପାଖକୁ ଚାଲିଗଲାଣି ଜଗତୀକରଣ ପ୍ରକ୍ରିୟାରେ । ଫଳରେ ଏବେ ବିକାଶର ନୂଆ ନୂଆ ସଜ୍ଞା ନିରୂପଣ କରି ଏହାକୁ ନିୟନ୍ତ୍ରଣ କରୁଥିବା ସାମ୍ରାଜ୍ୟବାଦୀ ଶକ୍ତିମାନେ ଆମ ରାଜନୀତିକୁ ମଧ୍ୟ ନିୟନ୍ତ୍ରଣ କରିବା ଆରମ୍ଭ କରିସାରିଲେଣି । ତେଣୁ ଏବେ ସାଧାରଣ ମଣିଷର ଅଧିକାର, ସ୍ୱାଧୀନତା, ଆର୍ଥିକ ଓ ସାମାଜିକ ସୁରକ୍ଷା ପ୍ରତି ବିପଦ ସୃଷ୍ଟି କରିଚାଲିଛି ବିକାଶର ରାଜନୀତି ।

ଜଗତୀକରଣ ପ୍ରକ୍ରିୟାରେ ଦେଶର ବିଭିନ୍ନ ଅଞ୍ଚଳରେ ଥିବା ପ୍ରାକୃତିକ ସଂପଦର ଲୁଟକରଣକୁ ତ୍ୱରାନ୍ୱିତ କରାଯାଉଛି । ଶିଳ୍ପାୟନ ନାମରେ ଜଳ, ଜଙ୍ଗଲ, ଜମିକୁ ଧ୍ୱଂସ କରାଯାଇ ମାଟିର ମଣିଷମାନଙ୍କ ଜୀବନ ଜୀବିକାର ଅଧିକାର ଛଡ଼ାଇ ନିଆଯାଉଛି । ବହୁଜନଙ୍କ ଆବଶ୍ୟକତା ଅନୁଯାୟୀ ଶିଳ୍ପାୟନ ନା ଶିଳ୍ପାୟନ ଜରିଆରେ ଅଳ୍ପଙ୍କ ପାଇଁ ଅତ୍ୟଧିକ ଆବଶ୍ୟକତା ସୃଷ୍ଟି କରିବା କିମ୍ବା ନୂଆ ନୂଆ ରୁଚି ଜରିଆରେ ସଂବଳର ଅବକ୍ଷୟ ଘଟାଇବା ? ଯେତେବେଳେ ବହୁ ଜନ ପ୍ରତିବାଦର ସ୍ୱର ଉଠାଉଛନ୍ତି, ସେତେବେଳେ ରାଷ୍ଟ୍ରର ପ୍ରତିନିଧି ନିର୍ବାଚିତ ସରକାର ସେହି ସ୍ୱରକୁ ଚାପି ଦେବାପାଇଁ ଅଗଣତାନ୍ତ୍ରିକ ବାଟରେ ବାହୁବଳ, ପୋଲିସବଳ ବ୍ୟବହାର କରେ, ଫଳରେ ଗଣତାନ୍ତ୍ରିକ ବ୍ୟବସ୍ଥାଟି ସଂପୂର୍ଣ୍ଣ ପରାଧୀନ ହୋଇଯାଏ । ଏହି ଦିଗରେ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ବିଶ୍ୱ ବାଣିଜ୍ୟ ସଂଘ ପରି ସଂସ୍ଥାମାନେ ସାମ୍ରାଜ୍ୟବାଦୀ ଶକ୍ତିର ବୋଲକରା ହୋଇ ଦିଲ୍ଲୀ ଓ ଭୁବନେଶ୍ୱରର ସରକାରମାନଙ୍କୁ ନିୟନ୍ତ୍ରଣ କରୁଛନ୍ତି । ବହୁରାଷ୍ଟ୍ରୀୟ କଂପାନୀମାନଙ୍କୁ ଡ଼ାକିଆଣି ବିକାଶ ନାମରେ ବିନାଶର ଖେଳ ଖେଳୁଛନ୍ତି ଶାସକ ଶ୍ରେଣୀର ରାଜନେତାମାନେ । ଘରୋଇକରଣ, ଉଦାରୀକରଣ ଓ ଜଗତୀକରଣ ଏବେ ବିକାଶର

Digitized by srujanika@gmail.com

ମୂଳମନ୍ତ୍ର ହୋଇଯାଇଛି । ସଂବିଧାନରେ ଥିବା ମୌଳିକ ଅଧିକାର, ବ୍ୟକ୍ତି – ସ୍ୱାଧୀନତା, ସମ୍ମାନର ସହ ଜୀବନ ଜୀବିକା ଓ ପରିବେଶ ସୁରକ୍ଷା ପାଇଁ ପ୍ରାକୃତିକ ସଂପଦର ସଂରକ୍ଷଣ ବଦଳରେ ବଜାର ଓ ବଜାରୀକରଣକୁ ବିକାଶର ମୁଖ୍ୟ ଲକ୍ଷ୍ୟ ବୋଲି ପ୍ରତିପାଦିତ କରାଯାଉଛି । କ୍ରୟଶକ୍ତି ବିହୀନ ଶ୍ରମଶକ୍ତି ବଜାର ଅର୍ଥବ୍ୟବସ୍ଥାର ଶିକାର ହେଉଛି । ଶିକ୍ଷା, ସ୍ୱାସ୍ଥ୍ୟକୁ ରାଷ୍ଟ୍ରର ଦାୟିତ୍ୱରୁ ଖସାଇ ଦିଆଯାଇ ଘରୋଇକରଣ ଭିତରକୁ ଠେଲି ଦିଆଯାଉଛି । ପାଣି ଆଉ ଲୁଣ ବି ଘରୋଇ କଂପାନୀର ବନ୍ଦୀଶାଳରେ । ଏବେ କେବଳ କୁହାଯାଉଛି, ସବୁ କିଛି ବିଶ୍ୱୀକରଣ ଅର୍ଥାତ ବଜାର ଏକ; କିନ୍ତୁ ବିଶ୍ୱର ଧନୀମାନଙ୍କ ଏକତ୍ରୀକରଣ ଓ ସମସ୍ତ ଧନୀଙ୍କ ଧନର ସୁରକ୍ଷା ପାଇଁ ଜଗତୀକରଣ ପୁରାଦମ୍‌ରେ କାର୍ଯ୍ୟରତ । ଏହି ପ୍ରକ୍ରିୟା ମଧ୍ୟରେ ସାଧାରଣ ଚାଷୀ, ଆଦିବାସୀ, ଦଳିତ ତଥା ସାଧାରଣ ଜନତାଙ୍କ ଅଧିକାର ଅପହୃତ । ବିଶ୍ୱବଜାରକୁ ପୁଞ୍ଜିର ମୁକ୍ତ ପ୍ରବେଶ । ଏହାଦ୍ୱାରା ଆମେରିକୀୟ ଡ଼ଲାରର ପ୍ରଭୁତ୍ୱ ଜାହିର ହେଉଛି; କିନ୍ତୁ ଗରିବ ଦେଶର ଶ୍ରମର ପ୍ରବେଶକୁ ଧନୀ ଦେଶରେ ନିଷିଦ୍ଧ କରାଯାଇଛି । ତେଣୁ ବଜାରୀକରଣ ବା ବିଶ୍ୱୀକରଣର ଅନ୍ୟ ନାମ ଶୋଷଣକରଣ ଓ ଦୁର୍ନୀତିକରଣ । ଏକଥା ଆମେରିକାର ବିଶିଷ୍ଟ ଅର୍ଥନୀତିଜ୍ଞ ତଥା ନୋବେଲ ବିଜେତା ପ୍ରଫେସର ଜୋସେଫ୍ ଷ୍ଟିଗଲିଜ୍ ସ୍ପଷ୍ଟଭାବରେ କହିବାବେଳେ ଆମ ଦେଶର ବହୁ ଅର୍ଥଶାସ୍ତ୍ରୀ, ବୁଦ୍ଧିଜୀବୀ ଓ ରାଜନୈତିକ ଦଳର ନେତାମାନେ ଜଗତୀକରଣ ଦ୍ୱାରା ଆମ କୃଷି ଓ କ୍ଷୁଦ୍ରଶିଳ୍ପର ଅବକ୍ଷୟ ପ୍ରତି ଚିନ୍ତିତ ନୁହଁନ୍ତି । କେବଳ ବିଦେଶୀ ପୁଞ୍ଜିକୁ ସ୍ୱାଗତ କରି ବଡ଼ ବଡ଼ କଂପାନୀମାନଙ୍କ ହାତରେ ଜମି, ଜଳ, ଖଣି ତଥା ଜଙ୍ଗଲ ସଂପଦକୁ ଟେକି ଦେବାକୁ ବିକାଶ କୁହାଯାଉଛି । ଆମ ରାଜ୍ୟରେ ଏପରି ବିକାଶ ଦ୍ୱାରା ଚାଷୀର ଜମି ଓ ପାଣି, ଆଦିବାସୀର ଜଙ୍ଗଲ କଂପାନୀକୁ ଚାଲିଯିବାର ପ୍ରତିରୋଧରେ ମାଟିର ମଣିଷମାନେ ବିସ୍ଥାପନ ବିରୋଧରେ ସଂଗ୍ରାମରତ । ଆମ ଲୁହାପଥର, ବକ୍‌ସାଇଟ୍, କ୍ରୋମ, ମାଙ୍ଗାନିଜ୍, କୋଇଲାକୁ ଶସ୍ତାରେ ଏପରିକି ମାଗଣାରେ ନେଇଯିବା ପାଇଁ ପୁଞ୍ଜି ଆସୁଛି । ତାପରେ ଆମ ଖାଦ୍ୟ, ପରିବେଶ ଓ ସର୍ବୋପରି ଜୀବିକାର ଅବସ୍ଥା କଣ ହେବ ସେକଥା ଆଲୋଚନାକୁ ଆସୁନାହିଁ । ଲୋକଙ୍କ ପ୍ରତିରୋଧକୁ ଶାସକ ଦଳ, ଶାସନ କଳ ଓ ପ୍ରଚଳିତ ବିକାଶର ପ୍ରବକ୍ତାମାନେ ବିକାଶର ବିରୋଧୀ କହି ବିକାଶ ନାମରେ ଗଣତନ୍ତ୍ରର କବର ଖାନା ତିଆରିରେ ସହଯୋଗ କରୁଛନ୍ତି । ଅନ୍ୟପକ୍ଷରେ ଆମ ଶିକ୍ଷା, ସ୍ୱାସ୍ଥ୍ୟ, ଜଳ, କୃଷିନୀତିର ଚାବିକାଠି ରହିଲାଣି ବିଶ୍ୱବ୍ୟାଙ୍କ, ଡିଏଫ୍‌ଆଇଡ଼ି ଦେଶୀ ବିଦେଶୀ ଓ ଘରୋଇ କଂପାନୀମାନଙ୍କ ପାଖରେ ।

ଆଉ ୩୦ ବର୍ଷ ପରେ ଅନେକ ଖଣି, ଜଙ୍ଗଲ, ଜଳସ୍ରୋତ, ନଦୀ ଶେଷ ହୋଇଯାଇଥିବ । ଦଳେ ପ୍ରାଚୁର୍ଯ୍ୟ ଭିତରେ ବିକାଶକୁ ଉପଭୋଗ କଲାବେଳେ ଜୀବିକାରୁ ବିସ୍ଥାପିତ ବହୁଜନମାନେ ତହଳ ବିକଳରେ ବଞ୍ଚିବାର ବାଟ ଖୋଜୁଥିବେ । ସାମନାରେ ପ୍ରଦୂଷଣ ତାପବୃଦ୍ଧି, ଜଳାଭାବ ଜୀବନକୁ ଦୁର୍ବିସହ କରୁଥିବ । ପ୍ରଚଳିତ ବିକାଶର ରାଜନୀତିଦ୍ୱାରା ଖାଦ୍ୟସଂକଟ, ପରିବେଶ ସଂକଟ, ଜୀବିକାର ସଂକଟ ଓ ସର୍ବୋପରି ସାମାଜିକ ଓ ସାଂସ୍କୃତିକ

Digitized by srujanika@gmail.com

ଅସ୍ଥିରତାର ସଂକଟ ଘନୀଭୂତ ହେବାରେ ଲାଗିଛି । ଏହାଦ୍ୱାରା ମାନବିକ ସଂକଟ ଭୟଙ୍କର ହୋଇପାରେ । ଏହାର ପ୍ରତିକାର ପାଇଁ ପ୍ରଥମେ ପ୍ରଚଳିତ ବିକାଶର ରାଜନୀତିକୁ ବୁଝିବା ଏକାନ୍ତ ଜରୁରୀ । ତାପରେ ବିସ୍ଥାପନ ବିରୋଧୀ ଜନ ଆନ୍ଦୋଳନମାନଙ୍କ ଦ୍ୱାରା ପ୍ରତିଧ୍ୱନିତ ହେଉଥିବା ସ୍ୱରରୁ ଶୁଣିପାରିବା ବିକଳ୍ପ ବିକାଶ ପାଇଁ ବିକଳ୍ପ ରାଜନୀତି ଅନିବାର୍ଯ୍ୟ ।

କିନ୍ତୁ ଏବେ ଜଗତୀକରଣ ପ୍ରକ୍ରିୟାରେ ବିକାଶନୀତି ରାଜନୀତିର ଦିଗ ନିର୍ଣ୍ଣୟ କରୁଛି । କାରଣ ଆମଦେଶର ସମସ୍ତ ଶାସକ ଦଳମାନେ ପ୍ରଚଳିତ ବିକାଶ ଢ଼ାଞ୍ଚାକୁ ଗ୍ରହଣ କରିଛନ୍ତି । ୧୯୯୧ ପରେ କେନ୍ଦ୍ରରେ ବିଭିନ୍ନ ଦଳମାନଙ୍କ ମିଳିତ ସରକାର ହୋଇଛି । ସମସ୍ତଙ୍କ ଆର୍ଥିକ ନୀତି ଏକ । କିଏ କେତିକି ବିଶ୍ୱବ୍ୟାଙ୍କ ଓ ଆମେରିକା ସାମ୍ରାଜ୍ୟବାଦର ନିର୍ଦ୍ଦେଶକୁ କାର୍ଯ୍ୟକାରିତା କରାଇ ବିଶ୍ୱସନୀୟ ହେବାକୁ ପ୍ରତିଯୋଗିତା ଚାଲିଛି ବୋଲି କହିଲେ ଭୁଲ ହେବନାହିଁ । ତେଣୁ ରାଜନୀତିର ପଶାପାଲି ଏବେ ବିକାଶର ଖେଳ ଉପରେ ନିର୍ଭରଶୀଳ । ଏବେ ସାଧାରଣ ଲୋକଙ୍କ ଜୀବିକାର ଭବିଷ୍ୟତ ବିକାଶର ରାଜନୀତି ଦ୍ୱାରା ନିରୂପିତ ହେବ । ଏହି ରାଜନୀତିକୁ ବୁଝିବାକୁ ହେଲେ ପ୍ରଚଳିତ ବିକାଶ ପାଇଁ ଆସୁଥିବା ପୁଞ୍ଜିର ମୂଳ ମାଲିକର ଚରିତ୍ରକୁ ବୁଝିବାକୁ ହେବ । ଏହି ପୁଞ୍ଜିର ମାଲିକ ଗଣତନ୍ତ୍ରକୁ ମାନେନା, ଗଣତାନ୍ତ୍ରିକ ଅନୁଷ୍ଠାନରେ ବିଶ୍ୱାସ ରଖେନା, ଗଣତାନ୍ତ୍ରିକ ବ୍ୟବସ୍ଥାରେ ଥିବା ସ୍ୱାଧୀନତାକୁ ଅପହରଣ କରି ନେଇ ନିଜର କର୍ପୋରେଟ ଶାସନକୁ ବିକଳ୍ପରୂପେ ଗଣତନ୍ତ୍ର ଉପରେ ଲଦିଦିଏ । ତେଣୁ ପ୍ରଚଳିତ ବିକାଶର ଚରିତ୍ରକୁ ଆଜିର ଶିକ୍ଷିତ ବର୍ଗର ଜନତା ପରଖିବା ଏକାନ୍ତ ଜରୁରୀ । ବିକାଶ କହିଲେ କାହାର, କାହାପାଇଁ ଓ କିଏ କରିବ ତାକୁ ବି ପ୍ରତ୍ୟେକ ବ୍ୟକ୍ତି ସ୍ୱାଧୀନ ରାଷ୍ଟ୍ରର ଜଣେ ନାଗରିକ ରୂପେ ବିବେଚନା କରିବା ଏକାନ୍ତ ଜରୁରୀ । ସେଥିପାଇଁ ବିତର୍କର ଆବଶ୍ୟକତା ରହିଛି । ଆଜି କେବଳ ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ପକ୍ଷରୁ କୁହାଯାଉଛି ବିକଳ୍ପ ନାହିଁବୋଲି । ସେ ପକ୍ଷଟି ବଜାର ଓ ତାର ପ୍ରବକ୍ତାମାନେ ଏବେ ବଜାରର ନିୟନ୍ତ୍ରଣରେ ରାଷ୍ଟ୍ର । ସାଧାରଣ ମଣିଷର ଆବଶ୍ୟକତାକୁ ଉପଲବ୍ଧ କରାଇବାପାଇଁ ଉତ୍ପାଦନ ନୀତି, ବଜାର ନୀତି ଓ ବଜାରକୁ ଉତ୍ପାଦିତ ପଦାର୍ଥ ଆସିବା ପୂର୍ବରୁ ସଂବଳର ବ୍ୟବହାର ପାଇଁ ନୀତି ଓ ଭବିଷ୍ୟତ ପାଇଁ ସଂବଳର ସଂରକ୍ଷଣ ସହ ପରିବେଶର ସୁରକ୍ଷା ପାଇଁ ନୀତି ନିର୍ଦ୍ଧାରଣ ଦାୟିତ୍ୱ ସଂସଦର ଯିଏକି ରାଷ୍ଟ୍ରର ପ୍ରତିନିଧିତ୍ୱ କରୁଛି । ଏବେ ରାଷ୍ଟ୍ର ବଜାର ଦ୍ୱାରା ନିୟନ୍ତ୍ରିତ ହେବାକୁ ଯାଉଛି ଓ ସଂସଦରେ ଜନମତ ପ୍ରତିଫଳିତ ହୋଇପାରୁ ନାହିଁ । ଏହା ରାଷ୍ଟ୍ରର ସ୍ୱାଧୀନତା, ସାର୍ବଭୌମତ୍ୱ ପ୍ରତି ବିପଦ । ରାଷ୍ଟ୍ର କହିଲେ ପ୍ରଥମେ ତାର ଜନତା । ତେଣୁ ସ୍ୱାଭାବିକ ବିକାଶର ଲକ୍ଷ୍ୟ ବି ସେହି ବହୁଜନଙ୍କ ବିକାଶ । ଅନେକଙ୍କ ବିନାଶରେ ଅଳ୍ପଙ୍କ ବିକାଶ ସମାଜ ଭାଙ୍ଗିଦେବ । ସମାଜ ଭାଙ୍ଗିଗଲେ ରାଷ୍ଟ୍ରର ଅସ୍ତିତ୍ୱ ରହିପାରିବ ନାହିଁ । ସମାଜ ରାଷ୍ଟ୍ରକୁ ଜନ୍ମଦେଇଛି, ରାଷ୍ଟ୍ରର ଦାୟିତ୍ୱ ସମାଜକୁ ସୁରକ୍ଷାଦେବା, କିନ୍ତୁ ଆଜି ବିକାଶ ନାମରେ ସାଧାରଣ ଜନତାଙ୍କ ଜୀବିକାର ଉତ୍ସ ପ୍ରାକୃତିକ ସଂବଳଗୁଡ଼ିକୁ ଯେପରି ଅବିଚାରିତ ରୂପେ ଶେଷକରି ଦିଆଯାଉଛି ତାହାରି ପରିଣାମରେ ଚାଷୀ, ଆଦିବାସୀ, ପାରଂପରିକ ଜୀବିକା ନିର୍ବାହ କରୁଥିବା କୁଶଳୀ କାରିଗର ଓ ଶ୍ରମିକଙ୍କୁ

Digitized by srujanika@gmail.com

ଜୀବନ ଓ ଜୀବିକାର ଅଧିକାରରୁ ବଞ୍ଚିତ କରାଯାଉଛି । ଆର୍ଥିକ ସାମାଜିକ, ସାଂସ୍କୃତିକ ସୁରକ୍ଷା ହରାଇବାପରେ ନିଜ ନିଜ ସାମାଜିକ ଅସ୍ମିତା ହଜିଯାଉଛି । ଏହାଦ୍ୱାରା ସମାଜ ଭାଙ୍ଗି ଯାଉଛି । ତେଣୁ ଏକ ଶୋଷଣହୀନ ସମାଜ ଗଠନ ପାଇଁ ବିକଳ୍ପ ବିକାଶ ଅପରିହାର୍ଯ୍ୟ । ବିକଳ୍ପ କେବଳ ଏକ ପରିକଳ୍ପନା ନୁହଁ । ଏହା ଏକ ବାସ୍ତବିକ । ଏହାକୁ କେଉଁଠି ଖୋଜିବାକୁ ପଡ଼ିବ ନାହିଁ । ଏହା ସବୁଠି ଅଛି । କେବଳ ନୂଆ ବିଚାରରେ ସେଗୁଡ଼ିକୁ କିପରି ପୁନର୍ଗଠିତ କରିପାରିବା ଓ ଆବଶ୍ୟକତା ଅନୁଯାୟୀ ଛୋଟ ଛୋଟ ଜ୍ଞାନ କୌଶଳ ସାହାଯ୍ୟରେ ବିକେନ୍ଦ୍ରିତ ଉତ୍ପାଦନ କ୍ଷେତ୍ର ସୃଷ୍ଟି କରିବା ତାହା ହିଁ ହେବ ନୂତନତା ଯାହାକି ତଥାକଥିତ ଆଧୁନିକତାଠାରୁ ପ୍ରଗତିଶୀଳ । ଚାଷ ରହିବ, ତାକୁ କିପରି ସମ୍ମାନଜନକ ବୃତ୍ତିରୂପେ ଗ୍ରହଣୀୟ କରାଇପାରିବା ଯାହାଫଳରେ ସ୍ୱାଧୀନତା ଓ ସ୍ୱାଭିମାନ ସହ ଖାଦ୍ୟ ସୁରକ୍ଷା ନିଶ୍ଚିତ ହୋଇପାରିବ । ଏପରି ଅନେକ ତେଣୁ ଅନ୍ୟ ପକ୍ଷଟିକୁ ସମାନ ସୁଯୋଗ ଦେବା ଓ ଲୋକଙ୍କ ସାମନାକୁ ଆଣିବା ମଧ୍ୟ ଏକ ଚାଲେଞ୍ଜ ।

ଏହି ବିଚାରଗୁଡ଼ିକୁ ଆଧାର କରି କେତେକ ଲେଖା । ଏମାନଙ୍କ ମଧ୍ୟରୁ କିଛି କିଛି ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା; କିନ୍ତୁ ସେଗୁଡିକର ନବୀକରଣ ସହ ପୁନର୍ଗଠନ କରାଯାଇଛି । ମୁଁ ଯାହା ଲେଖିଛି ସେଥିରେ ଥିବା ବିଚାରଗୁଡିକ ମାଟିର ମଣିଷମାନଙ୍କ ଭାବନା ଓ ଅନୁଭବଗୁଡିକର ସମାହିତ । ବିଭିନ୍ନ ଗବେଷଣାତ୍ମକ ଲେଖାମାନଙ୍କରୁ ତଥ୍ୟ ସଂଗୃହୀତ ହୋଇଛି ।

ଏପରି କେତେକ ବିଚାରଗୁଡ଼ିକୁ ବିତର୍କ ପାଇଁ ରଖିବା ଉଦ୍ଦେଶ୍ୟରେ ଲୋହିଆ ଏକାଡ଼େମୀ ତରଫରୁ ବହିଟି ପ୍ରକାଶ ପାଉଥିବା ଯୋଗୁଁ ଏକାଡେମୀ ପରିବାରର ଜଣେ ସଦସ୍ୟ ରୂପେ ମୁଁ ନିଜକୁ ଧନ୍ୟ ମନେ କରୁଛି ।

ଉକ୍ତ ପୁସ୍ତକ ନିର୍ମାଣରେ ଡ଼ି.ଟି.ପି.ରେ ସିଦ୍ଧହସ୍ତ ଶ୍ରୀ ଜଗବନ୍ଧୁ ଚୌଧୁରୀଙ୍କ ପରିଶ୍ରମ ଅତ୍ୟନ୍ତ ମୂଲ୍ୟବାନ । କମ୍ ସମୟ ଘରେ ରହୁଥିବା ଅବସରରେ ଗୃହକାର୍ଯ୍ୟରେ ସହଯୋଗ କରିବା ପରିବର୍ତ୍ତେ ପଢ଼ିବା, ଲେଖିବା କାମରେ ବ୍ୟସ୍ତରହିଥାଏ । ଅନେକ ସମୟରେ ଘରକାମ ନ କରିବା ପାଇଁ ଲେଖାର ବାହନା ନେଇଥାଇ ପାରେ । ଏ ସବୁକୁ ହଜମକରି ମୋର ଆଦରଣୀୟା ପତ୍ନୀ ଡ.ଉଷାରାଣୀ ଆଚାର୍ଯ୍ୟ ବିଶ୍ୱବିଦ୍ୟାଳୟ ଅଧ୍ୟାପନା ଓ ଗବେଷଣା କାର୍ଯ୍ୟରେ ନିଷ୍ଠାପର କର୍ତ୍ତବ୍ୟ ସଂପାଦନା କରିବା ସହ ପାରିବାରିକ ଗୃହ ଦାୟିତ୍ୱ ତୁଲାଉଛନ୍ତି । ତାହା ମୋର ସାମାଜିକ ଓ ବୌଦ୍ଧିକ କାର୍ଯ୍ୟ ପାଇଁ ଅମୂଲ୍ୟ ସହଯୋଗ ଓ ସଦିଚ୍ଛା ।

ଆଶା କରୁଛି ଅଧିକ ପାଠକ ଯଦି ବହିଟିକୁ କିଣି ପଢ଼ିବେ ଓ ପଢ଼ାଇବେ, ଏପରିକି ଲେଖାଗୁଡ଼ିକରେ ଥିବା ବିଚାର ପ୍ରତି ନିଜର ମତ ପ୍ରକାଶ କରି ଲେଖିବେ ମୁଁ ସେମାନଙ୍କ ପାଖରେ କୃତଜ୍ଞ ରହିବି ।

ପ୍ରଫୁଲ୍ଲ ଆଚାର୍ଯ୍ୟ

Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com

Digitized by srujanika@gmail.com



Digitized by srujanika@gmail.com

# – ଉତ୍ସର୍ଗ –

ଏବେ ଭ୍ରଷ୍ଟ ରାଜନୀତି, ସାଂପ୍ରଦାୟିକତା ଓ ନବ ସାମ୍ରାଜ୍ୟବାଦ ଦେଶର ସ୍ୱାଧୀନତା ଓ ସାର୍ବଭୌମ ପ୍ରତି ଭୟଙ୍କର ବିପଦ ସୃଷ୍ଟି କରିଛି । ଏପରି ଏକ ରାଷ୍ଟ୍ରୀୟ ସଂକଟରୁ ଜନତାଙ୍କୁ ମୁକ୍ତ କରିବା ପାଇଁ କ୍ଷମତାସର୍ବସ୍ୱ ନିର୍ବାଚନ ରାଜନୀତିରୁ ବିଦାୟ ନେଇ ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣ ବିରୁଦ୍ଧରେ ବିକଳ୍ପ ରାଜନୀତି ପାଇଁ ଲୋକଶକ୍ତି ନିର୍ମାଣରେ ନିଜକୁ ନିୟୋଜିତ କରି ଚାଲିଛନ୍ତି ଦେଶର ସମାଜବାଦୀ ଆନ୍ଦୋଳନର ଅନନ୍ୟ ପ୍ରବାଦ ପୁରୁଷ ଶ୍ରୀଯୁକ୍ତ ରବି ରାୟ ଯାହାଙ୍କ ଦୀର୍ଘ ଜନ-ଜୀବନ, ସଚ୍ଚୋଟତା, ସ୍ୱଚ୍ଛତା ଓ ସରଳତାରେ ପରିପୂର୍ଣ୍ଣ । ଜଣେ ଅହଂକାରଶୂନ୍ୟ ଆଦର୍ଶ ରାଷ୍ଟ୍ରନୀତିଜ୍ଞ ରୂପେ ଯାହାଙ୍କ ଠାରୁ ମୁଁ ପ୍ରେରଣା ପାଇ ଆସିଛି, ସେହି ପ୍ରେରଣାଦାୟକ ଶ୍ରୀଯୁକ୍ତ ରବି ରାୟଙ୍କୁ ସମ୍ମାନର ସହିତ ପୁସ୍ତକଟି ନିବେଦିତ ।

ମଲାଟ ଉପରେ ଥିବା ଫୋଟଚିତ୍ରଟି
ଡ଼ଙ୍ଗୁରିଗୁଡ଼ା ଗାଁର ଶିଶୁକନ୍ୟା ପଦମାର

Digitized by srujanika@gmail.com

# ଡ଼ଙ୍ଗୁରିଗୁଡ଼ାର ପଦମା
# ଓ
# ତା'ର ଆସନ୍ତାକାଲି

୨୦୦୪ ସେପ୍ଟେମ୍ବର ୯ ତାରିଖ ଦିନ ଏକଦା ବହୁଚର୍ଚ୍ଚିତ ଡ଼ଙ୍ଗୁରିଗୁଡ଼ା ଗ୍ରାମରେ ପହଞ୍ଚିଥିଲି । ନବରଙ୍ଗପୁର ଜିଲ୍ଲାର ଝରିଗାଁ ବ୍ଲକର ବଡ଼ ଟେମରା ପଞ୍ଚାୟତର ଏକ ଛୋଟ ଆଦିବାସୀ ଗାଁ ଯାହାର ଅବସ୍ଥାନ ନଈ, ନାଳ, ପାହାଡ଼ ଓ ଜଙ୍ଗଲ ଭିତରେ । ୨୯ କି.ମି. ଦୂର ଝରିଗାଁଠାରୁ ଯେଉଁଠି ବ୍ଲକ ଅଫିସ୍ ଓ ତହସିଲ ଅଫିସ୍, ହସପିଟାଲ ଓ ପୋଲିସ ଥାନା ଅବସ୍ଥିତ । ବିଗତ ବିଧାନସଭା ଅଧିବେଶନବେଳେ ୪ ଜଣ ଶିଶୁ ମୃତ୍ୟୁକୁ ନେଇ ହଇଚଇ ସୃଷ୍ଟି ହେଲା ଗଣମାଧମ ଜରିଆରେ । ସରକାର ସତ୍ୟତାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି କିମ୍ବା ମୁଖ୍ୟ ବିରୋଧୀ ଦଳ (ଯିଏ ଅତୀତରେ ଶାସନ କରିଛନ୍ତି) ସତ୍ୟତାକୁ ନେଇ ଆତ୍ମସମୀକ୍ଷା ସହ ରାଜନୀତି କରିବା ସପକ୍ଷରେ ନାହାନ୍ତି ।

ପ୍ରଥମ ସତଟି ହେଲା ସେହିଗାଁରେ ଗୋଟିଏ ବର୍ଷ ମଧ୍ୟରେ ୧୫ ଜଣ ଶିଶୁଙ୍କ ଅକାଳ ମୃତ୍ୟୁ ଘଟିଛି । ଦାରିଦ୍ର୍ୟ ହେଉଛି ମୁଖ୍ୟକାରଣ । ଦାରିଦ୍ର୍ୟ ସହ ଅଜ୍ଞତା ଓ ଅସ୍ୱାସ୍ଥ୍ୟକାର ଦୂଷିତ ପାଣିର ବ୍ୟବହାର ସାଙ୍ଗକୁ ମା'ର ଉଦର ଖାଲି । ପୁଷ୍ଟିକରଖାଦ୍ୟ ଏକ ସ୍ୱପ୍ନ । ମା'କୁ ଯଦି ଖାଦ୍ୟ ନାହିଁ, ମାର ସ୍ତନ ଉପରେ ନିର୍ଭରଶୀଳ ପିଲାକୁ ମିଳିବ କେଉଁଠୁ ଭିଟାମିନ ଯୁକ୍ତ ଆହାର ? ଦ୍ୱିତୀୟ ସତଟି ହେଲା, ଯେଉଁଠି ଖାଦ୍ୟର ଗ୍ୟାରେଣ୍ଟି ନାହିଁ ସେଠି ସ୍ୱାସ୍ଥ୍ୟସେବା ଅସମ୍ଭବ । ଗାଁରେ ପ୍ରାଥମିକ ସ୍କୁଲ ନାହିଁ । ୭ କି.ମି. ନଈ, ନାଳ, ଡ଼ଙ୍ଗର ପାର ହୋଇ ଶିଶୁଟି ପଢ଼ିବାକୁ ଯିବ ବା କିପରି ? ପୁଣି ତାକୁ ପାଠ ପଢ଼ ବୋଲି କହିବ ବା କିଏ ଓ କେମିତି ? ସେହିଗାଁର ଜଣେ ବି ସାକ୍ଷର ନଥିବା ଏକ ସ୍ୱାଭାବିକ ସ୍ଥିତି । ଶିକ୍ଷା ଯଦି ନାହିଁ, ନିଜ ଅଧିକାର କିମ୍ବା ସ୍ୱାସ୍ଥ୍ୟ ସଚେତନତା କିମ୍ବା ଶିଶୁ ମୃତ୍ୟୁର କାରଣ ପାଇଁ କିଏ ଚିନ୍ତା କରିବ ? ଗାଁର କିଛି ବ୍ୟକ୍ତି ଡ଼ଙ୍ଗରରେ ମକା, ଧାନ ଚାଷ କରିଛନ୍ତି । କିନ୍ତୁ ତାହା ସାମୟିକ । ପ୍ରତିଦିନ ମୂଲ ପାଇଁ କାମ ଖୋଜିଲେବି ମିଳିବା ଅସମ୍ଭବ, ଯେହେତୁ ସେଠି କୌଣସି ଶ୍ରମଭିତ୍ତିକ କାର୍ଯ୍ୟ କରାଯାଉନାହିଁ । ଦୂରକୁ ଯାଇ କେହି ଯଦି କେଉଁ ବ୍ୟବସାୟୀ କିମ୍ବା ଠିକାଦାରର

Digitized by srujanika@gmail.com

କାମ କରୁଥାଏ, ତାହାହେଲେ ତାର ମୂଲ୍ୟ ମାତ୍ର ୧୫ ଟଙ୍କା ମିଳିଥାଏ । ଯେଉଁଠି ଅଜ୍ଞତା, ନିରକ୍ଷରତା ଓ ଦାରିଦ୍ର୍ୟର ପ୍ରଚୁର ଅନ୍ଧକାର ଭରି ରହିଛି ସେଠି ଶୋଷଣ ଏକ ସ୍ୱାଭାବିକ ପ୍ରକ୍ରିୟା ।

ଗାଁର ପରିବାର ସଂଖ୍ୟା ୪୮ । ଏକ ନଈର ଦୁଇପାଖରେ ଦୁଇ ସାହି । ତଳଭାଗରେ ଏକ ପିଇବା ପାଣିର ନଳକୂପ ଥିବା ପରି ଦିଶେ, କିନ୍ତୁ ନଈପାଖ କୂଅ ଉପରେ ଏକ ସିମେଣ୍ଟ ଘୋଡ଼ଣି । ତା ଉପରେ ଏକ ନଳକୂଅର ପମ୍ପରେ ପାଣି ଟଣାଯାଉଛି ।  ଆରପାଖେ ନଈଠୁ ଉଚ୍ଚ ସ୍ଥାନରେ ସରକାର ଏକ କୂଅ ଖୋଳିଛନ୍ତି ଶିଶୁମୃତ୍ୟୁର ହଇଚଇ ପରେ, କିନ୍ତୁ ସେହି କୂଅ ପାଣି ବ୍ୟବହାର ପାଇଁ ଅନୁପଯୁକ୍ତ । ବର୍ଷା ଦିନ ସରିଗଲେ କୂଅ ଶୁଖିଲା ପଡ଼ିବ । ଯେହେତୁ ନଈର ପ୍ରାୟ ୫୦ ଫୁଟ ଉପରେ କୂଅଟି ଅଛି । ସରକାରୀ ଯୋଜନା କିପରି କାର୍ଯ୍ୟକାରୀ ହେଉଛି ତାର ଏହା ଏକ ନମୁନା ।

ଗତ ଦୁଇମାସ ଧରି ଗାଁରେ ପ୍ରତି ପରିବାରକୁ ଚାଉଳ ଦିଆଯାଉଛି; କିନ୍ତୁ ଏହା କେତେଦିନ ଚାଲିବ କିଏ ଜାଣେ ନାହିଁ । ଗାଁରେ କେତେକ  ମା'ମାନଙ୍କ କାଖରେ ୩ ମାସରୁ ୬ ମାସ ବୟସର ଶିଶୁମାନଙ୍କୁ ଦେଖିବାକୁ ମିଳିଥିଲା । ଜଣେ ମା'ର ସ୍ତନ ଚୁଚୁମୁଥିବା ଶିଶୁଟିର ପେଟ ପୂରୁନଥାଏ କାରଣ ମା'ର ସ୍ତନରେ କ୍ଷୀର ଥିବା ପରି ମନେ ହେଉନଥିଲା । ଏହା ନିରାଟ ସତ୍ୟ, ମା' ପାଇଁ ଖାଦ୍ୟର ଅଭାବ । ପୁଣି ଆଉ ୬ ମାସ ବେଳକୁ ସେହି ଶିଶୁ ମାନଙ୍କ ଚେହେରା ଯେ ଇଥୋପିଆ ଦେଶର ଶିଶୁମାନଙ୍କ ପରି ଦେଖାନଯିବ କାହିଁକି ?

ଏକଥା ମଧ ସତ୍ୟ, ସେହି ଗାଁରେ ଠିଆହୋଇ ଯେତେବେଳେ ଭୁବନେଶ୍ୱର ଓ ଦିଲ୍ଲୀକୁ ଦେଖିଲାବେଳକୁ ଆକ୍ଷିପାଏ ନାହିଁ । ସେଠାର ସିଂହାସନୀ ପବନ ମଧ ଡ଼ଙ୍ଗରିଗୁଡ଼ାକୁ ଛୁଇଁବ ବା କାହିଁକି ? ରାଜଧାନୀର ପରିକଳ୍ପନାରେ ଡ଼ଙ୍ଗରିଗୁଡ଼ା କୁଆଡ଼େ ହଜିଯାଇଛି । ଗାଁର ପିଲାମାନେ ଲଙ୍ଗଳା ଓ ଅର୍ଦ୍ଧଲଙ୍ଗଳା । ପରିଧାନ ବସ୍ତ୍ର ମାତ୍ର ଖଣ୍ଡିଏ ଛିଣ୍ଡା କନା । ପ୍ରାୟ ୨୦ ଜଣ ମହିଳାଙ୍କ ଗହଣରେ ଜଣେ ଝିଅ ଢ଼ୋଲା ବ୍ଲାଉଜଟିଏ ପିନ୍ଧିଥାଏ । ଶିଶୁ ମୃତ୍ୟୁ ଖବର ଚନାଘନା ପୂର୍ବରୁ ସେହି ଗାଁକୁ କେବେ କୌଣସି ବି.ଡ଼ି.ଓ. କିମ୍ବା ତହସିଲଦାର ପାଦଦେଇ ନଥିଲେ ।

ପଚାରିଲି ଗାଁ ଲୋକଙ୍କୁ । ତୁମ ଗାଁରେ ବିକାଶ କିପରି ସମ୍ଭବପର ? ଏକସ୍ୱରରେ କହିଲେ – ''ଆମର ଜମିବାଡ଼ି ବୋଲି ନିଜର କିଛିନାହିଁ ? ଯାହାକିଛି ଚାଷ କରୁଛୁ ଆମ ନାମରେ ପଟା ନାହିଁ । ଆମକୁ ସ୍ୱତ୍ୱାଧିକାର ଦିଅନ୍ତୁ । ପିଇବା

Digitized by srujanika@gmail.com

ପାଣିର ବ୍ୟବସ୍ଥା କରିବା ସହ ଗାଁକୁ ସ୍କୁଲଟିଏ ଦରକାର । "ସତରେ ଏହି ସ୍ଥିତିରେ ଯଦି ପରିବର୍ତ୍ତନ ନହୁଏ, ଆଉ ୫୦ ବର୍ଷ ପରେ ବି ସେଠି ପାଠ ପଢ଼ିପାରିବେ ନାହିଁ । ବର୍ତ୍ତମାନ ଏକ ପ୍ରାଥମିକ ବିଦ୍ୟାଳୟର ଆବଶ୍ୟକତା ଅନିବାର୍ଯ୍ୟ । ଏହି ଅଞ୍ଚଳ ସଂରକ୍ଷିତ ଜଙ୍ଗଲ ଜମି ଭିତରେ । ତେଣୁ ସରକାର ପଟା ଦେଉନାହାନ୍ତି, କିନ୍ତୁ ସରକାର ବାହାରୁ ଆସିନାହାନ୍ତି । ଶାସକ ଓ ଶାସିତ ସମସ୍ତେ ଏକା ଭୂଇଁର । ତେଣୁ ଯେଉଁଠି ମୂଳ ଜନ ଅଛନ୍ତି, ସେଠି ସେମାନଙ୍କ ପ୍ରାପ୍ୟ ଦେଇ ବିକଳ୍ପ ବିକାଶର ପଥ ପରିଷ୍କାର କରିବା ଏକାନ୍ତ ଜରୁରୀ । ଜମିର ଚାଷ ସାଙ୍ଗକୁ ପଡ଼ିଆ ଡ଼ଙ୍ଗରରେ ବୃକ୍ଷରୋପଣ ତଥା ନୂତନ ଜଙ୍ଗଲ ସୃଷ୍ଟି ସମ୍ଭବପର । ସେହି ଜଙ୍ଗଲରେ ଗ୍ରାମବାସୀଙ୍କ ଭାଗ ରହିବ । ତାହା ସାଙ୍ଗକୁ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟସେବା ଓ ଶିଶୁମାନଙ୍କୁ ପୁଷ୍ଟିକର ଖାଦ୍ୟ । ଅନ୍ତତଃ ଜନ୍ମରୁ ଏକ ବର୍ଷ ପାଇଁ ଶିଶୁମାନଙ୍କୁ ପ୍ରତିଦିନ ଦୁଗ୍ଧ ବ୍ୟବସ୍ଥା କରାନଗଲେ ପୁଣି ଶିଶୁ ମୃତ୍ୟୁ ଘଟଣାର ପୁନରାବୃତ୍ତି ହେବ । କାରଣ ଏପରି ଅନେକ ଡ଼ଙ୍ଗୁରିଗୁଡ଼ା ଗାଁ ଅଛି ଆମ ରାଜ୍ୟରେ ଯେଉଁଠି ମା' ଓ ଶିଶୁଙ୍କ ମୃତ୍ୟୁ ହୁଏ ତାହାର ହିସାବ ନେବାକୁ କେହି ନାହିଁ । ଯଦି ଚର୍ଚ୍ଚିତ ଗାଁର ଘଟଣା ପୁଣି ହୁଏ ତାହା ଏକ ସ୍ୱାଭାବିକ ଘଟଣା ରୂପେ ସୂଚୀଭୁକ୍ତ ହୋଇଯାଏ । ବହୁବର୍ଷରୁ ଦାରିଦ୍ର୍ୟ ଓ ଅଜ୍ଞତା ବୃଦ୍ଧିର ପରିଣାମ ପାଇଁ କେଉଁମାନେ ଦାୟୀ ତାକୁ ଆତ୍ମସମୀକ୍ଷା କରିବା ତୃତୀୟ ସତ । ଚତୁର୍ଥ ସତ ହେଲା, ଯେଉଁ ବିକାଶ ପ୍ରକ୍ରିୟା ଚାଲିଛି ତାହା ଅନେକଙ୍କ ବିନାଶ ପାଇଁ ଓ ଦାରିଦ୍ର୍ୟ ଦୂର ନାମରେ ଆମ ଶାସନ ଓ ପ୍ରଶାସନର ଶୋଷଣ ମୂଳରେ ରହିଛି ଭ୍ରଷ୍ଟାଚାର ରାଜନୀତି । ପରିଣାମରେ ଆଦିବାସୀ, ହରିଜନ ଓ ଗରିବ ଚଷା କୁପୋଷଣର ଶିକାର । ନିକଟରେ ନୋବେଲ ବିଜେତା ଅର୍ଥଶାସ୍ତ୍ରୀ ଅମର୍ତ୍ତ୍ୟସେନ କହିଛନ୍ତି : ଆଫ୍ରିକାଠାରୁ ଭାରତରେ କୁପୋଷଣ ଅଧିକ । ଅର୍ଥାତ କୁପୋଷଣର ଅସଲ ନମୁନା ଡ଼ଙ୍ଗରିଗୁଡ଼ା । ତାକୁ ଆଧାର କରି ଜାତିସଂଘର ଖାଦ୍ୟ ଓ କୃଷି ସଂଗଠନର ରିପୋର୍ଟ କହୁଛି ଭାରତ ସମେତ ବିଶ୍ୱର ୧୭ଟି ଦେଶରେ ନବେ ଦଶକରେ କୁପୋଷଣ ଅର୍ଥାତ ଭୋକିଲା କିମ୍ବା ଅର୍ଦ୍ଧାହାରର ଶିକାର ହେଉଥିବା ପ୍ରତ୍ୟକ୍ଷ ବା ପରୋକ୍ଷରେ ଖାଦ୍ୟ ଅଭାବରୁ ୩ କୋଟି ୬୦ ଲକ୍ଷ ଲୋକ କୁପୋଷଣ ବା ଖାଦ୍ୟାଭାବର ଶିକାର ହୋଇଛନ୍ତି ଯଦିଚ ଖାଦ୍ୟ ଉତ୍ପାଦନ ବୃଦ୍ଧିଘଟୁଛି । ଏହି ରିପୋର୍ଟରେ ଦର୍ଶାଇ ଦିଆଯାଇଛି ଯେ ଗର୍ଭବତୀ ମହିଳାମାନଙ୍କୁ ପୁଷ୍ଟିକର ଖାଦ୍ୟ ଅଭାବ ଯୋଗୁଁ ପ୍ରତିବର୍ଷ ପ୍ରତି ସାତ ସେକେଣ୍ଡରେ ଜଣେ ଶିଶୁର ମୃତ୍ୟୁ ଘଟୁଛି ଓ ଲକ୍ଷ ଲକ୍ଷ ନବଜାତ ଶିଶୁ ଜନ୍ମରୁ ଅନ୍ଧ, ବିକଳାଙ୍ଗ ଓ ମାନସିକ ବିକାରଗ୍ରସ୍ତ ହେଉଛନ୍ତି । ଏସବୁ ଘଟୁଛି ଭାରତ, ବାଙ୍ଗଲାଦେଶ, କେନିଆ, ଉଗାଣ୍ଡା, ତାଞ୍ଜାନିଆ,

Digitized by srujanika@gmail.com

ଉତ୍ତରକୋରିଆ ପ୍ରଭୃତି ଦେଶମାନଙ୍କରେ । ପୁଣି ଓଡ଼ିଶାରେ ଶିଶୁ ମୃତ୍ୟୁହାର ଭାରତରେ ସର୍ବାଧିକ । ପ୍ରତି ଏକ ହଜାରରେ ପ୍ରାୟ ୯୦ । ଏହି ତଥ୍ୟ ଅନୁସାରେ ଆମ ଓଡ଼ିଶା ଆନ୍ତର୍ଜାତିକ ସ୍ତରରେ ନିମ୍ନରେ ଅଛି ।

ଶେଷ ସତଟି ହେଲା - ଏହାର ଅସଲ ସମାଧାନ ଓଡ଼ିଶା ପରିପ୍ରେକ୍ଷୀରେ ରାଜନୈତିକ ସ୍ତରରେ ଇଚ୍ଛାଶକ୍ତି, କିନ୍ତୁ ତାହା ଆଜିର ଦିନରେ କେଉଁ ଦଳ, କେଉଁ ନେତୃତ୍ୱ ପାଖରେ ସେ ଚିନ୍ତା ଅଛିକି ?

ଡ଼ଙ୍ଗୁରିଗୁଡ଼ାରୁ ବିଦାୟ ନେଲାବେଳେ ନଈକୂଳେ ଏକଲା ଠିଆ ହୋଇଛି ଏକ ଶିଶୁ କନ୍ୟା । ପେଣ୍ଟ ବଦଳରେ କନା ଖଣ୍ଡିଏ ତାର ପରିଧାନ । ତା ନାମ ପଦମା, କାଖରୁ ଖସି ଆସି ୩ ବର୍ଷ ବୟସରେ ପହଞ୍ଚିଲାଣି । ତା' ଚାହାଣିରେ ଭାସିଆସୁଛି କେବଳ ଏକ ବଞ୍ଚିତା, ଲାଞ୍ଛିତାର ଭବିଷ୍ୟତ କାହାଣୀ । ସତେ ଯେପରି ସେ ଶୈଶବ ପାର ହୋଇ କାଲିର ନାରୀ ହୋଇଗଲାଣି । ତା' ହିଫାଜତରେ ଏ ନଈ, ନାଳ, ଜଙ୍ଗଲ, କିନ୍ତୁ ତାର ବୋଲି ଆସନ୍ତାକାଲି କିଛିନାହିଁ । ନଈର ପାଣିରେ ତାର ହକ ଅଧିକାରଗୁଡ଼ିକ ଭାସିଯାଉଛି । ତାର ଶିକ୍ଷା, ସ୍ୱାସ୍ଥ୍ୟ, ଖାଦ୍ୟ ଓ ସ୍ୱାଭିମାନର ଅଧିକାର ଛଡ଼ାଇ ନିଆଯାଉଛି ଆମ ଦେଶର ଶାସନ ପ୍ରକ୍ରିୟାରେ । ସଂବିଧାନର ୪୭ ଧାରାରେ ନିହିତ ଜୀବନର ମାନଦଣ୍ଡ ବୃଦ୍ଧି ଓ ପୁଷ୍ଟିକର ଖାଦ୍ୟ ପାଇଁ ରାଷ୍ଟ୍ରର ଦାୟିତ୍ୱ କିମ୍ବା ଶିକ୍ଷା ଏକ ମୌଳିକ ଅଧିକାର, ଏସବୁ କେବଳ ଆଇନ କିମ୍ବା ସଂବିଧାନରେ ଲେଖିଦେଲା ପରେ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମର ବିଷୟ ହୋଇପାରେ, କିନ୍ତୁ ପଦମାର ଅନୁଭବ ଭିତରେ ଆସିବନାହିଁ କି ପଦମାକୁ ବୁଝିବା ପାଇଁ କେହି ପ୍ରସ୍ତୁତ ନାହିଁ । ବରଂ ଜଙ୍ଗଲରୁ ଆଦିବାସୀଙ୍କୁ ବହିଷ୍କାର ନିର୍ଦ୍ଦେଶ ଯେଉଁ ଦିନ କାର୍ଯ୍ୟକାରୀ ହେବ, ପଦ୍ମାବତୀର ଗାଁ ତ ଯିବ, ନା ମଧ ଆଉ ମିଳିବା କଷ୍ଟକର ହୋଇଯିବ । ଅପରିବର୍ତ୍ତନୀୟ ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣରେ ପଦ୍ମା ପରି ଅନେକଙ୍କ ଭବିଷ୍ୟତ ମଧ ଅପରିବର୍ତ୍ତନୀୟ ଅନ୍ଧକାର ନୁହଁ କି ? ଅନ୍ଧାର ଦୂର ହେବ, ଆଲୋକ ଆସିବ ଯଦି ସାବାଳିକା ପଦମାର ନିଶ୍ୱାସରୁ ବିଦ୍ରୋହର ନିଆଁ ଝଲସି ଉଠିବ ।



Digitized by srujanika@gmail.com

# ନୂଆ ଶିକ୍ଷନୀତିରେ ପ୍ରାକୃତିକ ସଂପଦ ଅସୁରକ୍ଷିତ

ଓଡ଼ିଶା ସରକାରଙ୍କ ଅନୁଯାୟୀ ପ୍ରଚଳିତ ଶିକ୍ଷନୀତିରେ ପରିବର୍ତ୍ତନ ଅଣା ଯାଉଛି । ସେହି ପରିବର୍ତ୍ତନର ଅନ୍ୟ ନାମ ଶିକ୍ଷନାମରେ ପୁଞ୍ଜି ବିନିଯୋଗକାରୀଙ୍କୁ ରିହାତି ପ୍ରଦାନ । ସେହି ରିହାତି ନାମରେ ଓଡ଼ିଶାର ଖଣିଜ ପଦାର୍ଥ ଓ ପ୍ରାକୃତିକ ସଂସାଧନକୁ ଲୁଟ କରିବା ପାଇଁ ପଥ ପରିଷ୍କାର । ତାସାଙ୍ଗକୁ ଦେଶୀ ବିଦେଶୀ ପୁଞ୍ଜିପତିଙ୍କୁ ଡ଼ାକିଆଣି ''ତୁମେ ସବୁ ନିଅ, ଆମକୁ କିଛି ଦେଇ ଚାଲ'' ନ୍ୟାୟରେ ରାଜନୈତିକ ସୌଦା ଲୁଚିଛି ନା ଗୋଡ଼ ଦିଟା ଦିଶୁଛି ପରି ସ୍ପଷ୍ଟଭାବରେ ଫୁଟି ଉଠୁଛି ।

କେଉଁଝର ଜିଲ୍ଲାରେ ୪୦୦ ନିୟୁତ ଟନର ଲୁହାଖଣିର ସଂଧାନ ମିଳିବା ଦିନଠାରୁ ଟାଟା, ଏଲ୍.ଏଣ୍ଡ.ଟି., ଷ୍ଟେରଲାଇଟ ଏପରି ଅନେକ କଂପାନୀମାନେ ବିକଳ । କାରଣ ଇସ୍ପାତ ନାମରେ ଲୁହାପଥରକୁ ପ୍ରୋସେସିଂ କରି ବିଦେଶକୁ ବିକ୍ରି କରିଦେଲେ କୋଟି କୋଟି ଟଙ୍କା ଲାଭ । ଦେଶରେ ଯଦି ସବୁ ଲୁହାପଥରକୁ ମାତ୍ର ୫୦ ବର୍ଷ ମଧ୍ୟରେ ଉତ୍ତୋଳନ କରି ଲୁହା କାରଖାନା କରାଯାଏ, ଦେଶର ବାୟୁମଣ୍ଡଳ ସମ୍ଭାଳି ପାରିବ ତ ? ଲୋକେ ଇସ୍ପାତ ଓ ଆଲୁମିନା ଖାଇ ବଞ୍ଚିପାରିବେ ତ ? ଯଦି ଖାଇବା ପାଇଁ ବି ହୁଏ ମିଳିବ ନାହିଁ । କାରଣ ଏସବୁ ବିଦେଶର ଚାହିଦା ପାଇଁ ସେମାନଙ୍କ ପ୍ରାକୃତିକ ସଂପଦର ସଂରକ୍ଷଣ ସହ ଆମ ହାତରୁ ସଂପଦକୁ ଖାଲି କରି ପୁଣି ଭବିଷ୍ୟତରେ ଆମପରି ଦେଶମାନଙ୍କ ଉପରେ ଔପନିବେଶକ ଆର୍ଥିକ ଓ ମିଲିଟାରୀଶାସନ ଜାହିର କରିବା ପାଇଁ ବାଟ ଖୋଲୁଛି । ଏଥିପ୍ରତି ଅନ୍ତତଃ ସଚେତନ କର୍ମଚାରୀ, ରାଜନୈତିକ କର୍ମୀ, ଶିକ୍ଷିତ ଯୁବକ ଯୁବତୀ ଓ ସମ୍ବାଦପତ୍ର ଗହୀରକୁ ଯାଇ ଟିକିଏ ଦୂରଦ୍ରଷ୍ଟା ହେବେ କି ? ବ୍ୟକ୍ତିଗତଭାବେ ବର୍ତ୍ତମାନ କ୍ଷତି ଅନୁଭବ କରିନପାରନ୍ତି, କିନ୍ତୁ ସାମୂହିକ ସ୍ୱାର୍ଥପାଇଁ ଆଜି ସଜାଗ ହୋଇପାରିଲେ ଆସନ୍ତାକାଲି ବ୍ୟକ୍ତିଗତ କ୍ଷତିରୁ ମୁକ୍ତି ମିଳିପାରିବ । ନଚେତ ଆମ ରାଜ୍ୟରେ ଧ୍ୱଂସର ଦୁଆର ଖୋଲା ହୋଇଯିବ । ଆମ ଦାରିଦ୍ର୍ୟର ସୀମା ବର୍ଦ୍ଧିତ ହୋଇ ଯାଇଥିବାବେଳେ ଆମ

Digitized by srujanika@gmail.com

ରାଜ୍ୟ ସମ୍ବଳଶୂନ୍ୟ ମଧ୍ୟ ହୋଇଯାଇଥିବ । ୧୫ ବର୍ଷ ପରେ ଓଡ଼ିଶାରେ ନାଲିକାଦୁଅ, ଟାଙ୍ଗରା ଜମି, ଜଳର ଅଭାବ, ବିଷାକ୍ତ ଓ ପ୍ରଦୂଷିତ ନଦୀ ଝରଣା, ଟାଙ୍ଗରା ଜଙ୍ଗଲ ହିଁ ଦେଖିବାକୁ ମିଳିବ । ଏସବୁ ରାଜନୀତିର କରାମତି । ଓଡ଼ିଶାର ସ୍ୱାର୍ଥପାଇଁ ଏକ ବିସ୍ତୃତ ଆଲୋଚନା ଲାଗି ସରକାର ପ୍ରସ୍ତୁତ ନହେଲେ ବି ଆଉ ବାକି ସମସ୍ତେ ଏକାଠି ହେବେ କି ? ନଚେତ ଧ୍ୱଂସ ହିଁ ଆମ ପାଇଁ ଅପେକ୍ଷା କରିବ ।

ଆଜି ଯଦି ଏକ ବକ୍ସାଇଟ୍ କାରଖାନା ୧୫ ବର୍ଷ ପାଇଁ କର ଛାଡ଼ ପାଇବ ତାହାହେଲେ ରାଜ୍ୟକୁ କେବେ ସେ ରାଜସ୍ୱ ଦେବ ? ଯେକୌଣସି ବକ୍ସାଇଟ୍ ଖଣି ମାତ୍ର ୨୦ ରୁ ୨୫ ବର୍ଷ ମଧ୍ୟରେ ଶେଷ ହୋଇଯିବ ଓ ଆଲୁମିନା ଶିଳ୍ପ ମଧ୍ୟ ଶେଷ । ଅଧିକ ପୁଞ୍ଜି ଖଟାଇପାରିଲେ ତାହା ଆଉ ୫ ବର୍ଷ ପୂର୍ବରୁ ମଧ୍ୟ ସମ୍ବଳ ଶେଷ କରିଦେଇ ଚାଲିବେ । ସେହିପରି ଲୁହା ଓ ଅନ୍ୟ ଶିଳ୍ପ ଅବସ୍ଥା ମଧ୍ୟ ହେବ । ରତ୍ନପଥର ତ ଚାହିଁଲେ ୧୦ ବର୍ଷ ମଧ୍ୟରେ ଶେଷ କରିଦେବେ । କାରଣ ୧୦ କୋଟି ଟଙ୍କା ଯଦି ଏଥିରେ ଖର୍ଚ୍ଚ କରାଯିବ ତାହା ବୃହତ୍‌ଶିଳ୍ପର ମାନ୍ୟତା ପାଇ ରିହାତି ପାଇବ । ଅଣ ଖଣିଜ ପଦାର୍ଥଭିତ୍ତିକ ଶିଳ୍ପରେ ୨୫ କୋଟି ଖର୍ଚ୍ଚ କଲେ ସେ ମଧ୍ୟ ବୃହତ୍ ଶିଳ୍ପ ହୋଇଯିବ । ଆମେରିକାର କାର୍ଗିଲ କଂପାନୀ ଖାଇବା ତେଲ ଉତ୍ପାଦନକରି ବିକ୍ରିକର ଛାଡ଼ ପାଇଛି ୬ ବର୍ଷ ପାଇଁ ନିର୍ବାଚନ ପୂର୍ବରୁ ପ୍ରତିଶୃତି ଦିଆଯାଇଥିଲା କଂପାନୀକୁ । ସରକାର ଖୁବ୍ ଚାଲାକିରେ ଏହି ନୀତି ଘୋଷଣା କରି ତା' ପ୍ରତି ନିଜର ପ୍ରତିବଦ୍ଧତା ପ୍ରମାଣିତ କରିଛନ୍ତି । ବର୍ଷକୁ ଅତିକମ୍‌ରେ ୫୦ କୋଟି ଟଙ୍କା ସରକାର କେବଳ କାର୍ଗିଲର ତେଲରୁ ହରାଇବେ । କୋକାକୋଲାରୁ ଛାଡ଼କରି ପ୍ରାୟ ୧୫ କୋଟି ବର୍ଷକୁ ହରାଇଛନ୍ତି । ବର୍ତ୍ତମାନ ସବୁଥିରୁ ହରାଇବେ । ତାପରେ କାର୍ଗିଲର ତେଲ ବଜାରକୁ ଗଲାପରେ ଓଡ଼ିଶାର ବହୁ ତେଲ କଳ ବନ୍ଦ ହୋଇଯିବ । ସେହିପରି ତୈଳବୀଜ ଚାଷ ମଧ୍ୟ କମିବାକୁ ବାଧ୍ୟ । ବର୍ତ୍ତମାନର ଶିଳ୍ପ ରିହାତି ନୀତିରେ ଗୋଟିଏ ନୂଆ ଆସିଲେ ଅନେକ ପୁରୁଣା ଆତ୍ମହତ୍ୟା କରିବେ । ପୁଣି ସଂବଳ ଲୁଟ ହୋଇ ଚାଲିବ । ପ୍ରାକୃତିକ ବିପର୍ଯ୍ୟୟ, ସାମାଜିକ ଓ ଖାଦ୍ୟ ସଂକଟ ଆସନ୍ନ ହୋଇପଡ଼ିବ । ୨୦୧୫ ବେଳକୁ ରାଜ୍ୟ ସରକାର କହିବା ଅନୁଯାୟୀ ରାଜ୍ୟର ଋଣ ୭୨ ହଜାର କୋଟି ଟଙ୍କାରେ ପହଞ୍ଚିଥିବ । ଏହିପଟେ ରିହାତି ଦେଇ ଶିଳ୍ପର ବନ୍ୟା ସୃଷ୍ଟି କରିବାର ଔଦ୍ଧତ୍ୟ ପଛରେ ରାଜନୈତିକ ସ୍ୱାର୍ଥପରତା, ଦେଶୀ ବିଦେଶୀ ପୁଞ୍ଜିପତି ଓ ସାମ୍ରାଜ୍ୟବାଦୀ ଶକ୍ତି ମାନଙ୍କର ହସ୍ତକ୍ଷେପ ସ୍ପଷ୍ଟ ଭାବରେ ଦେଖାଯାଉଛି । ଏଥିରେ ଓଡ଼ିଶା ସରକାର ଓ କେନ୍ଦ୍ର ସରକାରଙ୍କ ଗୋଲାମୀ ଅର୍ଥନୀତି ଏକମାତ୍ର କାରଣ ।

Digitized by srujanika@gmail.com

ଓଡ଼ିଶାବାସୀ ଚିନ୍ତା କରିବାବେଳ ଆସିଛି । ଏଥିରେ ଆମେ କିଛି ପାଇବା ନାହିଁ । ଯେଉଁ କେତେକ ମୁଷ୍ଟିମେୟ ବ୍ୟକ୍ତି ଲାଭ ପାଇବେ, ସେମାନେ ବିଗତ ୫୦ ବର୍ଷ ଧରି ସବୁକିଛି ପାଇ ଆସୁଛନ୍ତି । ଚାଷୀ, ଆଦିବାସୀ, ଦଳିତ ଏପରିକି ନିମ୍ନ ମଧବିତ୍ତ ପରିବାର ଧ୍ୱଂସଲୀଳାର ଶିକାର ହେବେ । କ୍ଷମତାସୀନ ବଡ଼ପଣ୍ଡାମାନଙ୍କୁ କିଏ ଅଧିକାର ଦେଉଛି ପ୍ରକୃତିଦତ୍ତ ସଂବଳକୁ ନିଜ ସ୍ୱାର୍ଥ ପାଇଁ ଲୁଟ କରିବାକୁ ଅନୁମତି ଦେବାକୁ ? ଆଜିର ମୁଖ୍ୟମନ୍ତ୍ରୀ ନିଜ ଭିତରେ ରାଜ୍ୟର ଗୋଟିଏ ବି ସମସ୍ୟା ସହ ଭାବପ୍ରବଣତା ସୃଷ୍ଟି କରିପାରିନାହାନ୍ତି । ଜନତାର ଭାଷା ବୁଝିବା ପାଇଁ ପଦେ ଅକ୍ଷର ମଧ ଶିଖିଲେ ନାହିଁ । ଏବେ ପୁଣି ରାଜ୍ୟକୁ ଧ୍ୱଂସ କରିବା ପାଇଁ ସେ ଓ ତାଙ୍କ ଦୁଇ ଦଳ ଶିଖି ମନାଇ କାମରେ ବ୍ୟସ୍ତ । ଆଉ ଅନ୍ୟମାନେ ଯଦି ଜାଣି ନଜାଣିଲା ପରି ରହିବେ କଂପାନୀମାନଙ୍କ ସାନ୍ନିଧ ଆଶାରେ, ଇତିହାସ କାହାରିକୁ କ୍ଷମାଦେବ ନାହିଁ । ହଁ ଅସଲରେ ପରିଣାମ ଲେଡିଗୁଡ୍ କହୁଣୀକୁ ବହିଯାଇଥିବ । ଏହାର ଘୋର ପ୍ରତିରୋଧ କରିବାକୁ ମିଳିତ ଆକ୍ରମଣ ପାଇଁ ଏକାଠି ହୁଅନ୍ତୁ ସ୍ୱାଭିମାନୀ ଓଡ଼ିଶାବାସୀ ।



Digitized by srujanika@gmail.com

# ମା' ନିୟମଗିରିକୁ ହତ୍ୟା କରନି

କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼ ବ୍ଲକ ଅଞ୍ଚଳରେ ଷ୍ଟେରଲାଇଟ କଂପାନୀ ପାଇଁ ରାଜ୍ୟ ସରକାର ତାଙ୍କରି ପ୍ରଶାସନଙ୍କ ସମେତ କଂପାନୀର ସାନ୍ନିଧ ପାଇଁ ଲାଳାୟିତ ରାଜନୈତିକ ଦଳ, ବେପାରୀ, ପଇସାବାଲା, ଘରେ ଘରେ ଚାକିରୀ ମିଳିବାର ସ୍ୱପ୍ନ ଦେଖୁଥିବା ବିଚାରା ସହରୀ ମଧ୍ୟବିତ୍ତ ପରିବାରମାନେ ଖୁବ୍ ତତ୍ପର କଂପାନୀ ଶିଘ୍ର ହୋଇଯାଉ, ଅନେକଙ୍କ ଜୀବନ ପଛେ ଭାସିଯାଉ । ଏପରି ମାନସିକତା ପ୍ରଚଳିତ ଭୋଗବାଦୀ ସମାଜରେ ସର୍ବତ୍ର ବିଦ୍ୟମାନ । କାନ୍ଥର ଆରପଟକୁ ଦେଖିଲେ ଅଛି ଗାଁ ଗାଁରେ ଆଦିବାସୀ ସମାଜ, ଜମି ଅଛି, ଚାଷ ହେଉଛି, ଡ଼ଙ୍ଗର ଅଛି, ମକା, ଜହ୍ନା ଇତ୍ୟାଦି ମିଳୁଛି । ଝରଣା ଅନେକ ଅଛି, ବର୍ଷା ଅଭାବରେ ମଧ୍ୟ ପାଣି ବହୁଛି । ଶୀତଦିନ ପ୍ରବଳ ଥଣ୍ଡାରୁ ମୁକ୍ତି ମିଳୁଛି ଶୁଖିଲା କାଠର ନିଆଁ ଗାଁ ଗାଁରେ ଲାଗିଛି ବୋଲି । ହସପିଟାଲ ଏକ ସ୍ୱପ୍ନ, ଡାକ୍ତର କାହିଁକି ବା ଯିବ ଲୋକଙ୍କ ପାଖକୁ । ଔଷଧ ଲେଖିବ କିଏ, କିଣିବ କିଏ ? ରୋଗର ଏକମାତ୍ର ଚିକିତ୍ସା ଗାଁ ଗାଁର ବୁଢ଼ା ବଇଦ ଚାରାରୁ, ପତ୍ରରୁ, ମୂଳରୁ ଔଷଧ ତିଆରି କରୁଛି । ଯାହାର ଜମିନାହିଁ କିମ୍ବା ଜମି ଥାଇ ଚାଷ ନଥିବା ସମୟରେ ଜଙ୍ଗଲରୁ କାଠ ଆଣିବା ଠାରୁ ଫଳ, କନ୍ଦା, ପତର ପାଇ ଜୀବିକା ଚଳାଇ ଦେଉଛି ବୋଲି ଏକ ସ୍ୱରରେ କହନ୍ତି ଝରିଗୁଡ଼ାଠାରୁ ଆରମ୍ଭକରି ବୋରିଂପଦର, ବାଣୀପଙ୍ଗା, ବାତିଲିମା, ବେଲମ୍ବା, କପାଗୁଡ଼ା, ବନ୍ଧାଗୁଡ଼ା, କେନାରୀ, ବେରଭଟା, ବସନ୍ତପଡ଼ା ...... ଗାଁର ଲୋକେ । ଏସବୁର ମୂଳରେ କିଏ ? କିଏ ସେହି ଜନନୀ ? ଯିଏ ଏସବୁ ହଜାର ହଜାର ବର୍ଷ ଧରି ଦେଇ ଆସୁଛି ! ବେଲମ୍ବାର ଅଲାଡ଼ି ମାଝି, ଡ଼ମା ମାଝି ହୁଅନ୍ତୁ, କିମ୍ବା ଟୁରିଗୁଡ଼ାର ଆର୍ସି ମାଝି, କପାଗୁଡ଼ାର ଅଭି ମାଝି, ବସନ୍ତପଡ଼ାର ଭୁଜେନ୍ଦ୍ର ନାୟକ, ବୋରିଂ ପଦର ପୂର୍ଣ୍ଣ ମାଝି, ସୁରେନ୍ଦ୍ର ଗୌଡ଼ ହୁଅନ୍ତୁ କିମ୍ବା ନିୟମଗିରି ସୁରକ୍ଷା ସଂଗ୍ରାମ ସମିତିର ପୂର୍ବତନ ସଭାପତି ଦୁର୍ଯୋଧନ ନାୟକ କିମ୍ବା ବର୍ତ୍ତମାନ ସଭାପତି ଦଇସିଂ ମାଝି ହୁଅନ୍ତୁ ।

ସମସ୍ତଙ୍କ ତୁଣ୍ଡରେ ଗୋଟିଏ ଉତ୍ତର "ଆମ ଜୀବନ, ଜୀବିକାର ମୂଳ : ମା' ନିୟମଗିରି ।" ବକ୍‌ସାଇଟ୍ ଥିବା ଉଚ୍ଚ ମାଳି ଲଣ୍ଡା ପାହାଡ଼ ନୁହେଁ । ଏକ ସବୁଜ

Digitized by srujanika@gmail.com

ବଳୟ ଭିତରେ ଅସରନ୍ତି ପ୍ରାକୃତିକ ସଂପଦର ରତ୍ନ ଭଣ୍ଡାର । ଅସରନ୍ତି କାହାପାଇଁ ? ରାୟଗଡ଼ ଜିଲ୍ଲା ଓ କଳାହାଣ୍ଡି ଜିଲ୍ଲା ମଧ୍ୟରେ ନିୟମଗିରିର ସୀମା ଭିତରେ ଶହ ଶହ ଗାଁର ଜୀବନ ପାଇଁ, ଜୀବିକା ପାଇଁ ଓ ସାମାଜିକ ଓ ସାଂସ୍କୃତିକ ଅସ୍ମିତା ପାଇଁ । ନିୟମଗିରିର କୋଳରୁ ଜାତ 'ବଂଶଧାରା' ଓ ନାଗାବଳୀ କେବଳ ଉକ୍ତ ଅଞ୍ଚଳର ଜୀବନ୍ୟାସ କରୁନାହାନ୍ତି ବରଂ ନଦୀର ସ୍ରୋତ ଓଡ଼ିଶା, ଆନ୍ଧ୍ର ରାଜ୍ୟର ଲକ୍ଷ ଲକ୍ଷ ଜନତାଙ୍କ ସେବାରେ ନିୟୋଜିତ । ଏହି ରତ୍ନ ଭଣ୍ଡାର ଭିତରେ ଏପରି ଅନେକ ରତ୍ନ ମଧ୍ୟରେ ବକ୍‌ସାଇଟ୍ ଅନ୍ୟତମ ଯାହାର ଆବଶ୍ୟକତା କେବଳ ଆଲୁମିନା ପାଇଁ ଉଦ୍ଦିଷ୍ଟ ନୁହଁ । ବକ୍‌ସାଇଟ୍‌ର ଉପସ୍ଥିତ ଜଳର ଉତ୍ସକୁ ଦୀର୍ଘସ୍ଥାୟୀ ରଖେ । ଏହାର ଶେଷ ଅର୍ଥାତ ଜଳ ବି ଶେଷ । ପୁଣି ବକ୍‌ସାଇଟ୍ ପାହାଡ଼ରେ ଥିବା ଜୈବ ବିବିଧତା ସମେତ ଅନେକ ଅଜଣା ଓ ଅନା ଆବିଷ୍କୃତ ପ୍ରକୃତିଦତ୍ତ ସଂସାଧନ ପ୍ରକୃତିର ସନ୍ତୁଳନ ରଖିଥାନ୍ତି । ନିୟମଗିରିର ମାଟି ତଳେ ଥିବା ଅମୂଲ୍ୟରତ୍ନ ବକ୍‌ସାଇଟ୍‌କୁ କେବଳ ଆଲୁମିନା କଂପାନୀର ମୁନାଫା ଓ ଧନ୍ୟାଢ଼ ବିଦେଶୀଙ୍କ ମଦଗିଲାସ ଓ ଯୁଦ୍ଧ ସାମଗ୍ରୀ ନିର୍ମାଣ ପାଇଁ ସମଗ୍ର ରତ୍ନ ଭଣ୍ଡାରକୁ ଧାରଣ କରିଥିବା ଧରିତ୍ରୀ 'ମା ନିୟମଗିରି'ର ବେକରେ ଖଣ୍ଡା ଲାଗିଲେ ତା' ରକ୍ତର ସଂପର୍କ ତଥା ତା' ଖିର ଖାଉଥିବା ଆଦିବାସୀ ସମାଜ ବରଦାସ୍ତ କରିପାରିବ ନାହିଁ । ଏହି ସତ୍ୟତାକୁ ସ୍ୱୀକାର କରିବାକୁ ହେବ ଆମ ସମସ୍ତଙ୍କୁ, ସରକାରଙ୍କୁ, ରାଜନେତାଙ୍କୁ, ବୁଦ୍ଧିଜୀବୀଙ୍କୁ ଏବଂ ସମସ୍ତ ସୁବିଧାଭୋଗୀ ପ୍ରଶାସକ ତଥା ଭୋଗବାଦୀ ସମାଜକୁ ।

ଏକଦା ଯେତେବେଳେ ଯୋଗଦେଇଥିଲି ପଦଯାତ୍ରାରେ ଗାଁକୁ ଗାଁ ଲୋକଙ୍କ ସାଥିରେ ଦୁଇଦିନ, ଭାବିଥିଲି ଲୋକଙ୍କୁ ବୁଝାଇବି ଆଲୁମିନା ପ୍ଲାଣ୍ଟର ବିଷ ମଂଜି ଓ ବିକାଶର ଧ୍ୱଂସଲୀଳା ସଂକ୍ରାନ୍ତରେ, କିନ୍ତୁ ମୋ' ଠାରୁ ଆଗରେ ଅଛନ୍ତି ଅପାଠୁଆ ପାହାଡ଼ ତଳ ଗାଁ ଲୋକେ । ସେମାନେ ଅଶିକ୍ଷିତ କିନ୍ତୁ ଅଜ୍ଞାନ ନୁହଁନ୍ତି । ସେମାନଙ୍କ ବିବେକପୂର୍ଣ୍ଣଜ୍ଞାନ ଏକ ଅଲିଭା ସଂସ୍କୃତିକୁ ବଞ୍ଚାଇ ରଖିପାରିଛି । ତାହାହେଲା ସ୍ୱାଭିମାନଭରା ସମାଜର ମେଳି ଓ ସାମାଜିକ ଜୀବନ ସହ ନିଜ ପାରିବାରିକ ଜୀବନର ଅବିଚ୍ଛିନ୍ନ ସଂପର୍କ ଯାହାକି ବଜାରଭିତ୍ତିକ ଭୋଗବାଦୀ ସମାଜର କଳ୍ପନାର ବାହାରେ ।

ବେଦାନ୍ତ ପାଳ ନାମେ ପରିଚିତ ଜିଲ୍ଲାପାଳ ଯାଇଥିଲେ ଲୋକଙ୍କୁ ବୁଝାଇ କଂପାନୀର ଓକିଲାତି କରିବା ପାଇଁ । କହିଲେ ଚାକିରୀ ମିଳିବ, ଟଙ୍କା ମିଳିବ । ମଟର ସାଇକେଲ, ପେଣ୍ଟ ସାର୍ଟ, ଟିଭି ସବୁ କିଣି ପାରିବ । ତାଆଗରୁ ଏପରି ଅନ୍ୟ

Digitized by srujanika@gmail.com

ଅଫିସରମାନେ ଗାଁ ଗାଁରେ ବୁଝାଉଥିଲେ । ଉଦ୍ଦେଶ୍ୟ ଥିଲା, ଲୋକେ ଜମି ଛାଡ଼ିଦେବାକୁ ରାଜି ହୋଇ ଗାଁ ଛାଡ଼ି ଚାଲିଯାଆନ୍ତୁ । ବେଲମ୍ବାର ମୁଖିଆ ଅପାଠୁଆ ଦଇସିଂ ମାଝି ପଚାରିଲେ କଲେକ୍ଟରଙ୍କୁ : ''ଆମେ ତ ପାଠ ପଢ଼ିନାହୁଁ ଚାକିରି କିପରି ମିଳିବ ? ହଁ ଯଦି ଦେବ, ଆମେ ମରିଗଲା ପରେ ଆମ ପୁଅନାତିକୁ ମଧ୍ୟ ଦେବ ବୋଲି ଲେଖି କରି ଦେଇପାରିବ କି ? ଆଦିବାସୀ ମୁହଁରୁ ଏପରି ପ୍ରଶ୍ନ ଶୁଣି କଲେକ୍ଟର ପଚାରିଲେ ''ତୁମେ କେତେ ପାଠ ପଢ଼ିଛ ?'' ସେ କହିଲେ ମୁଁ ପାଠ ପଢ଼ିଥିଲେ ତମପରି ହୋଇଥାନ୍ତି । ଦଇ ସିଂଙ୍କ ନିର୍ଲିପ୍ତ ପ୍ରଶ୍ନ ଓ ଉତ୍ତର ଭିତରେ ଭରି ରହିଥିଲା – ''ଆମ ମା'କୁ ଆମେ ବିକ୍ରିକରି ପାରିବୁ ନାହିଁ ।'' ସବୁ ଶୁଣିବା ପରେ କଲେକ୍ଟର କହିଦେଲେ – ''ଜମି ତ ସବୁ ସରକାରର । ତୁମେ କିଛି କରିପାରିବ ନାହିଁ ।'' ଏହା ଶୁଣି ଗାଁ ଲୋକେ କହିଲେ ''ତାହାହେଲେ ଆମ ପାଖକୁ ପଚାରିବାକୁ ଆସିଛ କାହିଁକି, ସରକାର ତ ନେଇଯିବ ନେଉ ... ଆମ ଜୀବନ ଥିବା ପର୍ଯ୍ୟନ୍ତ ଜମି ଆମ ପାଖରେ ରହୁ । ଆମକୁ ମାରିନେଲେ ଯାଇ ଜମିଯିବ । ଏହି ଜମି, ଜଳ, ଜଙ୍ଗଲକୁ ତ ସରକାର ତିଆରି କରିନାହିଁ । ପ୍ରକୃତି ଦେଇଛି ।'' ନାରୀଙ୍କ ମଧ୍ୟରୁ ଅଲାଡ଼ି ମାଝି କହିଲେ – ଆମେ ତ ନିୟମଗିରି କାଠ ପତ୍ରରୁ ଧନ୍ଦା ପାଇ ଚଳୁଛୁ । ଏଠି କଂପାନୀ ଆସିଲେ ଆମ ପାହାଡ଼ ପର୍ବତ ନଦୀ ଚାଲିଯିବ । ଆର୍ସିଂ ମାଝି କହିଲେ ଏ ଅଞ୍ଚଳର ପାଣି ବିଷ ହୋଇଯିବ । ନାଲିମାଟି (ରେଡ଼ମେଡ଼) ଓ ଧଳା ଜଳଭଣ୍ଡାର (ଏସ ପଣ୍ଡ) ପରି ଯେଉଁ ଗାଁ ଲୋକେ ବିସ୍ଥାପିତ ହୋଇନଥିବେ ସେମାନେ ଗାଁ ଜମି ଛାଡ଼ି ଚାଲିଯିବାକୁ ବାଧ୍ୟ ହେବେ । ବର୍ତ୍ତମାନ ପ୍ରଧାନମନ୍ତ୍ରୀ ସଡ଼କ ଯୋଜନା ରାସ୍ତା ହେଉଥିବା ବେଳେ ଟ୍ରାକ୍ଟର ମେସିନ ଲଗାଇ ମାଟି କାମ କରୁଥିବା ଯୋଗୁଁ ଆମେ ବେକାର ବସିଛୁ । ଏକଥା କେହି ବୁଝିବାକୁ ନାହିଁ । କାରଖାନାରେ ଆମ ସ୍ଥାନ କେଉଁଠି ? ଏସବୁ ପ୍ରତିକ୍ରିୟା ଲୋକଙ୍କୁ ମୁହଁରୁ ଶୁଣିବା ପରେ ସେମାନଙ୍କୁ କଂପାନୀ ବିପକ୍ଷରେ କିମ୍ବା ସପକ୍ଷରେ ବୁଝାଇବ କିଏ ?

ଜିଲ୍ଲାପାଳ ନିଜକୁ ଜଣେ ପାରିବାରିଆ ଆଜ୍ଞାଧୀନ ଅଫିସର ରୂପେ ପ୍ରତିଷ୍ଠିତ ହେବା ପାଇଁ ଉଦ୍ୟମରତ ଥିବାବେଳେ ଦଇସିଂ ପରି ଜଣେ ଅପାଠୁଆଙ୍କ ପ୍ରଜ୍ଞାକୁ ହୃଦବୋଧ କରିବା ଅବକାଶ ଆସିବ ବା କିପରି ? ଏ ମଧ୍ୟରେ ସେ ଜିଲ୍ଲାପାଳ ଅପେକ୍ଷା ଷ୍ଟେରଲାଇଟ ମିଶ୍ରଭାବେ ପରିଚିତ ହୋଇଛନ୍ତି । ଫଳରେ କଳାହାଣ୍ଡିର ପ୍ରଶାସନିକ ଶକ୍ତି ଦିନରାତି କଂପାନୀ ସେବାରେ ନିୟୋଜିତ । ଜବରଦସ୍ତ ଜମି ଅଧିଗ୍ରହଣ ଠାରୁ ଆରମ୍ଭ କରି ଜଙ୍ଗଲକୁ ଧ୍ୱଂସ କରିବା ପାଇଁ ରାସ୍ତା ସଫାକରିବା କାର୍ଯ୍ୟରେ ଜିଲ୍ଲାପାଳ ମୁଖ୍ୟମନ୍ତ୍ରୀଙ୍କ ବୋଲକରା କର୍ମଚାରୀ ରୂପେ ପ୍ରମାଣିତ । କଂପାନୀ ଗୁଣ୍ଡା ଓ ପୋଲିସ ମିଶି ଲାଞ୍ଜିଗଡ଼ ଅଞ୍ଚଳରେ ସନ୍ତ୍ରାସବାଦ ଚଳାଇବା ପଛରେ ଜିଲ୍ଲାପାଳଙ୍କ ସମର୍ଥନ ରହିଛି ।

Digitized by srujanika@gmail.com

ସରକାରଙ୍କ ଜମି ଅଧିଗ୍ରହଣ ଅଧିକାରୀ ଜିଲ୍ଲାପାଳ ଆଲୁମିନା ପ୍ଲାଣ୍ଟ ଅପେକ୍ଷା ନିୟମଗିରିର ରତ୍ନ ଭଣ୍ଡାର ଆଦିବାସୀ ସମାଜର ଜୀବନ ଓ ଜୀବିକା ପାଇଁ ମୂଲ୍ୟବାନ କି ନାହିଁ ଯଦି ଦଉସିଂ ଠାରୁ ଜ୍ଞାନ ପାଇନଥିବେ, ଆମେ କେହି ଅଧିକା ବୁଝାଇ ପାରିବା ନାହିଁ; କିନ୍ତୁ ଆଇନର ରକ୍ଷକମାନେ ଜାଣିବା ଉଚିତ ଯେ ସଂବିଧାନର ୫ ଅନୁଚ୍ଛେଦ ଅନୁଯାୟୀ ଆଦିବାସୀ ଅଞ୍ଚଳର ଜମି ଅଣ-ଆଦିବାସୀଙ୍କୁ ସରକାର ଦେଇପାରିବେ ନାହିଁ । ବ୍ୟକ୍ତିଗତ ଘର, ଜମି ବାହାରେ, ଜଳ, ଜମି, ଜଙ୍ଗଲ, ଖଣି ଉପରେ ସେ ଅଞ୍ଚଳ ଆଦିବାସୀ ସମାଜର ଅଧିକାରକୁ ୧୯୯୭ରେ ସୁପ୍ରିମ କୋର୍ଟ ଏକ ସାଂବିଧାନିକ ଅଧିକାର ରୂପେ ଗ୍ରହଣ କରିଛନ୍ତି । ୧୯୯୬ର ଗ୍ରାମ ସଭା ଅଧିକାର ଅନୁଯାୟୀ ଆଦିବାସୀମାନେ ଜମି ଅଧିଗ୍ରହଣ ନୋଟିସକୁ ପ୍ରତ୍ୟାଖ୍ୟାନ କରିବା ଏକ ବିଧିସମ୍ମତ । ଜିଲ୍ଲାପାଳ ସରକାରୀ କଳର ବ୍ୟବହାର କରି ଯେଉଁ ଗ୍ରାମ ସଭା କରିଥିଲେ, ତାହା ଜନତାଙ୍କ ଦ୍ୱାରା ପ୍ରତ୍ୟାକ୍ଷିତ ଥିଲା । ଏହାପରେବି ଯଦି ସରକାରଙ୍କ ପ୍ରତିନିଧି, ସାଂସଦ, ସ୍ଥାନୀୟ ବିଧାୟକ (ମନ୍ତ୍ରୀ) ଯଦି କଂପାନୀ ପାଇଁ ଦରଦୀ ହେବେ; କିମ୍ବା ବିକାଶର ସ୍ୱପ୍ନରେ କୁହୁଳି ଯାଇ ବାପୁଡ଼ା ଆଦିବାସୀଙ୍କୁ ସମୃଦ୍ଧିର ଭାଗିଦାରୀ କରିବା ନାମରେ କହିବେ : ଜମି ବଦଳରେ ଟଙ୍କା ପାଇ, ଗାମୁଛା ବଦଳରେ ସାର୍ଟ ପିନ୍ଧି ମୋଟର ସାଇକେଲ ଚଢ଼ି ଆଉ ଟିଭି ଦେଖ । ତା ପରେ ଆଦିବାସୀ ସର୍ବସ୍ୱାନ୍ତ ହୋଇ କେତଟା ଦିନ ଭିତରେ ସେସବୁ ବିକି ଦେଇ ଭିକ ମାଗିବ କିମ୍ବା ସହରର ଆର୍ବଜନା ବସ୍ତିର ଶରଣାର୍ଥୀ ହେବ କିମ୍ବା ନୂଆ କାରଖାନାରୁ ଜାତ ନୂଆ ସହରୀ ବାବୁଙ୍କ ଘରମାନଙ୍କରେ ଚାକର ହେବାପାଇଁ ଧାଡ଼ି ବାନ୍ଧିବ । ଏପରି ଏକ ସ୍ଥିତିକୁ ନେବା ପାଇଁ ଉଦ୍ୟୋକ୍ତାମାନେ ଜାଣିଶୁଣି ବିଶ୍ୱାସଘାତକତା କରୁଛନ୍ତି ।

ଲୋକଙ୍କ ପ୍ରତିବାଦର ସ୍ୱର ସବୁଠେ ପ୍ରତିଧ୍ୱନିତ ହେବ । ଓଡ଼ିଶାବାସୀ ତଥା ଦେଶବାସୀଙ୍କ ମୌଳିକ ଆବଶ୍ୟକତା ସ୍ୱଚ୍ଛ ପାଣି, ପବନ ଓ ଖାଦ୍ୟ ପାଇଁ ଜୀବଜଗତର ଏକ ପ୍ରାକୃତିକ ସନ୍ତୁଳନ ଅନିବାର୍ଯ୍ୟ । ଏହାର ବିଘଟନ ହେଲେ ପ୍ରାକୃତିକ ବିପର୍ଯ୍ୟୟ ସାଂଘାତିକ ଭାବରେ ସଂହାର କରିବ । ତେଣୁ କାଶୀପୁର କିମ୍ବା ଲାଞ୍ଜିଗଡ଼ର ଆଦିବାସୀ ଆନ୍ଦୋଳନ କେବଳ ସେମାନଙ୍କର ନୁହଁ ବରଂ ଏହା ମଣିଷ ସମାଜର । କେତେ ପରିମାଣ ଆମେ ଆମ ଆବଶ୍ୟକତା ଅନୁଯାୟୀ ପ୍ରକୃତିଦତ୍ତ ସମ୍ବଳରୁ ସାରିବା ତାହା ଠିକ୍ ହୋଇଯିବା ଦରକାର । ନଚେତ ସଂପ୍ରତି ଖୋଲା ବଜାରରେ ସାମ୍ରାଜ୍ୟବାଦର ଖୁବ୍ ଶକ୍ତିଶାଳୀ ହତିଆର ଡ଼ଲାରଟି ଆମର ସବୁକିଛି ଲୁଟକରି ନେଇଯିବ । ସେହି ପ୍ରକ୍ରିୟା ହିଁ ଜଗତୀକରଣ-ବିକାଶ ନାମରେ ବିନାଶର ଖେଳ । ହାରଜିତ୍‌ର ପ୍ରଶ୍ନ ନାହିଁ ।

Digitized by srujanika@gmail.com

ପରିବେଶ ମନ୍ତ୍ରାଳୟ ମୁନାଫାଖୋରୀ ଖଳନାୟକଙ୍କ ହାତବାରିସୀ ହୋଇ ସାରିଲାଣି । ସତ୍ୟର ସମୀକ୍ଷା କରିବାକୁ ଅପ୍ରସ୍ତୁତ । ଏକାଥରକେ ଏକରରୁ ଦୁଇ ତିନି .... ୧୦ ପର୍ଯ୍ୟନ୍ତ ଆଲୁମିନା କାରଖାନାର ପ୍ରଦୂଷଣ ଅତ୍ୟାଚାର ଓ ୧୦ଟି ବୃହତ୍ତର ପାହାଡ଼ ଓ ଶତାଧିକ ନଦୀ ଝରଣା ଗୁଡ଼ିକର ହତ୍ୟାପରେ କି ଦୁର୍ଗତି ଅବଶ୍ୟମ୍ଭାବୀ ତାର ହିସାବ ଏପର୍ଯ୍ୟନ୍ତ ହୋଇନାହିଁ । ନାଲକୋ ହାତରେ କୋରାପୁଟର ପଞ୍ଚପଟମାଳି ଅଛି । ବର୍ତ୍ତମାନର ଉତ୍ପାଦନ ହାର ଅନୁଯାୟୀ ପ୍ରାୟ ୧୦୦ ବର୍ଷରୁ ଉର୍ଦ୍ଧ୍ୱ ଏଠାରୁ ମିଳିବ । ତାହା ଘରୋଇକରଣ ହୋଇଗଲେ ମାତ୍ର ୨୦/୨୫ ବର୍ଷରେ ଶେଷ ହୋଇଯିବ । ତେଣୁ ତାକୁ ସଂପୂର୍ଣ୍ଣ ଭାବରେ ସରକାରଙ୍କ ମାଲିକାନାରେ ରଖି ପଞ୍ଚପଟମାଳୀର ବକ୍ସାଇଟ୍ ଶେଷ ହେବାଯାଏ ଓଡ଼ିଶାର ଅନ୍ୟ କେଉଁଠି ମଧ ଉକ୍ତ ମୂଲ୍ୟବାନ ଖଣି ଖୋଳାନଯାଉ ଓ ବିଷାକ୍ତ ଶିଳ୍ପକୁ ଆଣି ଧ୍ୱଂସ କରାନଯାଉ । ଏହି ଦିଗରେ ଗନ୍ଧମାର୍ଦ୍ଦନ ପରେ କାଶୀପୁର ଓ ନିୟମଗିରି ଆନ୍ଦୋଳନ ଆମକୁ ବାଟ କଢ଼ାଉଛି । ଆହ୍ୱାନ - ମା' ନିୟମଗିରିକୁ ହତ୍ୟାକର ନାହିଁ । ଏହାର ସୁରକ୍ଷା ପାଇଁ ଜଗତୀକରଣର ସମସ୍ତ ବିରୋଧୀ ରାଜନୈତିକ ଦଳ, ଜନ ସଂଗଠନ ଓ ବ୍ୟକ୍ତିମାନେ ସଂଗ୍ରାମରେ ସାଥି ହେବେ କି ?

ଆଜି ନିୟମଗିରି କରଲାପାଟ ପରି ଜଙ୍ଗଲ ରହିଲେ ହିଁ ବଂଶଧାରା ଓ ନାଗାବଳୀ ପରି ନଦୀ ଓ ଝରଣାମାନେ ବଞ୍ଚି ରହିବେ ଏବଂ ଏମାନଙ୍କର ସୁରକ୍ଷା ପାଇଁ ଖଣି ଖନନ ନ କରିବା ପାଇଁ ସୁପ୍ରିମକୋର୍ଟଙ୍କ ଦ୍ୱାରା ଗଠିତ କମିଟିର ତଥ୍ୟ ଅନୁସନ୍ଧାନକାରୀ ଦଳଙ୍କ ରିପୋର୍ଟରେ ସୁପାରିଶ କରାଯିବା ପରେ ଆଦିବାସୀଙ୍କ ନିୟମଗିରି ସୁରକ୍ଷା ଆନ୍ଦୋଳନର ଯଥାର୍ଥତା ପ୍ରମାଣିତ ହୋଇଛି । ଏହାପରେ ବି ଜିଲ୍ଲାପାଳ, ମନ୍ତ୍ରୀମାନେ ଓ ମୁଖ୍ୟମନ୍ତ୍ରୀ ନିଜ ରାଜ୍ୟ ଓ ରାଜ୍ୟବାସୀଙ୍କ ଭବିଷ୍ୟତର ସୁରକ୍ଷା ପାଇଁ କିଛିତ ଆତ୍ମସମୀକ୍ଷା କରିବେ ନାହିଁ । ଯଦି କରିବେ ନାହିଁ, ତାହାହେଲେ ମା' ନିୟମଗିରିର ହତ୍ୟା ଓ ତାର ଦୁଇ କନ୍ୟା ବଂଶଧାରା ଓ ନାଗାବଳୀର ଅପମୃତ୍ୟୁ ପାଇଁ ସେମାନେ ଦାୟୀ ରହିବେ । ଇତିହାସ କ୍ଷମା ଦେବନି ।

## ଆଲୁମିନା କଂପାନୀ ସ୍ୱାର୍ଥରେ ସଂବିଧାନ ପ୍ରତି ଠକାମି ନହେଉ

ଓଡ଼ିଶାର ଭୂତଳ ସଂପଦ ଭରପୂର ଅଛି ବୋଲି ଡିଣ୍ଡିମ ପିଟି ସେଗୁଡ଼ିକୁ ବିକାଶନାମରେ କେତେକ ମୁଷ୍ଟିମେୟ ପୁଞ୍ଜିପତି ଓ ବିଦେଶୀ କଂପାନୀଙ୍କ ମୁନାଫା ପାଇଁ ଶେଷ କରିଦେବାକୁ ସରକାରଙ୍କ ନିଷ୍ପତ୍ତି କେବଳ ଯେ ସଂବିଧାନ ବିରୋଧୀ ନୁହଁ, ଭବିଷ୍ୟତ ମଣିଷ ସମାଜ ପ୍ରତି ମଧ ଘୋର ଅନ୍ୟାୟ ବୋଲି ସ୍ୱୀକାର କରିବାକୁ ହେବ ।

Digitized by srujanika@gmail.com

ପ୍ରଥମତଃ ଓଡ଼ିଶା ପ୍ରାକୃତିକ ସଂପଦର ପ୍ରାଚୁର୍ଯ୍ୟ ଭିତରେ ଅଛି ଅଥଚ ଏଠାର ଜନତା ଅତି ଦରିଦ୍ର ବୋଲି କାହୁଥିବା ରାଜନୈତିକ ନେତାମାନଙ୍କ ସମେତ ତଥାକଥିତ ବିକାଶ ପାଠର ଅନୁଗତ ବିଶେଷଜ୍ଞମାନଙ୍କ ମାନସିକତାରେ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ବିଗତ ୫୦ ବର୍ଷ ମଧ୍ୟରେ ଓଡ଼ିଶାର ପ୍ରାକୃତିକ ସମ୍ବଳକୁ ଯେପରି ଭାବରେ ଧ୍ୱଂସ କରାଯାଇଛି, ବିକାଶର ଦୁହାଇ ଦେଇ ତାହାର ପରିମାଣର ମୂଲ୍ୟ କେତେ କାହା ପାଖରେ ଏପର୍ଯ୍ୟନ୍ତ ହିସାବ ନାହିଁ । କେହି କରିନାହିଁ । ଜଙ୍ଗଲ ଓ ଜମିର ଅବକ୍ଷୟ ହେବା ବ୍ୟତୀତ ଖଣିଜ ସଂପଦର ବିଲୟ ଯେଉଁ ହାରରେ ଘଟୁଛି, ତାହାର ମୂଲ୍ୟାୟନ ଏକାନ୍ତ ଜରୁରୀ । ପ୍ରଥମତଃ ଏହାର ବିଲୟ କିମ୍ୱା ଉତ୍ତୋଳନ ଯୋଗୁଁ ସେହି ଅଞ୍ଚଳର ମାଟିର ମଣିଷମାନଙ୍କ ଜୀବନ ଓ ଜୀବିକା ପ୍ରତି ହୋଇଥିବା କ୍ଷତିର ପରିମାଣ ସାଙ୍ଗକୁ ସେମାନଙ୍କ ସାମାଜିକ ଓ ଆର୍ଥିକ ସୁରକ୍ଷାର ଅବସାନର ମୂଲ୍ୟାୟନ କରିବାକୁ ହେବ । ଦ୍ୱିତୀୟତଃ ଏହି ଅମୂଲ୍ୟ ସଂପଦର ଅବସାନ ପରେ ପରିବେଶଗତ କ୍ଷୟକ୍ଷତି ସାଙ୍ଗକୁ ପ୍ରକୃତିର ସନ୍ତୁଳନରେ ଯେଉଁ ବିପଦ ଆସିଛି ତାହା ଜୀବଜଗତ ବିଶେଷ କରି ମଣିଷ ସମାଜର ସ୍ଥାୟିତ୍ୱ ପ୍ରତି କେତିକି ଅନିଶ୍ଚିତ ସୃଷ୍ଟି କରିଛି ତାହାର ଆକଳନ ହେବା ଏକ ଜାତୀୟ ଓ ମାନବୀୟ କର୍ତ୍ତବ୍ୟ । ତୃତୀୟତଃ ଶେଷ ହୋଇ ଯାଉଥିବା ସମସ୍ତ ଖଣିଜ ସଂପଦଗୁଡ଼ିକର ପୁନଃ ସୃଷ୍ଟି ହେବା ସମ୍ଭାବନା ଅଛିକି ? ଯଦି ଅଛି, କାହାର ଓ କେତେ ସମୟ ମଧ୍ୟରେ । ଯଦି ନାହିଁ, ତାହାର ସଂରକ୍ଷଣର ଆବଶ୍ୟକତା ଅଛି କି ନାହିଁ । ଏସବୁର ବିଚାର ଓ ନିଷ୍ପତ୍ତି ହେବା ଆଉ ଏକ ଜାତୀୟ ଓ ମାନବୀୟ କର୍ତ୍ତବ୍ୟ । ଶେଷରେ ଯେତିକି ଆମ ଭୂତଳ ସଂପଦକୁ ଆମେ ହରାଇଛୁ କିମ୍ୱା ଲୁଟ କରିବାକୁ ଦେଇ ବିକାଶର ସଫଳତାରେ ରାଜନୈତିକ ଓ ପ୍ରଶାସନିକ ବାହାଦୁରୀ ନିଆଯାଇଛି – ସେଗୁଡ଼ିକ ବଦଳରେ ରାଜ୍ୟ କେତେ ପାଇଛି । ଜନତା କ'ଣ ପାଇଛି ଓ ପୁଞ୍ଜିପତି, ବେପାରୀମାନେ କେତିକି ପାଇଛନ୍ତି ? ଏବଂ ଆଜିର ଦିନର ଜଗତୀକରଣର ବାତ୍ୟାରେ ଆସୁଥିବା ବିଦେଶୀ ପୁଞ୍ଜିର କରାମତିରେ ଯେଉଁ ହାରରେ ଖଣିଜ ସଂପଦର ବିନିଯୋଗ ନାମରେ ଭୂଇଁତଳ ଖାଲି ହୋଇଯିବ ସେସବୁର ଲାଭର ହକ୍‌ଦାର କିଏ ହେବାକୁ ଯାଉଛି ? କାହାର ଆବଶ୍ୟକତାକୁ ଅଗ୍ରାଧିକାର ଦିଆଯାଇ ଏସବୁ ବିକାଶର ଧ୍ୱଜାକୁ ଉଡ଼ାଇଛନ୍ତି ? ଏଠି ଠିକ ନୂଆ ବିଚାରର ଆବଶ୍ୟକତା ଅତି ଜରୁରୀ । ତାହା ହେଲା ଆଧୁନିକ ପ୍ରଯୁକ୍ତିବିଦ୍ୟା ଆମ ହାତରେ ଅଛି ବୋଲି ତାକୁ ବ୍ୟବହାର କରି ସବୁକିଛି ସଂବଳକୁ ଶିକାର କରିବା କ'ଣ ଯଥାର୍ଥ ? ତେଣୁ ଓଡ଼ିଶାରେ ଆଉ ପର୍ଯ୍ୟାପ୍ତ ଖଣିଜ ସଂପଦ ଓ ଜଙ୍ଗଲ ନାହିଁ । ବରଂ ଏ ଗୁଡ଼ିକର ସମାପ୍ତିରେ ଜୀବିକା ହରାଇ ଲୋକେ ଦରିଦ୍ରରୁ ଦରିଦ୍ରତମ ଅବସ୍ଥାକୁ ଯାଉଛନ୍ତି । ବର୍ତ୍ତମାନ କହିବାକୁ ହେବ ଯେ ପ୍ରାକୃତିକ ସଂପଦର ହରଣ ଦାରିଦ୍ର୍ୟର ମୂଳକାରଣ ।

Digitized by srujanika@gmail.com

ଆଜି ଓଡ଼ିଶାର ବକ୍‌ସାଇଟ୍ ପୃଥିବୀର ଡଲାର ଖେଳାଳୀମାନଙ୍କ ପାଇଁ ହୋଇଛି ଗରମ ପିଠା; କିନ୍ତୁ ବକ୍‌ସାଇଟ୍‌କୁ କେବଳ ଆଲୁମିନା ପାଇଁ ପ୍ରକୃତି ସୃଷ୍ଟି କରିନାହିଁ । ଏହାଠାରୁ ବଳି ହଜାର ହଜାର ବର୍ଷ ଧରି ପ୍ରାକୃତିକ ପରିବେଶର ସନ୍ତୁଳନ ରକ୍ଷା କରିଆସୁଛନ୍ତି ବକ୍‌ସାଇଟ୍ ପରି ଅନେକ ସଂବଳ ଯାହାର ଉପସ୍ଥିତିରେ ଜୈବ ବିବିଧତା ଓ ଜୀବଜଗତ ବଞ୍ଚି ରହିଆସିଛି । ବକ୍‌ସାଇଟ ଖଣି ଯେଉଁଠି ଅଛି ସେଠି ଜଳର ଉତ୍ସ ସର୍ବଦା ଜୀବନ୍ତ ଓ ଅମର । ବକ୍‌ସାଇଟ୍ ଖୋଳି ବାହାର କରିଦେବା ପରେ ଝରଣା ଶୁଖି ଯାଉଛି ଓ ଥିବା ନଦୀ ନାଳ ଆଲୁମିନା ଉତ୍ପାଦନ ପରେ ଫ୍ଲୋରାଇଡ୍ ଦ୍ୱାରା ପ୍ରଦୂଷିତ ଓ ନାଲି କାଦୁଅ ଦ୍ୱାରା ମରୁଭୂମିର ସୃଷ୍ଟି । ଏସବୁକୁ ପରୀକ୍ଷା କରି ନିଷ୍ପତ୍ତି ନେବା ପାଇଁ ଏପର୍ଯ୍ୟନ୍ତ ଆମ ଦେଶର ବିକାଶ ବିଶେଷଜ୍ଞମାନେ ଓ ରାଜନୈତିକ ନେତା ଓ ଶାସକମାନେ ଏକ କାର୍ଯ୍ୟକ୍ଷମ ବ୍ୟବସ୍ଥା ପାଇଁ ମାନସିକ ସ୍ତରରେ ଗ୍ରହଣ କରିପାରି ନାହାନ୍ତି । ଏହା କ'ଣ ଆମ ବୌଦ୍ଧିକ ଶ୍ରେଣୀର ଅନଗ୍ରସରତା ନୁହଁକି ? ବିକଶିତ ଓ ଧନୀରାଷ୍ଟ୍ରମାନଙ୍କ ପରିଚାଳକମାନେ ପ୍ରକୃତି ପ୍ରତି ନିଜେ ସୃଷ୍ଟି କରିଥିବା ବିପଦଗୁଡ଼ିକ ପ୍ରତି ସଚେତନ ହେଲେଣି । ତେଣୁ ନିଜ ଦେଶର ପ୍ରାକୃତିକ ସଂବଳର ସଂରକ୍ଷଣ ସାଙ୍ଗକୁ ମଣିଷ ଜୀବନ ପ୍ରତି ଶତ୍ରୁତା କରୁଥିବା ପ୍ରଦୂଷିତ ଶିଳ୍ପଗୁଡ଼ିକୁ ଉଠାଇ ନେଇ ଗରିବ ଦେଶମାନଙ୍କରେ ଗରିବ ଲୋକଙ୍କ ବିକାଶ ରଥର ଚକ ରୂପେ ଥୋଇ ସେଠାର ପ୍ରାକୃତିକ ସଂପଦଗୁଡ଼ିକୁ ଲୁଟ କରିବାକୁ ନୂଆ ନୂଆ ଆନ୍ତର୍ଜାତିକ ସଂଗଠନ ତିଆରି କରିସାରିଲେଣି । ପୁଣି ଆମ ପରି ଗରିବ ଦେଶମାନଙ୍କ ସମ୍ମତିରେ ଯଦିଚ ଦେଶର ଜନତାକୁ କେହି ପଚାରି ନାହିଁ । ବର୍ତ୍ତମାନ ଏପରି ଏକ ନୂଆ ଶକ୍ତିଶାଳୀ ଶୋଷଣ ପ୍ରକ୍ରିୟାର ଶକ୍ତି ଭଣ୍ଡାର ହେଉଛି ବିଶ୍ୱ ବାଣିଜ୍ୟ ସଂସ୍ଥା, ଯଦିଚ ବିଶ୍ୱବ୍ୟାଙ୍କ ଓ ବିଶ୍ୱ ମୁଦ୍ରାପାଣ୍ଠି ଆଗରୁ ଏହି କାର୍ଯ୍ୟର ସହାୟକ ରୂପେ କାମ କରିଆସୁଛନ୍ତି । ଆମର ବିଶେଷଜ୍ଞମଣ୍ଡଳୀ ଓ ବିଶ୍ୱ ବିଦ୍ୟାଳୟର ପ୍ରଫେସରମାନେ ଟିକିଏ ହେଜିବେ କି ? ତାହାହେଲେ ଯାଇ ଭୋଟସର୍ବସ୍ୱ ବିଧାୟକ ଓ ସାଂସଦ ମାନଙ୍କ କିଛିଟା ଜ୍ଞାନ ଉଦୟ ହୁଅନ୍ତା ।

ଏଠାରେ ସବୁକଥା କୁହାଯିବା ସମ୍ଭବପର ନୁହେଁ । କେବଳ ବିଶେଷ ସୂଚନା ପାଇଁ କ୍ରୋମର ଦୁର୍ବିସହ ସ୍ଥିତି ଉଲ୍ଲେଖ କରୁଛି । ଦିଲ୍ଲୀ ସାଇନ୍‌ସ ଫୋରମ ତରଫରୁ ବିଶିଷ୍ଟ ଅର୍ଥନୀତିଜ୍ଞ ଅରୁଣ ଘୋଷଙ୍କ ଦ୍ୱାରା ପ୍ରସ୍ତୁତ ଏକ ପୁସ୍ତିକା (The story of Orissa Chromite ores)ରେ ବୈଜ୍ଞାନିକ ଅନୁଧ୍ୟାନକୁ ହିସାବକରି କହିଛନ୍ତି ଯେ ପରିବେଶ ପ୍ରତି ଆଖିବୁଜି ଦେଇ ମନଇଚ୍ଛା କ୍ରୋମ ଲିଜ ଦେବାରେ କୌଣସି ବିଜ୍ଞାନ ସମ୍ମତ ନୀତି ଅବଲମ୍ୱନ କରାଯାଇନଥିବା ଯୋଗୁଁ ଆଜିପର୍ଯ୍ୟନ୍ତ (୧୯୯୭) ୫୩.୮୨ ଲକ୍ଷ ମାଟ୍ରିକ ଟନ କେବଳ ଫୋପାଡ଼ି ଦେବାପରି ନଷ୍ଟ କରିଦିଆଯାଇଛି । ତାହାର ମୂଲ୍ୟ

Digitized by srujanika@gmail.com

୪୯୫୬ କୋଟି ଟଙ୍କା । ପୁଣି ଆସନ୍ତା ୩୦ ବର୍ଷ ମଧ୍ୟରେ ବର୍ତ୍ତମାନର ଜଗତୀକରଣ ଓ ଘରୋଇକରଣ ପ୍ରକ୍ରିୟାରେ କ୍ରୋମ ଶେଷ ହୋଇଯିବ ଏବଂ ଆଗକୁ କ୍ଷତି ପ୍ରାୟ ୫୦ ହଜାର କୋଟି ଟଙ୍କା ମୂଲ୍ୟର ମୃତ କ୍ରୋମ ବର୍ଜ୍ୟବସ୍ତୁରେ ପରିଣତ ହେବ ଏବଂ ପରିବେଶ ପ୍ରତି ଘୋର ବିପଦ ସୃଷ୍ଟି କରିବ । ଏହି ଦଲିଲକୁ ଓଡ଼ିଶା ସରକାର ଓ କେନ୍ଦ୍ର ସରକାର ଦୃଷ୍ଟିକୁ ନେଇନଥିବା ଏକ ଅକ୍ଷମଣୀୟ ଅପରାଧ । ଲୁହାପଥର ଟାଟାକୁ ମାତ୍ର ୧୧ ଟଙ୍କାରେ ଏକ ଟନ୍ ପିଛା ଦିଆଯାଉଥିବା ବେଳେ ତାର ବଜାର ଦାମ ୧୫୦୦ ଟଙ୍କାରୁ ଉର୍ଦ୍ଧ୍ୱ । ସେହିପରି ଦେଶୀ ବିଦେଶୀ କଂପାନୀମାନଙ୍କୁ ବକ୍ସାଇଟ୍ ଟନ୍ ପିଛା ୪୨ ଟଙ୍କାରେ ଦିଆଯାଉଥିବାବେଳେ ତାର ଦାମ୍ ୭୦୦ ଟଙ୍କାରୁ ଅଧିକ । ଏହା ଲୁଟ ନୁହେଁ ତ ଆଉ କ'ଣ ?

ପ୍ରାକୃତିକ ସଂପଦ ହେଉଛି ସୀମିତ ଓ କ୍ଷୟଶୀଳ । ଏହାକୁ ପୁନଃ ସୃଷ୍ଟି କରାଯାଇନପାରେ । ତେଣୁ ଏସବୁର ବ୍ୟବହାରରେ ସୀମା ନିର୍ଦ୍ଧାରଣ ସହ ମିତବ୍ୟୟତା ବାଧ୍ୟତାମୂଳକ ହେବା ବାଞ୍ଛନୀୟ । ପୁଣି ଜାତୀୟ ଆବଶ୍ୟକତା ଓ ଆଞ୍ଚଳିକ ଜନତାଙ୍କ ଜୀବିକାର ଗ୍ୟାରେଣ୍ଟି ମଧ୍ୟରେ ଏକ ସମନ୍ୱୟ ଦୃଷ୍ଟିଭଙ୍ଗୀ ସହ ବିଜ୍ଞାନ ସମ୍ମତ ବ୍ୟବହାର ଉପରେ ଏକ ଜାତୀୟ ନୀତିର ଆବଶ୍ୟକତା ରହିଛି । ୟୁରୋପ ତଥା ପୃଥିବୀର ବହୁଦେଶରେ ମଦ ଠିପି ସହ ମଦପିଇବା କପ୍ ଆଲୁମିନିୟମରେ ତିଆରି । ତାହାର ଚାହିଦା ସହ ଯୁଦ୍ଧ ବିମାନରେ ବିଶେଷ ବ୍ୟବହୃତ ଆଲୁମିନାର ଆବଶ୍ୟକତାକୁ ପୂରଣ କରିବା ପାଇଁ ସାଧାରଣ ଜନତା ତଥା ଆଦିବାସୀଙ୍କ ଜୀବନ ଜୀବିକା ତଥା ଅମୂଲ୍ୟ ଜୈବ ବିବିଧତା ତଥା ଜୀବନରେଖା ପାଣିର ଉତ୍ସକୁ ବଞ୍ଚାଇ ରଖିଥିବା ବକ୍ସାଇଟକୁ ବ୍ୟାବସାୟିକ ବସ୍ତୁରେ ପରିଣତ କରିଦେବା କେତେ ଦୂର ଯୁକ୍ତିଯୁକ୍ତ ତାହା ଏକ ସଭ୍ୟ ସମାଜର ବିବେକୀ ନାଗରିକମାନେ ଚିନ୍ତା କରିବା ଆଜିର ଆହ୍ୱାନ ।

## ସଂବିଧାନ ଓ ଗ୍ରାମ ସଭା ଅଧିକାର :

ବହୁଦିନ ଧରି ସଂବିଧାନର ୫ମ ଅନୁଚ୍ଛେଦରେ ରହିଥିବା ଆଦିବାସୀ ଅଞ୍ଚଳର ସୁରକ୍ଷା ତଥା ପ୍ରାକୃତିକ ସଂପଦ ଉପରେ ସେଠାର ଅଧିବାସୀଙ୍କ ଅଧିକାର ପ୍ରତି ଅବମାନନା କରି କେନ୍ଦ୍ର ଓ ରାଜ୍ୟ ସରକାରମାନେ ବିଗତ ୫୦ ବର୍ଷ ଧରି ବେଆଇନ ଓ ଅସାଂବିଧାନିକ କାର୍ଯ୍ୟକରି ଆସିଛନ୍ତି । ୧୯୯୭ରେ ସମତା ବନାମ ଆନ୍ଧ୍ରପ୍ରଦେଶର ଏକ କେଶରେ ସୁପ୍ରିମକୋର୍ଟ ସ୍ପଷ୍ଟ ରାୟ ଦେଲେ ଯେ ସଂବିଧାନର ୫ମ ଅନୁଚ୍ଛେଦ ଅନୁଯାୟୀ ଆଦିବାସୀ ଅଞ୍ଚଳରେ ଜମି, ଜଙ୍ଗଲ, ପାଣି ଓ ଖଣି ଅଣ ଆଦିବାସୀଙ୍କୁ ହସ୍ତାନ୍ତର ବେଆଇନ । ଏହାର ସୁରକ୍ଷା ପାଇଁ ଆନ୍ଧ୍ରପ୍ରଦେଶ ପରି ଅନ୍ୟ ରାଜ୍ୟମାନଙ୍କରେ ଆଇନ

Digitized by srujanika@gmail.com

ପ୍ରଣୟନ କରାଯାଇ ୫ମ ଅନୁଚ୍ଛେଦକୁ କାର୍ଯ୍ୟକାରୀ କରାଯାଉ ବୋଲି ସୁପ୍ରିମକୋର୍ଟ ନିର୍ଦ୍ଦେଶ ଦେଇଛନ୍ତି । ଏପରି ଏକ ଐତିହାସିକ ରାୟ କେବଳ କାହାରି ଜିତିବା ହାରିବା ପ୍ରଶ୍ନ ମଧ୍ୟରେ ଆବଦ୍ଧ ନୁହଁ । ମୂଳ ପ୍ରଶ୍ନ – ପ୍ରାକୃତିକ ସଂପଦର ବ୍ୟବହାର ଉପରେ କଟକଣା ତାହାର ସଂରକ୍ଷଣ ଓ ଏହା ସହିତ ଆଦିବାସୀଙ୍କ ଜୀବନ ଜୀବିକା ତଥା ସାମାଜିକ ବ୍ୟବସ୍ଥାର ସୁରକ୍ଷା ପ୍ରତି ସଂବିଧାନରେ ଥିବା ବ୍ୟବସ୍ଥା ପ୍ରତି ସୁପ୍ରିମକୋର୍ଟ ସମ୍ମତି ଦେଇଛନ୍ତି; କିନ୍ତୁ ଏହାର ଅସଲ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ବଦଳରେ ଧର୍ମକୁ ଆଖି ଠାରିଲା ପରି ଓଡ଼ିଶା ସରକାରଙ୍କ ଏକ ସବକମିଟି ଯେପରି ଭାବରେ ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶକୁ ସମୀକ୍ଷା କରି ମତ ଦେଇଛି, ତାହା ସୁପ୍ରିମକୋର୍ଟ ଓ ସଂବିଧାନର ନିର୍ଦ୍ଦେଶ ପ୍ରତି ଠକାମିର ପରିଚୟ । କେବଳ ସବକମିଟିକୁ ଏକ କୌଶଳ ରୂପେ ବ୍ୟବହାର କରି ଜମି, ଜଳ ଖଣିକୁ କିପରି କଂପାନୀମାନଙ୍କୁ ହସ୍ତାନ୍ତର କରାଯାଇ ପାରିବ ସେଥିପାଇଁ ଆଇନର ପରିବର୍ତ୍ତନ କରିବା ପଦକ୍ଷେପ ଅଂସାବିଧାନିକ । ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶରେ ସ୍ପଷ୍ଟ ଲେଖା ହୋଇଛି ଯେ ରାଜ୍ୟସରକାରମାନେ ଏପରି ପଦକ୍ଷେପ ନେବେ ଯାହାର ଫଳରେ ସଂବିଧାନର ୫ମ ଅନୁଚ୍ଛେଦରେ ଉଲ୍ଲେଖ ଥିବା ଆଦିବାସୀ ଅଞ୍ଚଳର ପ୍ରାକୃତିକ ସଂପଦର ସୁରକ୍ଷା ଓ ତାହା ଉପରେ ଆଦିବାସୀଙ୍କ ଅଧିକାରର ସୁରକ୍ଷାରେ କୌଣସି ସାଲିସ କରାଯାଇପାରିବ ନାହିଁ ।



Digitized by srujanika@gmail.com

# ବିକାଶ ନାମରେ ବିନାଶର ହିସାବ କରିବା କି ?

ଆମ ରାଜ୍ୟ ଓଡ଼ିଶା ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଥାଇ ବି ଦରିଦ୍ର କାହିଁକି ରହିବ ବୋଲି କେତେକଙ୍କ ପ୍ରଶ୍ନ ଆଉ ପ୍ରାସଙ୍ଗିକ ହୋଇ ରହିନାହିଁ । ଏକଦା ବିଜୁ ପଟ୍ଟନାୟକ କହୁଥିଲେ କେନ୍ଦ୍ର ଯଦି ରାଜ୍ୟକୁ କ୍ଷମତା ଦିଅନ୍ତା ତାହାହେଲେ ସେ ଏକ ଲୁହାପଥର ପାହାଡ଼ ଜାପାନକୁ ବିକି ଓଡ଼ିଶାକୁ ବମ୍ଭେ କରିଦିଅନ୍ତେ; କିନ୍ତୁ ଓଡ଼ିଶାର ଅନେକ ପାହାଡ଼ରୁ ଜାପାନ ସମେତ ଅନେକ ଦେଶ ପାଇଁ ଲୁହାଠାରୁ ଆରମ୍ଭ କରି କ୍ରୋମ, ବକ୍ସାଇଟ୍ ଖୋଳାଯାଇ ବିଭିନ୍ନ ବାଟରେ ଖାଲି ହେବାରେ ଲାଗିଛି । ଏବେ ବି ଓଡ଼ିଶା ସରକାର ଟାଟା ଠାରୁ ଲୁହାପଥର ଟନ ପିଛା ମାତ୍ର ୧୧ ଟଙ୍କା, ବକ୍ସାଇଟ୍ ଟନ୍ ପିଛା ମାତ୍ର ୪୨ ଟଙ୍କା ପାଉଥିବାବେଳେ, କ୍ରୋମ୍ ପରି ଅମୂଲ୍ୟ ଖଣିଜ ପଦାର୍ଥର ଖଣି ଖନନ ଘରୋଇ କଂପାନୀ ହାତରେ ଲୁଟ କରିବାକୁ ଛାଡ଼ି ଦେଇଛୁ । ବିଶେଷଜ୍ଞମାନଙ୍କ ହିସାବରେ ଏ ପର୍ଯ୍ୟନ୍ତ ଆମ ରାଜସ୍ୱକୁ ବର୍ଷକୁ ୧୦୦ ରୁ ୨୦୦ କୋଟି ଟଙ୍କା ମିଳିଥିବାବେଳେ ୧୯୯୮ ପର୍ଯ୍ୟନ୍ତ ୫୦୦୦ କୋଟି ଟଙ୍କା ମୂଲ୍ୟର କ୍ରୋମକୁ ବରବାଦ କରିଛୁ କେବଳ ଘରୋଇ କଂପାନୀମାନଙ୍କ ଅବୈଜ୍ଞାନିକ ଖନନ (unscientific mining) ହେତୁ । ବମ୍ଭେତ ହେବାର ନାହିଁ ହୋଇଥିଲେ ବି ଓଡ଼ିଶାର ସମସ୍ତ ଦରିଦ୍ର ଲୋକଙ୍କ ରହିବା ସ୍ଥାନ ସ୍ଲାମସ (ନର୍ଦ୍ଦମା) ଅଞ୍ଚଳ ହୋଇ ରହିଥାନ୍ତା । ୧୯୫୦ରୁ ୧୯୯୦ ପର୍ଯ୍ୟନ୍ତ ଆମ ରାଜ୍ୟର ଖଣିଜ ପଦାର୍ଥ ଖୋଳାହୋଇ ଯାଇଛି । ଟାଟାଠାରୁ ଆରମ୍ଭକରି ରାଉରକେଲା ଇସ୍ପାତ କାରଖାନା ପାଇଁ, ନାଲକୋ ପାଇଁ, ଏପରି ଚୂନପଥରଠାରୁ ଆରମ୍ଭ କରି ଫେରୋ କ୍ରୋମ ପରି ଅନ୍ୟାନ୍ୟ କାରଖାନା ପାଇଁ ବ୍ୟବହୃତ ହୋଇଛି । କାଗଜକଳ ଠାରୁ ଆରମ୍ଭକରି ବିକାଶନାମରେ ଜଙ୍ଗଲ ଶେଷ ହୋଇଯାଇଛି । ଏସବୁର ହିସାବ କରି ଓଡ଼ିଶା କେତେ ଦୂର ବିକଶିତ ହୋଇଛି ଏବଂ ଓଡ଼ିଶାବାସୀଙ୍କୁ ସମୃଦ୍ଧିର କେତେ ଭାଗ ଅଂଶୀଦାର କରାଯାଇପାରିଛି ଓ ସେଥିରେ ମାଟିର ମଣିଷମାନେ (ଯେଉଁମାନେ ଜଙ୍ଗଲ, ଖଣି ଅଞ୍ଚଳର ଆଦିବାସୀ, ଗରିବ ଲୋକେ ଜୀବିକା ହରାଇଛନ୍ତି) କ'ଣ ପାଇଛନ୍ତି ? ଏହି ୪୦ ବର୍ଷ ପରେ ବିଗତ ୧୨ ବର୍ଷର ଜଗତୀକରଣ,

Digitized by srujanika@gmail.com

ଉଦାରୀକରଣ ତଥା ଘରୋଇକରଣ ସ୍ରୋତରେ ଦେଶୀୟ ଓ ବିଦେଶୀ କଂପାନୀମାନଙ୍କ ଖୋଲା ପ୍ରବେଶକୁ ଏକ ସ୍ୱର୍ଗସୁଖବାଦୀ ଆର୍ଥିକ ବିକାଶର ସ୍ୱପ୍ନ ରୂପେ ଦେଖାଇ ଦିଆଯାଉଛି । ଓଡ଼ିଶାକୁ ପରୀକ୍ଷାଗାର କରିବାପାଇଁ ଖେଳ ଆରମ୍ଭ ହୋଇଯାଇଛି; କିନ୍ତୁ ଏହି ପରୀକ୍ଷା ଆମ ରାଜ୍ୟକୁ ଏକ ଚରାଭୂଇଁରେ ପରିଣତ କରିବ, ଲୁଟ ହେବ, ଏଥିରେ ସନ୍ଦେହ ନାହିଁ ।

ଏଠି କାଶୀପୁର ବାଫିଲିମାଳିକୁ ନରେଓ୍ୱ, କାନାଡ଼ା ଓ ଆଦିତ୍ୟ ବିରଳାକୁ ଦିଆଗଲାପରେ ସେଠାର ଆଦିବାସୀ ବିଗତ ୧୦ ବର୍ଷ ଧରି ପ୍ରାଣବଳି ଦେଇ ସଂଗ୍ରାମ କରୁଛନ୍ତି ନିଜ ଜୀବିକାର ସାଧନ ଜଳ, ଜଙ୍ଗଲ ଓ ଜମିର ସୁରକ୍ଷା ପାଇଁ ଓ ବଞ୍ଚିବାର ଅଧିକାର ପାଇଁ। ତା'ପାଖରେ ଥିବା ଶାଶୁ ବୋହୂମାଳିକୁ ବାଲକୋ କଂପାନୀକୁ ଦିଆଗଲାଣି ଯାହାର ଷ୍ଟେରଲାଇଟ ମାଲିକ ହୋଇସାରିଲାଣି । ଶୁଙ୍ଗେରୀର ମାଳି ଏଲ୍‌ଏଣ୍ଡଟିକୁ ଦିଆ ସରିଛି । କୋରାପୁଟ ଜିଲ୍ଲାର ଲକ୍ଷ୍ମୀପୁରର କଂସାରିଗୁଡ଼ାଠାରେ ସିଜିମାଳି ଯଶବନ୍ତପୁରଠାରେ ଆଉ ଏକ ପାହାଡ଼ ଘୁସୁରିମାଳୀ ବିଭିନ୍ନ କଂପାନୀଙ୍କୁ ଦେଇଦେବା ନିଷ୍ପତ୍ତି ହୋଇଛି । ଏସବୁରେ ଖଣି ଖୋଳାହେବ, ଆଲୁମିନା ଉତ୍ପାଦନ ହେବ ଓ ବିଦେଶକୁ ରପ୍ତାନୀ ହେବ । ସବୁ ବିଦେଶୀ କଂପାନୀମାନଙ୍କ ଜରିଆରେ ପୁଞ୍ଜିନିବେଶ ହେବ । କୋରାପୁଟ ଦାମନଯୋଡ଼ିଠାରେ ପଞ୍ଚପଟମାଳି ନାଲକୋ ଉତ୍ପାଦନ କରୁଛି ଯାହାର ମାଲିକ ବର୍ତ୍ତମାନ ବିଦେଶୀ କଂପାନୀମାନେ ହେବାକୁ ନିଷ୍ପତ୍ତି ହୋଇଛି । ୧୯୮୫ରୁ ୯୦ ପର୍ଯ୍ୟନ୍ତ ଗନ୍ଧମାର୍ଦ୍ଦନ ବଞ୍ଚାଅ ଆନ୍ଦୋଳନ ଅମୂଲ୍ୟରତ୍ନକୁ ବଞ୍ଚାଇଦେଲା । ପୁଣି ତାକୁ ଧ୍ୱଂସ କରିବାକୁ ଆଲୁମିନା କଂପାନୀମାନଙ୍କୁ ନିମନ୍ତ୍ରଣ କରାଗଲାଣି । ଏସବୁରେ ଖଣି ଖୋଳିବାକୁ ସ୍ଥାନୀୟ ଅଧିବାସୀମାନେ ଅନୁମତି ଦେବେନାହିଁ ବୋଲି କହିଲେଣି । କାଶୀପୁର ଆନ୍ଦୋଳନ ଏକ ସତର୍କ ଘଣ୍ଟି । ତଥାପି ରାଜ୍ୟ ଓ କେନ୍ଦ୍ର ସରକାର ପ୍ରତିରୋଧର ସ୍ୱରକୁ ଶୁଣିବାକୁ ନାରାଜ । ସରକାର ବିକାଶ ନାମରେ ପୋଲିସ, ସୈନ୍ୟ ସାମନ୍ତଙ୍କ ବନ୍ଧୁକ ବ୍ୟବହାର କରି ପ୍ରତିବାଦୀ ମାଟିର ମଣିଷମାନଙ୍କ ବାସସ୍ଥଳୀକୁ ଶ୍ମଶାନରେ ପରିଣତ କରି କଂପାନୀମାନଙ୍କ ରାଜତ୍ୱକୁ ସ୍ଥାପନାକରିସାରିଲା ପରେ ବକ୍‌ସାଇଟ୍ ଖଣି ଖନନ ଶେଷରେ ଏହି ସବୁ ଅଞ୍ଚଳଗୁଡ଼ିକର ମାନଚିତ୍ର ବିକଳାଙ୍ଗ ହୋଇ ଯାଇଥିବ । ଏଠି ମଣିଷ ସମାଜ ପାଇଁ କେବଳ ନୁହଁ, ଜୀବଜଗତ ପାଇଁ ଏକ ଭୟାନକ ସ୍ଥିତି ଉତ୍ପନ୍ନ ହେବ ଯେଉଁଠି ଜଙ୍ଗଲ ସଂପୂର୍ଣ୍ଣ ଧ୍ୱଂସ ପାଇବ, ଜଳଶୂନ୍ୟ ହେବ, ଥିବା ଜଳ ବିଷାକ୍ତ ହେବ, ଚାଷ ଜମି ନଷ୍ଟ ହୋଇ ସାରିଥିବ । ଆଉ ବାକି ଥିବା ଲୋକେ ନିଜ ସ୍ଥାନ ଛାଡ଼ି ଚାଲିଯିବାକୁ ବାଧ୍ୟହେବେ । ମରୁଭୂମି ଅନିବାର୍ଯ୍ୟ ।

Digitized by srujanika@gmail.com

ଯେଉଁମାନେ କଂପାନୀର ଆଗମନ ପାଇଁ ଉତ୍‌ଫୁଲ୍ଲ ଓ ପାଗଳ, ସେମାନଙ୍କ ଧାରଣା ଅର୍ଦ୍ଧ ଲଙ୍ଗଳା ଓ ଅର୍ଦ୍ଧ ଭୋକିଲା ଆଦିବାସୀଟାକୁ ବାହାର କରିଦେଲେ ଯାଏ ଆସେ କ'ଣ ? କିନ୍ତୁ ସେ ବି ମଣିଷ, ତାର ବି ବଞ୍ଚିବାର ଅଧିକାର ଅଛି । ତାଠାରୁ ଆହୁରି ଅଧିକ ଭାବରେ ଆଦିବାସୀ ପାଖରେ ଥିବା ପ୍ରକୃତିର ସ୍ଥାୟିତ୍ୱ ତୁମ ଆମ ସମସ୍ତଙ୍କ ଜୀବନଯାପନର ଭିତ୍ତିଭୂମି । ଅବସ୍ଥା ସାଂଘାତିକ ହେବ କେବଳ ପ୍ରଦୂଷିତ ପରିବେଶକୁ ନେଇ ନୁହଁ, ପାଣି, ଜଙ୍ଗଲ ଓ ଜୈବ ବିବିଧତାର ଘୋର ଅଭାବରେ ବାରଂବାର ମରୁଡ଼ି ଆସନ୍ନ ହୋଇପଡ଼ିବ । ଅନେକଙ୍କ ପାଇଁ ବଞ୍ଚିବାର ରାସ୍ତା ସବୁଦିନ ପାଇଁ ବନ୍ଦ ହୋଇଯିବ । ଯେଉଁମାନେ ଗାଡ଼ି, ଘୋଡ଼ା ଚଢ଼ିବେ, ବିଦେଶୀ ଡ଼ଲାରର ସାନ୍ନିଧ ଲାଭକରି ସ୍ୱପ୍ନବିଳାସୀ ହେବେ, ଆଉ ଯେଉଁମାନେ ଭୋଗବାଦୀମାନଙ୍କ ଦୟାରେ ଖଣ୍ଡିଏ ଏଜେନ୍ସି ପାଇବେ, ସେମାନଙ୍କୁ ଛାଡ଼ିଦେଲେ, ଆଉ ବାକି ବହୁଜନ ସମାଜ ଦାରିଦ୍ର୍ୟ ଓ ବେକାରୀର ଶରବ୍ୟ ହେବାକୁ ବାଧହେବେ ।

ଏଠି ସରକାର ଓ ସରକାରକୁ ଯିବାପାଇଁ ପ୍ରତିଯୋଗୀମାନେ ବିଚାର କରନ୍ତୁ । ସାଧାରଣ ଭାବେ ଆଇନର ଅବମାନନା କଲେ ଦଣ୍ଡ ଦିଆଯାଉଛି । କୋର୍ଟର ଫଇସଲାରେ ଅସନ୍ତୋଷ ଓ ସାଧାରଣ ପ୍ରତିବାଦଟିଏ ହେଲେ କୋର୍ଟ ଅବମାନନାରେ ଦଣ୍ଡିତ କରାଯାଉଛି । ସେହି ସର୍ବୋଚ୍ଚ ବିଚାରାଳୟ ୧୯୯୭ରେ କହିଲେ ଯେ – ସଂବିଧାନର ୫ମ ଅନୁଚ୍ଛେଦରେ ପ୍ରାକୃତିକ ସଂପଦ ଉପରେ ଆଦିବାସୀଙ୍କ ଅଧିକାର ସ୍ୱୀକୃତ । ଏହାକୁ ଆଦିବାସୀ ସମାଜର ବିନା ଅନୁମତିରେ ଦେବା ଅସାଂବିଧାନିକ । ୧୯୯୬ ଡ଼ିସେମ୍ବର ୨୪ରେ ସଂସଦ ଦ୍ୱାରା ଗୃହୀତ ଆଦିବାସୀ ସ୍ୱୟଂ ଶାସନ ବିଲ୍ ରାଷ୍ଟ୍ରପତିଙ୍କ ଦ୍ୱାରା ଅନୁମୋଦିତ ହୋଇ ଆଇନରେ ପରିଣତ ହେଲା । ସେହି ଆଇନ ଅନୁଯାୟୀ ଜଳ, ଜଙ୍ଗଲ ଓ ଜମି ଉପରେ ଏବଂ ଗ୍ରାମର ବିକାଶ ଦିଗରେ ଆଦିବାସୀ ସମାଜର ସଂପୂର୍ଣ୍ଣ ଅଧିକାରକୁ ମାନ୍ୟତା ଦିଆଯାଇଛି । ସଂବିଧାନ ଓ ଆଇନକୁ କାର୍ଯ୍ୟକାରୀ କରିବା ଦୂରରେ ଥାଉ, ତାକୁ ଗ୍ରହଣ କରିବାକୁ ଆମ ପ୍ରଶାସକ, ରାଜନେତା ଓ ଚାଲୁ ବିକାଶ ଧାରାର ଅଧିବକ୍ତା ଓ ବୁଦ୍ଧିଜୀବୀମାନେ ମାନସିକ ସ୍ତରରେ ପ୍ରସ୍ତୁତ ନୁହଁନ୍ତି । ନିଜେ ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀମାନେ ଦିନ ଦ୍ୱିପହରରେ ଡ଼କାୟତି କଲାପରି ଆଇନ ଓ ସଂବିଧାନକୁ ଗୋଇଠା ମାରି ନିଜ ନିଜ ସ୍ୱେଚ୍ଛାଚାରୀ ନିଷ୍ପତ୍ତି ମାଟିର ମଣିଷଙ୍କ ଉପରେ ଥୋପି ଦେଉଛନ୍ତି । ଏମାନଙ୍କୁ କିଏ ଦଣ୍ଡ ଦେବ ? ଏଥିରେ ଗଣତନ୍ତ୍ର ବଞ୍ଚିବ ତ ? ଦାରିଦ୍ର୍ୟ ହଟିବ କି ? ବିଗତ ୫୦ ବର୍ଷରେ ବିକାଶ ନାମରେ ଅନେକ ଖଣି ଓ ଜଙ୍ଗଲ ସାରିଦେଲାପରେ ବି ଆଜି ଓଡ଼ିଶାବାସୀ ଦରିଦ୍ର ।

Digitized by srujanika@gmail.com

କାଶୀପୁର ବାଫଲିମାଳି, ଶାଶୁବୋହୂମାଳି ସିଜିମାଳିର ପାହାଡ଼, ଡ଼ଙ୍ଗର ଭିତରେ ଓ ଝରଣାର କୂଳେ କୂଳେ ବଞ୍ଚି ରହିଥିବା ଅଧିବାସୀଙ୍କ ପରି ନିୟମଗିରି କନ୍ଦରର ଓ ତାର ପାଦଦେଶରେ ନିଜ ଅଧିକାରକୁ ସାବ୍ୟସ୍ତ କରିବାର ପ୍ରୟାସରେ ଥିବା ଆଦିବାସୀ ଗାଁ ସମାଜ ତଥାକଥିତ ସଭ୍ୟ ସମାଜକୁ ଆଜିବି ଗୋପିନାଥ ମହାନ୍ତିଙ୍କ 'ପରଜା' ପ୍ରତିନିଧିତ୍ୱ କରି ତଥାକଥିତ ସଭ୍ୟ ସମାଜକୁ କହୁଛି ''ମା ନିୟମଗିରିକୁ ହତ୍ୟା କର ନାହିଁ'' ... । ଯଦି ହତ୍ୟା କରିବ ତାହା ହେଲେ ସୁକୁଜାନି, ମାଣ୍ଡିଆ ଜାନି ଓ ଟିକ୍ରା ଜାନିଙ୍କ ହାତରେ ସାହୁକାର ରାମଚନ୍ଦ୍ରର ହତ୍ୟା ମଧ ଅନିବାର୍ଯ୍ୟ । ଆମେରିକାର ସିଆଟଲର ଆଦିମ ସମାଜ ଲୋହିତ ଭାରତୀୟଙ୍କ ମୁଖ୍ୟ ସେଦିନ ୱାସିଟନର ଗୋରା ସମ୍ରାଟଙ୍କୁ ଜବାବ ଦେଇଥିଲେ ''ଏ ମାଟି ଆକାଶ, ଏ ପବନ, ଏ ଝରଣା ସବୁକିଛି ପ୍ରକୃତିର ଉପହାର । ଏହାର ଘରୋଇ ମାଲିକ କେହି ନାହିଁ କି କେହି ହୋଇନପାରେ । ଏସବୁକୁ ବିକିବାକୁ ଆମେ କିଏ ? ଏହାକୁ କିଣିବାକୁ ତୁମେ କିଏ ... ?'' କିନ୍ତୁ କଳଙ୍କିତ ଇତିହାସରେ ଆଦିମ ସମାଜକୁ ବିକାଶର ଚକରେ ପେଶି ଦିଆଯାଇ ମାଟିରେ ମିଶାଇ ଦିଆଯାଇଛି । ସେହି ରକ୍ତରଂଜିତ ମାଟି ଉପରେ ସିଆଟଲ ଆଜି କର୍ପୋରେଟ ଜଗତର ମୁଖଶାଳା ରୂପେ ପରିଚିତ । ବାରଂବାର ଏପରି କଳା ଇତିହାସର ପୁନରାବୃତ୍ତି ଘଟିବାକୁ ନ ଦେବାକୁ 'ପରଜା' ଉପନ୍ୟାସର ମାଣ୍ଡିଆ ଜାନି ମାନେ ସଜାଗ ହେଲାପରେ ରାମଚନ୍ଦ୍ର ସାହୁକାରମାନେ ପଛକୁ ପାଦେ ଯଦି ଯିବେ ନାହିଁ, ତାହାହେଲେ ପରଜାର ଶେଷ ଦୃଶ୍ୟକୁ କେହି ଅଟକାଇ ପାରିବନାହିଁ । ପରାଧୀନ ଭାରତରେ ଶୋଷଣର ଅନ୍ତ ନଥିଲା । ହେଲେ, ସ୍ୱାଧୀନ ଭାରତରେ ବି ନୂଆ ନୂଆ ସାହୁକାରମାନେ ରାଷ୍ଟ୍ରଶକ୍ତିର ସହଯୋଗରେ ଅନେକ ଶୁକ୍ରୁ ଜାନି ପରିବାରମାନଙ୍କ ଜୀବନକୁ କଲବଲ କରିସାରିଲେଣି । ଏଣିକି ବାଫିଲିମାଳି, ନିୟମଗିରିର ଶୁକ୍ରୁ ଜାନି, ମାଣ୍ଡିଆ ଜାନିର ଦାୟାଦମାନେ 'ପରଜା'ର ଶେଷ ଅସ୍ତ୍ର ଲାଗୁ କରିବା ପୂର୍ବରୁ ଆମେ ସମସ୍ତେ କଂପାନୀ ସାହୁକାରମାନଙ୍କ ଲୋଲୁପ ଦୃଷ୍ଟିରୁ ଜଳ, ଜଙ୍ଗଲ ଜମି ଛଡ଼ାଇ ସେମାନଙ୍କ ହାତରେ ଦେଇଦେବାର ଦାୟିତ୍ୱ ନେବାକି ? ସେହି ଦାୟିତ୍ୱ ହେଉଛି ବିନା ଅସ୍ତ୍ରରେ ଚାଲିଥିବା ଗଣତାନ୍ତ୍ରିକ ଜନ ଆନ୍ଦୋଳନରେ ଆନ୍ତରିକ ସହଯୋଗ ଓ ଭୋଗବାଦୀ ସମାଜର ଚୈତନ୍ୟ ଉଦୟ । ନଚେତ ବିସ୍ଫୋରଣ ଅହେତୁକ ।



Digitized by srujanika@gmail.com

# ମଣିଷ ପାଇଁ ବିକାଶ ନା ବିକାଶ ପାଇଁ ମଣିଷ ?

## କମ୍ପାନୀରାଜ ପାଇଁ ମାଇକଞ୍ଚରେ ନରସଂହାର

୧୯୯୯ ଡିସେମ୍ବର ୩୦ ତାରିଖରେ ଗଜପତି ଜିଲ୍ଲାର ମାନ୍ଦ୍ରାବାଜୁଠାରେ ପୋଲିସ ଗୁଳିକରି ୮ଜଣ ଆଦିବାସୀଙ୍କୁ ହତ୍ୟା କରିଥିଲା । ପୁଣି ଏକବର୍ଷ ପୂରିବା ପୂର୍ବରୁ ୨୦୦୦ ଡିସେମ୍ବର ୧୬ ତାରିଖ ଦିନ ରାୟଗଡ଼ା ଜିଲ୍ଲାର କାଶୀପୁର ବ୍ଲକର ମାଇକଞ୍ଚ ଗ୍ରାମରେ ୩ ଜଣ ଆଦିବାସୀ ସଶସ୍ତ୍ର ପୋଲିସ ବାହିନୀର ଆକ୍ରମଣରେ ସହିଦ ହୋଇଗଲେ ଏବଂ ୮ ଜଣ ଗୁଳିଖାଇ ମୃତ୍ୟୁ ସହ ସଂଗ୍ରାମରତ । ବହୁ ଗ୍ରାମବାସୀ (ଆଦିବାସୀ ଓ ହରିଜନ)ଙ୍କୁ ପୋଲିସର ଅମାନୁଷିକ ଆକ୍ରମଣ ସହ ମହିଳାମାନଙ୍କ ପ୍ରତି ପୋଲିସର ଅଶ୍ଳୀଳ ବ୍ୟବହାର ଓ ଅମାନବିକ ପ୍ରହାର ଜୀବନ ଓ ଜୀବିକାର ସୁରକ୍ଷା ପାଇଁ ସଂଗ୍ରାମରତ ମାଟିର ମଣିଷମାନଙ୍କ ପ୍ରତି ବର୍ବର ଆଚରଣର ଏକ ଜ୍ୱଳନ୍ତ ପ୍ରତୀକ ।

## ଏ ଗୁଳି କାହିଁକି ? ନରସଂହାର କଣ ପାଇଁ ଓ କାହା ପାଇଁ ?

ପାଞ୍ଚହଜାର ବର୍ଷର ଭାରତୀୟ ସାଂସ୍କୃତିକ ଚେତନାର ଇତିହାସର ଦାୟାଦ ବୋଲାଉଥିବା ୫୩ ବର୍ଷର ସ୍ୱାଧୀନ ଭାରତର ତଥାକଥିତ ସଭ୍ୟସମାଜର ସଦସ୍ୟମାନଙ୍କ ଆଗରେ ଏପରି ବର୍ବରତା ପରିପ୍ରକାଶ ହୋଇପାରୁଥିବାବେଳେ ସେମାନଙ୍କ ବିବେକ କାହିଁକି ନୀରବ ? ସେମାନେ କାହିଁକି ଅଥର୍ବ ? ସେମାନଙ୍କ ନୀରବତା ପ୍ରଗତିର ରଥକୁ ଟାଣିବାର ସାମର୍ଥ୍ୟ ପାଇଁ ସରକାରର ବର୍ବରତାକୁ ମୌନ ସମର୍ଥନ ଦେଇ ମଣିଷମରା ବିକାଶ ଗାଡ଼ିର ଇନ୍ଧନ ରୂପେ ସ୍ୱୀକୃତି ଦେବା ପରି ମନେ ହେଉଛି । ଗଣତନ୍ତ୍ରର ଠିକା ନେଇଥିବା ଅଧିକାଂଶ ରାଜନୈତିକ ଦଳମାନେ ଗୁଳିକାଣ୍ଡ ଉପରେ ମନ୍ତବ୍ୟ ଦେବାବେଳେ ପେଞ୍ଚ ରଖି କହନ୍ତି କାହିଁକି ? ଏସବୁ ପ୍ରଶ୍ନର ଉତ୍ତର ଯଦି ମିଳିତ ଭାବରେ ଦେବାକୁ ହେବ, ତାହାହେଲେ ସେମାନେ ଏକ ସ୍ୱରରେ କହିବେ ପାହାଡ଼ ତଳେ ଥିବା ମଣିଷ ଗୁଡ଼ାକ ଗୁଳି ଖାଇ ମରିଗଲେ କଣ ହୋଇଗଲା ? ଦେଶରେ କଣ ଶିଳ୍ପ ହେବ ନାହିଁ ? ସତେ ଯେପରିକି ଶିଳ୍ପ ପାଇଁ ନିରୀହ ମଣିଷମାନଙ୍କ ରକ୍ତରେ ହୋଲି ଖେଳିବାକୁ ହେବ ! ଆଜି ନୀରବତାର

Digitized by srujanika@gmail.com

ସୁଯୋଗ ନେଇ ମଣିଷର ବଞ୍ଚିବାର ଅଧିକାର, ଅଧିକାର ପାଇଁ ସ୍ୱର ଉତ୍ତୋଳନ କରିବାର ସ୍ୱାଧୀନତା ନାହିଁ ବୋଲି ସରକାରୀ କଳର ଅଧିକାରୀମାନେ ଓ ସେସବୁ ଅଧିକାରୀଙ୍କ ମଉଡ଼ମଣିମାନେ ଧରିନେଇଛନ୍ତି । ଏପରି ଏକ ମାନସିକତା ନିଶ୍ଚିତଭାବେ କ୍ୟାନସର୍ ରୂପକ ବ୍ୟାଧିରେ ଆକ୍ରମିତ, ଏଥିରେ କୌଣସି ସନ୍ଦେହ ନାହିଁ ।

ଗୁଳିକାଣ୍ଡ ଘଟିଯିବାପରେ ମୁଖ୍ୟମନ୍ତ୍ରୀ, ମନ୍ତ୍ରିମଣ୍ଡଳର ସଦସ୍ୟ, ସରକାରୀ ଦଳ ବିଜେଡ଼ି ଓ ବିଜେପି କିମ୍ବା ମୁଖ୍ୟ ବିରୋଧୀ ଦଳର ସାଂସଦ କିମ୍ବା ବିଧାୟକମାନଙ୍କ ମଧ୍ୟରୁ କେହି ଜଣେ ସମ୍ବେଦନଶୀଳ ହୋଇ ପହଞ୍ଚିଲେ ନାହିଁ ଗୁଳିରେ ନିହତ ଓ ଆହତମାନଙ୍କ ପରିବାର ତଥା ଗ୍ରାମବାସୀଙ୍କ ଠାରୁ ପଦେ ଶୁଣିବା ପାଇଁ । ପ୍ରଶାସନ ତରଫରୁ ମୁଖ୍ୟ ସଚିବ ଓ ଗୃହସଚିବଙ୍କ ଠାରୁ ଆରମ୍ଭ କରି ଗୁଳିକାଣ୍ଡର କାର୍ପଟଦାର ରାୟଗଡ଼ା ଜିଲ୍ଲା ପ୍ରଶାସନ ମୁଖ୍ୟ ଜିଲ୍ଲାପାଳ, ଉପଜିଲ୍ଲାପାଳ, ଏସ୍.ପି. କିମ୍ବା କୌଣସି ଅଧିକାରୀ ପହଞ୍ଚିଲେ ନାହିଁ ଅନ୍ତତଃ ଶୋକ ସନ୍ତପ୍ତ ଜନତାଙ୍କ ଖବର ନେବା ପାଇଁ ।

ବେକରେ ଗୁଳିବାଜି ଗୁରୁତର ଆହାତ ହୋଇଥିବା ପୂର୍ଣ୍ଣ ଝଡ଼ିଆଙ୍କୁ ପ୍ରଶାସନ ପଠାଇଦେଲା ବ୍ରହ୍ମପୁର ମେଡ଼ିକାଲ୍ କଲେଜ ହସପିଟାଲକୁ; କିନ୍ତୁ ଡାକ୍ତର ଚିକିତ୍ସା କରିବା ପାଇଁ ଆବଶ୍ୟକ ଔଷଧ ଓ ଖାଦ୍ୟର ବ୍ୟବସ୍ଥା ସରକାର କଲା ନାହିଁ । ସୁଦୂର ମାଇକଞ୍ଚ ଗ୍ରାମର ନିରୀହ ଆଦିବାସୀ ପରିବାର ଜାଣିଲା ନାହିଁ ସେ ମୃତ ନା ଜୀବିତ । ସରକାର କିମ୍ବା ରାୟଗଡ଼ା ଜିଲ୍ଲା ପ୍ରଶାସନ ପାଖରେ ଉତ୍ତର ଅଛିକି ପୂର୍ଣ୍ଣ ଝଡ଼ିଆଙ୍କ ଚିକିତ୍ସାର ଦାୟିତ୍ୱ କିଏ ନେଲା ? ମରିଯାଇଥିଲେ ହୁଏତ ମୃତସଂଖ୍ୟା ୪ ହୋଇଥାନ୍ତା । ସେଥିପ୍ରତି ସମ୍ବେଦନଶୀଳ ହୋଇ ଗୁଳି କରି ହତ୍ୟା କରିଥିବା ସରକାରୀ କଳ ବା କାହିଁକି ଅନୁଶୋଚନା କରିବ ?

ନରସଂହାରର ପରଦିନ ଏହି ଗଣହତ୍ୟାର ଚକ୍ରାନ୍ତକାରୀମାନେ କାଶୀପୁରରେ ବନ୍ଦପାଳନ କରିବା ପରେ ତାପରଦିନ ରାୟଗଡ଼ା ସହରରେ ବିଜୟ ଦିବସ ପାଳନ କଲେ କପୋଳକଳ୍ପିତ ମିଥ୍ୟା ହତ୍ୟାଉଦ୍ୟମ ଅଭିଯୋଗର ପ୍ରତିବାଦ ନାମରେ । ଓଡ଼ିଶାର ଅନେକ ଖବରକାଗଜର ପ୍ରଥମ ପୃଷ୍ଠାରେ ଖବର ପ୍ରକାଶିତ ହେଲା : ଗୁଳିକାଣ୍ଡର ପ୍ରତିବାଦରେ ବନ୍ଦ ଓ ଶୋଭାଯାତ୍ରା; କିନ୍ତୁ ବାସ୍ତବରେ ଅମାନୁଷିକ ଗୁଳିକାଣ୍ଡର ସମର୍ଥନରେ ଥିଲା କାଶୀପୁର ବନ୍ଦ ଓ ରାୟଗଡ଼ାର ଶୋଭାଯାତ୍ରା । ଏଥିରେ ସାମିଲ ହୋଇଥିଲେ ଶାସକ ଦଳ ବିଜେଡ଼ି ଓ ବିଜେପି ନେତା ଓ କର୍ମୀ ସମେତ କଂଗ୍ରେସର ସ୍ଥାନୀୟ ନେତାମାନେ । ଖବର କାଗଜଠାରୁ ଆରମ୍ଭକରି ବହୁ ରାଜନୈତିକ ଦଳମାନେ ଗୁଳିକାଣ୍ଡର ନିନ୍ଦା କରିବାବେଳେ ଆଦିବାସୀଙ୍କୁ ଉସ୍କାଇ

Digitized by srujanika@gmail.com

ଥିବା ସଂଗଠନମାନଙ୍କୁ ଦୃଢ଼ ହସ୍ତରେ ଦମନ କରାଯିବା ପାଇଁ ମଧ ମତ ଦେଇଛନ୍ତି । ଏପରି ମନ୍ତବ୍ୟରେ ଲୁଚିରହିଛି ଆଦିବାସୀଙ୍କ ଆନ୍ଦୋଳନଟିକୁ ମାରିଦେବା ପାଇଁ ସରକାରୀ ପଦକ୍ଷେପ ପ୍ରତି ଅକୁଣ୍ଠ ସମର୍ଥନ ଓ ଆଦିବାସୀଙ୍କ ଅଧିକାର ଉପରେ ସରକାରଙ୍କ ବାରମ୍ବାର ଅମାନୁଷିକ ଆକ୍ରମଣ ମୂଳରେ ଥିବା ଦେଶୀ ବିଦେଶୀ କମ୍ପାନୀମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ ଅହେତୁକ ସହଯୋଗ । ଏମାନଙ୍କ ଉକ୍ତିରେ ସ୍ପଷ୍ଟ ହୋଇଯାଉଛି ସତେ ଯେପରିକି ଗୁଳିକାଣ୍ଡ ସରକାର କରିନାହିଁ । ଏଥିପାଇଁ ଉସୁକାଉଥିବା ବ୍ୟକ୍ତି ବା ସଂଘ ଦାୟୀ । ଅନ୍ୟପକ୍ଷରେ ରାଜନୈତିକ ଲାଭ ଉଠାଇବା ପାଇଁ ଗୁଳିକାଣ୍ଡକୁ ନିନ୍ଦାକରିବା ମଧ୍ୟ ଏକ ଔପଚାରିକ ।

## ଏପରି ମାନସିକତା କାହିଁକି ?

ଯେହେତୁ ଆମର ମୁଖ୍ୟରାଜନୈତିକ ଦଳର ନେତାମାନେ ଅମଲାତନ୍ତ୍ରର ପ୍ରଶାସକ, ସମାଜର ବୁଦ୍ଧିଜୀବୀ ଓ ଉଚ୍ଚ ମଧ୍ୟବିତ୍ତଙ୍କ ଭୋଗବିଳାସର ପରିଧି ଭିତରେ ଜନ୍ମ ନେଇଥିବା ବିକାଶର ନୀତି ସାମ୍ରାଜ୍ୟବାଦୀ ଅର୍ଥବ୍ୟବସ୍ଥା ତଥା ପ୍ରଚଳିତ ଜଗତୀକରଣ ଭୋଗବାଦୀ ବଜାର ଅର୍ଥବ୍ୟବସ୍ଥା ଦ୍ୱାରା ନିର୍ଦ୍ଦେଶିତ । ଆଜି ସେହିମାନଙ୍କ ବିକାଶ ପାଇଁ ଆଦିବାସୀ ଓ ଦଳିତଙ୍କ ଉପରେ ବର୍ବର ଗୁଳିଚାଳନା ଘଟଣା ଏକ ମାମୁଲି ରାସ୍ତା ଦୁର୍ଘଟଣାଠାରୁ ମଧ ନ୍ୟୁନ । କାରଣ, ରାସ୍ତା ଦୁର୍ଘଟଣାରେ ମଧ ମଣିଷ ମରିଗଲେ ସଙ୍ଗେ ସଙ୍ଗେ ଦେଖଣାହାରୀ ଜନତାଙ୍କ ପକ୍ଷରୁ ହିଂସାତ୍ମକ ପ୍ରତିକ୍ରିୟା ପ୍ରକାଶ ପାଉଛି ଏବଂ ଖବରକାଗଜମାନଙ୍କର ଦୁର୍ଘଟଣା ରୋକିବା ପାଇଁ ସନ୍ଦର୍ଭ ଓ ସମ୍ପାଦକୀୟ ଲେଖା ଦେଖିବାକୁ ମିଳୁଛି; କିନ୍ତୁ ମାଡ୍ରାବାଲୁ ଓ ମାଇକଞ୍ଚରେ ପୋଲିସ ଗୁଳିରେ ନରସଂହାର ହୋଇଥିଲେ ମଧ ତଥାକଥିତ ସଭ୍ୟ ସମାଜଠାରୁ ପ୍ରତିବାଦର ସ୍ୱର ଆଶା କରିବା ତ ଦୂରର କଥା, ଏପରିକି ଓଡ଼ିଶା ଓ ଜାତୀୟ ସ୍ତରର ଅଧିକାଂଶ ଖବରକାଗଜ ସତ୍ୟାସତ୍ୟକୁ ପ୍ରକାଶ କରିବା ପାଇଁ କୁଣ୍ଠିତ । ଯେହେତୁ, ଗୁଳିକାଣ୍ଡ ମୂଳରେ ଥିବା ଜନ ଆନ୍ଦୋଳନ ପ୍ରଚଳିତ ଜନବିରୋଧୀ ବିକାଶ ପ୍ରକ୍ରିୟାର ବିରୋଧରେ ଦିନକୁ ଦିନ ଶକ୍ତିଶାଳୀ ହେଉଛି । ଚକ୍ରାନ୍ତକାରୀଙ୍କୁ ଓ ସେମାନଙ୍କ ସମର୍ଥନରେ ଥିବା ତଥାକଥିତ ଭାଟମାନଙ୍କୁ କଂପାନୀମାନେ ବିଭିନ୍ନ ଉପାୟରେ ଆପ୍ୟାୟିତ କରିଚାଲିଛନ୍ତି । ଉତ୍କଳ ଆଲୁମିନା ଇଣ୍ଟର ନ୍ୟାସନାଲ ଲିଃ ୬୦ କୋଟି ଟଙ୍କା ଏହି ବାବଦରେ ଖର୍ଚ୍ଚ କରିସାରିଲାଣି । ଭୁବନେଶ୍ୱରରୁ ମଧ ମୁଖ୍ୟ ଖବରକାଗଜର ପ୍ରତିନିଧିମାନେ ଘଟଣାସ୍ଥଳକୁ ଗଲେ ନାହିଁ କାହିଁକି ? ଏହାର ମୂଳରେ ରହିଛି ସେମାନଙ୍କର ବିଚାରରେ ପଛୁଆ ଅଞ୍ଚଳର ଅବହେଳିତ ମଣିଷଗୁଡ଼ିକ ଅନ୍ୟମାନଙ୍କ ସହ ସମାନ ନୁହଁନ୍ତି । ତେଣୁ ସେମାନଙ୍କୁ ବଳ, କଳ, କୌଶଳରେ ହଟାଇବା ପରେ ହିଁ ପ୍ରଗତି ଆସିବ ବୋଲି

Digitized by srujanika@gmail.com

ମିଥ୍ୟା ସ୍ୱପ୍ନରେ ପାଗଳ । ଏପରି ବିଷାକ୍ତ ମାନସିକତାରୁ ଅଧିକ କଣ ଆଶା କରାଯାଇପାରେ ?

ଘଟଣା ଘଟିବାର ଦୁଇଦିନ ପରେ ଓଡ଼ିଶାର ଗୃହସଚିବଙ୍କୁ ଟେଲିଫୋନ କରି ଜଘନ୍ୟ ଘଟଣାଟି ପ୍ରତି ଦୃଷ୍ଟି ଆକର୍ଷଣ କରିବା ପାଇଁ ଉଚିତ ମନେ କଲେ ଜଣେ ସମ୍ବେଦନଶୀଳ ନାଗରିକ ଯିଏ କି ସଚିବଙ୍କ ସହ ଜଣାଶୁଣା । ସଚିବ ଜଣେ ସଚ୍ଚୋଟ ଅଫିସର ଓ ସଂବେଦନଶୀଳ କବି ଭାବେ ପରିଚିତ ବୋଲି କୁହାଯାଏ । କିନ୍ତୁ ସେ ଗୁଳିକାଣ୍ଡ ସଂକ୍ରାନ୍ତରେ ବିଚଳିତ ନହୋଇ ବରଂ ପ୍ରତିକ୍ରିୟାଶୀଳ ହୋଇ ପ୍ରଶ୍ନକଲେ :- ଉଡ଼ାଜାହାଜରେ କେବେ ଯାତ୍ରା କରନାହଁକି ? ଏହାର ଅର୍ଥ ହେଲା ବକ୍‌ସାଇଟ୍‌ରୁ ନିର୍ମିତ ଆଲୁମିନିୟମରେ ଉଡ଼ାଜାହାର ତିଆରି ହୁଏ । ତାଙ୍କରି ତାସଲ୍ୟରେ ଥିଲା ପୋଲିସ ଗୁଳିରେ ମାଟିର ମଣିଷମାନେ ମରିଯିବା ଅପେକ୍ଷା ଆନ୍ଦୋଳନ ଦ୍ୱାରା ଅଟକି ଯାଇଥିବା ଆଲୁମିନା ପ୍ରକଳ୍ପ ଓ ଉଡ଼ାଜାହାଜ ନିର୍ମାଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆଉ ଅଧିକ ଆଲୋଚନା ନକରି (ରବିବାର ଛୁଟି) ସମୟ ନଷ୍ଟ କରନ୍ତୁ ନାହିଁ ବୋଲି କହି ଫୋନଟିକୁ ରଖିଦେଲେ । ସଚ୍ଚୋଟ ଗୃହସଚିବଙ୍କ ଏପରି ଅସଭ୍ୟ ପ୍ରତିକ୍ରିୟା ମୂଳରେ ରହିଛି ତାଙ୍କରି ଭ୍ରଷ୍ଟ ଓ ସ୍ୱାର୍ଥପର ବୌଦ୍ଧିକ ମାନସିକତା । ଏହି ଦୃଷ୍ଟିଭଙ୍ଗୀ ଆଜି ଅନେକଙ୍କ ଠାରେ ରହିଛି ।

ଗୁଳିକାଣ୍ଡଟିର ମୂଳରେ ଥିବା ବିକାଶ ନାମରେ ବିନାଶକୁ ବିରୋଧ କରିଆସୁଥିବା ବଞ୍ଚିତ ମଣିଷମାନଙ୍କ ପ୍ରତିବାଦର ସ୍ୱରଟିକୁ ଶୁଣିବାକୁ କାହିଁକି ଏତେ କୁଣ୍ଠିତ ? ଶିଳ୍ପନାମରେ ପ୍ରାକୃତିକ ସମ୍ପଦରୁ ଲୁଣ୍ଠନକୁ ବରଦାସ୍ତ କରିବାକୁ କାଶୀପୁର ଆଦିବାସୀ ପ୍ରସ୍ତୁତ ନୁହଁନ୍ତି । ନିରୀହ ବନବାସୀ ନିଜ ଜୀବନ ଜୀବିକା ଉପରେ ଯୋଜନାବଦ୍ଧ ଆକ୍ରମଣକୁ ପ୍ରତିହତ କରିବାପାଇଁ ମୌଳିକ ଅଧିକାରକୁ ସାବ୍ୟସ୍ତ କଲାବେଳେ ବାରମ୍ବାର ରାଷ୍ଟ୍ରଶକ୍ତିର ସଙ୍ଗଠିତ ଦମନ ଓ ଦଂଶନ ଦେଶକୁ ଓ ଗଣତନ୍ତ୍ରକୁ କୁଆଡ଼କୁ ନେଉଛି ଛାତିରେ ହାତରଖି ଆମେ ଚାଲାକ୍‌ମାନେ ନିଜ ନିଜକୁ ପଚାରିବା କି ? ଯଦି ପଚାରିବା ନାହିଁ ତାହାହେଲେ ସମାଜ ରହିବ ନାହିଁ, ସଭ୍ୟତା ସମାଧି ହୋଇଯିବ । ଯେଉଁମାନେ ଅଳ୍ପସଂଖ୍ୟକ ଏଲିଟ୍ ନାମରେ ଚାଲାକ ହୋଇ ରହିବେ ସେମାନେ କେବଳ ଏକ ବର୍ବର ସଭ୍ୟତାର ପ୍ରତିନିଧିତ୍ୱ କରିବେ । ଶେଷରେ ସମାଜ ହିଂସ୍ରହେବାକୁ ବାଧ ହେବ ତାକୁ କେହି ଅଟକାଇ ପାରିବେ ନାହିଁ । ତେଣୁ ବେଳ ଥାଉ ଥାଉ ଯାହାକୁ ଆମେ ମଣିଷ ରୂପେ ଗଣତି କରୁନାହୁଁ ଅନ୍ତତଃ ଆମଠାରୁ ତା ଭିତରେ ବେଶ୍ ମଣିଷପଣିଆ ଭର୍ତ୍ତି ହୋଇରହିଛି ବୋଲି ଅନୁଶୋଚନା କରିବା ସମୟ ଆସିଛି ।

Digitized by srujanika@gmail.com

ଯେଉଁମାନେ କାଶୀପୁର ଆନ୍ଦୋଳନକୁ ବିକାଶ ବିରୋଧି ବୋଲି କହି ଗୁଳିକାଣ୍ଡଟିର ଭୟାବହ ପରିଣତିକୁ ଏଡ଼ାଇ ଦେଉଛନ୍ତି, ସେମାନଙ୍କୁ ଗୋଟିଏ ପ୍ରଶ୍ନ: "ବିକାଶର ସଂଜ୍ଞା ନିରୂପଣ କରିବା ଠିକା କଣ ଆପଣମାନେ ହିଁ ନେଇଛନ୍ତି ?" କାଶୀପୁରର ଆଦିବାସୀ କିମ୍ୱା ଦଳିତ ସେମାନଙ୍କ ଆବଶ୍ୟକତାକୁ କେନ୍ଦ୍ରକରି ନିଜ ପାଖରେ ଥିବା ପ୍ରାକୃତିକ ସମ୍ପଦରୁ ପାଉଥିବା ଜୀବିକାର ସୁରକ୍ଷା ସହ ଜମି ଓ ଜଳକୁ କେନ୍ଦ୍ର କରି କୃଷିର ବିକାଶ ପାଇଁ ମତ ଦେବା ଅଧିକାର କଣ ଆଦିବାସୀଙ୍କ ନାହିଁ ? ଭୁବନେଶ୍ୱର କିମ୍ୱା ରାୟଗଡ଼ାର ବେପାରୀ, ମାଫିଆ, ଭ୍ରଷ୍ଟ ରାଜନୈତିକ ଦଲାଲ ଆଉ ଲୁଣ୍ଠନ ପାଇଁ ଆସିଥିବା ଇଷ୍ଟ ଇଣ୍ଡିଆ କମ୍ପାନୀର ଦାୟାଦମାନେ କାଶୀପୁର ଆଦିବାସୀଙ୍କ ହର୍ତ୍ତାକର୍ତ୍ତା ଭାଗ୍ୟ ବିଧାତା ହେବେ ? ? ଆଦିବାସୀଙ୍କ ଭାଷାକୁ ଏପର୍ଯ୍ୟନ୍ତ ଆମେ ସ୍ୱୀକାର କରୁ ନାହିଁ, ତାର ବଞ୍ଚିବାର ଅଧିକାରକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁ । ଶେଷରେ ପ୍ରକୃତିଦତ୍ତ ସମ୍ୱଳକୁ ମୁନାଫା ପାଇଁ ଆମ ଶାସକମାନେ ଦେଶୀ ଓ ବିଦେଶୀ ସାହୁକାରମାନଙ୍କ ପାଖରେ ବନ୍ଧାପକାଇ ଦେବାକୁ ଗଲାବେଳେ ଆଦିବାସୀଟି ଆଉ କେତେଦିନ ମୂକ ହୋଇ ରହିବ ? ପାଟି ଖୋଲିଲେ, ଆମେ କହୁଛୁ ତାକୁ କେହି ଉସୁକାଇ ଦେଲା ! କିଏ କହୁଛି, ଶିଳ୍ପ ବିରୋଧୀ ଗୋଷ୍ଠୀ ରାଜ୍ୟର ବିକାଶ ବିରୋଧରେ ଚକ୍ରାନ୍ତ କରୁଛନ୍ତି । ଏକଥା କହୁଥିବା ବ୍ୟକ୍ତିମାନେ ଧରି ନେଇଛନ୍ତି ଯେ - ଦେଶ, ରାଜ୍ୟ କିମ୍ୱା ସମାଜ ଆଦିବାସୀଙ୍କୁ ବାଦଦେଇ । ଏପରି ବିଷାକ୍ତ ବିଚାରର ପରିଣାମରେ ଆସନ୍ତା କାଲି ଆଦିବାସୀ ବିଦ୍ରୋହ କରିବାକୁ ବାଧ ହେବ ତଥାକଥିତ ସଭ୍ୟ ସମାଜରୁ ଅଲଗା ହେବାପାଇଁ ? ଯଦିବା କରନ୍ତି ଭୁଲ କେଉଁଠେ ? ସେଥିପାଇଁ ଦାୟୀ ହେବେ ଆଜିର ବିକାଶର ଠିକାଦାରମାନେ ।

ସରକାରଟିଏ ଅଛି- ମଣିଷର ଜୀବନ ରକ୍ଷା କରିବା ପାଇଁ; କିନ୍ତୁ ମଣିଷକୁ ମାରିପାରୁଛି ସରକାର । ପୁଣି କାହା ପାଇଁ ? ବିଦେଶୀ ବଣିକ ଓ ଶୋଷକଙ୍କ ସ୍ୱାର୍ଥରକ୍ଷା ପାଇଁ । ଏହା ହିଁ କମ୍ପାନୀ ଶାସନର ଉପଲବ୍‌ଧି । ତୃତୀୟ ବିଶ୍ୱରେ ଆଜିର ବଜାର ଅର୍ଥନୀତିର ପୃଷ୍ଠପୋଷକ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଯେଉଁ ଖେଳ ଆରମ୍ଭ ହୋଇଯାଇଛି, ତାହା ଭାରତର କାଶୀପୁରରେ ଏକ ଜୀବନ୍ତ ଅନୁଭବ । ଆଦିବାସୀ ନିରୀହ ଓ ସରଳ ହୋଇପାରେ କିନ୍ତୁ ନିର୍ଜୀବ ନୁହଁ କି ଅବିବେକୀ ନୁହଁ । ସେ ବି ଜାଗୃତ ହୋଇପାରେ, ଏକଥା ଇତିହାସରେ ପ୍ରମାଣିତ ହୋଇଛି । ତେଣୁ ଜନ ଆନ୍ଦୋଳନଟିକୁ ଗୌଣ କରିଦେବା ପାଇଁ ତଥା ମଣିଷ ପାଇଁ ବିକାଶ ନା ବିକାଶ ପାଇଁ ମଣିଷ ପରି ମୌଳିକ ପ୍ରଶ୍ନଟିକୁ ଚାପିଦେବା ପାଇଁ ଚାଲିଥିବା ଷଡ଼ଯନ୍ତ୍ର ସଫଳ ହେବନାହିଁ । ପ୍ରଚାର ଚାଲିଛି କାଶୀପୁର ଆଦିବାସୀଙ୍କୁ ଉସ୍‌କାଉଛି ଅଗ୍ରଗାମୀ ।

Digitized by srujanika@gmail.com

ଏପରି ଅଭିଯୋଗ ଏକ ଷଡ଼ଯନ୍ତ୍ର । ଏହା ଅସତ୍ୟ । ଅଗ୍ରଗାମୀ ପରି ଯେ କୌଣସି ଏନ୍.ଜି.ଓ. ଜନ ଆନ୍ଦୋଳନ କରିପାରିବ ନାହିଁ । ଏହା ସେମାନଙ୍କ କଳ୍ପନାରେ ମଧ୍ୟ ନାହିଁ । ଯଦି ବା କୌଣସି ସଙ୍ଗଠନ ଜନ ଆନ୍ଦୋଳନର ପ୍ରସଙ୍ଗ ପ୍ରତି ସମର୍ଥନ ଦିଏ, ତାହା କଣ ଏକ ଅପରାଧ ?

ଏନ୍.ଜି.ଓ. ସଙ୍ଗଠନମାନଙ୍କର ଚରିତ୍ର କିମ୍ବା ପ୍ରକଳ୍ପକୁ ନେଇ ସମାଲୋଚନା କିମ୍ବା ପ୍ରଶଂସା କରିବା ଏକ ଭିନ୍ନ ବିଷୟ; କିନ୍ତୁ କୌଣସି ଜନ ଆନ୍ଦୋଳନକୁ ବାହନା କରି କୌଣସି ସଙ୍ଗଠନ ଉପରେ ଆକ୍ରମଣ କରିବା ପଛରେ ଏକ ଫାସିଷ୍ଟଚରିତ୍ର ଲୁକ୍କାୟିତ ହୋଇରହିଛି । ପ୍ରଥମତଃ ଏକ ଜନଆନ୍ଦୋଳନର ତୀବ୍ରତା ଓ ଜନବାଦୀଚରିତ୍ରକୁ କ୍ଷୁଣ୍ଣ କରିବାପାଇଁ ଏକ ଏନଜିଓ ଆନ୍ଦୋଳନ ବୋଲି ଚିତ୍ରଣ କରାଯାଉଛି ସରକାର ଓ କମ୍ପାନୀର ମିଳିତ କୌଶଳ ରୂପେ । ପୁଣି ଏହାକୁ ବାହନା କରି କାହାରି ଉପରେ ଆକ୍ରମଣ କରିବା ସୁଯୋଗ ନେଇଛନ୍ତି ଟାଉଟର ଦଲାଲ ରାଜନୈତିକ ବ୍ୟକ୍ତିବିଶେଷ ମାନେ ଯେଉଁମାନେ ଅଗ୍ରଗାମୀ ପରି ସଙ୍ଗଠନକୁ ବ୍ଲାକ୍‌ମେଲିଂ କରିବାଚାହାନ୍ତି । ଅନ୍ୟପକ୍ଷରେ ସରକାରୀକଳ ବାଧ୍ୟ କରୁଛି ଯେପରିକି ଅଗ୍ରଗାମୀ ପରି ଏନ୍.ଜି.ଓ.ମାନେ ଆଦିବାସୀଙ୍କ ଆନ୍ଦୋଳନକୁ ଭାଙ୍ଗିବାରେ ସହାୟକ ହେବାକୁ । ଏହିବାଟରେ ସାମ୍ରାଜ୍ୟବାଦୀ ଆର୍ଥିକ ବ୍ୟବସ୍ଥାରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଆଗମନରେ ଗଣତନ୍ତ୍ର ବିପନ୍ନ ହେବା ସହ କର୍ପୋରେଟ୍ ଶାସନ ଫାସିଷ୍ଟ ଶକ୍ତି ସୃଷ୍ଟି କରିବାକୁ ସଫଳ ହେଉଛି । ଏଥିପ୍ରତି ଦେଶପ୍ରେମୀ ନାଗରିକମାନେ ଗଭୀର ଦୃଷ୍ଟିପାତ ନକଲେ ଆମ ପାଇଁ ବିପଦ ଘନୀଭୂତ ହେବ, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାର ରାଜନୀତି ପଛୁଆ ଓ ନିମ୍ନଗାମୀ । ଏଥିରେ ଆଦିବାସୀ ଓ ହରିଜନଙ୍କ ସ୍ଥାନ ଅତ୍ୟନ୍ତ ନଗଣ୍ୟ । ଆଦିବାସୀ ନେତୃତ୍ୱ ନାହିଁ ଯଦିଚ ଆଦିବାସୀ ମୋଟ ଲୋକସଂଖ୍ୟାର ୨୩% । ଯେଉଁ ଆଦିବାସୀ ବିଧାୟକମାନେ ନିର୍ବାଚିତ ହୋଇ ଆସୁଛନ୍ତି ସେମାନେ ଆଦିବାସୀ ସମାଜଠାରୁ ଦୂରେଇ ଯାଇ ନିଜ ଦଳ ଓ ଦଳୀୟ ନେତାଙ୍କ ସମ୍ମୁଖରେ ପରାଧୀନ ହୋଇ ଯାଉଛନ୍ତି ସଂକୀର୍ଣ୍ଣ ସ୍ୱାର୍ଥପାଇଁ । ନଚେତ ଓଡ଼ିଶାର ଆଦିବାସୀ ବିଧାୟକ ଓ ସାଂସଦମାନେ ଦଳମତ ନିର୍ବିଶେଷରେ ରାଜ୍ୟରେ ଝଡ଼ ସୃଷ୍ଟିକରି ପାରିଥାନ୍ତେ ମାଇକଞ୍ଚ ଓ ମାନ୍ଦ୍ରାବାଲୁ ଗଣହତ୍ୟାକୁ କେନ୍ଦ୍ରକରି ।

ଏହାର ପରିଣାମସ୍ୱରୂପ ମୁଖ୍ୟମନ୍ତ୍ରୀ ନିଜେ କିମ୍ବା ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କୁ କିମ୍ବା ଶାସକ ଦଳ ବିଜେଡ଼ି ଓ ବିଜେପି ନିଜ କର୍ମକର୍ତ୍ତା କିମ୍ବା ବିଧାୟକମାନଙ୍କୁ ନେଇ ଗୁଳିକାଣ୍ଡରେ ନିହତ ଓ ଆହତ ପରିବାରମାନଙ୍କ ପାଖକୁ ଯାଇ ଘଟଣା ସଂକ୍ରାନ୍ତରେ ମତାମତ ସଂଗ୍ରହ କରିବା ପାଇଁ ମଧ୍ୟ ଉଚିତ ମନକଲେ ନାହିଁ । ଗଣତନ୍ତ୍ର ଓ

Digitized by srujanika@gmail.com

ସଭ୍ୟସମାଜରେ ଅତିକମ୍‌ରେ ଦାୟିତ୍ୱଶୀଳ ସରକାର ଓ ଶାସକଦଳଠାରୁ ଏତିକି ଆଶା କରାଯାଏ, କିନ୍ତୁ ଏହା ନ କରିବା ମୂଳରେ ଗୁଳିକାଣ୍ଡର ଅନ୍ତରାଳେ ଥିବା କଂପାନୀରାଜ ପାଇଁ ପୁଲିସର ଗଣହତ୍ୟାକୁ ସମର୍ଥନ ଜାରି ରହୁଥିବା ପରି ମନେ ହେଉଛି ।

ଆମେ ଲଜ୍ଜିତ ହେବା କଥା, ଶାସକ ଦଳର ସ୍ଥାନୀୟ ନେତାମାନେ କମ୍ପାନୀର ମୁଖ୍ୟ ଦଲାଲ ଭୂମିକା ନେଇ ଆନ୍ଦୋଳନକାରୀଙ୍କୁ ଭୟଭୀତ କରାଇବା ପାଇଁ ଗୁଣ୍ଡା ନେଇ ଯାଇଥିଲେ ମାଇକଞ୍ଚ । ପ୍ରଥମେ ଜଣେ ମା'ଙ୍କୁ ଧକ୍କା ଦେଇ ପରୀକ୍ଷା କଲେ ସତ୍ୟାଗ୍ରହୀ ଗ୍ରାମବାସୀଙ୍କ ଶକ୍ତି । ଜନଶକ୍ତି ଆଗରେ ଗୁଣ୍ଡାବାହିନୀ ପରାଜୟ ସ୍ୱୀକାର କରି ଫେରିଲେ, କିନ୍ତୁ ଦଳପତି ବୋଧହୁଏ ଅପମାନିତ ବୋଧକଲେ ବୋଲି ରାଜଧାନୀର ପ୍ରଶାସନକୁ ବାଧ କରିପାରିଲେ, ତାପରଦିନ ପୋଲିସ ଜରିଆରେ ନରସଂହାର କରିବାକୁ । ନରସଂହାର ମଧ ହୋଇଗଲା । ନରସଂହାରର ପୃଷ୍ଠଭୂମି ତିଆରି କରିବା ପାଇଁ ଗାଁ ଲୋକଙ୍କ ବିରୋଧରେ ମିଥ୍ୟା ହତ୍ୟା ଉଦ୍ୟମର ଅଭିଯୋଗ । ଏହି ଅଭିଯୋଗ ପତ୍ର ଏପରି ତିଆରି କରାଯାଇଛି କୁରୁସଭାରେ ଶକୁନିଙ୍କ ମନ୍ତ୍ରଣାପରି- ପଞ୍ଚୁପାଣ୍ଡବ-ଆଦିବାସୀମାନଙ୍କ ଧର୍ମଯୁଦ୍ଧକୁ ସମର୍ଥନ ଦେଉଥିବା ଏହି ଲେଖାର ଲେଖକଙ୍କୁ ମଧ ହତ୍ୟାକାରୀ ଭାବରେ ମିଥ୍ୟା ଅଭିଯୋଗ କରିବାକୁ ଲଜ୍ଜାବୋଧ କରିନାହାନ୍ତି । ଏହି ପୂର୍ବ ପରିକଳ୍ପିତ ଜଘନ୍ୟ ହତ୍ୟାକାଣ୍ଡ ଘଟି ପାରିଲା ଶାସକ ଦଳର କେତେକ ବେପାରୀ ନେତାଙ୍କ ଜିଦ୍ ପାଇଁ ଓ ବିଦେଶୀ କମ୍ପାନୀର ଅନୁପ୍ରବେଶ ପାଇଁ । ଏପରି ବର୍ବର ଓ ଅନ୍ୟାୟ ଘଟଣାର ପ୍ରତିକାର ପାଇଁ ରାଜନୈତିକ ସ୍ତରରେ କିମ୍ବା ପ୍ରଶାସନିକ ସ୍ତରରେ ଗଭୀର ଚିନ୍ତନ ହେବ ନାହିଁ ? ? ମୁଖ୍ୟସଚିବଙ୍କର ମଧ ଏଥିରେ ସମୀକ୍ଷା କରିବାର ଦାୟିତ୍ୱ ରହିଛି, କିନ୍ତୁ ତଳୁ ଉପର ପର୍ଯ୍ୟନ୍ତ ସମସ୍ତେ ନୀରବ ଓ ଅବିଚଳିତ, କିନ୍ତୁ ଭବିଷ୍ୟତରେ ଆଦିବାସୀ ନିଜର ସ୍ୱାଭିମାନର ଉଗ୍ରରୂପ ଦେଖାଇବାକୁ ସମର୍ଥ ହେବ, ସେତେବେଳେ ସେମାନଙ୍କୁ ହେୟ ମନେ କରୁଥିବା ପାପୀମାନେ ଜଳିଯିବେ । ବାରମ୍ବାର ଆକ୍ରମଣ ଓ ଗୁଳିକାଣ୍ଡସତ୍ତ୍ୱେ ଡ଼ିସେମ୍ବର ୨୦ ତାରିଖରେ ୪୦ କି.ମି.ର ରାସ୍ତାଚାଲିଚାଲି ଶହ ଶହ ସଂଖ୍ୟାରେ ଆଦିବାସୀ ରାଙ୍ଫକଣା ଛକରେ ରାସ୍ତାରୋକ ଆନ୍ଦୋଳନକୁ ସଫଳ କରିପାରିଲେ । ଏହି ଶକ୍ତି ପ୍ରଦର୍ଶନପରେ ପ୍ରଶାସନ, କମ୍ପାନୀ ଓ ତାଙ୍କ ଏଜେଣ୍ଟ୍‌ମାନେ ଅନ୍ତତଃ ଆତ୍ମସମୀକ୍ଷା କରନ୍ତୁ ଯେ - ଆଦିବାସୀଙ୍କୁ ନିଜ ମାଟିରୁ ହଟାଇବା ପାଇଁ ଚାଲିଥିବାଚକ୍ରାନ୍ତ ବୁମେରାଂରେ ପରିଣତ ହେବ । ଇତିହାସରୁ ଶିକ୍ଷା ନେବାର ଅଛି । ଅନ୍ତତଃ ଶିକ୍ଷିତ ସମାଜ କହୁ ଯେ - ଏପରି ଜଘନ୍ୟ ଗଣହତ୍ୟା ପୁଣି ନହେଉ କମ୍ପାନୀରାଜର ଅନୁପ୍ରବେଶ ପାଇଁ ବାଟ ନ ଖୋଲୁ ।

Digitized by srujanika@gmail.com

ପ୍ରଥମେ କମ୍ପାନୀମାନଙ୍କୁ ହଟାଇ ନିଆଯାଉ ଯେହେତୁ ଲୋକେ ଚାହୁଁନାହାନ୍ତି । ପୁଣି ଶିଳ୍ପନାମରେ ଖଣି ଖାଦାନ ଲୁଟ କରିବାକୁ ଦିଆନଯାଉ । ଆମ ଦେଶ ଓ ରାଜ୍ୟର ସ୍ୱାର୍ଥମୂଳରେ ଅଧିବାସୀଙ୍କ ଜୀବନ ଓ ଜୀବିକାର ଗ୍ୟାରେଣ୍ଟି ପ୍ରାଥମିକ ହେଉ । ପ୍ରାକୃତିକ ସମ୍ପଦର ସଂରକ୍ଷଣ ସହ ସେଥିରେ ସାଧାରଣ ଲୋକଙ୍କ ଅଧିକାରକୁ ସ୍ୱୀକାର କରାଯାଉ । ଯେଉଁମାନେ ଏହାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି ପ୍ରଥମେ ସ୍ପଷ୍ଟ କରନ୍ତୁ ମଣିଷ ପାଇଁ ବିକାଶ ନା ବିକାଶ ପାଇଁ ମଣିଷ ??

ମାଇକଣ୍ଠ ଗ୍ରାମରେ ପୋଲିସ ଗୁଳିରେ ନିହତ ହୋଇ ଯାଇଥିବା ତିନି ସହିଦ ଅଭିଳାଷ ଝଡ଼ିଆ, ଦାମୋଦର ଝଡ଼ିଆ ଓ ରଘୁନାଥ ଝଡ଼ିଆଙ୍କ ପାଖରେ ମୋର ଶ୍ରଦ୍ଧାଞ୍ଜଳି । ସହିଦ୍‌ଗଣ ! ତୁମେ ବ୍ୟାଧିଗ୍ରସ୍ତ ଚାଲାକମାନଙ୍କ ଆଗରେ ଠିଆହୋଇ କୁହ ଆମେ କେତେ ନିର୍ଭୀକ ଓ ସଚ୍ଚୋଟ ନିଜ ମାଟିର ମମତା ଆଉ ପ୍ରକୃତିର ସୁରକ୍ଷା ପାଇଁ ।

## ମୁଣ୍ଡା ଝୋଡ଼ିଆଙ୍କ ସ୍ୱର ଶୁଣିବା କି ?

ଓଡ଼ିଶାର ମହାବାତ୍ୟା ଓ ଗୁଜରାଟର ଭୟଙ୍କର ଭୂମିକମ୍ପ ପରେ ଆମେ ଭାରତୀୟମାନେ ଆତ୍ମ ନିରୀକ୍ଷଣ କରିବା ପାଇଁ ଚିନ୍ତା କରିବାକି ? ଭୋପାଳ ଗ୍ୟାସ ଦୁର୍ଘଟଣାଠାରୁ ଆରମ୍ଭ କରି ନିକଟରେ ଘଟିଥିବା ଅନୁଗୁଳ ନାଲକୋର ଆଶପଣ୍ଡ (ପାଉଁଶ ବନ୍ଧ) ଦୁର୍ଘଟଣା ପର୍ଯ୍ୟନ୍ତ ମଣିଷକୃତ ଦୁର୍ବିପାକଗୁଡ଼ିକର ପରିଣାମଜନିତ ଉତ୍କଟ ମାନବିକ ସମସ୍ୟାଗୁଡ଼ିକୁ ହୃଦୟଙ୍ଗମ କରିବାପାଇଁ ପ୍ରସ୍ତୁତ ହେଲେଯାଇ ଆତ୍ମ ନିରୀକ୍ଷଣ ସମ୍ଭବପର ହେବ ।

ପ୍ରାକୃତିକ ବିପର୍ଯ୍ୟୟର କାରଣଗୁଡ଼ିକୁ ଅନୁଧ୍ୟାନ କଲେ ଆମେ ନିଶ୍ଚିତ ହୋଇପାରିବା ଯେ ସେ ମଧ୍ୟରୁ ଏକ ମୁଖ୍ୟ କାରଣ ହେଉଛି ପ୍ରକୃତି ଉପରେ ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟାର କୌଶଳର ଅତ୍ୟାଚାର । ପୃଥିବୀର ସର୍ବୋଚ୍ଚରେ ଥିବା ବାଲା ତଥା ମୋଟ ଲୋକ ସଂଖ୍ୟାର ୨୦ ପ୍ରତିଶତଙ୍କ ସୁଖ ସମ୍ଭୋଗ ଓ ଲାଭପାଇଁ ୮୦ ପ୍ରତିଶତ ପ୍ରାକୃତିକ ସଂପଦକୁ ଶେଷ କରିବାରେ ନିୟୋଜିତ । ଏହି ପ୍ରକ୍ରିୟାକୁ ବିକାଶର ଜଗତୀକରଣ ବୋଲି କୁହାଯାଉଛି ସାମ୍ରାଜ୍ୟବାଦୀ ଶକ୍ତିରୂପେ ଠିଆହୋଇଥିବା ସାହୁକାରମାନଙ୍କ ଦ୍ୱାରା, କିନ୍ତୁ ଏହାର ଅସଲ ନାମ, ରୂପ ଓ ଚରିତ୍ର ହେଉଛି ଲୁଟ .... ଲୁଟ୍ .... ଲୁଟ୍ । ଏହି ଲୁଟ ପ୍ରକ୍ରିୟାରୁ ଜାତ ମଣିଷକୃତ ବିପର୍ଯ୍ୟୟଗୁଡ଼ିକ ଭୟାନକ ପରିଣାମ ସୃଷ୍ଟି କରୁଛନ୍ତି । ପ୍ରାକୃତିକ ବିପର୍ଯ୍ୟୟପରେ ଯେଉଁ ପରିମାଣରେ ମଣିଷମାନଙ୍କ ଦୁଃଖ-ଦୁର୍ଦ୍ଦଶା ଅନ୍ତହୀନ ହୋଇପଡୁଛି ଓ ହୃଦୟ ବିଦାରକ ପରିସ୍ଥିତିର

Digitized by srujanika@gmail.com

ସାମନା କରିବାକୁ ପଡୁଛି ସେଇଥିପାଇଁ ଆଜିର ବିକାଶ ପ୍ରକ୍ରିୟା ଓ ତଦ୍‌ଜନିତ ବଜାର ପର୍ଯ୍ୟବେସିତ ସମ୍ଭୋଗ ମାନସିକତା ମୁଖ୍ୟତଃ ଦାୟୀ ।

ଆଜି ଭୂକମ୍ପରେ ମୃତ ଓ ଆହତଙ୍କ ଦୁଃଖର ସୀମା ସମୁଦ୍ରଠାରୁ ଅଧିକ । ବଡ଼ବଡ଼ କୋଠାକୁ ତ ବୈଷୟିକ ଜ୍ଞାନକୌଶଳ ସୁରକ୍ଷା ଦେଇପାରିଲା ନାହିଁ କିମ୍ବା ଭଗ୍ନ ପ୍ରାସାଦଗୁଡ଼ିକର କାନ୍ଥଭିତରୁ ଜୀଅଁନ୍ତା ମଣିଷମାନଙ୍କୁ ମୃତ୍ୟୁପୂର୍ବରୁ ଉଠାଇ ଆଣିବାପାଇଁ ସମର୍ଥ ହେଲା ନାହିଁ । ପ୍ରକୃତି ସମ୍ମୁଖରେ ଜ୍ଞାନ, କୌଶଳ ସବୁକିଛି କ୍ଷମତାଶୀଳ ଅକ୍ଷମ ଓ ଅପାରଗ ହୋଇଯାଆନ୍ତି । ଏହି ସତ୍ୟତାକୁ ଉଦ୍ଧତ, ଅହଂକାରୀ ଓ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ସମୂହ ସ୍ୱୀକାର କରିପାରୁନାହାନ୍ତି ବୋଲି ବିନାଶର ତାଣ୍ଡବଲୀଳା ମଧ ବଢ଼ିବାରେ ଲାଗିଛି । ଯଦି ଆମର ବହୁଜନଙ୍କ ଆବଶ୍ୟକତା ଅନୁଯାୟୀ ବିକାଶର ପ୍ରକ୍ରିୟାକୁ ନିୟନ୍ତ୍ରଣ କରାଯାଉଥାନ୍ତା, ତାହାହେଲେ ପ୍ରାକୃତିକ ବିପର୍ଯ୍ୟୟ ପରେ ବି ମଣିଷ ପୁନଃ ନିଜ ଗୋଡ଼ରେ ଠିଆ ହେବାକୁ ସମର୍ଥ ହୋଇପାରନ୍ତା ଏବଂ ପ୍ରକୃତି ମଧ ପ୍ରତିଶୋଧପରାୟଣ ହୁଅନ୍ତା ନାହିଁ । ଅବାଞ୍ଛିତ ବିକାଶ ନାମରେ ପ୍ରାକୃତିକ ସଂପଦର ଲୁଟ୍‌କୁ ପ୍ରତିହତ କରାନଗଲେ ବାରଂବାର ପ୍ରାକୃତିକ ବିପର୍ଯ୍ୟୟ ସାଙ୍ଗକୁ ଭୟଙ୍କର ମଣିଷକୃତ ବିପର୍ଯ୍ୟୟ ମଣିଷ ସମାଜକୁ ଦୁଃଖୀ ଓ ବିକଳାଙ୍ଗ କରିଦେବ । ପୁଣି ସଭ୍ୟତାର ଶେଷ ଭାଗରେ ମଣିଷ ପୁନଃ ମୂଷିକ ରୂପେ ମୂକ ହୋଇ ଦେଖୁଥିବ ଦୁଃଖ ଓ ବେଦନାର ଭଗ୍ନ ସମାଜକୁ ।

ଆଜି ଚିନ୍ତା କରିବା ପାଇଁ ତଥାକଥିତ ଜ୍ଞାନୀ, ବୁଦ୍ଧିଜୀବୀ, ପ୍ରଶାସକ ଓ ରାଜନୈତିକ ବ୍ୟକ୍ତିମାନଙ୍କ ଜ୍ଞାନ ଉଦୟ ହେଉ । ଯେଉଁଠି ସାଧାରଣ ମଣିଷମାନେ ପାଠୁଆ ହୋଇନଥିଲେ ମଧ ନିଜ ଜୀବିକା ପାଇଁ ହେଉ କିମ୍ବା ସାମାଜିକ ବସତି ଓ ସଂସ୍କୃତିର ସୁରକ୍ଷା ପାଇଁ ହେଉ, ଯଦି ପ୍ରାକୃତିକ ସଂପଦର ସୁରକ୍ଷା ପାଇଁ ସ୍ୱର ଉତ୍ତୋଳନ କରୁଛନ୍ତି ସେହି ଡ଼ାକରାର ଅନ୍ତର୍ନିହିତ ସତର୍କବାଣୀକୁ ଶୁଣିବା ଓ ଉପଲବ୍ଧି କରିବାପାଇଁ ଆଧୁନିକ ଅସାଧାରଣ ମଣିଷମାନେ ଟିକିଏ ନମ୍ର ହେବା ଏକାନ୍ତ ଜରୁରୀ । ନାଲ୍‌କୋର ପାଉଁଶ ବନ୍ଧ ଭାଙ୍ଗିବା ଅଚାନକ ବୋଲି କୁହାଯାଇପାରେ । ଭୋପାଳ କାର୍ବାଇଡ୍ ଦୁର୍ଘଟଣାକୁ ମଧ ଏପରି କହି କହି ହଜାର ହଜାର ଲୋକଙ୍କୁ ମୃତ୍ୟୁ ଓ ବିକଳାଙ୍ଗ କରି ଦିଆଗଲା । ତାପରେ ବି ଜନ୍ମ ହେବା ଶିଶୁକୁ ବିକଳାଙ୍ଗ କରିବାରେ ଲାଗିଛି । ସେଥିପାଇଁ ଅନୁଶୋଚନା ନାହିଁ । ଅନୁଶୋଚନା ଯଦି ହୋଇଥାନ୍ତା ଆଜି କାଶୀପୁର ଆଦିବାସୀଙ୍କୁ ଗୁଳିକରି ମାରି ଦିଆଯାଇନଥାନ୍ତା ମଣିଷ ଓ ପ୍ରକୃତିହନ୍ତା ଆଲୁମିନା ପ୍ରକଳ୍ପ ପାଇଁ । ଆଜି ବ୍ରାହ୍ମଣୀ ନଦୀରେ ବିଷର ସ୍ରୋତ ବୋହିଚାଲିଥିଲେ ମଧ ବିକାଶର ପୃଷ୍ଠପୋଷକ ମାନଙ୍କୁ ହଲଚଲ କରିପାରିନାହିଁ । ଏକଥା ଘଟିବ ବାରଂବାର, ଯେହେତୁ ଆମର

Digitized by srujanika@gmail.com

ହର୍ତ୍ତାକର୍ତ୍ତା ଦୈବ ବିଧାତାମାନେ ଅନୁତପ୍ତ ନୁହନ୍ତି । ଡିସେମ୍ବର ୧୬ରେ ମାଇକଞ୍ଚର ପୋଲିସ ଗୁଳିକାଣ୍ଡ ଥିଲା ପ୍ରକୃତିର ସୁରକ୍ଷା ପାଇଁ ସଂଗ୍ରାମରତ । ମାଟିର ମଣିଷମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା, କିନ୍ତୁ ଅତୀତରେ ଏପରି ଅନେକ ଯୁଦ୍ଧର ପରିଣତି ସ୍ୱରୂପ ଡିସେମ୍ବର ୩୧ର ନାଲକୋ ଦୁର୍ଘଟଣା ଏବଂ ଜାନୁଆରୀ ୨୬ରେ ଗୁଜରାଟର ଭୟାନକ ଭୂକମ୍ପ ପରିସ୍ଥିତି ମଣିଷର ସ୍ଥିତିକୁ ଦୋହଲାଇ ଦେଇଛି ।

ଗତ ଜାନୁଆରୀ ୩୦ରେ କାଶୀପୁରରେ ହଜାର ହଜାର ଆଦିବାସୀଙ୍କ ଶପଥ ପଦଯାତ୍ରା ପରେ ସମାବେଶରେ ନିପଟ ଜଙ୍ଗଲବାସୀ ଶ୍ରୀମତୀ ମୁକ୍ତା ଝୋଡ଼ିଆଙ୍କ ଅନ୍ତରାତ୍ମାରୁ ବଜ୍ରକଣ୍ଠରେ ଘୋଷଣା । ''ଆମେ ଆମର ମା' ମାଟିର ସୁରକ୍ଷା ପାଇଁ ଜୀବନ ଦେଇ ଚାଲିବୁ ପଛେ ପ୍ରକୃତିଦତ୍ତ ପାହାଡ଼, ନଦୀ ନାଳ, ଜଙ୍ଗଲ ଓ ଜମିକୁ ଧ୍ୱଂସ ହେବାକୁ ଦେବୁନାହିଁ । ଏହା ସମୟର ଆହ୍ୱାନ । ପ୍ରକୃତିଦତ୍ତ ଏସବୁ ଜଳ, ଜମି ଜଙ୍ଗଲ ତୁମେ ମନ୍ତ୍ରୀ, ଅଫିସର ସରକାର ତିଆରି କରିନାହଁ । ହଜାର ହଜାର ବର୍ଷରୁ ଆମ ବାପା ଅଜା ଓ ଆମେ ଏଥିରେ ବଞ୍ଚିଆସିଛୁ । ତୁମେ ଏସବୁ ଛଡ଼ାଇ ନେବାକୁ କିଏ ଅଧିକାର ଦେଲା ?'' ଏହି ବଜ୍ରକଣ୍ଠର ସ୍ୱରରେ ଥିଲା ପ୍ରକୃତିର ସଂରକ୍ଷଣ ଓ ସେଥିରୁ ମିଳୁଥିବା ଜୀବିକାର ସୁରକ୍ଷା ପାଇଁ ଆହ୍ୱାନ । ଏହି ବାର୍ତ୍ତାକୁ ଆମେ ସମସ୍ତେ ବିଷାକ୍ତ ମାନସିକତାରୁ ମୁକ୍ତ ରହି ଟିକିଏ ଭାବିବା କି ?



Digitized by srujanika@gmail.com

# ଜମି ଅଧିକାର ପାଇଁ ଆଦିବାସୀ ବିଦ୍ରୋହ

## ରାଇଘରରେ ପୋଲିସର ବର୍ବର ଗୁଳିକାଣ୍ଡ

## ଆସିବାସୀଙ୍କୁ ମାରିବା ଓଡ଼ିଶା ସରକାରଙ୍କ ନୀତି କି ?

## ଏଥିରୁ ମୁକ୍ତିପାଇଁ ବିକଳ୍ପ ରାଜନୀତି ହେବ କି ?

ଓଡ଼ିଶାରେ ଏକ ସରକାର ଅଛି ବୋଲି କହିଲେ ସନ୍ଦେହ ହେଉଛି । ସରକାର ନିଜ କର୍ତ୍ତବ୍ୟରୁ ଓହରି କୃଷି, ସ୍ୱାସ୍ଥ୍ୟ, ଶିକ୍ଷା ପରି ସାଧାରଣ ମୌଳିକ ସେବାରୁ ନିଜ ସାମ୍ବିଧାନିକ କର୍ତ୍ତବ୍ୟ ପାଳନ କରିବା ପରିବର୍ତ୍ତେ ଦେଶୀ ବିଦେଶୀ ବେପାରୀଙ୍କ ହାତରେ ଟେକି ଦେବା ପାଇଁ ପ୍ରତିଦିନ କାର୍ଯ୍ୟରତ । ଅନ୍ୟପଟେ ସାଧାରଣ ଚାଷୀ, ଆଦିବାସୀ ତଥା ଗରିବ ଲୋକେ ନିଜ ଅଧିକାର ପାଇଁ ଶୋଷଣ ଓ ଅନ୍ୟାୟ ବିରୋଧରେ ପ୍ରତିବାଦ କରିବା ପାଇଁ ରାସ୍ତାକୁ ଆସିଲେ ସରକାର ପୋଲିସବାହିନୀ ଜରିଆରେ ଅମାନୁଷିକ ଆକ୍ରମଣ କରି ଗଣତାନ୍ତ୍ରିକ ଅଧିକାରକୁ ଛଡ଼ାଇ ନେବାପାଇଁ ତତ୍ପର । ଯେଉଁ ଭୋକିଲା ମଣିଷକୁ ଦାନାଦେବାକୁ ସରକାର ପ୍ରସ୍ତୁତ ନୁହେଁ, ସେହି ସରକାର ପୁଣି ଗୁଳିକରି ମଣିଷ ମାରିବା ପରେ ବି କ୍ଷମତାରେ ରହିବା ଅଧିକାର ଅଛି କି ? ୨୦୦୦ ଡ଼ିସେମ୍ବର ୧୬ ଦିନ କାଶୀପୁର ମାଇକଞ୍ଚରେ ତିନିଜଣ ଆଦିବାସୀନେତାଙ୍କୁ ପୋଲିସ ହତ୍ୟାକଲା ପରେ ପୁଣି ବର୍ଷେ ନ ହେଉଣୁ ନବରଙ୍ଗପୁର ଜିଲ୍ଲାର ରାଇଘର ବ୍ଲକର ଖୁରାବେଡ଼ା ପଞ୍ଚାୟତର ରଙ୍ଗାଭାଟି ଠାରେ ୨୦୦୧ ଅକ୍ଟୋବର ୩୦ ଓ ନଭେମ୍ବର ୧୧ ତାରିଖ ଦିନ ପୋଲିସ ଗୁଳିରେ ୫ ଜଣ ଆଦିବାସୀ ହରିଜନ ଟଳିପଡ଼ିଲେ ଓ ଅନେକ ଗୁରୁତର ଆହତ ହେଲେ । ୧୯୯୯ରେ ଗଜପତିର ମାଝିଗୁଡ଼ାରେ ୭ ଜଣ ଆଦିବାସୀ ପୋଲିସ ଗୁଳିରେ ମରିଥିଲେ ।

ଆଇନ ଶୃଙ୍ଖଳା ବ୍ୟାହତର ଆଳ ଦେଖାଇ ପୋଲିସ ଗୁଳିକାଣ୍ଡକୁ ଯଥାର୍ଥ ବୋଲି ସରକାରୀ ଲୋକେ କହିବା ଏକ ଅଭ୍ୟାସଗତ ସ୍ପଷ୍ଟୀକରଣ, କିନ୍ତୁ ରାଇଘର ଅଞ୍ଚଳର ଶୋଷିତ ଆଦିବାସୀ ପାଟି ଖୋଲିଲେ ଯେତେବେଳେ ସେମାନେ ଅନୁଭବ କଲେ ଯେ – ତାଙ୍କର ଜମି, ତାଙ୍କରି ଶ୍ରମ କେତେକ ଅଣ ଆଦିବାସୀ ଶୋଷକ ଦ୍ୱାରା ଲୁଣ୍ଠିତ ହୋଇ ଆସୁଛି । ସେମାନେ ବାଙ୍ଗଲା ଦେଶରୁ ଆସିଥିବା ଶରଣାର୍ଥୀ ହୋଇପାରନ୍ତି, ଓଡ଼ିଶାର କିମ୍ବା ଓଡ଼ିଶା ବାହାରୁ ଆସିଥିବା ବେପାରୀ ହୋଇପାରନ୍ତି । ଶୋଷକର ଜାତି, ଭାଷା, ଧର୍ମ ବୋଲି କିଛି ନଥାଏ । ଗଣମାଧ୍ୟମ କିମ୍ବା କେତେକ ବ୍ୟକ୍ତିବିଶେଷ ଏହି ଗୁଳିକାଣ୍ଡକୁ

Digitized by srujanika@gmail.com

ବଙ୍ଗାଳୀ ଶରଣାର୍ଥୀ ଏବଂ ଆଦିବାସୀଙ୍କ ମଧ୍ୟରେ ସାଂପ୍ରଦାୟିକ ଗଣ୍ଡଗୋଳ ବୋଲି କହିବା ସତ୍ୟର ଅପଳାପ ହେବ । ସତ୍ୟ ହେଉଛି ଆଦିବାସୀଙ୍କ ଜମି ଆଜି ସେହି ଅଞ୍ଚଳରେ ଅନେକ ଅଣ ଆଦିବାସୀ ସାହୁକାରମାନଙ୍କ କବ୍‌ଜାରେ ଅଛି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଏକଦା ଶରଣାର୍ଥୀ ରୂପେ ଆସି ବର୍ତ୍ତମାନ ଶୋଷକ ଷ୍ଟାଟାସକୁ ପହଞ୍ଚି ଗଲେଣି । ଆଦିବାସୀଙ୍କୁ ଏପର୍ଯ୍ୟନ୍ତ ଚାଷଜମିର ପଟା ମିଳି ନଥିଲାବେଳେ ୪୦ ବର୍ଷ ତଳୁ ସଂରକ୍ଷିତ ଜଙ୍ଗଲ କାଟି ସେଥିରୁ ୭ ଏକର ଜମି ପ୍ରତ୍ୟେକ ଶରଣାର୍ଥୀ ପରିବାରକୁ ଦିଆଯାଇଥିଲା । ତାହା ମଧ୍ୟ ସମ୍ବିଧାନରେ ଥିବା ୫ମ ଅନୁଚ୍ଛେଦକୁ ଉଲଂଘନ କରି । କାରଣ ଆଦିବାସୀ ଅଞ୍ଚଳର ଜମି, ଜଙ୍ଗଲ ଅଣ ଆଦିବାସୀଙ୍କୁ ଦିଆଯାଇପାରିବ ନାହିଁ । ଏକଥା ୧୯୯୭ରେ ସୁପ୍ରିମକୋର୍ଟ ମଧ୍ୟ ଏକ ଐତିହାସିକ ରାୟରେ ସ୍ପଷ୍ଟ କରିଦେଇଛନ୍ତି । ଶରଣାର୍ଥୀଙ୍କୁ ଅଣ ଆଦିବାସୀ ଅଞ୍ଚଳରେ ଥଇଥାନ କରାଯାଇ ପାରିଥାନ୍ତା । ଏଥିରେ କୌଣସି ବିବାଦ ନାହିଁ, କିନ୍ତୁ ଯେଉଁଠି ଆଦିବାସୀଙ୍କ ଜୀବନ, ଜୀବିକା ଓ ପ୍ରାକୃତିକ ସଂବଳର ସୁରକ୍ଷା ପାଇଁ ସାଂବିଧାନିକ ବ୍ୟବସ୍ଥା ରହିଛି ସେଠି କିପରି ଓ କାହିଁକି ସେମାନଙ୍କୁ ଶୋଷଣ କରିବା ପାଇଁ ଅଣ ଆଦିବାସୀ ଗୋଷ୍ଠୀଙ୍କୁ ନେଇ ଥଇଥାନ କରାଗଲା ? ପୁଣି ଆଦିବାସୀଙ୍କ ସଂବଳରୁ ଜଙ୍ଗଲ କାଟି ଜମି ଆକାରରେ ଦିଆଗଲା । ଅଥଚ ୪୦ ବର୍ଷ ପରେ ଜଙ୍ଗଲ ସଫା ହୋଇଗଲା ପରେ ମଧ୍ୟ ସେହି ଜମିକୁ ଚାଷ କରି ଆସୁଥିବା ଓ ଜଙ୍ଗଲରୁ ଚଳି ଆସୁଥିବା ଆଦିବାସୀ ପରିବାରମାନଙ୍କ ଅଧୀନରେ ଥିବା ଚାଷ ଜମିର ପଟା ଦିଆଯାଉନାହିଁ । କାରଣ ଦର୍ଶାଯାଉଛି ଯେ ଜମିର କ୍ଲାସିଫିକେସନ ବଦଳାଇବାରେ ଅସୁବିଧା ହେଉଛି । ଏହା ଶୁଣିବା ପରେ ସରଳ ଆଦିବାସୀ ମନରେ ବିଦ୍ରୋହ ସୃଷ୍ଟି ହେବ ନାହିଁକି ? ପୁଣି ଆଦିବାସୀଙ୍କ ଥିବା ପଟାଜମି ଶୋଷକମାନଙ୍କ ଜାଲରେ ବନ୍ଧା ପଡ଼ିଛି । ଶହେ ଦୁଇଶହ ଟଙ୍କା ଦେଇ ଏକରେ ଦୁଇ ଏକର ଜମି ପାଞ୍ଚରୁ ୧୦ ବର୍ଷ ହେଲା ଚାଷ କରି ଫସଲ ନେଉଛନ୍ତି ସାହୁକାରମାନେ । ବିଭିନ୍ନ ବ୍ୟାଙ୍କରେ ଆଦିବାସୀମାନଙ୍କ ଜମି ବନ୍ଧକ ରଖି ଋଣ ଦିଆଯାଉଛି । ସେହି ଋଣରେ ଟ୍ରାକ୍ଟର ଓ ଅନ୍ୟ ଗାଡ଼ିର ମାଲିକ ହୋଇଛନ୍ତି ଅଣ ଆଦିବାସୀ ଶୋଷକମାନେ । ଏକଥା ଜାଣିବା ପରେ ଆଦିବାସୀ ସମାଜ ସ୍ୱର ଉତ୍ତୋଳନ କରିବା ଆରମ୍ଭ କଲା । ନିଜ ଜମିକୁ ଗଲା ହଳ କରିବା ପାଇଁ । ଏହା ମଧ୍ୟ ମାତ୍ର କେତୋଟି ସ୍ଥାନରେ, କିନ୍ତୁ ଜମି ହଡ଼ପକାରୀମାନେ ସଂଗଠିତ ହୋଇ ନିଜ ସଂପ୍ରଦାୟକୁ ଉସ୍‌କାଇ ଆଦିବାସୀମାନଙ୍କ ଉପରେ ଆକ୍ରମଣ କଲେ । ୨୦୦୧ ଜୁନ ୨୪ରେ ଦୁଇଜଣ ଆଦିବାସୀ (ଜାମୋଦରା ଗ୍ରାମର) ସହିଦ ହୋଇଗଲେ । ସରକାର ଅନ୍ତତଃ ମାନବିକତା ଦୃଷ୍ଟିକୋଣରୁ କ୍ଷତିପୂରଣ ଦେବାର ଥିଲା । ତାହା ବି କଲେ ନାହିଁ । ଅନ୍ୟ ପକ୍ଷେ ସମସ୍ତ ହତ୍ୟାକାରୀଙ୍କୁ ଗିରଫ କଲେ ନାହିଁ । ଦଳିତ ସମାଜ ନେତୃତ୍ୱରେ

Digitized by srujanika@gmail.com

ଆଦିବାସୀ ନିଜ ଅଧିକାର ପାଇଁ ଜାଗି ଉଠୁଛି । ଏହା ପ୍ରଶାସନିକ ପକ୍ଷରେ ବିଶେଷ କରି ପୋଲିସ ଆଖିରେ ଅପରାଧ । ହତ୍ୟାକାରୀଙ୍କୁ ଘୋଡ଼ାଇବା ଓ ଶୋଷଣକୁ ପ୍ରଶ୍ରୟ ଦେବା ପରି ଅକ୍ଷମଣୀୟ ଅପରାଧ ପାଇଁ ସରକାରୀ କଳ ଓ କ୍ଷମତାସୀନ ରାଜନୈତିକ ଦଳର ନେତାମାନେ ଦାୟୀ । ଏମାନଙ୍କୁ ଦଣ୍ଡ ଦେବ କିଏ ? ଗତ ଅକ୍ଟୋବର ୧୭ ତାରିଖରେ ହଜାର ହଜାର ଆଦିବାସୀ ହରିଜନ ଜାମୋଦରାରୁ ରାଇଘର ପଦଯାତ୍ରାରେ ଯାଇ ଶାନ୍ତିପୂର୍ଣ୍ଣ ବିକ୍ଷୋଭ କରି ମୁଖ୍ୟମନ୍ତ୍ରୀଙ୍କୁ ବିଡ଼ିଓଙ୍କ ଜରିଆରେ ଯେଉଁ ଦାବିପତ୍ର ଦେଇଥିଲେ ଓ ସେହି ବିରାଟ ସଭାରେ ମୁଁ ନିଜ ବକ୍ତବ୍ୟରେ ସରକାରଙ୍କୁ ନିବେଦନ କରିଥିଲି ଯେ – ''ଜନଶକ୍ତିର ଜାଗରଣକୁ ସମ୍ମାନ ଦେଇ ଆଦିବାସୀଙ୍କ ଅଧିକାରକୁ ସ୍ୱୀକାର କର ଓ ଗତ ୩୦ ବର୍ଷ ଭିତରେ ବେନାମୀ ଜମି ହସ୍ତାନ୍ତର ଓ ଆଦିବାସୀଙ୍କୁ ଜମିପଟା ଦେବାପରି ସମସ୍ୟାର ଆଶୁ ସମାଧାନ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବା ଏକାନ୍ତ ଜରୁରୀ ।'' ସେହି ଶାନ୍ତିପୂର୍ଣ୍ଣ ସମାବେଶ ଓ ଗଣବିକ୍ଷୋଭ ରାଲିର ନେତୃତ୍ୱ ନେଇଥିବା ଯୁବନେତା ଜଗବନ୍ଧୁ ମାଝିଙ୍କ ଉପରେ ପୋଲିସ ଓ ସରକାରୀ ଦଳ ବିଶେଷ କରି ବଜେପିର କର୍ମକର୍ତ୍ତାମାନେ ଉଦ୍‌କ୍ଷିପ୍ତ କାହିଁକି ? ସେ କ'ଣ ହିଂସାତ୍ମକ ବାଟରେ ଆନ୍ଦୋଳନ କରୁଥିଲେ ? ଯଦି କରିଥାନ୍ତେ ୧୭ ତାରିଖ ଦିନ ହିଂସାର ପରିଣାମକୁ କେହି ରୋକିପାରିନଥାନ୍ତେ, କିନ୍ତୁ ସେହି ସମାବେଶର ଜନମତକୁ ବେଖାତିର କରି ଜନ ଆନ୍ଦୋଳନକୁ ଖତମ କରିବା ପାଇଁ ସରକାରୀ ଦଳ ଓ ପ୍ରଶାସନିକ କଳ ପୋଲିସ ବାହିନୀକୁ ବ୍ୟବହାର କଲେ ଅକ୍ଟୋବର ୩୦ ଦିନ । ଅମାନୁଷିକ ଆକ୍ରମଣରେ ଟଳିପଡ଼ିଲେ ୩ ଜଣ ଯୁବକ ଆଦିବାସୀ ଓ ଅନେକ ମୃତ୍ୟୁସହ ସଂଘର୍ଷରତ । ଆଦିବାସୀଙ୍କ ଧାନକଟାକୁ ଅଟକାଇବାରେ ବିଫଳ ହୋଇ ପୋଲିସ ଗୁଳିକଲା । ସରକାର ଆଦିବାସୀଙ୍କ ବିଦ୍ରୋହର କାରଣକୁ ସମାଧାନ କରିବା ପାଇଁ ପ୍ରସ୍ତୁତ ନୁହେଁ । ଏପରି ଅନେକ ହେବ । ତାହାର ସମାଧାନ କ'ଣ ଗୁଳିକାଣ୍ଡ ? ଏହା କେବଳ ବର୍ବରତାର ପରିଚୟ । ଗଣତନ୍ତ୍ର ଯେଉଁଠି ମରିଯାଇଛି ସେଠାରେ ଏପରି ଅମଣିଷମାନଙ୍କ ରାଜତ୍ୱ । ପ୍ରଥମେ ଆଦିବାସୀଙ୍କ ଜମି ଅଧିକାର ଓ ହତ୍ୟାଜନିତ ନ୍ୟାୟ ପ୍ରଦାନ କରିବା ଏକାନ୍ତ ଜରୁରୀ ।

ଗୁଳିକାଣ୍ଡ ଘଟିବା ପରେ ପୋଲିସର ଆତଙ୍କରାଜ ରାଇଘର ଅଞ୍ଚଳରେ ଏପରି ପରିବେଶ ସୃଷ୍ଟି କରିଛି ସତେ ଯେପରିକି ଫିରିଙ୍ଗି ଶାସନ ପୁଣି ଫେରିଆସିଛି । ଜନତା ପରାଧୀନ ହୋଇଯାଇଥିବା ପରି ପୋଲିସ ପ୍ରଶାସନ ବ୍ୟବହାର କରୁଛି । ବୃଦ୍ଧ ବିକ୍ଷୋଭୀଙ୍କୁ ଗିରଫ କରି ପୋଲିସ ହାଜତରେ ମାଡ଼ ମାରିବା ପଛରେ ପୋଲିସ ଶୋଷକମାନଙ୍କ ପକ୍ଷଭୁକ୍ତ ହୋଇଯାଇଛି । ଯଦି ଆଦିବାସୀ ସମାଜର ବିଦ୍ରୋହ ସବୁଆଡ଼େ ସୃଷ୍ଟିହେବ ତାହାହେଲେ କ'ଣ ଆମ ରାଜ୍ୟଟି ଏକ ପୋଲିସ ଷ୍ଟେଟ୍‌ରେ ପରିଣତ ହେବ ?

Digitized by srujanika@gmail.com

ରାଜନୈତିକ ଦଳମାନେ ସ୍ପଷ୍ଟମତ ଦିଅନ୍ତୁ ଏପରି ସମସ୍ୟାର ସମାଧାନ କେଉଁଠି ? ଆଜି ବିଶ୍ୱରେ ଆମେରିକାର ଦାଦାଗିରି ନିରୀହ ଲୋକଙ୍କ ଉପରେ ଯୁଦ୍ଧ ଥୋପି ଦେଉଛି । ଅମାନୁଷିକତା ହିଁ ରାଜତ୍ୱ କରୁଛି । ବର୍ତ୍ତମାନ ଆମ ଦେଶର ସରକାରମାନେ ମଧ୍ୟ ଲୋକଙ୍କ ଉପରେ ଯୁଦ୍ଧକୁ ଥୋପି ଦେଉଛନ୍ତି ବିଭିନ୍ନ ଆଇରେ ମାନସିକତା ହେଉଛି ଜନତାର ଅଧିକାର ଉପରେ ଆକ୍ରମଣ । ଆର୍ଥିକ ବିଷମତା ଓ ସାମ୍ରାଜ୍ୟବାଦୀ ଆର୍ଥିକ ପ୍ରଭୁତ୍ୱ ସାଧାରଣ ଗରିବ ଜନତା ବିଶେଷ କରି ଆଦିବାସୀମାନଙ୍କୁ ସର୍ବହରା କରାଇବା ପ୍ରକ୍ରିୟାକୁ ନିର୍ବାଚିତ ସରକାର ଓ ସେହି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଦଲାଲ ହୋଇଥିବା ରାଜନୈତିକ ଦଳ ଓ ନେତାମାନେ ସହଯୋଗ କରୁଛନ୍ତି । ଏପରି ସଂକଟ ବେଳେ ଅଧିକାର ପାଇଁ ଶୋଷିତ ଜନତା ସଂଗ୍ରାମ କରିବା ଲାଗି ଆଗକୁ ଆସିଲା ବେଳେ ତା' ସହ ରହିବ କି ନାହିଁ ଦଳମାନେ ସ୍ପଷ୍ଟ କରନ୍ତୁ । ବର୍ତ୍ତମାନ ଓଡ଼ିଶାରେ କେବଳ ରାଜନୈତିକ ସୁବିଧା ପାଇଁ ବିବୃତିଟିଏ ଦେଇ ଗୁଳିକାଣ୍ଡର ନିନ୍ଦାକରିଦେଲେ ଚଳିବ ନାହିଁ । ଏହା ପ୍ରତାରଣା ହେବ ଯଦି ଆଦିବାସୀଙ୍କ ଅଧିକାର ପାଇଁ ନିଜର ଭୂମିକାକୁ ସ୍ପଷ୍ଟ କରାନଯାଏ । ଆଜି ରାଇଘରରେ ଯାହାହେଲା ତାହା ପୁଣି ଅନେକ ସ୍ଥାନରେ ହେବ । ସରକାରଙ୍କ ଆଖିକୁ ଦିଶୁ ନାହିଁ, କାନକୁ ଶୁଭୁନାହିଁ । ପାଗଳ ପରି ଶାସନ ଦଣ୍ଡକୁ ଧରି ଚାଲିଛି ପ୍ରଶାସନ । ଏପରି ସରକାରକୁ ଜବାବ ଦେବ କିଏ ? ମାଝିଗୁଡ଼ା, କାଶୀପୁର ପରେ ରାଇଘରରେ ପୋଲିସ ଗୁଳିକାଣ୍ଡର ପୁନରାବୃତ୍ତି ପରେ ପୁଣି ଭବିଷ୍ୟତରେ ବାରଂବାର ଘଟିବ । ଏହି ଘଟଣାଗୁଡ଼ିକୁ ଅନୁଧ୍ୟାନ କରି ଆଦିବାସୀଙ୍କ ଅଧିକାରକୁ କେନ୍ଦ୍ର କରି ରାଜନୈତିକ ବିଚାର ଏକାନ୍ତ ଜରୁରୀ । ବିକଳ୍ପ ଖୋଜୁଥିବା କିମ୍ବା ବିକଳ୍ପ ପାଇଁ ଉଦ୍ୟମଶୀଳ ରାଜନୈତିକ ବ୍ୟକ୍ତି ଓ ସଂଗଠନମାନେ ନୂଆ ବିଚାର କରନ୍ତୁ ରାଜନୀତିର ପରିବର୍ତ୍ତନ ପାଇଁ । ନଚେତ ଗଣତାନ୍ତ୍ରିକ ଅଧିକାର ଖତମ ହୋଇଯିବ । ବର୍ବରତା ହିଁ ଆମକୁ ଶାସନ କରୁଥିବ ।



Digitized by srujanika@gmail.com

# ଲୋୟର ସୁକତେଲ ନଦୀବନ୍ଧ ପ୍ରକଳ୍ପ କେତୋଟି ପ୍ରଶ୍ନର ଉତ୍ତର ଖୋଜିବା କି ?

ବଲାଙ୍ଗିର ଜିଲ୍ଲାର ପ୍ରତ୍ୟେକ ଗ୍ରାମକୁ ଜଳଯୋଗାଣ ବ୍ୟବସ୍ଥା ଏକାନ୍ତ ଜରୁରୀ । କିନ୍ତୁ ଗୋଟିଏ ଦୁଇଟି ବଡ଼ ବନ୍ଧ ନିର୍ମାଣ କରି ବଲାଙ୍ଗିର ସମସ୍ତ ଅଞ୍ଚଳର ଜନତାଙ୍କୁ ଆବଶ୍ୟକ ପାଣି ଯୋଗାଇ ଦିଆଯାଇପାରିବକି ? ଏହାର ଉତ୍ତର ନିଶ୍ଚିତ ଅସମ୍ଭବ ବୋଲି ସରକାର ଓ ସମସ୍ତେ କହିବେ । ତାହାହେଲେ ବିଦେଶରୁ ବହୁ ଅର୍ଥ ଋଣକରି ବଡ଼ ବଡ଼ ପ୍ରକଳ୍ପ ନିର୍ମାଣ କରି ଆୟ ଠାରୁ ଅଧିକ ବ୍ୟୟ କରିବା ବଦଳରେ ସେହି ଅର୍ଥରେ ସମଗ୍ର ଜିଲ୍ଲାର ଜଳ ସଂପଦ ତଥା ଜଳଉତ୍ସକୁ ଛୋଟ ଛୋଟ ଆଞ୍ଚଳିକ ଯୋଜନା ଜରିଆରେ ବ୍ୟବହାର କରିବା ପାଇଁ ଉଦ୍ୟମ କାହିଁକି କରାଯାଉନି ? ନଦୀ ଓ ନାଳର ବର୍ଷାଜଳକୁ ଛୋଟ ଛୋଟ ବନ୍ଧ ଓ ଛଳଛାୟା ନିର୍ମାଣ କରି ସଂରକ୍ଷିତ ରଖାଯାଇପାରିବ । ନଦୀକୁ ନିକଟସ୍ଥ ଗାଁ ମାନଙ୍କର ଜଳାଶୟଗୁଡ଼ିକୁ ଗଭୀର ଓ ପ୍ରଶସ୍ତ କରିବା ସହ ନୂଆ ଜଳାଶୟ ଖନନ କରି ଛୋଟ ଛୋଟ କେନାଲ ଜରିଆରେ ସିଧା ପାଣିକୁ ମହଜୁଦ ରଖାଯିବା ସହ ଖରିଫ ଫସଲକୁ ମରୁଡ଼ିରୁ ରକ୍ଷା କରାଯାଇ ପାରିବ । ଏହାଦ୍ୱାରା ଭୂତଳ ଜଳସ୍ତର ବୃଦ୍ଧି ହେବା ଦ୍ୱାରା ଉଠା ଜଳସେଚନ ଓ କୂଅ ଦ୍ୱାରା ରବି ଫସଲ ଉତ୍ପାଦନ କରାଯାଇ ପାରିବ ।

ଏହି ପ୍ରକଳ୍ପଗୁଡ଼ିକୁ କିପରି ସଫଳତାର ସହ କାର୍ଯ୍ୟ କରାଯାଇପାରିବ ଆଞ୍ଚଳିକ ସ୍ତରରେ ଗ୍ରାମବାସୀଙ୍କୁ ସାମିଲ କରି ସେମାନଙ୍କ ପରଂପରାଗତ ଜ୍ଞାନ ଓ ଅନୁଭୂତି ସହ ବୈଷୟିକ କୌଶଳକୁ ଯୋଡି ଦିଆଯାଇ ସ୍ୱଳ୍ପ ଅର୍ଥ ବ୍ୟବସ୍ଥା କରିବାକୁ ନୀତିଗତ ନିଷ୍ପତ୍ତି ସରକାର କାହିଁକି ନେଉନାହାନ୍ତି ? ଏପରି ନିଷ୍ପତ୍ତିର କାର୍ଯ୍ୟକାରିତା ହୋଇପାରିଲେ ଯୋଜନାର ବିକେନ୍ଦ୍ରୀକରଣ ସମ୍ଭବପର ।

ଆଉ ବଡ଼ ବଡ଼ ପ୍ରକଳ୍ପର ଗ୍ରହଣୀୟତା ରହିବ ନାହିଁ । ବିଶ୍ୱସ୍ତରରେ ବହୁ ବିଶେଷଜ୍ଞ ଏପରି ମତ ପ୍ରକାଶ କରିସାରିଲେଣି । ଏପରିକି ଏଥିପାଇଁ ଖର୍ଚ୍ଚ ମଧ୍ୟରୁ ଏକ ବଡ଼ ଅଂଶ କଣ୍ଟ୍ରାକ୍ଟର, ଇଂଜିନିୟର ଓ ରାଜନେତାମାନଙ୍କ ପକେଟକୁ ଯାଉଛି ଓ ପ୍ରକଳ୍ପର ସ୍ଥାୟିତ୍ୱ ପ୍ରଶ୍ନବାଚୀ ହୋଇଯାଉଛି । ବର୍ତ୍ତମାନ ସମୟରେ ଚାଷ ଓ ଚାଷୀଙ୍କ ନାମରେ ଯେଉଁ ବଡ଼ ଜଳ ପ୍ରକଳ୍ପ ହୋଇଛି, ପ୍ରକଳ୍ପ ଶେଷ ହୋଇଗଲା ପରେ

Digitized by srujanika@gmail.com

ଚାଷୀକୁ ପାଣି ଯୋଗାଣ ଗୌଣ ହୋଇଯାଇ ବିଦ୍ୟୁତ ଉତ୍ପାଦନ ପ୍ରାଥମିକ ଓ ମୁଖ୍ୟ ଲକ୍ଷ୍ୟ ହୋଇଯାଉଛି । କୋରାପୁଟର ଅପର କୋଲାବ ଯୋଜନାରୁ ବିଦ୍ୟୁତ ଉତ୍ପାଦନକୁ ଯେତିକି ଗୁରୁତ୍ୱ ଦିଆଯାଇଛି, ଚାଷକୁ ଜଳଯୋଗାଣ ଅତି କମ୍ ଓ ପ୍ରକୃତ ଧାର୍ଯ୍ୟ ଲକ୍ଷ୍ୟ ପୂରଣ ପାଇଁ ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରି ନାହିଁ । ଏପରିକି ହଜାର ହଜାର ବିସ୍ଥାପିତ ଆଦିବାସୀ ପରିବାରମାନଙ୍କର ଠିକଣା ମିଳୁନାହିଁ । ଯେଉଁମାନଙ୍କୁ ଏବେ ବି କ୍ୟାମ୍ପ କରି ରଖାଯାଇଛି ସେହି ଗ୍ରାମମାନଙ୍କୁ ରାଜସ୍ୱ ଗ୍ରାମର ଘୋଷଣା ହୋଇନାହିଁ ଓ ସେମାନଙ୍କୁ ଜଳସେଚିତ ଜମି ଦିଆଯାଇନାହିଁ । ସେହିପରି ରେଙ୍ଗାଲି ପ୍ରକଳ୍ପରୁ ଚାଷୀଙ୍କୁ ଜଳଯୋଗାଣ କାର୍ଯ୍ୟକ୍ରମ ସମ୍ପୂର୍ଣ୍ଣ କରିବାକୁ ଆଜିର ଦିନରେ ଦୁଇ ହଜାର କୋଟି ଟଙ୍କାରୁ ଅଧିକ ଅର୍ଥ ଆବଶ୍ୟକ । ତାହା କେବେ ହେବ ସରକାରଙ୍କ ପାଖରେ ଉତ୍ତର ନାହିଁ । ଇନ୍ଦ୍ରାବତୀ ପ୍ରକଳ୍ପର ପରିଣତି ମଧ୍ୟ ସେୟା ।

ଲୋୟର ସୁକତେଲ ଜଳ ପ୍ରକଳ୍ପ ପାଇଁ ପ୍ରାୟ ୨୧୮ କୋଟି ଟଙ୍କା ମୂଲ୍ୟ ଧାର୍ଯ୍ୟ କରାଯାଇଥିଲା, କିନ୍ତୁ କାର୍ଯ୍ୟକାରୀ ହୋଇ ଶେଷ ହେଲାବେଳକୁ ଏକ ହଜାର କୋଟି ଟଙ୍କାରେ ପହଞ୍ଚିବ । ସେତେବେଳକୁ ସରକାର କେଉଁଠି ଅଟକି ଯିବେ କିମ୍ବା ପ୍ରକଳ୍ପର ଦିଗ କେଉଁ ଆଡ଼କୁ ଯିବ କାହା ପାଖରେ ଉତ୍ତର ଅଛି କି ? ବର୍ତ୍ତମାନ କେନ୍ଦ୍ର ଓ ରାଜ୍ୟ ସରକାରମାନେ ଜଳସଂପଦକୁ ଘରୋଇକରଣ କରିବା ପାଇଁ ନୀତି ଘୋଷଣା କରିସାରିଲେଣି ଓ ସେହି ଦିଗରେ ନଦୀ ଓ ଜଳଭଣ୍ଡାରର ପାଣି ବିଭିନ୍ନ ବିଦେଶୀ ଓ ଦେଶୀ କଂପାନୀମାନଙ୍କୁ ଜଳବିକ୍ରି କରିବାକୁ ଲିଜ ଦେବା ଆରମ୍ଭ କଲେଣି । ନିକଟରେ ଓଡ଼ିଶା ସରକାରଙ୍କ ଜଳନୀତି ଚିଠା ୨୦୦୩ରେ ସ୍ପଷ୍ଟ ଭାବେ କୁହାଯାଇଛି ଯେ ସରକାର ଯେତେବେଳେ ଚାହିଁବେ ଜଳର ସୁପରିଚାଳନା ଓ ଯୋଗାଣକୁ ଲାଭଦାୟକ ଓ ଦକ୍ଷ କରିବାପାଇଁ ଘରୋଇକରଣ ହେବ ଓ ଘରୋଇ ପୁଞ୍ଜିକୁ ସ୍ୱାଗତ କରାଯିବ ଏବଂ ସେହି ବ୍ୟୟସହ ଲାଭକୁ ମିଶାଇ ଜଳର ମୂଲ୍ୟ ନିର୍ଦ୍ଧାରିତ ହେବ । ଆଜି ଓଡ଼ିଶା ସରକାର ଯେଉଁଠି ନିଜର କର୍ମଚାରୀଙ୍କୁ ଦରମା ଦେବାକୁ ଡିଏଫ୍ଆଇଡ଼ି, ବିଶ୍ୱବ୍ୟାଙ୍କ ଓ ଅନ୍ୟଠାରୁ ଋଣ ଆଣୁଛି ସେହି ସରକାର ନୂତନ ପ୍ରକଳ୍ପ ପାଇଁ ଆବଶ୍ୟକ ଅର୍ଥ ଆଣିବ କେଉଁଠୁ ? ପୁଣି ନିକଟରେ ଓଡ଼ିଶା ବିକାଶ ରିପୋର୍ଟରେ ବିଶେଷଜ୍ଞମାନେ କହିଛନ୍ତି ଯେ ରାଜ୍ୟରେ ୧୦୦ ଟଙ୍କାର ଉନ୍ନୟନ ଖର୍ଚ୍ଚ ପାଇଁ ଚାରିଶତ ଟଙ୍କା ଋଣ କରିବାକୁ ପଡୁଛି । ଏଥିରୁ ଆମେ ବୁଝିପାରିବା ଯେ ଲୋୟର ସୁକତେଲ, ଲୋୟର ଇନ୍ଦ୍ର ଏବଂ ଓଡ଼ିଶାରେ ଯେଉଁଠିକି ପ୍ରକଳ୍ପ ହେବ ତାହାର ଭବିଷ୍ୟତ ରୂପରେଖ ଓ କଳ୍ପନା କ'ଣ ହେବ ସହଜରେ ହିସାବ କରିପାରିବା, କିନ୍ତୁ ସରକାର ନିଜେ ଏଥିପାଇଁ ସଚେତନ କି ? ତାହାହେଲେ ଲୋୟର ସୁକତେଲର ପ୍ରକଳ୍ପ ଖର୍ଚ୍ଚ ବାସ୍ତବ ଖର୍ଚ୍ଚର ୪ ଗୁଣ ବୃଦ୍ଧି

Digitized by srujanika@gmail.com

ହେଉଥିବ । ଏହାର ପରିସମାପ୍ତି କେଉଁଠି ? ଶେଷରେ ସରକାର ଏହି ପ୍ରକଳ୍ପକୁ ସରକାରୀ ବ୍ୟୟ ଓ ଋଣର ଭରଣା କରିବା ପାଇଁ ଘରୋଇ କଂପାନୀ ହାତରେ ଟେକି ଦେଇପାରନ୍ତି କିମ୍ବା ଆରମ୍ଭରେ ଯଦି ଉକ୍ତ ଜଳଭଣ୍ଡାର ନିର୍ମାଣକୁ ବିଶ୍ୱବ୍ୟାଙ୍କର ଚାପରେ ବିଦେଶୀ କଂପାନୀକୁ ହସ୍ତାନ୍ତର କରି ଦେଇପାରନ୍ତି । ଯେତେବେଳେ ଘରୋଇ ପୁଞ୍ଜି ବ୍ୟବହାର ହେବ ସେତେବେଳେ ଯେଉଁ ସର୍ତ୍ତ ରହିବ ତାହା ଆଜି ଅପେକ୍ଷାରେ ଥିବା ଜଳସେଚିତ ଅଞ୍ଚଳର ଚାଷୀ କିମ୍ବା ବଲାଙ୍ଗିର ସହରବାସୀ ପାଣି କିଣି ପାରିବେ କି ? ଜଳର ଦାମ ସେହି ଅନୁଯାୟୀ ଧାର୍ଯ୍ୟ ହେବ ଯାହା ଏକ କର୍ପୋରେଟ ପରିଚାଳନାରେ ହୁଏ ।

ପୁଣି ଉକ୍ତ ପାଣିକୁ ଚାଷପାଇଁ ଦିଆଯିବକି ନାହିଁ ସେତେବେଳେ ଠିକ୍ କରାଯିବ । କାରଣ କୌଣସି ଶିଳ୍ପ ଯଦି ଅଧିକ ପଇସା ଦେଇ ଜଳ ନେବ ସେଥିପାଇଁ କଂପାନୀ ତାକୁ ପ୍ରାଥମିକତା ଦେବ । ପୁଣି ବିଦ୍ୟୁତ ଉତ୍ପାଦନ ପାଇଁ ଅଗ୍ରାଧିକାର ଦିଆଯିବ । ସେତେବେଳେ ଚାଷପାଇଁ ଅଗ୍ରାଧିକାର ବଦଳିଯିବ । ଏକଥା ଭାରତ ଓ ଓଡ଼ିଶା ସରକାର ନିଜ ଜଳନୀତି ଚିଠାରେ ସ୍ପଷ୍ଟଭାବେ ଲେଖି ଦେଇଛନ୍ତି । ଆଜିର ମୁଖ୍ୟ ପ୍ରଶ୍ନହେଲା ଏସବୁ ସମ୍ଭାବନାଗୁଡ଼ିକୁ ଜଳସେଚିତ ଅଞ୍ଚଳର ଚାଷୀମାନେ ସାମନା କରିବାକୁ ପ୍ରସ୍ତୁତ ଅଛନ୍ତି କି ?

ଚଢ଼ାଦରରେ ଛୋଟ ଓ ମଧ୍ୟମ ଧରଣର ଚାଷୀ ଜଳକୁ କିଣି ପାରିବେ କି ? ଅସମ୍ଭବ । ଲୋୟର ସୁକତେଲ ପ୍ରକଳ୍ପର ପ୍ରକୃତ ଲାଭର ଅଧିକାରୀ ହେବେ ବଡ଼ ଜମି ମାଲିକମାନେ । ଯଦି ଜଳସେଚନ ଦାମ ବଢ଼ିଯାଏ, ସେମାନେ କଂପାନୀମାନଙ୍କ ସହ ମିଶି କର୍ପୋରେଟ ଚାଷ କରି ପାରନ୍ତି କିମ୍ବା ସେମାନଙ୍କ ଜମି ଅଧିକ ଦାମରେ ବିକ୍ରି କରିପାରନ୍ତି; କିନ୍ତୁ ଛୋଟ ଓ ମଧ୍ୟମ ଧରଣର ଚାଷୀ ଜଳକିଣିନପାରି ଜମି ଛାଡ଼ିବାକୁ ବାଧ ହେବେ ଓ କଂପାନୀମାନେ ଶସ୍ତାରେ ଜମିକିଣିବା ସହଜ ହୋଇଯିବ । ଏପରିକି ସହରମାନଙ୍କ ପାଇଁ ପିଇବା ପାଣି ମହଙ୍ଗା ହୋଇଯିବ । ଆଜିର ଅତି ଗୁରୁତ୍ୱପୂର୍ଣ୍ଣ ଓ ମୌଳିକ ପ୍ରଶ୍ନହେଲା ଓଡ଼ିଶା ସରକାରଙ୍କ ନୂତନ ଜଳନୀତି ଘୋଷଣା ହୋଇସାରିଲା ପରେ ଲୋୟର ସୁକତେଲ ପ୍ରକଳ୍ପ ଜଳ ଘରୋଇକରଣରୁ ସମ୍ପୂର୍ଣ୍ଣ ମୁକ୍ତ ରହିବ କି ? ଲୋକେ ସରକାରଙ୍କୁ ଏକଥା ପଚାରିବେ କି ? ସରକାରଙ୍କ ଠାରୁ ଗ୍ୟାରେଣ୍ଟି ମିଳିବ କି ? ଯଦି ଗ୍ୟାରେଣ୍ଟି ମିଳିବ, ତାହାହେଲେ ସରକାର ଦ୍ୱାରା ଘୋଷିତ ଜଳନୀତି ଚିଠାରେ ଉଲ୍ଲେଖିତ ଜଳସଂପଦର ଘରୋଇକରଣ ପ୍ରସ୍ତାବଗୁଡିକୁ ଅନୁଚ୍ଛେଦ ୬, ୧୪ ଓ ୧୬କୁ ସଂପୂର୍ଣ୍ଣଭାବେ ପ୍ରତ୍ୟାହାର କରିନେବେ କି ?

Digitized by srujanika@gmail.com

ବଲାଙ୍ଗିର ଜିଲ୍ଲାର ଦଳମତ ନିର୍ବିଶେଷରେ ମନ୍ତ୍ରୀ, ବିଧାୟକମାନେ ଏକଥା କରାଇ ପାରିବେ କି ? ଯଦି ନାହିଁ, ଜିଲ୍ଲାର ପଞ୍ଚାୟତ ଓ ନଗରମାନଙ୍କର ନିର୍ବାଚିତ ପ୍ରତିନିଧିମାନେ ମିଳିତଭାବେ ସ୍ୱର ଉତ୍ତୋଳନ କରି ସରକାରଙ୍କ ଠାରୁ ଜବାବ ମାଗି ପାରିବେ କି ?

ଆଉ ଏକ ମୁଖ୍ୟ ପ୍ରଶ୍ନ ହେଲା, ବୁଡ଼ି ଅଞ୍ଚଳର ସ୍ୱାଧୀନ ଜନତାଙ୍କ ମୌଳିକ ଅଧିକାର ତଥା ବଞ୍ଚିବାର ଅଧିକାରକୁ ସ୍ୱୀକାର କରାଯାଉନି କାହିଁକି ? ଉକ୍ତ ପ୍ରକଳ୍ପର ଅନୁମୋଦନ ପୂର୍ବରୁ ପ୍ରଭାବିତ ଗ୍ରାମବାସୀଙ୍କ ସମ୍ମତି ନିଆଗଲା ନାହିଁ କାହିଁକି ? ପୁଣି ବଡ଼ ପ୍ରକଳ୍ପ ବଦଳରେ ଛୋଟ ଛୋଟ ପ୍ରକଳ୍ପ କରିଆରେ ଗ୍ରାମବାସୀମାନଙ୍କୁ ବିଶ୍ୱାସକୁ ନେଇ ସେମାନଙ୍କ ପାରଂପରିକ ଜ୍ଞାନ, କୌଶଳ ଓ ଜଳଉତ୍ସକୁ ବ୍ୟବହାର କରିବା ପାଇଁ ସମନ୍ୱିତ ପ୍ରକଳ୍ପମାନ ପରୀକ୍ଷାମୂଳକ ଭାବେ କାର୍ଯ୍ୟକାରୀ କରିବା ପାଇଁ ପଦକ୍ଷେପ କାହିଁକି ନିଆଯାଉ ନାହିଁ ? ଏପରିକି ଜଳସେଚିତ ଅଞ୍ଚଳର ଛୋଟ ଓ ମଧ୍ୟମ ଧରଣର ଚାଷୀଙ୍କୁ ଏଥିରେ ସଂପୃକ୍ତ କରାଯାଇ ବିକଳ୍ପ ଜଳ ପ୍ରକଳ୍ପ ପାଇଁ ଏବେବି ପଦକ୍ଷେପ ନେବାକୁ ସରକାର ଓ ପ୍ରଶାସନ ପ୍ରସ୍ତୁତ ରହିବେ କି ? ଦେଶର ବିଭିନ୍ନ ବିଶେଷଜ୍ଞ ବିନାମୂଲ୍ୟରେ ଆସି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ପରାମର୍ଶ ଦେବାକୁ ପ୍ରସ୍ତୁତ ଅଛନ୍ତି । ପ୍ରଥମେ ରାଜନେତାମାନେ ନିଜର ମାନସିକତା ବଦଳାଇବେ କି ?

ବୁଡି ଅଞ୍ଚଳ ସଂଗ୍ରାମ ପରିଷଦର ନେତୃତ୍ୱରେ ବିସ୍ଥାପିତ ହେବାକୁ ଥିବା ହଜାର ହଜାର ଆବାଳ ବୃଦ୍ଧ ବନିତା ନିଜର ଭିଟାମାଟି ପାଇଁ ଲଢ଼େଇ କରୁଛନ୍ତି । ଯେହେତୁ ସେମାନଙ୍କ ଜୀବିକା ନିଜ ଗାଁ ଜମି ଓ ପାଖ ଜଙ୍ଗଲରେ ସୁରକ୍ଷିତ । ଏପରିକି ଜମିହୀନ ପରିବାର ନିଜର ଜୀବିକା ଅର୍ଜନ କରି ଆସିଛି ସେହି ପରିସରରେ । ସେମାନଙ୍କ ବଞ୍ଚିବା ତଥା ଜୀବନ ଓ ଜୀବିକାର ମୌଳିକ ଅଧିକାରକୁ ସମ୍ବିଧାନ ସୁରକ୍ଷା ଦେଉଛି, କିନ୍ତୁ ଏହି ଅଧିକାର ଉପରେ ଆକ୍ରମଣ କରିବାପାଇଁ ଜମି ଅଧିଗ୍ରହଣ ଆଇନକୁ ସ୍ୱେଚ୍ଛାଚାରୀର ଖଣ୍ଡା ସ୍ୱରୂପ ବ୍ୟବହାର କରାଯାଉଛି । ପ୍ରଥମେ ନିଜବାସ ଓ ସଂପଦକୁ ଦେବେ କି ନାହିଁ କିମ୍ବା କିପରି ଦେବେ ସେହିବ୍ୟକ୍ତିମାନଙ୍କ ସ୍ୱଇଚ୍ଛାରେ କାହିଁକି ଛାଡ଼ି ଦିଆଯାଉନାହିଁ ? ସେହି ସ୍ୱାଧୀନତା ଲୋକଙ୍କୁ କାହିଁକି ଦିଆଯାଉ ନାହିଁ ? ଯେଉଁମାନେ ପ୍ରକଳ୍ପ ଦ୍ୱାରା ଉପକୃତ ହେବା ବୋଲି ଆଶା କରନ୍ତି ସେମାନେ ବୁଡି ଅଞ୍ଚଳର ଲୋକଙ୍କ ପ୍ରତି ସମ୍ବେଦନଶୀଳ ହେବେକି ? ବୁଡ଼ି ଅଞ୍ଚଳରେ ଜମି ଯେପରି ଅଧିଗ୍ରହଣ କରାଯାଇପାରୁଛି ସେହିପରି ଜଳସେଚିତ ଅଞ୍ଚଳର ଦଶ ଏକରରୁ ଅଧିକ ଥିବା ଜମି ମାଲିକ କ୍ଷତି ପୂରଣ ନେଇ ଜମି ଅଧିଗ୍ରହଣ କରାଯାଇ ବୁଡ଼ି ଅଞ୍ଚଳ

Digitized by srujanika@gmail.com

ପରିବାରକୁ ଜମି ବଦଳରେ ଜଳସେଚିତ ଜମି ଦିଆଯିବାକୁ ଆଇନ ହେବ କି ? ଏପରି ଏକ ପ୍ରଗତିଶୀଳ ଓ ନ୍ୟାୟୋଚିତ ପଦକ୍ଷେପକୁ ଜମି ମାଲିକମାନଙ୍କ ବିରୋଧକୁ ସମସ୍ତେ ମିଳିତ ଭାବେ ପ୍ରତିହତ କରି ସରକାରକୁ ବାଧ୍ୟ କରିବେ କି ?

ମୋର ଏହି ପ୍ରଶ୍ନଗୁଡ଼ିକ ବ୍ୟକ୍ତିଗତ ମତ ଉପରେ ଆଧାରିତ । ଆନ୍ଦୋଳନକାରୀମାନେ ନିଜ ଭିଟାମାଟିର ସୁରକ୍ଷା ପାଇଁ ସଂଗ୍ରାମ କଲାବେଳେ ପ୍ରକଳ୍ପର ସମର୍ଥକମାନେ ମୋ' ପରି ବ୍ୟକ୍ତିମାନଙ୍କ ପ୍ରତି ଭୁଲ ବୁଝିପାରନ୍ତି, କିନ୍ତୁ ଆଜି ମାନବିକ ଅଧିକାର ଜୀବନ ଓ ଜୀବିକାର ସୁରକ୍ଷା ପାଇଁ ସଂଗ୍ରାମରତ ମଣିଷମାନଙ୍କ ଅଧିକାରକୁ ଆଖି ବୁଜି ଦେଲେ ଚଳିବ ନାହିଁ । ପୁଣି ଭୁଲ ବିକାଶ ନୀତିରେ ପ୍ରଲୋଭିତ ସାଧାରଣ ଲୋକେ ପୁଣି ଯେତେବେଳେ ନିଜ ଅଧିକାର ହରାଇବେ ବିନାଶର ଶିକାର ହୋଇ ପ୍ରାକୃତିକ ସଂପଦ ଉପରୁ ନିଜର ଅଧିକାର ହରାଇବେ ଓ ବେପାରୀଙ୍କ ହାତରେ ଜଳ, ଜମି, ଜଙ୍ଗଲ କିଣାବିକା ପାଇଁ ମୁନାଫାର ବସ୍ତୁ ହୋଇଯିବ, ସେତେବେଳେ ନେଡ଼ିଗୁଡ଼ କହୁଣୀକୁ ବୋହି ଯାଇଥିବ । ତେଣୁ ଆଜି ଏକ ନ୍ୟାୟୋଚିତ ବିକାଶ ପାଇଁ ମିଳିତଭାବେ ସୁଖ ଦୁଃଖରେ ସମଭାଗୀ ହୋଇ ବିକଳ୍ପ ଖୋଜିବା ସହ ଏକାଠି ସହାବସ୍ଥାନ ପାଇଁ ବିଚାର କରିବାକୁ ପ୍ରସ୍ତୁତ କାହିଁକି ନରହିବା ? ବିକାଶ ନାମରେ ବଲାଙ୍ଗୀର ଜିଲ୍ଲା ହେଉ କିମ୍ବା ଓଡ଼ିଶାର ଯେକୌଣସି ସ୍ଥାନ ହେଉ, ଜଳର ଘରୋଇକରଣ ନହେଉ ଓ ପ୍ରତ୍ୟେକଙ୍କ ପାଖରେ ଜଳ ଓ ଜମିର ସମବଣ୍ଟନ ସହ ବିଦେଶୀ ଋଣ ମୁକ୍ତ ପ୍ରକଳ୍ପ ପାଇଁ ବିକଳ୍ପକୁ ସ୍ୱାଗତ କରାଯାଉ । ରାଜ୍ୟ ପ୍ରଶାସନ ଏସବୁ ପ୍ରଶ୍ନର ଉତ୍ତର ଖୋଜିବାକୁ ଦି'ପହଣ୍ଡ ପଛକୁ ଯାଇ ପୁଣି ପହଣ୍ଡେ ଆଗକୁ ଆସିବେ କି ?

ରାଜନେତା ତଥା ବିଭିନ୍ନ ରାଜନୈତିକ ନେତୃମଣ୍ଡଳୀ ଲୋକଙ୍କ ପାଖରେ ସତକଥା କହିବାକୁ ପ୍ରସ୍ତୁତ ରହିବେ କି ? କାରଣ ଏସବୁ ପ୍ରଶ୍ନର ଉତ୍ତର ରାଜନେତାମାନଙ୍କ ପାଖରେ ଅଛି । ଯେହେତୁ ଶେଷ ନିଷ୍ପତ୍ତି ସେମାନେ ନିଅନ୍ତି ।

ସର୍ବୋପରି ଓଡ଼ିଶା ସରକାର ଓ ସରକାରୀ ବିଶେଷଜ୍ଞମାନେ ବଡ ପ୍ରକଳ୍ପ ନାମରେ ହଜାର ହଜାର କୋଟି ଟଙ୍କା ବରବାଦ ନକରି ବଲାଙ୍ଗିର ଜିଲ୍ଲାର ପ୍ରତ୍ୟେକ ଗ୍ରାମରେ ପିଇବା ପାଣି ସାଙ୍ଗକୁ ବର୍ଷାପାଣିର ସଂରକ୍ଷଣ ବିକେନ୍ଦ୍ରୀକରଣ ତଥା ଛୋଟ ଛୋଟ ପ୍ରକଳ୍ପ ଜରିଆରେ କିପରି ସମ୍ଭବପର ହେବ ସେଥିପାଇଁ ଏକ ଦଶବର୍ଷିଆ ସମୟ ନିର୍ଘଣ୍ଟ ଯୋଜନା ପ୍ରସ୍ତୁତ କରିବାକୁ ଇଚ୍ଛାଶକ୍ତି ସହ ଆନ୍ତର୍ଜାତିକ ଉଦ୍ୟମ କରିବେ କି ? ଏହି ବିକଳ୍ପରେ ମରୁଡ଼ିର ଏକ ବଡ଼ ଅଂଶ ସମାଧାନ ହୋଇପାରିବ ଓ ଦାଦନ ଶ୍ରମିକମାନେ ନିଜ ଗାଁକୁ ଫେରି ଆସି ନିଜର ଜୀବିକା ପାଇପାରିବେ ।

Digitized by srujanika@gmail.com

## ମଣିଷ ପ୍ରତି ମଣିଷ ଦରଦୀ ହେବନି ?

## ଏବେ ବି ରାମ ପ୍ରଧାନଙ୍କ ଲୁହ ବହୁଛି

୨୦୦୫ ଅଗଷ୍ଟ ୩୦ ଓ ୩୧ ତାରିଖ ବଲାଙ୍ଗିର ଜିଲ୍ଲାର ଲୋୟର ସୁକତେଲ ପ୍ରକଳ୍ପ ବୁଡ଼ି ଅଞ୍ଚଳର ଗାଁମାନଙ୍କରେ ବୁଲି ଦେଖିଲି । ଗଡ଼ ଶଙ୍କର ଡୁଙ୍ଗୁରିପାଲିର ଅଶୀଏ ବର୍ଷର ବୃଦ୍ଧ ରାମ ପ୍ରଧାନ ବାରଣ୍ଡାରେ ବସି ହାତ, ପିଠି ଦେଖାଇ କହୁଥାନ୍ତି 'ବାବୁ କି ମାଡ଼ । ଏମିତି ଦଣ୍ଡ ଆମ ଉପରେ ରଜା ଅମଳରେ କେବେ ପଡ଼ିବା ଦେଖିନଥିଲୁ ।'' କହି କହି କୋହରେ କାନ୍ଦୁଥାନ୍ତି ଓ କହୁଥାନ୍ତି ଦେଶ ସ୍ୱାଧୀନ ହୋଇଛି ବୋଲି ଆମେ ଭାବୁନାହୁଁ ..... । ଏହା ଶୁଣିବାବେଳେ ଯେକୌଣସି ମଣିଷ ଆଖିରୁ ଲୁହ ବହିବା ସ୍ୱାଭାବିକ । ମଣିଷଟା ସବୁବେଳେ ଦରଦୀ । ହେଲେ ! ଖାକି ପିନ୍ଧା ଦଣ୍ଡ ଓ ବନ୍ଧୁକଧାରୀ ପୁଲିସ, କ୍ଷମତାସୀନ ଅଧିକାରୀ ଓ ରାଜନେତାମାନେ କ'ଣ ମଣିଷ ନୁହଁନ୍ତି ? ମେ ୧୧ ତାରିଖରେ ବୁଡ଼ି ଅଞ୍ଚଳବାସୀ ବିସ୍ଥାପନକୁ ଗ୍ରହଣ କରିନପାରି ପ୍ରକଳ୍ପ ନିର୍ମାଣକୁ ପ୍ରତିରୋଧ କରିଥିଲେ ବୋଲି ପ୍ରଶାସନର ନିଷ୍ପତ୍ତି ଥିଲା ଦମନ କରିଆରେ ହିଁ ପ୍ରତିବାଦର ଉତ୍ତର ଦିଆଯାଇପାରେ । ଏହାଦ୍ୱାରା ରାଜ୍ୟର ଗଣତାନ୍ତ୍ରିକ ଜନ ଆନ୍ଦୋଳନ ଚାଲିଥିବା ସବୁଠି ଗଣତାନ୍ତ୍ରିକ ଅଧିକାରତକ ମୂଲ୍ୟହୀନ ହୋଇପଡ଼ିଛି ।

ରାମ ପ୍ରଧାନଙ୍କ ଲୁହର ସ୍ରୋତରେ ଅମଣିଷମାନଙ୍କ ମେ ୧୧ ତାରିଖର ବର୍ବର ତାଣ୍ଡବଲୀଳାର ଚିତ୍ର ଦେଖି ହେଉଥିଲା । ଗାଁର ଘର ଭିତରେ ଜଣେ ଗର୍ଭବତୀ ନାରୀ ପୋଲିସର ଲାଠି ଓ ଗୋଇଠା ମାଡ଼ରୁ ବାଦ ପଡ଼ିନଥିଲେ । ଏହି ଘଟଣା ପରେ ଜନ୍ମାଷ୍ଟମୀରେ ତାଙ୍କରି ଏକ ପୁତ୍ର ଜନ୍ମ ହୋଇଛି, ତାର ନାମ ଶ୍ରୀକୃଷ୍ଣ ରଖାଯାଇଛି । ଅଞ୍ଚଳବାସୀଙ୍କ ଭାବନାରେ ସେ କଂସକୁ ବଧ କରିବ । କଂସଟି କିଏ ? ଆଉ ଜଣେ ଷାଠିଏ ବର୍ଷର ବୃଦ୍ଧା ମା' ତୁଳସୀ ବାଗ୍ ମତେ ଦେଖି କହିଲେ ''ପୁଅରେ ମୋ' ଉପରେ ବି ମାଡ଼ । ହେଲେ, ଘର ଭିତରକୁ ଯାଇ ଝିଅ ବୋହୂମାନଙ୍କୁ ଟାଣି ଆଣିବା ଇଜ୍ଜତ ଉପରେ ଆକ୍ରମଣ ନୁହେଁକି ? କି ଦୋଷ କଲୁ ଆମେ ? ଆମର ଜମିବାଡ଼ିରେ କ୍ଷେତ କରୁଛୁ । ଜଙ୍ଗଲରୁ ମହୁଲ, ଚାରକୋଳି ସଂଗ୍ରହ କରୁଛୁ । ମୋ' ଦୁଇବୋହୂ ଏ ବର୍ଷ ପାଞ୍ଚ ହଜାର ଲେଖାଏଁ ପାଇଛନ୍ତି ସେଥିରୁ । ଏଇଟା ଆମକୁ ମିଳିବକି ବାବୁ ଭିଟାମାଟି ଛାଡ଼ିଦେଲେ ?''

ଏସବୁକୁ ଶୁଣି ଲେଖିବା ପରେ କେହି ଭାବିପାରନ୍ତି – ଅତି ରଂଜିତ ବୋଲି । ନା' ଏକଥା ନୁହଁ । ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ମଣିଷ ପ୍ରତି ବ୍ୟବହାର, ତାର

Digitized by srujanika@gmail.com

ଭାବନା ଓ ଅଧିକାର ପ୍ରତି ପ୍ରଶାସନର ଦାୟିତ୍ୱବୋଧ ଏକ ସଭ୍ୟ ସମାଜର ସ୍ୱଭାବ ହେବାର ଆବଶ୍ୟକତା ପାଇଁ ଏକ ସଚେତନଶୀଳ ନାଗରିକର ଆବେଦନ । ପ୍ରକଳ୍ପ ପ୍ରତି ବିରୋଧ କିମ୍ୱା ସମର୍ଥନ ଏଠି ମୁଖ୍ୟ ପ୍ରସଙ୍ଗ ନୁହଁ । ମଣିଷର ସ୍ୱାଭିମାନ ପ୍ରତି ଏକ ଚିନ୍ତନ ପାଇଁ ଆହ୍ୱାନ ।

ପ୍ରକଳ୍ପ, କାରଖାନା ଏପରି ଅନେକ ନାମରେ କେବଳ ବିକାଶର କଥା କୁହାଯାଉଛି । ଏହି ପ୍ରକ୍ରିୟାରେ ଯେଉଁମାନେ ବିନାଶର ଶିକାର ହେଉଛନ୍ତି, ସେହି ଦୁଃଖଦ ଅଭିଯୋଗ ଗୁଡ଼ିକୁ ନ୍ୟାୟୋଚିତ ବାଟରେ ଶୁଣିବା ଓ ବିକଳ୍ପ ବାଟ ବାହାର କରିବାପାଇଁ କ'ଣ ଗଣତାନ୍ତ୍ରିକ ବ୍ୟବସ୍ଥା ସମର୍ଥ ନୁହଁ ବୋଲି ଅଗଣତାନ୍ତ୍ରିକ ଓ ଅମାନବୀୟ ହେବାକୁ ପଡୁଛି ପ୍ରଶାସନକୁ ? ନା ଅନ୍ଧ ଭାବରେ ପ୍ରଗତି ନାମରେ ସ୍ୱାଧୀନତାକୁ ବଳି ଦିଆଯାଉଛି ?

ୟୁଏନଡିପି ତରଫରୁ ଓଡ଼ିଶାର ଜଣେ ଆଇ.ଏ.ଏସ୍. ଅଫିସର ଅନୀତା ଅଗ୍ନିହୋତ୍ରୀ ନିକଟରେ ଲୋୟର ସୁକତେଲ ଜଳ ଭଣ୍ଡାର ପ୍ରକଳ୍ପକୁ ବିରୋଧ କାହିଁକି ଓ ପ୍ରକଳ୍ପର ଅନ୍ୟ ବିଷୟଗୁଡ଼ିକୁ ଅନୁଧ୍ୟାନମୂଳକ ସମୀକ୍ଷା କରି ଏକ ରିପୋର୍ଟ ଉପସ୍ଥାପନ କରିଛନ୍ତି । ସେଥିରେ ବୁଡ଼ି ଅଞ୍ଚଳବାସୀଙ୍କ ଅନୁଭବଗୁଡ଼ିକୁ ସ୍ଥାନିତ କରି ସେଠାର ଆର୍ଥିକ ସମୃଦ୍ଧି ଓ ଜୀବିକାର ସ୍ରୋତଗୁଡ଼ିକୁ ସ୍ୱୀକାର କରିଛନ୍ତି । ସେଗୁଡ଼ିକ କ୍ଷତିପୂରଣ ଥଇଥାନ ବ୍ୟବସ୍ଥାରେ ମିଳିବା ଅସମ୍ଭବ । ଅନ୍ୟ ପକ୍ଷରେ ଆଉ ଏକ ଦିଗ ପ୍ରତି ଗୁରୁତ୍ୱ ଦେଇଛନ୍ତି ଯେ ଏହି ନଦୀ ଜଳର ପରିମାଣ କମ୍ ଓ ବର୍ଷାର ଅଭାବ ଯୋଗୁଁ ଜଳଭଣ୍ଡାରରେ ଆବଶ୍ୟକ ଜଳ ରହିନପାରେ । ପ୍ରକଳ୍ପର ବ୍ୟୟ ଏକ ହଜାର କୋଟି ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି ହେବ । ଜଳସେଚନ ଦୃଷ୍ଟିରୁ ଏହା ଅତି ବ୍ୟୟବହୁଳ, କାରଣ ଏକର ପିଛା ସର୍ବାଧିକ ବ୍ୟୟ ଯାହାକି ରାଜ୍ୟରେ ଏହା ସର୍ବୋଚ୍ଚ । ଏପରି ଏକ ପ୍ରକଳ୍ପ କାର୍ଯ୍ୟକାରିତା ପୂର୍ବରୁ ସରକାର ସୁକତେଲ ନଦୀର ଜଳକୁ ବିକେନ୍ଦ୍ରିତ ପରିଯୋଜନା ଜରିଆରେ ବ୍ୟବହାର କରିବାକୁ ସ୍ଥାନୀୟ ପାରଂପରିକ ପଦ୍ଧତି ଓ କ୍ଷୁଦ୍ର ପ୍ରକଳ୍ପ ନିର୍ମାଣ ଚିନ୍ତା କରିବା ଉଚିତ । ମରୁଡ଼ି ପ୍ରବଣତାକୁ ଆଳ କରି ପ୍ରକଳ୍ପ ନିର୍ମାଣ କରି ଦେଲେ ପ୍ରକୃତରେ ମରୁଡ଼ିର ସମାଧାନ ସମ୍ଭବପର ହୁଏନା ।

ବର୍ତ୍ତମାନ ବେଦାନ୍ତ କଂପାନୀକୁ ତେଲନଦୀରୁ ଦୈନିକ ୩୦ ହଜାର ଘନ ମି. ଜଳ ଦିଆଯିବ । ଏଥିପାଇଁ କେସିଙ୍ଗାଠାରେ ଆନିକଟ ନିର୍ମାଣ ଚାଲିଛି । ଏହାପରେ ବଲାଙ୍ଗିର ସହରରେ ପିଇବା ପାଣିର ଉତ୍କଟ ଅଭାବକୁ ଡାକି ଅଣାଯାଇଛି । ବଲାଙ୍ଗିର ଜନତା ମିଳୁଥିବା ପାଣିରୁ ବଞ୍ଚିତ ହେବେ । ଏହାର ପ୍ରତିରୋଧ କରିବା ଅପେକ୍ଷା ସୁକତେଲ ପ୍ରକଳ୍ପ ଉପରେ ନିର୍ଭର କରିବା କେତେ ଯଥାର୍ଥ ତାହା ବି ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ବିସ୍ଥାପିତମାନଙ୍କ ଯନ୍ତ୍ରଣାକୁ ଆଖି ଆଗରେ ରଖି ବିଚାର କରିବା

Digitized by srujanika@gmail.com

ଏକାନ୍ତ ଜରୁରୀ । ଏଠି ଏକ ସମାଧାନର ସୂତ୍ର ମନକୁ ଆସୁଛି । ତାହା ହେଲା – ପ୍ରକଳ୍ପ ଦ୍ୱାରା ସର୍ବହରା ହେବାକୁ ଥିବା କୃଷିଜୀବୀମାନଙ୍କୁ ପ୍ରାକୃତିକ ନ୍ୟାୟ ଦେବାପାଇଁ ଜଳସେଚିତ ହେବାକୁ ଥିବା ବଡ଼ ବଡ଼ ଜମି ମାଲିକମାନଙ୍କ ଜମି ଅଧିଗ୍ରହଣ କରି ଜମି ବଦଳରେ ଜମି ଦେବାକୁ କାହିଁକି ସରକାର ଆଇନ କରୁ ନାହାଁନ୍ତି ? ଜମି ହରାଇବେ, ବାସ ହରାଇବେ, ଗ୍ରାମ୍ୟ ଚଳଣି, ପରଂପରା ଓ ସାଂସ୍କୃତିକ ଜୀବନକୁ ହରାଇବା ପରେ ସରକାର, ରାଜନେତା ଶିକ୍ଷିତ, ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀଙ୍କ ସଂବେଦନଶୀଳତାରୁ ବଞ୍ଚିତ ବାସ୍ତୁହରାମାନଙ୍କ ଜୀବିକାର ଅନିଶ୍ଚିତତା ଓ ସାମାଜିକ ଅସୁରକ୍ଷାର ଯନ୍ତ୍ରଣାର ଶବ୍ଦ ଚିତ୍କାର ପୋଲିସ ଲାଠିରେ ଆହତ ବୃଦ୍ଧ ରାମ ପ୍ରଧାନଙ୍କ କାନରେ ଲୁଚି ରହିଥିଲା । ତାକୁ ଆମ ସମସ୍ତଙ୍କୁ ଶୁଣିବାକୁ ପଡିବ ।

ବିସ୍ଥାପିତ ପରେ କ୍ଷତିପୂରଣ ନାମରେ ଅର୍ଥ ଧରାଇଦେଲା ପରେ ସାମାଜିକ ସୁରକ୍ଷା ବ୍ୟବସ୍ଥା ଭାଙ୍ଗିଯାଉଛି । ବୁଢ଼ା ବାପ ମା, ଅବିବାହିତ ଝିଅମାନେ ପୁଅମାନଙ୍କ ଦ୍ୱାରା ସଂପୂର୍ଣ୍ଣ ଅବହେଳିତ । ଏ ମଧ୍ୟରେ ଏଠାରେ କ୍ଷତିପୂରଣ ଗ୍ରହଣ କରିଥିବା ପରିବାରମାନଙ୍କରେ ଦୁଇ ମାସ ମଧ୍ୟରେ ଯୁବକ ପୁଅମାନେ କ୍ଷତିପୂରଣ ଅର୍ଥକୁ ମଟର ସାଇକେଲ, ପୁରୁଣା କାର ଓ ଟ୍ରାକ୍ଟରରେ ବ୍ୟୟ କରି ସେଗୁଡ଼ିକୁ ପୁଣି ଅଧା ଦରରେ ବିକି ଦେବାଳିଆ ହୋଇ ସାରିଲେଣି । ହତାଶ ହୋଇ ଜଣେ ଆତ୍ମହତ୍ୟା କରିଥିବା ବେଳେ ଆଉଜଣେ ଭକୁଡ଼ ନାମକ ଯୁବକଙ୍କୁ ଲୋକେ ବଞ୍ଚାଇ ଦେଲେ । ଆଉ ଜଣେ ଯୁବକ ଦିଲୀପ ସାହୁ ଜମିର କ୍ଷତିପୂରଣ ପାଇଁ ଦସ୍ତଖତ ଦେବାକୁ ମନା କରିବାରୁ ମା' ଓ ଦୁଇ ଅବିବାହିତ ଭଉଣୀଙ୍କୁ ମାଡ଼ ଦେଇ ଘରୁ ବାହାର କରିଦେଇଛନ୍ତି । ଲୋକଙ୍କ ମଧ୍ୟରେ ହତାଶର ଛାଇ ମାଡ଼ି ବସିଛି । ଏପରି ସ୍ଥିତି ପାଇଁ ବିସ୍ଥାପନ ନୀତି ଓ କର୍ତ୍ତାମାନେ ଦାୟୀ ନୁହନ୍ତି କି ? କାରଣ ଯେକୌଣସି ଯୋଜନାର ପରିଣାମ ସଂକ୍ରାନ୍ତରେ ମୂଲ୍ୟାୟାନ କରିବା ସର୍ବାଦୌ କର୍ତ୍ତବ୍ୟ । ବିସ୍ଥାପିତ ନହେବାପାଇଁ ମଣିଷର ଅଧିକାର ପ୍ରତି ଚିନ୍ତା ଓ ଚେତନାର ସହ ସିଭିଲ ସୋସାଇଟି, ବୁଦ୍ଧିଜୀବୀ ଓ ଯୋଜନା କର୍ତ୍ତାଗଣଙ୍କ ସମେତ ରାଜନେତାମାନେ ଆତ୍ମ ସମୀକ୍ଷା କରିବା ଆଜିର ଏକ ଗୁରୁତ୍ୱପୂର୍ଣ୍ଣ ଆହ୍ୱାନ ।

ଲୋୟର ସୁକତେଲ ହେଉ, କାଶୀପୁର ହେଉ, ଲାଞ୍ଜିଗଡ଼ ହେଉ କିମ୍ବା ପୋସ୍କୋର ବୁଲଡୋଜରର ଭୟଗ୍ରସ୍ତ ବିସ୍ଥାପିତଙ୍କ ପ୍ରତିବାଦକୁ ଦମନ କରିବା ଏକ ଅସଭ୍ୟ, ବର୍ବର ଓ ଅଗଣତାନ୍ତ୍ରିକ ସମାଜ ଓ ଶାସନ ବ୍ୟବସ୍ଥାର ଚରିତ୍ର ଓ ଆଚରଣ । ଏହାର ପ୍ରତିକାର ପାଇଁ ଏକ ମାନବବାଦୀ ଶାସନ ଓ ସଂପୂର୍ଣ୍ଣ ଗଣତାନ୍ତ୍ରିକ ବ୍ୟବସ୍ଥାର ଏକାନ୍ତ ଜରୁରୀ ।



Digitized by srujanika@gmail.com

# ବିକାଶ-ରାଜନୀତିରେ ବର୍ବରତାର ନଗ୍ନ ରୂପ
# କଳିଙ୍ଗ ନଗର ଗଣହତ୍ୟା

କଳିଙ୍ଗ ନଗରରେ ବଞ୍ଚିବାର ଅଧିକାରକୁ ଛଡ଼ାଇ ନିଅ ନାହିଁ ବୋଲି ପ୍ରତିବାଦ କରି ଆସୁଥିବା ଆନ୍ଦୋଳନକାରୀ ଜନତାଙ୍କୁ ପୋଲିସର ଗୁଳିରେ ଗଣହତ୍ୟା କରିଦିଆଗଲା । ଏହା କେବଳ ଏକ ଅମାନୁଷିକ ବର୍ବର ଲୋମହର୍ଷଣକାରୀ ଘଟଣା ନୁହେଁ ବରଂ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ରାଷ୍ଟ୍ରଶକ୍ତିର ଆସୁରିକ ଶକ୍ତିକୁ ଏକ ନିର୍ବାଚିତ ସରକାର ନିଜ ଜନତାଙ୍କୁ ହିଂସ୍ର ପଶୁପରି ବ୍ୟବହାର କରିଛି । ଏହାପରେ ଅନୁଶୋଚନା ନକରିବା ଦ୍ୱାରା ଗଣତନ୍ତ୍ରକୁ କେଉଁଦିନରୁ ହତ୍ୟା କରାଯାଇଛି ବୋଲି ପ୍ରମାଣିତ ହେଉଛି । ଏପରି କଳଙ୍କମୟ ଇତିହାସ ଅତୀତରେ ଘଟିଛି, କିନ୍ତୁ ଲୁଚିଯାଇଛି ଗଣମାଧ୍ୟମର ଉହାଡ଼ରେ, ଆଉ ସଂଗଠିତ ଶକ୍ତିର ଅଭାବରେ ପ୍ରତିରୋଧକୁ କାବୁ କରି ଦିଆଯାଇଛି । ୧୯୯୯ରେ ଗଜପତି ଜିଲ୍ଲାର ମାନ୍ଦ୍ରାବାଜୁଠାରେ ଆଠ ଜଣ ଆଦିବାସୀଙ୍କୁ ହତ୍ୟା କରିଥିଲା ସୁରକ୍ଷା ଦେବାକୁ ପହରା ଦେଉଥିବା ପୋଲିସବାହିନୀ । ତା' ପୂର୍ବରୁ ଚିଲିକାର ମତ୍ସ୍ୟଜୀବୀଙ୍କୁ ସୋରଣରେ ମଧରାତ୍ରରେ ପୋଲିସର ଆକ୍ରମଣ । ପାଞ୍ଚଜଣ ସହୀଦ ହୋଇଗଲେ । ୨୦୦୦ ଡିସେମ୍ବରରେ ରାୟଗଡ଼ା ଜିଲ୍ଲାର କାଶୀପୁର ମାଇକଞ୍ଚରେ ପୋଲିସବାହିନୀକୁ ଧରି ନେଇ କଂପାନୀର ଏଜେଣ୍ଟମାନେ ଅଚାନକ ଆକ୍ରମଣ କରାଇଲେ । ତିନି ଜଣ ସହୀଦ ହେଲେ । ପୁଣି ୨୦୦୧ ଅକ୍ଟୋବର ଓ ନଭେମ୍ବରରେ ଜମି ହଡ଼ପକାରୀଙ୍କୁ ସହଯୋଗ ଦେବାକୁ ଯାଇ ପୋଲିସ ନବରଙ୍ଗପୁର ଜିଲ୍ଲାର ରେଙ୍ଗାଭାଟି ଓ ରାଇଘରରେ ପାଞ୍ଚଜଣ ଆଦିବାସୀଙ୍କୁ ହତ୍ୟା କରିଥିଲା । ତାପରେ ଆଜି କଳିଙ୍ଗନଗରର ବୀରଭୂମିରେ ୧୨ ଜଣ ମାଟିର ମଣିଷ ସହୀଦ ହୋଇଗଲେ । ପୁଣି କିଛିଦିନ ପରେ ଗୁଳିବିଦ୍ଧ ଆହତ ଦୁଇଜଣଙ୍କ ମୃତ୍ୟୁ ହେଲା । ଏହି ଗୁଳିକାଣ୍ଡର ସହୀଦମାନଙ୍କ ପ୍ରାଣବଳୀର ମୂଳରେ ରହିଛି ପ୍ରାକୃତିକ ସଂପଦ ସହ ସଂପର୍କ ଥିବା ଜୀବନ-ଜୀବିକାର ସୁରକ୍ଷାର ପ୍ରଶ୍ନ । ସେସବୁ ହେଲା ଜମି, ଜଙ୍ଗଲ ଓ ଜଳ । ଏସବୁ ସ୍ଥାନ ସମେତ ଅନେକ ସ୍ଥାନରେ ପୋଲିସ ଗୁଳି ଓ କଂପାନୀ ଗୁଣ୍ଡାମାନଙ୍କ ଦ୍ୱାରା ଅନେକ ମାଟିର ମଣିଷମାନଙ୍କ ଜୀବନ ଯାଇଛି ଓ ଶାରୀରିକ ଅକ୍ଷମ

Digitized by srujanika@gmail.com

ହୋଇଯାଇଛନ୍ତି । କାଶୀପୁର ପରେ କଳିଙ୍ଗନଗରରେ ନରସଂହାରକୁ କେବଳ ଏକ ପ୍ରଶାସନିକ ବିଫଳତା କିମ୍ବା ମୁଖ୍ୟମନ୍ତ୍ରୀଙ୍କ ଇସ୍ତଫା ଦାବି ଭିତରେ ସୀମିତ କରିଦେଲେ ପ୍ରାଣବଳୀ ଦେଇଥିବା ଓ ଦେବାକୁ ପ୍ରସ୍ତୁତ ଥିବା ଆଦିବାସୀଙ୍କ ପ୍ରତି ଅନ୍ୟାୟ ହେବ ଓ ରାଜ୍ୟର ଭବିଷ୍ୟତ ଅଧିକ ଅନ୍ଧକାରମୟ ହେବା ନିଶ୍ଚିତ । ବର୍ବରୋଚିତ ଗଣହତ୍ୟାର ନିନ୍ଦା କରୁଥିବା ଓ ତାର ପ୍ରତିବାଦ କରୁଥିବା ଯେକୌଣସି ବ୍ୟକ୍ତି ଓ ସଂଗଠନ ସ୍ୱାଗତ ଯୋଗ୍ୟ, କିନ୍ତୁ ଆନ୍ଦୋଳନରତ ଆଦିବାସୀଙ୍କ ମୁଖ୍ୟ ଦାବିଟିକୁ ଗ୍ରହଣ କରୁଛନ୍ତି କି ନାହିଁ ସ୍ପଷ୍ଟ ଭାବରେ କହିବା ଏକାନ୍ତ ଜରୁରୀ । ଯେଉଁମାନେ ସେମାନଙ୍କ ଯାହା ଦାବି ନୁହଁ, ତାକୁ ଅଧିକ ଭାବରେ ଚର୍ଚ୍ଚାକୁ ଆଣିବା ଫଳରେ ଗୁଳିକାଣ୍ଡ ମୂଳରେ ଦାୟୀଥିବା ପ୍ରଚଳିତ ଅର୍ଥନୀତିର ବିନାଶକାରୀ ଶିଳ୍ପାୟନ ଅଧିକ ଦୃଢ଼ୀଭୂତ ହେଉଛି । ଫଳରେ କାଶୀପୁର ଠାରୁ କଳିଙ୍ଗନଗର ସମେତ ଅନ୍ୟତ୍ର ଅଧିକ ସଂଖ୍ୟାରେ ନରସଂହାରର ପୁନରାବୃତ୍ତି ହେବ । ଆସନ୍ତାକାଲି ମୁଣ୍ଡକାଟ ସପକ୍ଷରେ ଶାସକ ଶ୍ରେଣୀ ଶିଳ୍ପ ସପକ୍ଷବାଦୀ ଉଚ୍ଚ ମଧ୍ୟବିତ୍ତଙ୍କୁ ସଂଗଠିତ କରିବାକୁ ସକ୍ଷମ ହୋଇପାରେ । ତାପରେ ଶିଳ୍ପ ନାମରେ ନିଜର ଭିଟାମାଟି ଓ ଜୀବିକାର ଅଧିକାର ହରାଉଥିବା ଲକ୍ଷ ଲକ୍ଷ ବହୁଜନ ଗୋଟିଏ ପଟେ ଓ ଅନ୍ୟପଟେ ଶାସକ ଶ୍ରେଣୀଭୁକ୍ତ ହିତାଧିକାରୀମାନେ ଯାହାଙ୍କ ପାଖରେ ଥିବ ସରକାରୀ ସଶସ୍ତ୍ର ବାହିନୀ । ଏହାପରେ ଯୁଦ୍ଧଂଦେହି ତାଣ୍ଡବଲୀଳାର ପରିଣାମ କ'ଣ ହେବ ଅନ୍ତତଃ ଆମ ରାଜ୍ୟ ଓ ଦେଶର ବିବେକୀ ରାଜନୈତିକ କର୍ମୀ ଓ ସଚେତନ ନାଗରିକମାନେ ବାସ୍ତବତାକୁ ନିରୀକ୍ଷଣ କରି ଦେଖନ୍ତୁ ।

ବାସ୍ତବତା ହେଲା ବିକାଶ ନାମରେ ଯେଉଁ ଶିଳ୍ପାୟନ ଚାଲିଛି, ତାହା ଆମ ରାଜ୍ୟ ଓ ଦେଶବାସୀଙ୍କ ଚାହିଦା ପାଇଁ ନୁହଁ କିମ୍ବା ଆମର କୋଟି କୋଟି ଗରିବ ଲୋକଙ୍କ ଦାରିଦ୍ର୍ୟ ମୋଚନ ପାଇଁ ନୁହଁ । ବରଂ କାଶୀପୁର, ଲାଞ୍ଜିଗଡ଼, ଲକ୍ଷ୍ମୀପୁର ଆଲୁମିନା କାରଖାନାଠାରୁ ଆରମ୍ଭ କରି ପୋସ୍କୋ ସମେତ ୪୩ଟି ଇସ୍ପାତ କାରଖାନା ପର୍ଯ୍ୟନ୍ତ ଶିଳ୍ପାୟନ ନାମରେ ଯେଉଁ ଦେଶୀ-ବିଦେଶୀ ଘରୋଇ ପୁଞ୍ଜି ବିନିଯୋଗ ହେବ ତାହାଦ୍ୱାରା ଆମ ରାଜ୍ୟରୁ ମାଗଣାରେ ପ୍ରାକୃତିକ ସଂପଦ ଲୁଟକରଣ ତ୍ୱରାନ୍ୱିତ ହେବ ଓ ତାର ପରିଣାମ ଭୋଗିବେ ଲକ୍ଷ ଲକ୍ଷ ଆଦିବାସୀ, ଦଳିତ ଓ ଚାଷୀ ଯେଉଁମାନେ ନିଜର ପାରଂପରିକ ବୃତ୍ତି ତଥା ଜୀବିକା ହରାଇବେ । ରାଜ୍ୟର କୃଷି ଉତ୍ପାଦନ ଅତିମାତ୍ରାରେ କମିଯିବ ଯେହେତୁ ଜମି, ଜଙ୍ଗଲ ଧ୍ୱଂସ ହେବ । ଜଳର ଅଭାବ ସୃଷ୍ଟି ହେବ । ଜଳ, ବାୟୁ ଓ ମାଟି ପ୍ରଦୂଷିତ ହେବା ଅନିବାର୍ଯ୍ୟ । ଏହାଦ୍ୱାରା ଆଦିବାସୀ ଚାଷୀଙ୍କ ଆର୍ଥିକ ସୁରକ୍ଷା, ସାମାଜିକ ନିରାପତ୍ତା ଓ ସାଂସ୍କୃତିକ ଅସ୍ମିତା ନଷ୍ଟ ହୋଇଯିବ । ଶିଳ୍ପରୁ ଅତ୍ୟଧିକ ଲାଭ ଯିବ ଦେଶୀ-ବିଦେଶୀ ପୁଞ୍ଜିପତିଙ୍କୁ ଓ

Digitized by srujanika@gmail.com

ଆଉ ଏକ ଛୋଟ ଭାଗ ମିଳିବ କିଛି ରାଜନେତା ଓ ଉଚ୍ଚ ଅମଲାତନ୍ତ୍ରୀଙ୍କୁ । ଅତି ନଗଣ୍ୟ ନିଯୁକ୍ତି ମିଳିବ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର କେତେକ ମୁଷ୍ଟିମେୟ ଚାଲାକମାନଙ୍କୁ । ତେଣୁ କେତେ ନିଯୁକ୍ତି ଓ କେତେ ବିନିଯୁକ୍ତି ହିସାବ କରିବା ସମୟ ଆସିଛି ସେମାନଙ୍କ ପାଇଁ ଯେଉଁମାନେ ପ୍ରଚଳିତ ରାଜନୀତି ବ୍ୟବସ୍ଥାର ମୁଖ୍ୟ ଧାରାରେ ଅଛନ୍ତି ।

କଳିଙ୍ଗନଗରର ଶିଳ୍ପାୟନ ପାଇଁ ତ୍ୟାଗ ସ୍ୱୀକାର କରିଥିବା ଚାଷୀ, ଆଦିବାସୀ ପ୍ରଥମେ ଶିଳ୍ପକୁ ସ୍ୱାଗତ କରିଥିଲେ ଅନେକ ଆଶା ଓ ସ୍ୱପ୍ନରେ ପ୍ରଲୋଭିତ ହୋଇ । କିନ୍ତୁ ଛଅଟା ବଡ଼ ବଡ଼ କାରଖାନାରୁ ଉତ୍ପାଦନ ଆରମ୍ଭ ହେବାବେଳକୁ ଜମି ଓ ଜଙ୍ଗଲରୁ ବିସ୍ଥାପିତମାନେ ସର୍ବହରା ହୋଇଯାଇଛନ୍ତି । ଅନେକ ଯାଯାବର ହୋଇଯାଇଛନ୍ତି । ପେଟ ଭୋକର ଚିତ୍କାର କିଏ ତ ଶୁଣିବାକୁ ନାହିଁ । ତେଣୁ ନୂଆ ଶିଳ୍ପ ଦ୍ୱାରା ବିସ୍ଥାପିତ ହେବାକୁ ଯାଉଥିବା ଆଦିବାସୀମାନେ ଶପଥ ନେଲେ ବିକାଶ ନାମରେ ବିନାଶକୁ ଆଉ ବରଦାସ୍ତ କରିବେ ନାହିଁ । ୨୦୦୫ ମେ ମାସ ୯ ତାରିଖରୁ ଦମନ ପରେ ଦୁଇ ଶିଶୁ ଓ ଦୁଇ ବୃଦ୍ଧ ନିର୍ଯ୍ୟାତନାର ଶିକାର ହୋଇ ପ୍ରାଣବଳି ଦେଲେ । ତାପରେ ତାଙ୍କୁ କିଏ ଅଟକାଇବ ? ସେତକିବେଳେ ବି ବିରୋଧୀ କଂଗ୍ରେସ ଥଇଥାନ କଥା ଉଠାଉଥିବାବେଳେ ସରକାର ମଧ୍ୟ କ୍ଷତିପୂରଣ ମୂଲ୍ୟ ବଢ଼ାଇଦେବାକୁ ପ୍ରସ୍ତୁତ ଥିଲେ, କିନ୍ତୁ ଶିଳ୍ପାୟନର ବିଷଦାନ୍ତର କାମୁଡ଼ା ଖାଇଥିବା ମାଟିର ମଣିଷମାନେ କାହାରି ଛଳନାପୂର୍ଣ୍ଣ ଦୟାର ପାତ୍ର ହେବାକୁ ଇଚ୍ଛାନକରି ନିଜ ହକ୍ ଅଧିକାର ଭିଟାମାଟିର ସୁରକ୍ଷା ପାଇଁ ସାଲିସବିହୀନ ସଂଗ୍ରାମରେ ଠିଆ ହୋଇ ପ୍ରାଣବଳି ଦେଇସାରିଲା ପରେ ବିସ୍ଥାପନର ହୃଦୟ ବିଦାରକ ନିର୍ମମତାର ବିକଳ୍ପ ନୁହଁ ଥଇଥାନ ନୀତିରେ କିଛି ପରିବର୍ତ୍ତନ ବା ଅଧିକ ମୂଲ୍ୟ ଦେଇ ହତ୍ୟାର ପ୍ରାୟଶ୍ଚିତ ।

ସାମ୍ରାଜ୍ୟବାଦୀ ଓ ପୁଞ୍ଜିପତିଙ୍କ ଛୋଟ ଛୋଟ ଦଲାଲ ରୂପେ କାର୍ଯ୍ୟ କରୁଛନ୍ତି ନବୀନ ପଟ୍ଟନାୟକଙ୍କ ପରି ମୁଖ୍ୟମନ୍ତ୍ରୀମାନେ । ଏମାନଙ୍କ ପାଇଁ ବିଦେଶୀ ବ୍ୟାଙ୍କରେ ଡ଼ଲାର ଜମା ହୋଇ ରହିଛି । ଦଲାଲି ଭୂମିକା ସହ ନବୀନବାବୁ ଓଡ଼ିଶା ପାଇଁ ନିଜେ ଜଣେ ବିଦେଶୀ ଯିଏକି ଲୋକଙ୍କ ଭାଷା କହିପାରନ୍ତି ନାହିଁ କି ବୁଝିପାରନ୍ତି ନାହିଁ । ଏ ରାଜ୍ୟର ପାଣି ପବନରେ ଗଢ଼ା ହୋଇନାହାନ୍ତି । ରାଜ୍ୟବାସୀଙ୍କ ପ୍ରତି ତିଳେମାତ୍ର ବି ଭାବ ପ୍ରବଣତା ନାହିଁ । ସେ ଲୋକଙ୍କ ପାଇଁ ଜଡ଼ା ଓ କାଲା କିନ୍ତୁ କ୍ଷମତାରେ ମସ୍ତ । କେବଳ ଗଣ୍ଡେ ଅମଲାତନ୍ତ୍ରୀଙ୍କ ରିମୋଟ କଣ୍ଟ୍ରୋଲରେ ଶାସନ ଚାଲିଛି । ଆଉ ଜଣେ ଭ୍ରଷ୍ଟ ଅମଲତନ୍ତ୍ରୀ ରାଜନେତା ସାଜି ନବୀନବାବୁଙ୍କ ଉପଦେଷ୍ଟା ହୋଇଛନ୍ତି । ଶାସନର ସ୍ୱରୂପ ମାଙ୍କଡ଼ ହାତରେ ଶାଳଗ୍ରାମ ପରି ହୋଇଛି । ତେଣୁ ଏଠି ଖଣି, ଶିଳ୍ପ ନାମରେ ସୀମାହୀନ ଶୋଷଣ ଚାଲୁ ରହିବ ।

Digitized by srujanika@gmail.com

ଓଡ଼ିଶାର ରାଜନୀତିରେ ବିଜୁ ଜନତା ଦଳର ବିଧାୟକମାନଙ୍କ ମଧ୍ୟରେ କେହିବି ଏପରି ଏକ ସରକାରୀ କଳର ବର୍ବରକାଣ୍ଡ ବିରୁଦ୍ଧରେ ଖୋଲାରେ ନିନ୍ଦା କରିବାକୁ କିମ୍ବା ଆଦିବାସୀଙ୍କ ସମସ୍ୟା ପ୍ରତି ସଂବେଦନଶୀଳ ହୋଇ ଦଳୀୟ ଶାସନର ବିଫଳତାକୁ ନେଇ ପଦେ କଥା ମୁହଁ ଖୋଲି କହିବାକୁ ସାହସ କଲେ ନାହିଁ । ଏଥିରେ ବିବେକହୀନତାର ପରିଚୟ ମିଳୁଛି କିମ୍ବା ନିଜ ଦଳର ନେତୃତ୍ୱ ଏଥିରେ ଦାୟୀ ବୋଲି ପ୍ରଶ୍ନ କରିବାକୁ ସାହସ କରୁନାହାନ୍ତି । ଅର୍ଥାତ ଦଳଟି ସଂପୂର୍ଣ୍ଣ ନବୀନଙ୍କ ଦୟାରେ ଚାଲିଛି । ବିଜେପି ମଧ୍ୟରେ ଦଳେ ନବୀନଙ୍କ ବିରୋଧରେ କାଗଜ ବାଘପରି ହୁଂକାର ଦେଇ ପୁଣି ବିଲେଇ ପରି ଦଳର ନିର୍ଦ୍ଦେଶରେ ଲୁଚି ରହିଯିବା ପ୍ରବଞ୍ଚନା ରାଜନୀତି । ଆଉ ଯେଉଁ ରାଜନୈତିକ ଦଳ ଓ କେତେକ ଏନ୍.ଜି.ଓ. ବର୍ତ୍ତମାନ ବିସ୍ଥାପିତଙ୍କ ପାଇଁ ଥଇଥାନ ନୀତି କଥା କହୁଛନ୍ତି, ସେମାନେ ସରକାରଙ୍କ ଶିଳ୍ପନୀତିକୁ ସମର୍ଥନ ଜଣାଇ ବିପର୍ଯ୍ୟୟରେ ରିଲିଫ ଦାବି କରିବା କାମ କରୁଛନ୍ତି, କିନ୍ତୁ ବିନା ବିସ୍ଥାପନରେ ପ୍ରାକୃତିକ ସଂବଳର ସୁରକ୍ଷା ଓ ତା' ଉପରେ ଆଦିବାସୀଙ୍କ ଅଧିକାରକୁ ସ୍ୱୀକାର କରି ଶିଳ୍ପାୟନ ନୀତି ବଦଳାଇବା ପାଇଁ କୁହାଯାଉନି କାହିଁକି ? ଯେଉଁଠି ଲୋକଙ୍କ ପାଇଁ ପ୍ରକଳ୍ପ ଅନିବାର୍ଯ୍ୟ, ସେଠାର ବିସ୍ଥାପିତମାନଙ୍କ ସମ୍ମତି ସହ ଜୀବନ ଓ ଜୀବିକା ଅଧିକାରକୁ ଥଇଥାନ ନୀତିରେ ପ୍ରଥମ ସ୍ଥାନ ଦେବା ଦରକାର ।

ଏହି ଗୁଳିକାଣ୍ଡଯେ ଏକ ଯୋଜନାବଦ୍ଧ ପରିକଳ୍ପିତ ଷଡ଼ଯନ୍ତ୍ର ଥିଲା ଯେଉଁଠି ରାଷ୍ଟ୍ର ଶକ୍ତିର ପ୍ରତିନିଧି ରାଜ୍ୟ ସରକାରର ହିଂସ୍ର ଚରିତ୍ର ପ୍ରତିଫଳିତ ହେଉଛି । ଦଳମତ ନିର୍ବିଶେଷରେ ୧୯୯୧ରୁ କେନ୍ଦ୍ର ଓ ରାଜ୍ୟ ସରକାରମାନଙ୍କ ନୀତି ଘରୋଇ ଦେଶୀ-ବିଦେଶୀ କଂପାନୀମାନଙ୍କର ନିର୍ଦ୍ଦେଶରେ ନିର୍ଦ୍ଧାରିତ ହେଉଛି । ଜନମଙ୍ଗଳ ରାଷ୍ଟ୍ରର ସଜ୍ଞା ହରାଇ କର୍ପୋରେଟରାଜର ଏକ ମାଧ୍ୟମ ହେବାକୁ ଯାଉଛି । ପୁଞ୍ଜିପତିଙ୍କ ସଂପତ୍ତି ଓ ସ୍ୱାର୍ଥର ସୁରକ୍ଷା ପାଇଁ ଏକ ପୋଲିସ ଷ୍ଟେଟ ରୂପେ ରାଷ୍ଟ୍ରର ପରିଚାଳକମାନେ କାର୍ଯ୍ୟରତ । ତେଣୁ ଦମନର କ୍ରୁରତା ସେ ଅନୁସାରେ ହେବ । ଏହି ଗୁଳିକାଣ୍ଡ ପୂର୍ବରୁ ଶାନ୍ତିପୂର୍ଣ୍ଣ ପ୍ରତିରୋଧକୁ ଭାଙ୍ଗି ଦେବାପାଇଁ ଭୂଇଁ ତଳେ ପୋଲିସ ବିସ୍ଫୋରକ ଦ୍ରବ୍ୟ ବ୍ୟବହାର କରିଥିଲା ଯାହାର ବିସ୍ଫୋରଣରେ ଆନ୍ଦୋଳନକାରୀ ପ୍ରଥମ ଦଫାରେ ଗୁରୁତର ଆହତ ହୋଇଥିଲେ । ତାପରେ ପୋଲିସର ଗୁଳି ଚାଲିଲା ଓ ଲୁହବୁହା ଗ୍ୟାସର ପ୍ରୟୋଗ ହେଲା । ଆତ୍ମରକ୍ଷା ପାଇଁ ଲୋକେ ଦୂରରୁ ଧନୁତୀର କିମ୍ବା ପଥର ଢେଲା ପ୍ରୟୋଗ କରିପାରିବେ ନାହିଁ ତା ଥିଲା ଗଣହତ୍ୟା ଅପରେସନର ଏକ କୌଶଳ । ପାଞ୍ଚଜଣ ଗୁଳିବିଦ୍ଧ ଆନ୍ଦୋଳନକାରୀଙ୍କୁ ଚିକିତ୍ସା ପାଇଁ ନେଲେ ବନ୍ଧୁକଚାଳକ ମାନେ । ବାଟରେ ହାତର ଧମନିକୁ କାଟି ମୃତ୍ୟୁ ନିଶ୍ଚିତ କରାଇଦେଲେ । ତାକୁ

Digitized by srujanika@gmail.com

ଲୁଚାଇବାକୁ ଯାଇ ପୋଷ୍ଟମର୍ଟମ ବେଳେ ଡାକ୍ତରଙ୍କ ଉପରେ ଚାପ ଦେଇ ପାପୁଲି କାଟି ରଖିଦେଲେ । ମୃତବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ମହିଳାଙ୍କ ସ୍ତନ ଛେଦନ ଓ ଦୁଇଜଣ ପୁରୁଷଙ୍କ ଲିଙ୍ଗ ଛେଦନ ହୋଇଥିବା ସତ୍ୟତା ଆଦିବାସୀମାନେ ଗଣମାଧ୍ୟମରେ ମୃତ ଦେହର ଏହି ନଗ୍ନରୂପ ପ୍ରଦର୍ଶନ ପାଇଁ ଉଚିତ ମନେ କଲେ ନାହିଁ ବୋଲି ତାକୁ ସହ୍ୟ କରିନେଲେ । ବର୍ବରତାର ବିଭୀଷିକା ଆଉ କି ପ୍ରକାର ହୋଇପାରେ ? ଏସବୁ ଘଟିବା ପରେ ବି ଉଚ୍ଚ ମଧ୍ୟବିତ୍ତ ବଜାରର ସୁବିଧାଭୋଗୀ ନାଗରିକମାନେ କ୍ଷଣକ ପାଇଁ ବି ଭାଙ୍ଗି ପଡ଼ିଥିବେ ଏକଥା ବିଶ୍ୱାସ କରିବା ସମ୍ଭବପର ହେଉନାହିଁ । କାରଣ ସେମାନଙ୍କ ମାନସିକତାରେ ଆଦିବାସିଟା, ଦଳିତଟା, ସାଧାରଣ ମଳିମୁଣ୍ଡିଆ ଚାଷୀଟା ସମାଜର ଏକ ଅଳିଆ ଗଦା । ସେଥିରୁ କେତଟାକୁ ପୋଲିସ ମାରିଦେଲେ କୁହାଯାଏ ଯେ ସେମାନେ କାହିଁକି ଗଣ୍ଡଗୋଳ କରୁଥିଲେ କି ? ଆଉ ପାଦେ ଯାଇ ରାଜନୈତିକ ଭାଷାରେ କୁହାଯାଉଛି ସେମାନଙ୍କୁ ଉଷକାଇ ଦିଆଯାଉଛି । ଏକଥା କହିବା ବ୍ୟକ୍ତିମାନଙ୍କ ଦୃଷ୍ଟିରେ ବାପୁଡ଼ା ଆଦିବାସୀ, ଚାଷୀଟି ଜ୍ଞାନହୀନ ଓ ମୂର୍ଖଟିଏ, କିନ୍ତୁ ପୁରାଣ ଯୁଗରୁ ଆଜିର ଆଧୁନିକ ଦେଶମାନଙ୍କ ସ୍ୱାଧୀନତା ଆନ୍ଦୋଳନ ପର୍ଯ୍ୟନ୍ତ ମଣିଷ ସମାଜକୁ ପାପ, ଅନ୍ୟାୟ, ଅରାଜକତା ଓ ଅଧର୍ମରୁ ରକ୍ଷା କରିବାକୁ ଯଦି କେହି ଧର୍ମ ଓ ନ୍ୟାୟ ଯୁଦ୍ଧରେ ସାମିଲ ହୋଇଛନ୍ତି, ତାହାହେଲେ ସେହି ବାପୁଡ଼ାମାନେ ହିଁ ରାବଣ ପରି ରାକ୍ଷସ ହାତରୁ ଅଯୋଧ୍ୟାର ରାଜବୋହୂ ସୀତାଙ୍କୁ ଉଦ୍ଧାର ପାଇଁ ଯୁଦ୍ଧରେ ରାମଲକ୍ଷ୍ମଣଙ୍କୁ ସହଯୋଗ କରିଥିଲେ ଜଙ୍ଗଲବାସୀ କାଉ, କୋଇଲି, ମାଙ୍କଡ଼ ଏପରିକି ଗୁଣ୍ଡୁଚି ମୂଷା ମାନେ । ଅଯୋଧ୍ୟାନଗରୀର ସୈନ୍ୟସାମନ୍ତ, ମନ୍ତ୍ରୀ, କୁଳଗୁରୁମାନେ ଯୁଦ୍ଧକୁ ଯାଇନଥିଲେ । ତେଣୁ ରାଷ୍ଟ୍ରର ସୁରକ୍ଷା, ସମାଜର ସ୍ଥାୟିତ୍ୱ କିମ୍ବା ଲୁଟେରା ତଥା ସାମ୍ରାଜ୍ୟବାଦୀ ଦସ୍ୟୁମାନଙ୍କ କବଳରୁ ଦେଶ ମୁକ୍ତିପାଇଁ କେବଳ ସେହି ମାଟିର ଲୋକମାନେ ହିଁ ଆସିବେ । ଆଜିର ଏହି ସ୍ଥାନୀୟ ଭିଟାମାଟିର ସୁରକ୍ଷା ଆନ୍ଦୋଳନ ଗୁଡିକରୁ ଦେଶମୁକ୍ତି ଆନ୍ଦୋଳନ ସମ୍ଭବପର ହେବ, ଆଜିନହେଲେ କାଲି । ସଭ୍ୟ ସମାଜର ଅସଲ ଚରିତ୍ର ହେଉଛନ୍ତି ସେହି ମାଟିର ମଣିଷମାନେ । ଯେଉଁମାନେ ବିକାଶର ପ୍ରକ୍ରିୟାରେ ଦେଶରେ ସିଆଟେଲ, ନ୍ୟୁୟର୍କ କିମ୍ବା ଲଣ୍ଡନ ନିର୍ମାଣକୁ ଦେଶର ପ୍ରଗତି ବୋଲି ଧରି ନେଇଛନ୍ତି, ସେମାନେ ଜାଣି ରଖିବା ଉଚିତ ଯେ ତା' ପାଖରେ ଇଥୋପିଆ ଦେଶପରି ଅନେକ ଅଞ୍ଚଳର ଭୋକିଲା ଓ ଅର୍ଦ୍ଧାହାର ବଞ୍ଚିତମାନେ ଅଟ୍ଟାଳିକାଗୁଡିକୁ ଚୁରମାର କରିବାକୁ ଧାଇଁ ଆସୁଥିବେ । ଗୁଳିତ ଫୁଟିବ କିନ୍ତୁ କେତେ ଯେ ମାଟିର ମଣିଷଙ୍କ ଶବ ଉପରେ ଠିଆ ହୋଇ ବିକଶିତ ସାଧାରଣତନ୍ତ୍ର ଦେଶଟିଏ ? କେହି କହିପାରିବେ କି ସତରେ ସେ ସାର୍ବଭୌମ ଗଣତାନ୍ତ୍ରିକ ସମାଜବାଦୀ ଓ ଧର୍ମନିରପେକ୍ଷ ବୋଲି ?

Digitized by srujanika@gmail.com

କଳିଙ୍ଗନଗରର ସହୀଦମାନଙ୍କ ଲୁହର ନିଆଁରୁ ଜାତ ବିଦ୍ରୋହର ମଶାଲ ଆଉ ଲିଭିବାର ନାହିଁ । ଏହି କାନ୍ଥଲେଖାକୁ ବୁଦ୍ଧିଜୀବୀ, ରାଜନେତା ଓ ଦଳପତିମାନେ ଭଲଭାବେ ପଢ଼ି ବୁଝିବାକୁ ଚେଷ୍ଟା କରନ୍ତୁ । ତେଣୁ କଳିଙ୍ଗନଗରର ଅଶାନ୍ତ ଜନତାଙ୍କ ସମସ୍ୟାର ସମାଧାନ ସହ ବିଦ୍ରୋହକୁ ସାମନା କରିବା ପାଇଁ ଗଣହତ୍ୟାର ପୁନରାବୃତ୍ତି ନହେବାକୁ ଚାହୁଁଥିବା ବିରୋଧୀ ଓ ଶାସକ ଦଳ ବିଦ୍ରୋହର ମୂଳ ମଞ୍ଜିକୁ ଚିହ୍ନଟ କରନ୍ତୁ । ଯଦି ପଚରାଯାଏ ଶିଳ୍ପ ହେବନି ? ସିଧା ଉତ୍ତର ନା । ତାପରେ ଉତ୍ତର ଯଦି ଖୋଜିବ କାହିଁକି, ତାହାହେଲେ କୁହାଯିବ କେଉଁ ଶିଳ୍ପ, କାହାପାଇଁ ଓ କେଉଁବାଟରେ ହେବ ତା'ପାଇଁ ଜନବାଦୀ ଶିଳ୍ପ ନୀତି ତିଆରି କରାଯାଉ । ଗଣତନ୍ତ୍ରର ତଣ୍ଟିଚିପି ସାର୍ବଭୌମତ୍ୱକୁ ବନ୍ଧା ପକାଇ ଦେଉଥିବା ଶାସକଶ୍ରେଣୀ ଯଦି ସେମାନଙ୍କ ସାହୁକାର ବିଶ୍ୱବ୍ୟାଙ୍କ ଓ ସାମ୍ରାଜ୍ୟବାଦୀ ଶକ୍ତିର ବୋଲକରା ହୋଇ କହିବେ ପ୍ରଚଳିତ ଶିଳ୍ପାୟନକୁ କେହି ବନ୍ଦ କରିପାରିବ ନାହିଁ ତାହାହେଲେ ଓଡ଼ିଶାରେ ଅନେକ କାଶୀପୁର ଓ କଳିଙ୍ଗନଗର ଠାରୁ ଆହୁରି ବ୍ୟାପକ ସଂଗଠିତ ଗଣ ବିଦ୍ରୋହ ଅନିବାର୍ଯ୍ୟ ହୋଇପଡ଼ିବ । ସେତେବେଳେ ଶାସକଶ୍ରେଣୀ ପାଇଁ ଶିଳ୍ପାୟନର ସୀମା କେଉଁଯାଏଁ ଟଣା ହେବ ଗଣହତ୍ୟା ଜାରି ରଖିବାକୁ ? ଅନ୍ୟପଟେ ବିରୋଧ ପାଇଁ ବିରୋଧୀ ଦଳ କେତେ ମୁଣ୍ଡକାଟ ଗଣତି ପର୍ଯ୍ୟନ୍ତ ଶିଳ୍ପାୟନକୁ ସମର୍ଥନ ଜାରି ରଖି ଗୁଳିକାଣ୍ଡକୁ ନିନ୍ଦା କରି ଚାଲିଥିବ ? କାରଣ ଏପରି ଏକ ପରିସ୍ଥିତିରେ ସରକାର ଭାଙ୍ଗିଗଲେ ଆଉ ଏକ ସରକାର ସଙ୍ଗେ ସଙ୍ଗେ ଗଢ଼ା ହୋଇଯିବ, କିନ୍ତୁ ସରକାରୀ ହିଂସାର ତାଣ୍ଡବଲୀଳା ଓ ବିନାଶକାରୀ ବିକାଶର ଚକକୁ ସାମନା କରିବାକୁ ଅହିଂସ ଜନତା ବି ଯେତେବେଳେ ତାର ସୀମା ଡେଇଁବାକୁ ବାଧ ହେବ, ତାପରେ ଯାହାହେବ ତାକୁ ସମ୍ଭାଳିବାକୁ କିଏ ଥିବ ? ଅହିଂସାର ପୂଜାରୀ ମହାତ୍ମାଗାନ୍ଧୀ କହିଥିଲେ ସ୍ୱତଃ ପ୍ରବୃତ୍ତଭାବେ ଯଦି ସଂପତ୍ତିର ମାଲିକମାନେ ନଥିଲାମାନଙ୍କୁ ଦେଇ ନ ଦିଅନ୍ତି, ତାହାହେଲେ ସେମାନଙ୍କଠାରୁ ଛଡ଼ାଇ ନେବା ହେବ ଶେଷ ପରିଣାମ । ଅର୍ଥାତ ଅହିଂସାକୁ ବିଫଳ କରାଇଲେ ହିଂସା ଅନିବାର୍ଯ୍ୟ । ଶିଳ୍ପ ବିକାଶ ଅପେକ୍ଷା ଗଣତନ୍ତ୍ରର ବିକାଶ ଅତି ଜରୁରୀ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ସ୍ୱଚ୍ଛତା ଓ ଜନତାଙ୍କ ସ୍ୱାଧୀନତା, ସ୍ୱାଭିମାନ ଓ ଆତ୍ମନିର୍ଭରଶୀଳ ଅର୍ଥବ୍ୟବସ୍ଥାର ପୁନଃସ୍ଥାପିତ ହେବା ସହ ବିକାଶର ପରିଭାଷାକୁ ବଦଳାଇବାକୁ ପଡ଼ିବ । ରାଷ୍ଟ୍ର କହିଲେ ଏକ ଭୌଗୋଳିକ ସୀମା ଭିତରେ ଥିବା ସଂପତ୍ତି ଓ ତାର ମାଲିକ ବୋଲାଉଥିବା ଶାସକ ଶ୍ରେଣୀ ନୁହଁନ୍ତି । ରାଷ୍ଟ୍ରର ଅର୍ଥ ଜନତା ଯିଏକି ଅସଲ ମାଲିକ ।

ଆଜି ଯେଉଁମାନେ ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣକୁ ନୀତିଗତଭାବେ ବିରୋଧ କରୁଥିବାବେଳେ କାଶୀପୁର, ଲାଞ୍ଜିଗଡ଼ ସମେତ କଳିଙ୍ଗନଗର

Digitized by srujanika@gmail.com

ଶିଳ୍ପାୟନକୁ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରୁନାହାନ୍ତି ତାହାହେଲେ ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ ବିରୋଧରେ କେବେ ଓ କିପରି ଆନ୍ଦୋଳନ ହେବ ? କଳିଙ୍ଗନଗର ଗଣହତ୍ୟାପରେ ବି ଭାଙ୍ଗିନପଡ଼ି ଆଦିବାସୀଙ୍କ ସ୍ୱର ଖୁବ୍ ଶାଣିତ ଓ ଶକ୍ତିଶାଳୀ ହେଉଛି । ଯଦି ସେମାନଙ୍କ ପ୍ରତିରୋଧରେ ଥିବା ଆୱାଜକୁ ଶୁଣି ନଶୁଣିଲା ପରି କେବଳ ରାଜନୈତିକ ଲାଭ ଉଠାଇବା ଛଳନା ଚାଲିବ, ତାହାହେଲେ ଓଡ଼ିଶାରେ ସମାଜ ବିଘଟନ ଉଗ୍ର ରୂପ ନେବ । ଓଡ଼ିଶାର ଏକ ଚତୁର୍ଥାଂଶ ଜନତା ଆଦିବାସୀ । ପନ୍ଦର ଶତାଂଶ ଦଳିତ । ପ୍ରଥମେ ଆଦିବାସୀ କହିବ ପ୍ରାକୃତିକ ସଂପଦର ମାଲିକାନାତ୍ୱ ତା' ସମାଜର । ସେ ସାର୍ବଭୌମ ଭୂଖଣ୍ଡ ପାଇଁ ବିଦ୍ରୋହ କରିବାକୁ ବାଧ୍ୟ ହେବ । ଅନ୍ୟପଟେ ଶିଳ୍ପ ଓ ବିକାଶ ନାମରେ କୃଷିକୁ କୃଷକ ହାତରୁ ଛଡ଼ାଇ ନେଇ ବଡ଼ ବଡ଼ କର୍ପୋରେଟ ହାତରେ ଟେକିଦେବାର ବ୍ୟବସ୍ଥା ହେଉଛି ଓ ଛୋଟ ଚାଷୀ ଜମିହରା ହେଉଛି । ଜଙ୍ଗଲ ଓ ଜଳ ଶିଳ୍ପ ପାଇଁ ଶେଷ ହୋଇଗଲା ପରେ ଚାଷ ଯେ ବିପର୍ଯ୍ୟସ୍ତ ଏକଥାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ତାପରେ ଚାଷୀ ସର୍ବହରା ହେବ, ବଞ୍ଚିବା ପାଇଁ ତ ଲଢ଼େଇ କରିବ । ସବୁଦିନ ପାଇଁ ଭୋକିଲାରେ ଶୋଇ ରହିବ ନାହିଁ । ସ୍ୱାସ୍ଥ୍ୟ ଓ ଶିକ୍ଷାର ନ୍ୟୂନତମ ସେବାର ଆଜିର ଦିନରେ ଓଡ଼ିଶାର ସାଧାରଣ ଚାଷୀ, ଆଦିବାସୀ ଓ ଦଳିତ ୭୦ ଭାଗ ନିମ୍ନରେ ଥିବା ଜନତାଙ୍କ ଆୟ ବୃଦ୍ଧି ପାଇଁ ବିକାଶର ଚିନ୍ତା ଓ କାର୍ଯ୍ୟ କରାଯାଉ । ନଚେତ ପ୍ରତିବାଦ ଉଗ୍ରହେବା ସ୍ୱାଭାବିକ ଓ ପ୍ରଚଳିତ ଶିଳ୍ପାୟନ ଅତି ଭୟଙ୍କର ସଂକଟ ସୃଷ୍ଟି କରିବ ।

ସରକାରର ଭାଗୁଆଳୀ ଦଳମାନେ ଯେପରି ପରସ୍ପର ଦୋଷାରୋପ କରୁଛନ୍ତି, ତାହା ସୂଚନା ଦେଉଛି ଯେ ପୋଲିସର ଗୁଳି ଚାଳନା ଯଥାର୍ଥ । କେବଳ ଅଣ୍ଟାତଳକୁ ନା ଉପରକୁ ବୋଲି ବିତର୍କ । ଅନ୍ୟପଟେ ବିଦେଶୀ କଂପାନୀଙ୍କୁ ଡାକି ଆଣିଥିବା ଓ ଜଗତୀକରଣର ପୃଷ୍ଠପୋଷକ ଭାବେ ଜାତୀୟ ସ୍ତରରେ କଂଗ୍ରେସ ଓ ବିଜେପି କଳିଙ୍ଗନଗରର ଆନ୍ଦୋଳନକାରୀଙ୍କ "ଦାବି ନଂ ୧– ବିସ୍ଥାପନ ବନ୍ଦ କର" ପ୍ରତି ସମର୍ଥନ ଦେବାକୁ ପ୍ରସ୍ତୁତ ନୁହନ୍ତି । ବିରୋଧିଦଳମାନଙ୍କ ପ୍ରବଳ ଚାପ ଫଳରେ ବିଧାନସଭାରେ କଳିଙ୍ଗନଗର ଗୁଳିକାଣ୍ଡ ଘଟଣାକୁ କେନ୍ଦ୍ରକରି ଚାରିଦିନ ଆଲୋଚନା ଚାଲିଲା, କିନ୍ତୁ ଆଲୋଚନା ଭିତରେ କାହା ଶାସନରେ କେତେ ମୃତ ସଂଖ୍ୟାକୁ ନେଇ ବିବାଦର ସ୍ୱର ପ୍ରତିଧ୍ୱନିତ ହେଉଥିଲା । ନିଜ ନିଜ ଶାସନ ବେଳରେ ହୋଇଥିବା ହତ୍ୟା ପାଇଁ ଅନୁଶୋଚନା ପ୍ରତିଫଳିତ ହେଲା ନାହିଁ । ବରଂ ଶାସକ ଦଳର କେତେକ ସଦସ୍ୟ ପୋଲିସର ବର୍ବର ଗଣହତ୍ୟାକୁ ଯଥାର୍ଥତା ପ୍ରତିପାଦନ କରିବାକୁ ଯାଇ

Digitized by srujanika@gmail.com

କହିଲେ ମୃତବ୍ୟକ୍ତିମାନେ ବାହାରୁ ଆସିଥିଲେ । ସତେ ଯେପରିକି ବାହାରର ମଣିଷକୁ ମାରିବା ଲାଇସେନସ୍ ଓଡ଼ିଶା ଶାସନ ପାଖରେ ରହିଛି । ଗୁଳିକାଣ୍ଡର ମୂଳରେ ଥିବା ଅସଲ କାରଣ ବିକାଶ ନୀତି ଓ ଅନ୍ଧ ଶିଳ୍ପାୟନର ବିକଳ୍ପ ପାଇଁ ମୁଖ୍ୟ ବିରୋଧୀ ଦଳ କଂଗ୍ରେସ ପଦେ ବି ଚିନ୍ତା ପ୍ରକାଶ କଲା ନାହିଁ । ତା'ର ଫାଇଦା ନେଇ ଶାସକ ଦଳ ପରିସ୍ଥିତିରୁ ମୁକୁଳିଯିବା ପାଇଁ ଥଇଥାନ ନୀତି ପାଇଁ ପ୍ରତିଶ୍ରୁତି ଦେଇ ବିତର୍କକୁ ଶେଷ କରିଦେଲା । ବର୍ତ୍ତମାନର ଅସଲ ପ୍ରଶ୍ନ ହେଉଛି, ଆଜିର ଦ୍ରୁତ ଶିଳ୍ପାୟନ ନାମରେ ପ୍ରାକୃତିକ ସମ୍ବଳଗୁଡ଼ିକୁ ଶେଷ କରି ଦିଆଗଲା ପରେ ବହୁଜନଙ୍କ ବଞ୍ଚିବାର ଅଧିକାର ଚାଲିଯାଉଛି । ତା'ର ସମାଧାନ କ'ଣ ? ଅସଲ ବିକଳ୍ପ ପାଇଁ ବିତର୍କ କରିବ କିଏ ? ତେଣୁ ବିଧାନସଭାର ବାହାରେ ଜନତାଙ୍କ ମଧ୍ୟରେ ଖୋଲା ବିତର୍କର ଆବଶ୍ୟକତା ରହିଛି । ବର୍ତ୍ତମାନ ଓଡ଼ିଶା ପରିପ୍ରେକ୍ଷୀରେ ଓଡ଼ିଶାର ବହୁଜନଙ୍କୁ ନ୍ୟାୟ ଦେବାପାଇଁ ସମସ୍ତ ରାଜନୈତିକ ଦଳ ଆତ୍ମସମୀକ୍ଷା କରିବା ବେଳ ଆସିଛି ଓ ବାଧ ମଧ କରୁଛି । ଯଦି କେହି ପଛକୁ ଫେରିବାର ନାହିଁ, ତାହାହେଲେ ଜନ ଅସନ୍ତୋଷ ସାଙ୍ଗକୁ ଜୀବନ-ଜୀବିକାର ସଂଗ୍ରାମ ଆଗକୁ ବଢ଼ିବ । ତାକୁ କେହି ଅଟକାଇ ପାରିବ ନାହିଁ । ଗଣତନ୍ତ୍ରରେ ଲୋକଙ୍କୁ ପ୍ରଥମ ସ୍ଥାନ ଦିଆଯାଉ । ସବୁ ଠିକ୍ ହୋଇଯିବ ।



Digitized by srujanika@gmail.com

# ଜଗତୀକରଣରେ କୃଷି ଓ କୃଷକ

ଆମ ରାଜ୍ୟରେ ଖଣିଜ ସଂପଦ ଭରପୂର ଥିଲା । ଏବେ ଶେଷ ହେବାକୁ ଯାଉଛି । ବିକାଶ ନାମରେ ଆମ ଖଣିଜ ପଦାର୍ଥ ଉତ୍ତୋଳନ କରି କଞ୍ଚାମାଲ ରୂପେ ବ୍ୟବହାର କରାଯାଇଛି ଅନ୍ୟ ରାଜ୍ୟ ଓ ବିଦେଶର ଶିଳ୍ପ ସମୃଦ୍ଧି ପାଇଁ । ୧୯୮୦ ପର୍ଯ୍ୟନ୍ତ ଦେଶରେ ଶିଳ୍ପ ବିକାଶର ଯେଉଁ ଧାରା ଚାଲିଥିଲା ସେଥିରେ ପୁଞ୍ଜି ସହ ଶ୍ରମଶକ୍ତିର ଆବଶ୍ୟକତା ରହୁଥିଲା; କିନ୍ତୁ ଆମ ରାଜ୍ୟରେ ସେପରି କଳ କାରଖାନା ହୋଇପାରିଲା ନାହିଁ ଯାହାଦ୍ୱାରା ଆମ ଶ୍ରମଶକ୍ତିର ଉପଯୁକ୍ତ ବିନିଯୋଗ ହୋଇ ଶିଳ୍ପାୟନର ଲାଭ ବି ଆମକୁ ମିଳିଥାନ୍ତା ।

ବର୍ତ୍ତମାନ ଜଗତୀକରଣ ପରିପ୍ରେକ୍ଷୀରେ ଖୋଲାବଜାର ଅର୍ଥନୀତିର ସ୍ରୋତର ବେଗରେ ପୁଞ୍ଜି ଆସୁଛି ଅଜସ୍ର ପରିମାଣ, କିନ୍ତୁ ପୁଞ୍ଜି ଆମ ଶ୍ରମଶକ୍ତିକୁ ଏପରିକି ଶିକ୍ଷିତ ମାନବ ସମ୍ବଳକୁ ବିକାଶର ସୀମା ଭିତରକୁ ଛୁଇଁବାକୁ ଦେଉ ନାହିଁ । କେବଳ ପୁଞ୍ଜି ବିନିଯୋଗରେ ଆମ ପ୍ରାକୃତିକ ସମ୍ବଳ ଖଣି, ଜମି, ଜଙ୍ଗଲ, ଜଳ ସଂପଦକୁ ଶସ୍ତା ଦରରେ ବ୍ୟବହାର କରାଯାଉଛି । ଏସବୁ ଧନୀକ ଶ୍ରେଣୀ ଓ ବିଦେଶୀ ଉପଭୋକ୍ତାଙ୍କ ସେବାରେ ନିୟୋଜିତ ହେବାକୁ ଯାଉଛି । ଲାଭ ମଧ ବହୁ ରାଷ୍ଟ୍ରୀୟ କମ୍ପାନୀ ଓ ଦେଶୀୟ ଏକଚାଟିଆ ବ୍ୟବସାୟୀ ନେବେ । ଆମ ଖଣିଜ ପଦାର୍ଥ ଲୁଟ ହୋଇ ଚାଲିଛି । ଶେଷ ହୋଇଯିବ ଜଗତୀକରଣ ପ୍ରକ୍ରିୟାରେ । ତେଣୁ ବର୍ତ୍ତମାନ କୃଷି ଉପରେ ନିର୍ଭର କରୁଥିବା ୭୩% ଲୋକ ପୁଞ୍ଜିଭିତ୍ତିକ ଶିଳ୍ପ ଦ୍ୱାରା କୌଣସି ଦିଗରେ ଉପକୃତ ହେବେ ନାହିଁ । ବରଂ ଶିଳ୍ପ ନାମରେ ଖଣିଜପଦାର୍ଥ ସହ ଉର୍ବର ଜମି, ଜଳ ଓ ଜଙ୍ଗଲକୁ ହରାଇବାକୁ ପଡୁଛି, ଯାହା ଫଳରେ ଉକ୍ତ ପ୍ରାକୃତିକ ସମ୍ବଳରୁ ପାଉଥିବା ଦୈନିକ ଜୀବିକା ସବୁଦିନ ପାଇଁ ଚାଲିଯିବ । ଏଥିପ୍ରତି ଯଦି ସତର୍କ ଦୃଷ୍ଟିଦେଇ ବିକଳ୍ପ ବିକାଶ ଧାରା ପାଇଁ ବିଚାର କରା ନଯାଏ ତାହା ହେଲେ କୃଷି ପ୍ରତି ବିପଦ ଭୟାନକ ହେବ ।

ତେଣୁ ଆଜି ଓଡ଼ିଶାର ଗାଁର ଚାଷୀ-ମୂଲିଆଙ୍କ ସମେତ ସହରର ଗରିବ ଓ ବେକାରଙ୍କ ପାଇଁ ଜୀବିକା ନିଶ୍ଚିତ କରାଇବା ବିକାଶର ଏକମାତ୍ର ଲକ୍ଷ୍ୟଧାର୍ଯ୍ୟ ହେବା ଉଚିତ । ଏହାର ସଫଳତା ପାଇଁ କୃଷି କ୍ଷେତ୍ର ହିଁ ପ୍ରଥମେ ବିକଶିତ ହେବାକୁ

Digitized by srujanika@gmail.com

ପଡ଼ିବ । ଏହା ସଙ୍ଗେ କୃଷି ସମ୍ପର୍କୀୟ ଶିକ୍ଷର ବିକାଶ ପ୍ରତି ଅଧିକ ଧ୍ୟାନ ଦେବାକୁ ହେବ । ନଚେତ ଓଡ଼ିଶାର ଲୋକେ ଦାଦନ ଶ୍ରମିକ ହୋଇ ବାହାର ରାଜ୍ୟକୁ ଯାଉଥିବେ ଓ ଆମର କେତେକ ସ୍ୱପ୍ନବିଳାସୀ ବିଦେଶୀପୁଞ୍ଜିର ପ୍ରଚାର ସୁଗନ୍ଧିରେ ମସ୍‌ଗୁଲ ହେଉଥିବେ । ଆମକୃଷିକ୍ଷେତ୍ର ସଂପୂର୍ଣ୍ଣ ଅବହେଳିତ । ସବୁଜ ବିପ୍ଲବ ନାମରେ ପଞ୍ଜାବ, ହରିଆନାକୁ ଛାଡ଼ିଦେଲେ ତାମିଲନାଡୁ, ଆନ୍ଧ୍ର ଓ ପଶ୍ଚିମବଙ୍ଗର ଧାନ ଉତ୍ପାଦନରେ ଯେଉଁ ସଫଳତା ମିଳିଛି ଆମେ ତାହାର ବହୁପଛରେ । ଏପରିକି ୧୯୯୨ – ୯୩ରେ ଧାନ ଉତ୍ପାଦନ ଆମ ରାଜ୍ୟରେ ୧୯.୦୭% କମିଲା । ଜଳର ଅଭାବ ଯୋଗୁଁ ୧୯୯୬ – ୯୭ ରେ ଧାନ ଅମଳ ୧୯୯୩ – ୯୪ ଠାରୁ ୯.୮୬ ଲକ୍ଷ ମେଟ୍ରିକ ଟନ୍ କମିଲା । ୧୯୫୦ – ୮୧ରେ ଆମ ମୁଣ୍ଡପିଛା ଚାଷ ହେଉଥିବା ଜମି ଥିଲା ୦.୩୯ ହେକ୍ଟର । ବର୍ତ୍ତମାନ ତାହା ୦.୧୭ ହେକ୍ଟରକୁ ଖସି ଆସିଲାଣି । ମୁଣ୍ଡପିଛା ଖାଦ୍ୟଶସ୍ୟ ଉତ୍ପାଦନ ଏହି ସମୟ ମଧ୍ୟରେ ୨୩୦.୪୪ କେଜିରୁ ୧୯୭.୦୫ କେଜିକୁ କମି ଆସିଛି । ଏହି ସ୍ଥିତିରେ ଯଦି କନ୍ଦା, ଆମ୍ବକୋଇଲି ଖାଇ ରହୁଥିବା ଅଧିକାଂଶ ଆଦିବାସୀ ଓ ଅଧାଦିନ ଅଧା ପେଟରେ ରହୁଥିବା ଅନେକ ଗରିବ ପରିବାର ପ୍ରତ୍ୟେକ ଦିନ ଦୁଇଓଳା ପେଟପୂରା ଭାତ ଖାଇବା ପାଇଁ ସମର୍ଥ ହେବେ ତାହାହେଲେ ଆମ ରାଜ୍ୟର ଉତ୍ପାଦିତ ଚାଉଳ ଅଣ୍ଟିବ ନାହିଁ ।

ଆମ ଜମିକୁ ଜଳନାହିଁ । ଜଳସେଚନ ବ୍ୟବସ୍ଥା ଖୁବ୍ ଦୁର୍ବଳ ଓ ଯୋଜନାଗୁଡ଼ିକ ସମୟ ଅନୁଯାୟୀ ସଂପୂର୍ଣ୍ଣ ହେଉନାହିଁ । ଭୂମିତଳେ ଥିବା ୨୩୩୦ କୋଟି ଘନମିଟର ପାଣିର ମାତ୍ର ୦.୫% ଏପର୍ଯ୍ୟନ୍ତ ଜଳସେ୍ଚନରେ ବ୍ୟବହାର କରାଯାଇ ପାରିଛି । ଅଥଚ ପଞ୍ଜାବରେ ୮୫% ଭୂତଳ ଜଳ କୃଷିରେ ବ୍ୟବହୃତ ହେଉଛି । ତେଣୁ ଆମ ଜଳସେଚିତ ଚାଷଜମି ୨୦ ରୁ ୨୫% ହୋଇଥିବାବେଳେ ପଞ୍ଜାବରେ ୯୧.୩% ହୋଇଛି । ତେଣୁ ଜମିକୁ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଜରିଆରେ ଜଳଯୋଗାଣ ବ୍ୟବସ୍ଥାସହ, ଚାଷୀକୁ କୃଷି ଉପକରଣ ଯୋଗାଇ ଦେବାପାଇଁ ସମୟ ଭିତ୍ତିକ କାର୍ଯ୍ୟକ୍ରମ ଅତ୍ୟନ୍ତ ଜରୁରୀ । ଶୁଷ୍କ ଭୂମିରେ ଚାଷ ଓ ପତିତ ଜମିରେ ଚାଷପାଇଁ ନୂଆ ନୂଆ ପଦ୍ଧତିରେ ରାଜ୍ୟ ସରକାର ସ୍ଥାନୀୟ ଲୋକଙ୍କୁ ଅଭ୍ୟାସ କରାଇବା ଯୋଜନା ଆମ ରାଜ୍ୟରେ କରାଇନାହିଁ । ଯଦି କୃଷିର ବିକାଶ ପାଇଁ ସମୁଚିତ ଓ ସମନ୍ୱିତ ଦୃଷ୍ଟିଭଙ୍ଗୀ ସହ ପାରଂପରିକ ଜ୍ଞାନକୌଶଳ ସହ ରାଷ୍ଟ୍ରାୟତ ବ୍ୟାଙ୍କମାନଙ୍କ ଛୋଟପୁଞ୍ଜି ବିନିଯୋଗରେ ମାନବ ସମ୍ବଳକୁ ବ୍ୟବହାର କରାଯାଆନ୍ତା ରାଜ୍ୟର ଲୋକେ ଜୀବିକା ପାଆନ୍ତେ ଓ କର୍ମ ନିଯୁକ୍ତି ପାଇଁ ସୁଯୋଗ ସୃଷ୍ଟି ହୁଅନ୍ତା ।

Digitized by srujanika@gmail.com

କୃଷି କେବଳ ଜମିଚାଷ ନୁହେଁ । ଏହାସହ ଜଙ୍ଗଲ ଅର୍ଥନୀତି ପରିପୂରକ । ଜଙ୍ଗଲ ସୁରକ୍ଷିତ ରହିଲେ ପରିବେଶ ଅନୁକୂଳ ରହିବ ଓ ବର୍ଷା ଠିକ୍‌ଭାବେ ଉପଲ୍‌ବଧ ହେବ । ଜଙ୍ଗଲକୁ ସୁରକ୍ଷିତ ରଖିବାକୁ ହେଲେ ଜଙ୍ଗଲବାସୀଙ୍କ ଅଧିକାରକୁ ସ୍ୱୀକାର କରିବାକୁ ହେବ । ଜଙ୍ଗଲଜାତ ଦ୍ରବ୍ୟର ଉତ୍ପାଦନ ବୃଦ୍ଧି କରିବା ସହ ନୂଆ ଜଙ୍ଗଲ ସୃଷ୍ଟି ପାଇଁ ଉଦ୍ୟମ ଜାରି ରଖିବାକୁ ହେବ । ଆମ ରାଜ୍ୟର ଭୌଗୋଳିକ ଅଞ୍ଚଳର ୪୩% ଜଙ୍ଗଲଥିଲା, କିନ୍ତୁ ଆଜି ମାତ୍ର ୧୬ରୁ ୧୭% ହେବ । ଯଦି ରାଜ୍ୟସରକାରଙ୍କ ଆର୍ଥିକ ସମୀକ୍ଷା (ଇକୋନିମିକ ସର୍ଭେ ୯୬-୯୭ ଅଫ ଓଡ଼ିଶା) ୩୬% କହୁଛି ଏହା ଅତିରଞ୍ଜିତ । ଭୋଗବାଦ ଅର୍ଥନୀତିର ପ୍ରଭାବ ଓ ରାଜନୈତିକ ଭ୍ରଷ୍ଟାଚାର ଜଙ୍ଗଲକୁ ଧ୍ୱଂସ କରିଛି ।

ଜମି, ଜଙ୍ଗଲ ବ୍ୟତୀତ ଆମ ଗାଁ ଲୋକଙ୍କ ଜୀବିକା ରହିଛି ଜଳସଂପଦରେ । ନଦୀ, ହ୍ରଦ ଓ ସମୁଦ୍ରଜଳରୁ ପାରଂପରିକ ମତ୍ସ୍ୟଜୀବୀମାନେ ନିଜ ଆୟ ପାଆନ୍ତି । ଆଜି ସାମୁଦ୍ରିକ ପରିବେଶ ଓ ସଂବଳ ନୂଆ ଅର୍ଥନୀତି ତଥା ଜଗତୀକରଣର ଧକ୍‌କାରେ କ୍ଷତବିକ୍ଷତ ହେବାକୁ ଯାଉଛି । ଆମ ରାଜ୍ୟର ଚାରିଶହ ଅଶୀ କିଲୋମିଟର ସାମୁଦ୍ରିକ ଉପକୂଳ ଓ ଚିଲିକାକୁ ଓଡ଼ିଶାବାସୀଙ୍କ ଜୀବିକା ପାଇଁ ବିନିଯୋଗ କରିବା ନିମନ୍ତେ ସୁପ୍ରିମକୋର୍ଟର ରାୟକୁ କାର୍ଯ୍ୟକାରୀ କରିବା ଏକାନ୍ତ କାମ୍ୟ ।

୧୯୯୧ ଜନଗଣନା ଅନୁଯାୟୀ ଆମ ରାଜ୍ୟର ମୋଟ କର୍ମରତ ଜନତାଙ୍କ ୪୪.୩୧% ଚାଷୀ, ୨୮.୬୮% କୃଷି ଶ୍ରମିକ, ୩.୧୩% ଗୃହ ନିଯୁକ୍ତ ଶ୍ରମିକ ଏବଂ ଅନ୍ୟାନ୍ୟ ୨୩.୮୮% । ତେଣୁ ଚାଷ ସହ ୭୨.୯୯% ସଂପୃକ୍ତ । ଅନ୍ୟପକ୍ଷେ କର୍ମନିଯୁକ୍ତି ବିଭାଗର ପଂଜୀକରଣରୁ ଜଣାଯାଏ ଯେ - ୧୯୯୫ ପର୍ଯ୍ୟନ୍ତ ମୋଟ ୬.୬୭ ଲକ୍ଷ ଶିକ୍ଷିତ ବେକାର ପଂଜୀକୃତ ହୋଇ ରହିଥିଲେ । କେବଳ ସେହିବର୍ଷ ୨୨୩୦୪୬ ଜଣ ପଂଜୀକରଣ କରିଥିବାବେଳେ ମାତ୍ର ୧୩୫୯୯ ଖାଲିସ୍ଥାନ ବିଜ୍ଞାପିତ ହୋଇଥିଲା । ସେଥିରୁ କେବଳ ୪୦୨୦ ସ୍ଥାନ ପୂରଣ ପାଇଁ ସରକାର ପଦକ୍ଷେପ ନେଇଥିଲେ । ତାପରଠାରୁ ଓଡ଼ିଶାରେ ଛଟେଇ ଚାଲିଛି, ସରକାରୀ କ୍ଷେତ୍ରରେ ନିଯୁକ୍ତି ବିଲୋପ ଚାଲିଥିବା ବେଳେ ଯେଉଁଠି ବିକାଶ ନାମରେ ପୁଞ୍ଜି ବିନିଯୋଗ ହେଉଛି - ସେଠି କଂପ୍ୟୁଟର ପ୍ରଚଳନ ଚାଲିଛି । ତେଣୁ ଚାକିରି ନାହିଁ । ଏହି ପରିସ୍ଥିତିରେ ଓଡ଼ିଶାର ବିକାଶ ପ୍ରକ୍ରିୟାରେ ରାଜ୍ୟର ବହୁଜନଙ୍କୁ ଅଂଶୀଦାର କରିବାକୁ ହେଲେ କୃଷିର ସାମଗ୍ରିକ ବିକାଶ ଅପରିହାର୍ଯ୍ୟ ଓ ଚାଷଜମିକୁ ସଂରକ୍ଷିତ

Digitized by srujanika@gmail.com

ରଖିବାକୁ ହେବ । ଯୁକ୍ତରାଷ୍ଟ୍ର ଆମେରିକାରେ ଥିବା ୱାରଲଡ଼ ୱାଚ ପ୍ରତିଷ୍ଠାନ ଆମକୁ ସତର୍କ କରାଇ ସାରିଲାଣି ଯେ "ଭାରତବାସୀ ଯଦି ଚାଷଜମିକୁ ଶିଳ୍ପ ଓ ସହରୀକରଣ ପାଇଁ ଦେଇଚାଲିବେ ତାହାହେଲେ ଭାରତବର୍ଷ ୨୦୩୦ ବେଳକୁ ପୃଥିବୀର ସର୍ବବୃହତ୍ତମ ଖାଦ୍ୟ ଆମଦାନୀ ଦେଶରୂପେ ଠିଆହେବାକୁ ବାଧ ହେବ ।" ତେଣୁ ଆମେ ଓଡ଼ିଶାବାସୀଙ୍କ ପାଇଁ ଏହା ଏକ ବଡ଼ ସତର୍କବାଣୀ । ଆମ ଜମି, ଜଙ୍ଗଲ ଓ ଜଳର ସୁରକ୍ଷା ସହ ଏହି କ୍ଷେତ୍ରଗୁଡ଼ିକୁ କୃଷିଭିତ୍ତିକ ଆର୍ଥିକ ବିକାଶ ପାଇଁ ନିୟୋଜିତ କରିପାରିଲେ ହିଁ ଆମେ ଏକ ଆତ୍ମବିଶ୍ୱାସୀ ଆର୍ଥିକ ବ୍ୟବସ୍ଥାର ଅଧିକାରୀ ହୋଇପାରିବା ।

## କୃଷିକ୍ଷେତ୍ରରେ ଜଗତୀକରଣ ଅର୍ଥନୀତି ଓ ଆମ ଓଡ଼ିଶାର କୃଷିସଂବଳ

କୃଷି କେବଳ ଆମ ଓଡ଼ିଶାର ନୁହ ବରଂ ଭାରତ ସମେତ ପୃଥିବୀର ଅଧିକାଂଶ ଦେଶର ପ୍ରଧାନ ଆର୍ଥିକ କ୍ଷେତ୍ର । ବିଶେଷ କରି ଆମଦେଶରେ ଆମର କୃଷି ଅର୍ଥନୀତି ସହ ସାମାଜିକ ଓ ସାଂସ୍କୃତିକ ବ୍ୟବସ୍ଥା ଜଡ଼ିତ । କୃଷି ସହ ବହୁ ପୁରାତନ ଯୁଗରୁ ଶ୍ରମିକ ଶ୍ରେଣୀର ସଂପର୍କ ଏକାନ୍ତ ଭାବରେ ରହିଆସିଛି । ଚାଷୀ ଓ କୃଷି ମୂଲିଆ ସବୁବେଳେ ଜମିମାଲିକ (ଉଚ୍ଚଜାତିର) ଦ୍ୱାରା ଶୋଷିତ ହୋଇ ଆସୁଥିଲେ । କ୍ରମଶଃ ଭାରତର ସ୍ୱାଧୀନତା ପରେ ପରେ ଭାଗ ଚାଷୀ ଅଧିକାର ଓ ଭୂସଂସ୍କାର ଅଧିନିୟମ ପ୍ରଣୟନପରେ ଶୋଷଣ ପ୍ରକ୍ରିୟା ହ୍ରାସ ପାଇଥିଲେ ମଧ ପ୍ରକୃତରେ ଚାଷୀ ଓ କୃଷି ମୂଲିଆଙ୍କୁ ଆର୍ଥିକ ନ୍ୟାୟ ମିଳିବା ସମ୍ଭବପର ହୋଇନାହିଁ ଯେହେତୁ ଚାଷପ୍ରତି ସାଧାରଣତଃ ଆର୍ଥିକନୀତି ଜରିଆରେ ଅବହେଳା କରାଯାଇ ଆସୁଛି । ତଥାକଥିତ ବିକାଶ ନାମରେ ପୁଞ୍ଜିଭିତ୍ତିକ ବୃହତଶିଳ୍ପ ଜରିଆରେ ସମୃଦ୍ଧିର ସ୍ଲୋଗାନ କୃଷିପ୍ରତି ଅଭିଶାପ ହୋଇଛି । କେବଳ କୃଷିକ୍ଷେତ୍ରରେ ଆବଶ୍ୟକ ପ୍ରାଥମିକତାକୁ ଗୌଣକରି ଦିଆଯାଇଛି ତାହା ନୁହଁ ବରଂ କୃଷିକ୍ଷେତ୍ର ଉପରେ ଆକ୍ରମଣ ହେଉଛି । ଏପରିକି ଉର୍ବର ଚାଷ ଜମିର ପରିମାଣ କ୍ରମଶଃ କମିବାରେ ଲାଗିଛି ବିକାଶ ନାମରେ ଓ ବିକାଶ ସହ ସଲଗ୍ନ ସହରୀକରଣ ପ୍ରକ୍ରିୟାରେ ।

ଚାଷରେ ଅନେକ ପୁରାତନ ଓ ସ୍ଥାୟୀ ସମସ୍ୟାର ସମାଧାନ ହୋଇନଥିବାବେଳେ ବର୍ତ୍ତମାନ ଚାଷୀର ହାତରୁ ଜମି ଚାଲି ଯାଉଛି ଅଣଚାଷ କାର୍ଯ୍ୟରେ ବେପାରୀଙ୍କ ମୁନାଫା ପାଇଁ । ଅନ୍ୟ ଦିଗରେ କୃଷିକୁ ବ୍ୟାବସାୟିକ କରିବା ପାଇଁ ବିଶ୍ୱ ବଜାରର ଚାପ ଓ କର୍ପୋରେଟ ପୁଞ୍ଜି ବିନିଯୋଗର ଆକର୍ଷଣ ଓଡ଼ିଶାର

Digitized by srujanika@gmail.com

କୃଷି ଓ କୃଷକଙ୍କୁ ଆଉ ଏକ ସଂକଟ ଭିତରକୁ ଠେଲିଦେବାକୁ ଯାଉଛି । କର୍ପୋରେଟ କୃଷିକ୍ଷେତ୍ରରେ ଧାନ, ଗହମ, ମୁଗ, ଡ଼ାଲିଜାତୀୟ କିମ୍ବା ତୈଳବୀଜ ଉତ୍ପାଦନ କରିବା ଲାଭଜନକ ନୁହଁ ବୋଲି ଅର୍ଥପ୍ରଦାନକାରୀ ଫସଲ ଉତ୍ପାଦନ କରାଯିବ ଯାହା ଆମ ଆବଶ୍ୟକତା ବଦଳରେ ବିଦେଶୀ ଚାହିଦା ପୂରଣ କରିପାରେ । ଏହା ହେଲେ ପ୍ରକୃତରେ ଆଉ ଚାଷୀହାତରେ ଜମି ରହିବ ନାହିଁ । ଜମି ଚାଲିଯିବ କର୍ପୋରେଟ ମାଲିକମାନଙ୍କ ପାଖକୁ ଯାହାଙ୍କ ପାଇଁ ସିଲିଂ ଆଇନ ବଦଳିଯିବ । କର୍ଣ୍ଣାଟକରେ ଏପରି ଆଇନର ପରିବର୍ତ୍ତନ ହୋଇସାରିଲାଣି । ତାହାହେଲେ କେବଳ ଆମ ରାଜ୍ୟରେ ଚାଷକୁ ଲାଭପ୍ରଦ କରାଇବା ଆଳରେ ଚାଷଜମିକୁ ଅର୍ଥକରୀ ଫସଲ ନାମରେ ବିଭିନ୍ନ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ବିହନ ଓ ସେଥିପାଇଁ ସାର ଓ କୀଟନାଶକ ଔଷଧର ପ୍ରୟୋଗ କରାଯାଇ ଅତ୍ୟଧିକ ଉତ୍ପାଦନର ଲୋଭ ଦେଖାଇବେ । ଏହା ଯଦି ହୁଏ, ତାହାହେଲେ କମ ସମୟ ମଧ୍ୟରେ ଚାଷଜମିର ଉର୍ବରତା ନଷ୍ଟ ହୋଇଯିବ । ଏହି ପ୍ରକ୍ରିୟାରେ ଯେଉଁ ଛୋଟ ଚାଷୀମାନେ ଦେଖୁଥିବେ ଯେ ସେମାନଙ୍କର ଜମିର ଆଦାୟ ଧାନ, ଗହମ ଓ ତୈଳବୀଜରେ ଲାଭଦାୟକ ନୁହଁ ବୋଲି, ଜମିକୁ ବିକ୍ରି କରିବାକୁ ବାଧ ହେବେ କିମ୍ବା ଆନ୍ଧ୍ରର ବିଟି କପାଚାଷ ଓ ଓଡ଼ିଶାର ହାଇବ୍ରିଡ୍ ଧାନ ଚାଷର ପ୍ରଲୋଭନରେ ପଡ଼ିବା ପରି ଚାଷୀ ପୁଣି ଦୁର୍ବିପାକର ଶିକାରହୋଇ ଆତ୍ମହତ୍ୟାର ଆଶ୍ରୟ ନେବାକୁ ବାଧହେବେ । ଏକଥା ବର୍ତ୍ତମାନ ଏକ ସମ୍ଭାବନା ବୋଲି କଳ୍ପନାତୀତ ହୋଇପାରେ କିନ୍ତୁ ଯଦି ପ୍ରଚଳିତ ବିକାଶଧାରା ଚାଲୁରହେ ଓ କୃଷିପ୍ରତି ବୈମାତୃକ ମନୋଭାବ ଚାଲୁରହେ ତାହାହେଲେ ଏହାର ଭୟାନକ ପରିଣାମ ଅବଶ୍ୟମ୍ଭାବୀ । ଏହି ସ୍ଥିତିକୁ ଯଦି ଅନୁଧ୍ୟାନ କରାଯାଏ, ତାହାହେଲେ କୃଷିକ୍ଷେତ୍ରରେ ଥିବା କର୍ମନିଯୁକ୍ତି ସଂପୂର୍ଣ୍ଣଭାବେ ବନ୍ଦ ହୋଇଯିବ । ବେକାରୀ ଓ ଦାରିଦ୍ର୍ୟ ପୁଣି ବୃଦ୍ଧିହେବା ନିଶ୍ଚିତ । ଚାଷୀ ପାଖରୁ ବିହନ ମଧ୍ୟ ଚାଲିଗଲାଣି, ବହୁରାଷ୍ଟ୍ରୀୟ କଂପାନୀ ମନସେଣ୍ଟୋ ଆସି ଚାଷରେ ହସ୍ତକ୍ଷେପ କଲାଣି । ଏଣେ ଚାଷୀ ଫସଲର ଦାମ ପାଉନାହିଁ ଓ ଆମ ବଜାରକୁ ବିଦେଶରୁ ଧାନ, ଗହମ, ଡ଼ାଲି, ତେଲ, ଏପରିକି ପରିବା ଆମ ବଜାରକୁ ଆସିଲାଣି ବିଶ୍ୱ ବାଣିଜ୍ୟ ସଂସ୍ଥାର ସର୍ତ୍ତରେ । ଆମ ଚାଷୀ ମୁଣ୍ଡରେ ହାତ ଦେଇ ବସିଲେଣି ।

## ସଂକଟରେ କୃଷି ଓ କୃଷକ

ଓଡ଼ିଶାର କୃଷିକ୍ଷେତ୍ରରେ ଏକ ବଡ଼ ସଂକଟ ସୃଷ୍ଟି ହୋଇଛି । ପ୍ରଥମତଃ ଓଡ଼ିଶାର କୃଷକ ହାତରୁ ଜମି କମି କମି ଯାଉଛି । ଜମିରୁ ଉତ୍ପାଦନ କମିବାରେ ଲାଗିଛି । ବିଶେଷକରି

Digitized by srujanika@gmail.com

ଧାନ ଉତ୍ପାଦନ ବୃଦ୍ଧିର ହାର ମଧ୍ୟ କମୁଛି । ତୈଳବୀଜ ଓ ଡ଼ାଲିଜାତୀୟ ଫସଲ ଉତ୍ପାଦନ ପାଇଁ ସରକାରଙ୍କ କୌଣସି ଉଦ୍ୟମ ନଥିବାବେଳେ ପାରାଦ୍ୱୀପଠାରେ ଏକ ଆମେରିକୀୟ ବହୁରାଷ୍ଟ୍ରୀୟ କମ୍ପାନୀ କାର୍ଗିଲକୁ ଡ଼ାକି ଅଣାଯାଇଛି ଖାଇବାତେଲ- ରିଫାଇନ ଉତ୍ପାଦନ କରିବାକୁ । ତାର କଞ୍ଚାମାଲ ମାଲେସିଆ ଓ ଅନ୍ୟ ଦେଶରୁ ଆସୁଛି । ଅର୍ଥାତ୍ ଆମ ରାଜ୍ୟ କିମ୍ବା ଦେଶର କୃଷକମାନଙ୍କ ଦ୍ୱାରା ଉତ୍ପାଦିତ ତୈଳବୀଜ କିମ୍ବା ତହିଁରୁ ଜାତ ଅଶୋଧିତ ତେଲ ବା କ୍ରୁଡ୍ ଅଏଲ ମୋଟେ ଏହି କମ୍ପାନୀ ବ୍ୟବହାର କରିବନାହିଁ । ଅଥଚ ଏହି ତେଲ କମ୍ପାନୀକୁ ୬ ବର୍ଷ ଯାଏଁ ରାଜ୍ୟ ସରକାର ବିକ୍ରିକର ଛାଡ଼ ଦେଇଛନ୍ତି । ଏପରି ଆଉ ଦୁଇଟି ଓଡ଼ିଶାରେ ବସିଗଲେ ଓଡ଼ିଶାର ଛୋଟ ଛୋଟ ତେଲକଳଗୁଡ଼ିକ ସମ୍ପୂର୍ଣ୍ଣ ବନ୍ଦ ହୋଇଯିବ ଓ ବର୍ତ୍ତମାନ ମାତ୍ର ୨ରୁ ୩% ଉତ୍ପାଦନ ହେଉଥିବା ତୈଳବୀଜ ଚାଷ ମଧ୍ୟ ବନ୍ଦ ହୋଇଯିବ । ଚାଷକଲେବି ଚାଷୀ ଅଭାବୀ ବିକ୍ରିର ଶିକାର ହେବେ, ଯେପରି ବର୍ତ୍ତମାନ ଓଡ଼ିଶାର ଚାଷୀ ବରଗଡ଼ ଓ ସମ୍ବଲପୁରକୁ ଛାଡ଼ିଦେଲେ ଅନ୍ୟତ୍ର ଧାନକୁ ଅଭାବୀ ବିକ୍ରି କରିବାକୁ ବାଧ୍ୟ ହେଉଛି । ବରଗଡ଼ ଓ ସମ୍ବଲପୁର ଜିଲ୍ଲାରେ ଚାଷୀ ଅନ୍ଦୋଳନର ଚାପରେ ସରକାରୀ ଧାର୍ଯ୍ୟ ଦରରେ ମିଲ୍ ମାଲିକମାନେ କିଣିବାକୁ ବାଧ୍ୟ ହେଉଛନ୍ତି ଏବଂ ଓଡ଼ିଶାର ଚାଉଳକଳ ଅଧିକ ଏହି ଅଞ୍ଚଳରେ ରହିଛି । ଅନ୍ୟ ଦିଗରେ ଦେଖିଲେ କପାଚାଷୀ ରାୟଗଡ଼ କଳାହାଣ୍ଡି ଓ ବଲାଙ୍ଗିରରେ ତାର ଉଚିତ ମୂଲ୍ୟ ପାଉନାହାନ୍ତି । ଆଖୁଚାଷୀ ଆଖୁ କରିବାକୁ ପ୍ରସ୍ତୁତ ଥିଲାବେଳେ ଥିବା ଚିନି କାରଖାନାଗୁଡ଼ିକ ଘରୋଇକରଣ ହେବାପରେ ବି ବନ୍ଦ ହୋଇଯାଉଛି । ଓଡ଼ିଶାରେ କପାଚାଷୀକୁ ଉଚିତ ମୂଲ୍ୟ ମିଳନ୍ତା ଯଦି ସୂତା କଳଗୁଡ଼ିକର କପା ଚାହିଦା ବଢ଼ନ୍ତା । ଓଡ଼ିଶାର ୪ଟି ସୂତାକଳ ବନ୍ଦ ହୋଇ ସାରିଲାଣି । ଅଥଚ ଏଠାରେ ପ୍ରାୟ ୫ ଲକ୍ଷ କୃଷକ ଓ କୃଷି ଶ୍ରମିକ ସୁରାଟର ସୂତାକଳରେ ଯାଇ ଦିନରାତି ଖଟୁଛନ୍ତି ଓ ନର୍ଦ୍ଦମା ଉପରେ ଥିବା ବସ୍ତିରେ ରହୁଛନ୍ତି । ଓଡ଼ିଶାରେ ଚିନିକଳ, ସୂତାକଳ, ଲୁଗାକଳ, ଝୋଟକଳ, ଛୋଟ ଛୋଟ ତେଲକଳ ଗୁଡ଼ିକର ଯଦି ସାମର୍ଥ୍ୟ ସହ ବୃଦ୍ଧି ଘଟନ୍ତା, ତାହାହେଲେ କୃଷିଜାତ ପଦାର୍ଥର ଚାହିଦା ବଢ଼ନ୍ତା ଓ ଉଚିତ ଦାମ୍ ମଧ୍ୟ ଚାଷୀଙ୍କୁ ମିଳନ୍ତା । ଆଜି କପାଚାଷୀ ବଲାଙ୍ଗିର ଓ ରାୟଗଡ଼ ଜିଲ୍ଲାରେ କମ୍ପାନୀ ବିହନ ଓ ସାର ଦ୍ୱାରା ବହୁଳ ଖର୍ଚ୍ଚାନ୍ତ ହୋଇ ଋଣଗ୍ରସ୍ତ ହେବାପରେ ଶେଷରେ ଆତ୍ମହତ୍ୟା କରିବାକୁ ବାଧ୍ୟ ହେଲେଣି । କଳାହାଣ୍ଡିର କପାଚାଷୀଙ୍କ ଲକ୍ଷ ଲକ୍ଷ ଟଙ୍କା ବେପାରୀଙ୍କ ପାଖରେ ବାକି ରହିଛି କମ୍ ଦାମରେ ବିକ୍ରି କରି ମଧ୍ୟ । ତଥାପି ସରକାର କପାଚାଷୀଙ୍କ ଫସଲ ସମସ୍ୟାକୁ ଅନୁଧ୍ୟାନକରି ତାର ପ୍ରତିକାର କରିବା, ଚାଷୀ ଓ ଚାଷକୁ ସୁରକ୍ଷା ଦେବାପାଇଁ ଚିନ୍ତାମଧ୍ୟ ନକରିବା କୃଷିର ବିକାଶ ପ୍ରତି ଅଧିକ ସଂକଟ ସୃଷ୍ଟି କରିଛି । ଏବେ ଓଡ଼ିଶାରେ ଚାଷଜମିକୁ କ୍ରମଶଃ ଅଣଚାଷରେ- ପରିଣତ କରାଯାଉଛି ଶିଳ୍ପାୟନ ଓ ବିକାଶ ନାମରେ । ୪୫ ଗୋଟି

Digitized by srujanika@gmail.com

ଇସ୍ପାତ କାରଖାନା ୧୦ଟି ଆଲୁମିନା ଓ ଆଲୁମିନିୟମ ପ୍ଲାଣ୍ଟ ସେମାନଙ୍କପାଇଁ ପୁଣି ବିଦ୍ୟୁତ କାରଖାନା ଏବଂ ଏହା ସାଙ୍ଗକୁ ବିଶେଷ ଆର୍ଥିକ ଅଞ୍ଚଳ ନାମରେ ଚାଷଜମି ଚାଲିଯିବ ଅତିକମରେ ଦୁଇଲକ୍ଷ ଏକର । ଏସବୁକୁ ନେଇ ସହରୀକରଣ ପ୍ରକ୍ରିୟାରେ ଆସନ୍ତା ୧୦ ବର୍ଷ ମଧ୍ୟରେ ଆଉ ଦୁଇଲକ୍ଷ ଏକର ବିଭିନ୍ନ ବିଲ୍ଡ଼ରମାନଙ୍କ ପାଖରେ ରହିବ । ଏଥିପାଇଁ ଖଣିଜ ପଦାର୍ଥ ଉତ୍ତୋଳନ ପାଇଁ ହଜାର ହଜାର ଏକର ଜଙ୍ଗଲ ଧ୍ୱଂସହେବ ଓ ଜଳସ୍ରୋତ ଶୁଖିଯିବ । ଥିବା ନଦୀ ଓ ଝରଣା ପ୍ରଦୂଷିତ ହେବାରେ ଲାଗିଛି ଯାହାକି ପିଇବା ଓ କୃଷି ପାଇଁ ବିପଦ । ଆଜିର ଦିନରେ ମହାନଦୀ, ବ୍ରାହ୍ମଣୀ, ବୈତରଣୀପରି ନଦୀମାନଙ୍କ ଯୋଗାଉଥିବା ଅନେକ ଜଳସ୍ରୋତ କମିବାରେ ଲାଗିଛି । ତା ସାଙ୍ଗକୁ ଏହି ନଦୀମାନଙ୍କ ଉପରେ ଶିଳ୍ପମାନଙ୍କ ନିର୍ଭରତା ବଢ଼ିବାରେ ଲାଗୁଥିବାରୁ କୃଷି ଓ ପିଇବାପାଇଁ ପାଣିର ଅଭାବ ଦେଖାଦେଲାଣି । ହୀରାକୁଦ ଜଳ ଭଣ୍ଡାରର ଜଳ ବର୍ତ୍ତମାନ ଶିଳ୍ପପାଇଁ ଯେତିକି ଅଧିକ ପରିମାଣରେ ଦିଆଗଲାଣି, ତାହାଦ୍ୱାରା ୫୦ ହଜାର ଏକର ଜମି ଜଳସେଚନରୁ ବଞ୍ଚିତ ହେଲାଣି, ପୁଣି ଏହା ବଢ଼ିବ । ସେହିପରି ମହାନଦୀକୁ ପାଣି ଦେଉଥିବା ଭେଡ଼ନ୍ ନଦୀର ଜଳକୁ ଝାରସୁଗଡ଼ା ଜିଲ୍ଲାରେ ବିଭିନ୍ନ ସ୍ପଞ୍ଜଆଇରନ, କୋଇଲା, କମ୍ପାନୀମାନେ ଅତିକ୍ରମଣକରି ଓ ପ୍ରଦୂଷିତ କଲେଣି । ସେହି ନଦୀର ଜଳ ଏଣିକି ପିଇବା ଓ ଚାଷପାଇଁ କମିବାରେ ଲାଗିଛି । ବକ୍ସାଇଟ୍ ଥିବା ପାହାଡ଼ମାନଙ୍କରେ ଆଲୁମିନା କମ୍ପାନୀମାନଙ୍କ ପାଇଁ ବକ୍ସାଇଟ୍ ଖୋଳି ସାରିଦେବାପରେ ସେଠାର ଝରଣାମାନଙ୍କ ଅପମୃତ୍ୟୁ ହେବ । ପରିଣାମସ୍ୱରୂପ କଳାହାଣ୍ଡି, ରାୟଗଡ଼ ଓ କୋରାପୁଟ ଜିଲ୍ଲାମାନଙ୍କର ନଦୀ ଓ ଜଳ ଭଣ୍ଡାରଗୁଡ଼ିକରେ ଜଳସଂପଦ ଅବକ୍ଷୟ ହେବା ଅପରିହାର୍ଯ୍ୟ । ସମତଳ ପର୍ଯ୍ୟନ୍ତ ନିର୍ଭରଶୀଳ କୃଷି ନିଶ୍ଚିତଭାବେ ବିପର୍ଯ୍ୟୟର ସମ୍ମୁଖୀନ ହେବ । ଓଡ଼ିଶାର କୃଷି କହିଲେ ଦୁଇ ପ୍ରକାର । ଗୋଟିଏ ସମତଳ ଅଞ୍ଚଳର ଧାନ, ମୁଗ, ପନିପରିବା । ସେହିପରି ଜଙ୍ଗଲ ଓ ପାହାଡ଼ ଅଞ୍ଚଳରେ ଆଦିବାସୀମାନଙ୍କ କୃଷି ହେଉଛି କାନ୍ଦୁଲ, ସୁଆଁ, ମକା, ବାଜରା, ସୋରିଷ, ଅଦା, ହଳଦୀ ଏପରି ଅନେକ, କିନ୍ତୁ ରାଜ୍ୟ ଓ କେନ୍ଦ୍ରସରକାର ଏହି କୃଷିର ସୁରକ୍ଷା ପାଇଁ ଉତ୍ପାଦନର ବୃଦ୍ଧି ଓ ତାର ବଜାରପାଇଁ ଆବଶ୍ୟକ କୃଷକବଂଧୁ ଆର୍ଥିକନୀତି ଲାଗୁକରିବାକୁ ଆନ୍ତରିକ ଉଦ୍ୟମ କରିବା ବଦଳରେ ଚାଷରୁ ଯେପରି ଚାଷୀ ହଟିବେ ଓ କୃଷି ଯେପରି କର୍ପୋରେଟ ଚାଷରେ ପରିଣତ ହେବ ସେଥିପାଇଁ ଯୋଜନାବଦ୍ଧ ଭାବରେ ଚକ୍ରାନ୍ତ କରୁଛନ୍ତି । ଏହି ଦିଗରେ ପାଦେ ଆଗକୁ ଯାଇ ଓଡ଼ିଶା ସରକାର କେନ୍ଦ୍ରସରକାରଙ୍କ ନିର୍ଦ୍ଦେଶ ଅନୁଯାୟୀ କୃଷିବିପଣନ ଆଇନରେ ପରିବର୍ତ୍ତନକରି କର୍ପୋରେଟ୍ ଠିକାଚାଷ ପାଇଁ ବାଟ ଖୋଲି ସାରିଲେଣି । ଓଡ଼ିଶାର ଚାଷୀଙ୍କୁ ପ୍ରଲୋଭିତ କରାଯାଇ କମ୍ପାନୀମାନେ ଜମିକୁ ବିଭିନ୍ନ ଅର୍ଥକରୀ ଫସଲକରିବା ପାଇଁ ଲିଜ୍ ସୂତ୍ରରେ ନେବା ଆରମ୍ଭକରି

Digitized by srujanika@gmail.com

ସାରିଲେଣି । ଏହି ଠିକାଚାଷ ଆଇନ ହେବାପୂର୍ବରୁ- ରାୟଗଡ଼ ଜିଲ୍ଲାରେ ଧାନ ନକରି କପାକରିବାପାଇଁ ଆନ୍ଧ୍ରରୁ ବେପାରୀ ଆସି ଶହ ଶହ ଏକର ଆଦିବାସୀଙ୍କ ଜମିରେ କପାଚାଷ କଲେ, ଅନ୍ୟଚାଷୀଙ୍କୁ ମଧ୍ୟ କପା କରିବାପାଇଁ ବିହନ ବିକୁଥିବା କମ୍ପାନୀମାନଙ୍କ ଏଜେଣ୍ଟମାନେ ପ୍ରଭାବିତକଲେ । ଫଳରେ ରାୟଗଡ଼ାରେ କପାଚାଷୀ ଋଣଗ୍ରସ୍ତ ଓ ଗତବର୍ଷ ଜଣେ ଚାଷୀ ଆତ୍ମହତ୍ୟା କରିବା ଖବର ଆଲୋଡ଼ନ ସୃଷ୍ଟି କରିଥିଲା । ବିଷମକଟକ ଅଞ୍ଚଳରେ ୧୦ ବର୍ଷପୂର୍ବେ ୫ ହଜାର ଏକର ଜମି ଆଦିବାସୀଙ୍କର ବେନାମୀ ହସ୍ତାନ୍ତର ହୋଇଥିଲା ଆନ୍ଧ୍ରର ଆଦିବାସୀ ନାମରେ । ପରେ ତଦନ୍ତ ହୋଇ ଜମି ଫେରସ୍ତ କରିବାକୁ ସରକାର ଆଦେଶ ଦେଲେ । ଏବେ ବଲାଙ୍ଗିର ଜିଲ୍ଲାରେ ଛୋଟ ଚାଷୀଙ୍କୁ କମ୍ପାନୀ ଆଉ ସରକାର ମିଶିକରି ପ୍ରବର୍ତ୍ତାଇଲେ ଯେ ଧାନ ବିକ୍ରି ହୋଇପାରୁନି ଏବଂ ଧାନ ଚାଷ ଲାଭଜନକ ନୁହଁ, ତେଣୁ କପାଚାଷ ଲାଭଜନକ । ପ୍ରଥମ ଦୁଇବର୍ଷ କପାରେ ଚାଷୀ ଅଧିକ ଉତ୍ପାଦନକରି ଦୁଇପଇସା ଅଧିକ ପାଇଲେ, କିନ୍ତୁ ପରବର୍ଷ ମାନଙ୍କରେ କପାଚାଷ ପାଇଁ ମାଟିର ଉର୍ବରତା କମିବାରୁ ଅଧିକ ରାସାୟନିକସାର ଓ କୀଟନାଶକ ବ୍ୟବହାର କରିବାକୁ ପଡ଼ିଲା । ଅଧିକ ଜଳର ଆବଶ୍ୟକତାହେଲା । ଚାଷୀ ଅଧିକ ଖର୍ଚ୍ଚ ବହନ କରିବାକୁ ଯାଇ ଋଣଗ୍ରସ୍ତ ହେଲେ । ଉତ୍ପାଦନ ହାର ମଧ୍ୟ କମିଲା । ପୁଣି ତୁଳା ଦର କମିଲା । ଆଜି କପାଚାଷ ହେଉଥିବା ଜମିର ମାଟି ଟାଣ ହୋଇ ଉର୍ବରତା ଶୂନ୍ୟ ହେଲାଣି, ସେଠାରେ ପୁଣି ଧାନ ଓ ପରିବା ପାରଂପରିକ ଚାଷ କରିବାକୁ ଚାଷୀ ସାହସ କରିପାରୁନାହିଁ । ବଲାଙ୍ଗିର ଜିଲ୍ଲାର ଦୁଇଟି ଗାଁରେ ଚାଷୀ ଆତ୍ମହତ୍ୟା ଘଟଣା ଘଟିଲାଣି । ନିକଟରେ ପାଟଣାଗଡ଼ ବ୍ଲକର ମଳିକମୁଣ୍ଡା ଗାଁର ଚାଷୀ ଅକ୍ରୁର ସାହୁ ଓ ତାଙ୍କରି ୨ ଝିଅ ଆତ୍ମହତ୍ୟା କରିବା ମୂଳରେ କପାଚାଷ ଦ୍ୱାରା ଋଣର ଭାର ଓ ଦାରିଦ୍ର୍ୟ ସ୍ପଷ୍ଟ ଭାବରେ ଅନୁଭବ କରିହେଉଛି ।

ଏବେ କପାଚାଷରେ ଲାଭନାହିଁ ବୋଲି କହି ଜାଟ୍ରୋଫା ଚାଷ ପାଇଁ ଚାଷୀଙ୍କୁ ପ୍ରଲୋଭିତ କରାଯାଉଛି । ସେଥିପାଇଁ ଓଡ଼ିଶା ବାହାରୁ ବିଭିନ୍ନ କମ୍ପାନୀ ଏଠାକୁ ଆସି ଶହ ଶହ ଏକର ଜମିକୁ ଲିଜ୍ ନେବା ଆରମ୍ଭ କଲେଣି । ଏପରିକି ଲିଜ୍‌ର ଲୋଭ ଦେଖାଇ ଜମିକୁ ସଂପୂର୍ଣ୍ଣ ହଡ଼ପକରି ନିଆଯାଇଛି । ପାଟଣାଗଡ଼ ବ୍ଲକର ଘୁମେରୁ ଗାଁରେ ପ୍ରାୟ ୨୦ ଜଣ ଚାଷୀଙ୍କ ୮୦ ଏକର ଜମି ଆଗ୍ରାରୁ ଆସିଥିବା ତାଜ ଗ୍ୟାସ ଲିମିଟେଡ୍ ନାମକ ଏକ କମ୍ପାନୀ ୩ ବର୍ଷପାଇଁ ଲିଜ୍ ବୋଲି କହି ଚଞ୍ଚକତା କରି ଲିଜ୍ ବଦଳରେ ବିକ୍ରି ଦସ୍ତାବିଜ୍ କରିଦେଇଛି । ଏଥିରେ ସରକାରୀ ଅଫିସ୍ ଓ ସବ୍‌ରେଜିଷ୍ଟ୍ରେସନ୍ ଅଫିସ ପ୍ରତ୍ୟକ୍ଷଭାବେ ଜଡ଼ିତ । ଚାଷୀଙ୍କୁ କୁହାଗଲା ୩ ବର୍ଷ ପାଇଁ ଏକର ପ୍ରତି ୭ ହଜାର ଟଙ୍କା ଦିଆଯିବା ସହ ଜାଟ୍ରୋଫାଚାରା ରୋପଣଠାରୁ ଆରମ୍ଭକରି ଫଳ ଉତ୍ପାଦନ ପର୍ଯ୍ୟନ୍ତ ଚାଷୀ ନିଜ ଜମିରେ ଚାଷକରିବ ଓ ତାର ପ୍ରାପ୍ୟ ମିଳିବ । ୭ ହଜାର ଲେଖାଏଁ ଚାଷୀ ପାଇଲେ,

Digitized by srujanika@gmail.com

କିନ୍ତୁ ପରେ ଜାଣିଲା ବେଳକୁ ବିକ୍ରିହୋଇ ଯାଇଛି ଓ ଏକର ପିଛା ଚାଷୀ ୭୭ ହଜାର ଟଙ୍କା ନେଇଥିବା ପରି ଲେଖାଯାଇଛି, ଏବେ ଅନ୍ୟ ଗାଁମାନଙ୍କରେ ଲିଜ୍ ବି ନିଆଯାଇଛି । ଚାଷୀ ଲିଙ୍ଗରାଜ ସାହୁ ୧୧ ଏକର ଜମିହରାଇ ମାନସିକ ଭାରସାମ୍ୟ ହରାଇ ପାଗଳପରି ଅଛନ୍ତି । ବର୍ତ୍ତମାନ ଠିକାଚାଷ ପାଇଁ ଓ ଜାଟ୍ରୋଫାଚାଷ ଲାଭଜନକ ବୋଲି କହି କେନ୍ଦ୍ର ସରକାର ରିହାତି ଘୋଷଣା କଲେଣି । ଏହାଦ୍ୱାରା ଖାଦ୍ୟ ଉତ୍ପାଦନ ହେଉଥିବା ଜମିରୁ ଜୈବିକ ଜାଳେଣି ତୈଳ ଉତ୍ପାଦନହେବ । ସେହି ଜମିର ମାଟିର ଅବସ୍ଥା କ'ଣ ହେବ ତାର ପରୀକ୍ଷା ନିରୀକ୍ଷା କରାଯାଇନାହିଁ । ଏପରି ଯଦି ହୁଏ, ତାହାହେଲେ ଚାଷଜମି ପାଲଟିଯିବ ସବୁଜ ଇନ୍ଧନପାଇଁ ତେଲବୀଜ ଉତ୍ପାଦନ କ୍ଷେତ୍ର । ଏବେ ଓଡ଼ିଶା ସରକାର କହିଲେଣି ୬୦ ହଜାର ଏକର ଜମିରେ ଠିକାଚାଷ ହେବ ଏବଂ ଜାଟ୍ରୋଫା ଚାଷକୁ ଉତ୍ସାହିତ କରାଯିବ । ଲାଭ କାହାର ହେବ ? ପ୍ରଥମେ ଠିକାଚାଷ ଦ୍ୱାରା ଚାଷୀ ହାତରୁ ଚାଷ ଚାଲିଯିବ । ସେହି ଜମିର ଉର୍ବରତାକୁ ନଷ୍ଟକରି ଜାଟ୍ରୋଫା ଅର୍ଥାତ୍ ଜଡ଼ାତେଲଫଳ ଚାଷ କରାଯିବ । କିଛି ବର୍ଷପରେ ସେହି ଜମିକୁ ଚାଷୀ ଫେରିପାଇଲା ବେଳକୁ ଜମିରେ ଅନ୍ୟ କୌଣସି ପାରଂପରିକ ଖାଦ୍ୟ ଫସଲ ଚାଷ ସମ୍ଭବପର ହେବନାହିଁ । କାରଣ ମାଟି କଠିନ ହୋଇଯାଇଥିବ ଓ ପ୍ରକୃତ ଉର୍ବରତା ହରାଇଥିବ । ଏହାଦ୍ୱାରା ଗୋଟିଏ ପାଖରେ ଖାଦ୍ୟଶସ୍ୟ ଉତ୍ପାଦନ କମିଯିବାସହ ଚାଷୀମାନେ ପୁଣି ସେହି କର୍ପୋରେଟ ମାଲିକାନାର ଦ୍ୱାରସ୍ଥ ହେବେ । ଜାଟ୍ରୋଫାଚାଷର ପ୍ରଲୋଭନ ଦ୍ୱାରା କପାଚାଷର ଅବସ୍ଥା ଭୋଗିବେ ଛୋଟଚାଷୀମାନେ ଯେଉଁମାନେ ପ୍ରଲୋଭିତ ହୋଇ ଚାଷକରିବେ ।

ଜୈବ ଜାଳେଣି ତଥା ଇନ୍ଧନ ପାଇଁ ଖାଦ୍ୟ ଉତ୍ପାଦନ ବନ୍ଦକରି ଚାଷ ଓ ଜଙ୍ଗଲ ଜମିରେ ଜାଟ୍ରୋଫା, ସୋୟାବିନ୍ ଓମକା ଉତ୍ପାଦନ ପ୍ରଦୂଷଣ ତଥା ସବୁଜଗ୍ୟାସ କମାଇବାପାଇଁ ଏକ ନିରାକରଣରୂପେ କୁହାଗଲାଣି । ଏହା କିଛି ଅଂଶ ସତହୋଇପାରେ, କିନ୍ତୁ କ୍ଷତିର ହିସାବ କରିବା ଅତି ଜରୁରୀ । ଏସବୁ ବର୍ତ୍ତମାନ ବ୍ରାଜିଲରେ ବହୁ ପରିମାଣରେ ଜଙ୍ଗଲ ସଫାକରି ସୋୟାବିନ୍ ଚାଷ କରାଯାଉଛି, ଏଥିରୁ ଜୈବତେଲ ତଥା ଇନ୍ଧନକୁ ଉତ୍ପାଦନ କରିବାକୁ ମକାରୁ ପ୍ରସ୍ତୁତ ତେଲକୁ ଜୈବଇନ୍ଧନ ରୂପେ ବ୍ୟବହାର କରାଗଲାଣି । ଏହାଦ୍ୱାରା ବ୍ରାଜିଲରେ ଖାଦ୍ୟଜିନିଷ ବଜାରରେ ଅଭାବ ହେବାରେ ଲାଗିଛି, ତେଣୁ ସାଧାରଣ ଲୋକଙ୍କ ଖାଦ୍ୟର ଦରଦାମ ବଢୁଛି । ଅନ୍ୟପଟେ ଜଙ୍ଗଲ ଧ୍ୱଂସହେବା ଦ୍ୱାରା ପରିବେଶ ପ୍ରତି ବିପଦ । ଏବେ ଗ୍ରୀନ୍‌ହାଉସ୍ ଗ୍ୟାସର ବୃଦ୍ଧିପାଇଁ ଯେଉଁ ଆମେରିକା ବେଶୀ ଦାୟୀ, ସେହି ଆମେରିକା ବିଶ୍ୱର ବିଭିନ୍ନ ଦେଶରେ ଖାଦ୍ୟ ଉତ୍ପାଦନ କମାଇ ଜୈବ ଇନ୍ଧନତେଲ ଉତ୍ପାଦନ ବୃଦ୍ଧି ଓ ତାକୁ ନିଜ ଦେଶକୁ ଆମଦାନୀ କରିଦେବାକୁ ଚୁକ୍ତି କରୁଛି । ପ୍ରଦୂଷଣ କମାଇବାପାଇଁ ଯାନବାହନ, ଯନ୍ତ୍ରାୟନ କମାଇବା ବଦଳରେ ବିଶ୍ୱର ବିଭିନ୍ନ ଦେଶରେ

Digitized by srujanika@gmail.com

ଜୈବ ଇନ୍ଧନ ଉତ୍ପାଦନକରି ନିଜ ଦେଶପାଇଁ ବ୍ୟବହାର କରିବାକୁ ଯୋଜନା କଲାଣି ଆମେରିକା । ବୃଦ୍ଧି କମାଇବା ବଦଳରେ ବିଶ୍ୱର ବିଭିନ୍ନ ଦେଶରେ ଜୈବ ଇନ୍ଧନ ତଥା ବାୟୋଡ଼ିଜେଲ୍ ଉତ୍ପାଦନକରି ନିଜ ଦେଶରେ ବ୍ୟବହାର କରିବାକୁ ଯୋଜନାକଲାଣି ଆମେରିକା । ଅର୍ଥାତ୍ ଆମେରିକାରେ ପ୍ରଦୂଷଣ କମାଇବାପାଇଁ ଅନ୍ୟଦେଶର କୃଷି, ଖାଦ୍ୟ ଓ ଜଙ୍ଗଲ ସଂପଦ ବ୍ୟବହୃତ ହେବ । ଏବେ ଆମଦେଶରେ ମଧ୍ୟ ସେହି କମ୍ପାନୀ ଚାଷକୁ ଉତ୍ସାହିତ କରିବାପାଇଁ ଏପରି ଜାଟ୍ରୋଫା, ସୋୟାବିନ୍ ଚାଷହେବ ଓ ସେଥିପାଇଁ ରିହାତି ଦିଆଯିବ । ଏହାର ଲାଭ ମାରିନେବେ କମ୍ପାନୀମାନେ, ଏପରିକି କୃଷି ରିହାତିକୁ ମଧ୍ୟ ଏହିବାଟରେ ଅପବ୍ୟୟ ହେବା ସମ୍ଭାବନା ଅଧିକ । ଏବେ କୃଷି ଓଡ଼ିଶାର ଖୁଚୁରା ବଜାରକୁ ମଧ୍ୟ ନିୟନ୍ତ୍ରଣ କରିବାକୁ ରିଲାଏନ୍ସ କମ୍ପାନୀକୁ ଡ଼କାଗଲାଣି । ଅର୍ଥାତ୍ ପରିବାମାର୍କେଟ୍ ରିଲାଏନ୍ସ କରିବ । ପ୍ରଥମେ ଚାଷୀଙ୍କୁ ଲାଭଦେଇ ପ୍ରଭାବିତ କରିବ । ତାପରେ କ୍ରୟଦର କମ୍ପାନୀ ନିୟନ୍ତ୍ରଣ କରିବ । ପୁଣି ବଜାରରେ କେଉଁ ପରିବା ତଥା କେଉଁ ଖାଦ୍ୟଶସ୍ୟ ବିକ୍ରିହେବ କମ୍ପାନୀ ଠିକ୍ କରିବ, ସେ ଅନୁଯାୟୀ କି କି ଶସ୍ୟ, କିମ୍ବା ପରିବାଚାଷକୁ ଗୁରୁତ୍ୱ ଦିଆଯିବ ତାହା କମ୍ପାନୀଦ୍ୱାରା ପରିଚାଳିତ ବଜାର ଠିକ୍ କରିବ । ଏହାଦ୍ୱାରା ଚାଷୀଙ୍କ ବିବିଧ ଶସ୍ୟ ଉତ୍ପାଦନ ଓ ବିଭିନ୍ନ ବୁଲାବିକାଳୀଙ୍କ ଜୀବିକା ବାଧାପ୍ରାପ୍ତ ହେବ ।

* କୃଷିକୁ କର୍ପୋରେଟକରଣ କରିବାପାଇଁ ସୁପାରିଶ କରୁଥିବା କୃଷିବିଶେଷଜ୍ଞ ଏମ୍.ଏସ. ସ୍ୱାମୀନାଥନ ଡ଼େରି ହେଲେବି ସତ୍ୟକୁ ମାନିଛନ୍ତି । ତାହାହେଲା ଖାଦ୍ୟଶସ୍ୟ ପାଇଁ ଚାଷଜମି କମିବାରେ ଲାଗିଛି ଏବଂ ଦେଶର ସର୍ବମୋଟ ଚାଷଜମି ୧୨ କୋଟି ହେକ୍ଟର ଯାହା ଉପରେ ୧୧୦ କୋଟି ଲୋକଙ୍କ ଖାଦ୍ୟ ନିର୍ଭରକରେ । ଜାତୀୟ ସ୍ତରରେ ୧୯୬୦ରେ ମୁଣ୍ଡପିଛା ଜମିଥିଲା ୨.୬୩ ହେକ୍ଟର, ବର୍ତ୍ତମାନ ତାହା କମିକରି ୧.୦୬ ହେକ୍ଟରରେ ପହଞ୍ଚିଛି । ଓଡ଼ିଶାରେ ଥିଲା- ମୁଣ୍ଡପିଛା ୦.୩୯ ହେକ୍ଟର, ବର୍ତ୍ତମାନ ତାହା ୦.୧୫ ହେକ୍ଟରକୁ କମିଆସିଛି । ନିକଟ ଭବିଷ୍ୟତରେ ଯଦି ବିକାଶ ନାମରେ ଲକ୍ଷ ଲକ୍ଷ ଏକର ଜମି ଅଣଚାଷରେ ପରିଣତ ହେବ ପୁଣି କମିବାରେ ଲାଗିବ ।

କୃଷିଲୋକଙ୍କ ଆୟ ବୃଦ୍ଧି ମାତ୍ର ୦.୨୮ ପ୍ରତିଶତ ବୃଦ୍ଧି ହୋଇଥିବାବେଳେ ଅନ୍ୟକ୍ଷେତ୍ରରେ ୪୭ ପ୍ରତିଶତ ବଢ଼ିଛି । ଦେଶର କୃଷିମନ୍ତ୍ରୀ ଶରଦ ପାୱାର ଇଣ୍ଡିଆ ଟୁଡ଼େକୁ ଦେଇଥିବା ପ୍ରଶ୍ନର ଉତ୍ତରରେ ସ୍ପଷ୍ଟ ହୋଇଯାଇଛି । ସେ କହିଛନ୍ତି ଯେ ୧୯୯୫-୯୬ରୁ କୃଷିର ଅବକ୍ଷୟ ଆରମ୍ଭ ହୋଇଛି । ବଜେଟରେ ମାତ୍ର ୧୨% କୃଷିପାଇଁ ଅର୍ଥବରାଦ କମି କମି ଆସି ପହଞ୍ଚିଛି ୨%ରେ । ଜଳସେଚନରେ ମାତ୍ର ୦.୩୫% ବାର୍ଷିକ ବ୍ୟୟ ହେଉଛି । ଅଥଚ ବଡ଼ ବଡ଼ ରୋଡ଼ ତଥା ଗମନାଗମନରେ ୧୩% ଅର୍ଥ ବରାଦ୍ ହେଉଛି ।

Digitized by srujanika@gmail.com

ସଂପ୍ରତି ଏସବୁକୁ ଦୃଷ୍ଟି ଦେଇ ଓଡ଼ିଶାର ଚାଷର ସୁରକ୍ଷା ଏକ ବଡ଼ ଚାଲେଞ୍ଜ । ପ୍ରଥମେ ଓଡ଼ିଶାର କୃଷିର ବିକାଶ ପ୍ରତି ପ୍ରାଥମିକତା ଦେବାକୁ ହେବ ଯାହାଦ୍ୱାରା ଜମିର ଉର୍ବରତାକୁ ଜୀବିତ ରଖାଯାଇ ପାରିବ ଓ ଛୋଟ ଛୋଟ ଜଳପ୍ରକଳ୍ପ ଦ୍ୱାରା ଚାଷଜମିରେ ଜଳସେଚନର ବ୍ୟବସ୍ଥା କରାଯାଇପାରିବ । ଓଡ଼ିଶାର ଢ଼େପ ପାହାଡ଼ିଆ ଜମିରେ ବିଭିନ୍ନ ମିଲେଟ୍, ତୈଳବୀଜ ଉତ୍ପାଦନ ପ୍ରତି ଗୁରୁତ୍ୱ ଦିଆଯାଉ । ଖାଦ୍ୟ ଶସ୍ୟ ଉତ୍ପାଦନପରେ ତାର ବିକ୍ରିପାଇଁ ଆଞ୍ଚଳିକ ବଜାର ବ୍ୟବସ୍ଥା ହେବା ଏକାନ୍ତ ଜରୁରୀ ଯେଉଁଠି ସହାୟକ ମୂଲ୍ୟ ମିଳିପାରିବ ଏବଂ ବର୍ତ୍ତମାନ ସରକାର ସାର ଓ ବିହନ ଉପରେ ଯେଉଁ ରିହାତି ଦେଉଛନ୍ତି ତାକୁ ସିଧା ଚାଷୀଙ୍କ ପାଖକୁ ଯାଇପାରିବ ଏବଂ ବର୍ଦ୍ଧିତ ରିହାତିଦ୍ୱାରା ରାସାୟନିକ ସାର ବଦଳରେ ଚାଷୀ ନିଜ ଜୈବିକ ସାର ପ୍ରସ୍ତୁତ କରିପାରିବ । ଚାଷକୁ ଲୋକଙ୍କ ହାତରେ ରଖିବାକୁ ହେବ ସେଥିପାଇଁ ବଳକା ଜମି ଭୂମିହୀନ ଚାଷୀଙ୍କୁ ଦେବାକୁ ହେବ । ଚାଷକରି ଚାଷୀ ଆତ୍ମବିଶ୍ୱାସର ସହ ନିଜର ଅସ୍ମିତାକୁ ଅନୁଭବ କରିପାରିବାପରି ଏକ ସ୍ୱାବଲମ୍ବନଶୀଳ କୃଷି ଅର୍ଥ ବ୍ୟବସ୍ଥା ହିଁ ଦେଶର ସାର୍ବଭୌମ, ସ୍ୱାଧୀନତା, ଜୀବିକା ଓ ଖାଦ୍ୟ ନିରାପତ୍ତାର ରକ୍ଷକ ହୋଇପାରିବ ।

## ମୁଖ୍ୟ ପ୍ରସଙ୍ଗ :

ଏହି ପୂର୍ବାଭାଷ ଓ ବିଚାରକୁ ଆଖି ଆଗରେ ରଖି ଓଡ଼ିଶାର କୃଷିର ବିକାଶ ପ୍ରତି ଆଲୋଚନା କରିବା ପୂର୍ବରୁ ପ୍ରଥମେ ଚିନ୍ତାକରିବା ଦରକାର । କୃଷି ତଥା କୃଷି ଜୀବିକା କିପରି ନିରନ୍ତର ବିକାଶର ଏକ ପ୍ରମୁଖ ଅଙ୍ଗ ହେବ, ଅନ୍ତତଃ ନିଜେ ଚାଷୀ କୃଷିକ୍ଷେତ୍ର ଛାଡ଼ି ଚାଲିଯିବାକୁ ସୁଯୋଗ ଖୋଜିବ ନାହିଁ । କାରଣ ବର୍ତ୍ତମାନ ସମଗ୍ର ଓଡ଼ିଶାରେ ଚାଷର ଅସଲ ସମସ୍ୟା ହେଲା – ଅନ୍ୟ ଯେକୌଣସି ବ୍ୟବସାୟ କିମ୍ବା ବୃତ୍ତି ପରି ଚାଷର ଲାଭ କ୍ଷତିର ହିସାବ କଲେ ଜଣାଯାଏ ଚାଷରେ କ୍ଷତି ହୁଏ । ଆମ ଓଡ଼ିଶାରେ (ଭାରତର ସର୍ବତ୍ର ମଧ) ଅଧିକାଂଶ ଚାଷୀ କ୍ଷୁଦ୍ର, ନାମ ମାତ୍ର ଓ କୃଷି ଶ୍ରମିକ ରୂପେ ପରିଚିତ । କେବଳ ବେନାମୀ ବଡ଼ ଜମି ମାଲିକମାନଙ୍କୁ ଛାଡ଼ି ଦେଲେ ଏପରିକି ବଡ଼ ଚାଷୀମାନଙ୍କ ଚାଷର ହିସାବକୁ ନିଆଗଲେ ମଧ ଚାଷ ଲାଭଦାୟକ ନୁହେଁ । ଏହି ଚାଷକୁ ଲାଭଜନକ କରିବାକୁ ଆଜିର ଜଗତୀକରଣ, ବିଶ୍ୱବାଣିଜ୍ୟ ସଂସ୍ଥା ଓ ଧନୀ ରାଷ୍ଟ୍ରମାନେ କୃଷିକୁ ବ୍ୟାବସାୟିକ ଭିତ୍ତି କରିଦେବା ପାଇଁ ଯେଉଁ ଚକ୍ରାନ୍ତ କରିଛନ୍ତି, ସେହି ଫାଶରେ ପଡ଼ି ଯେଉଁମାନେ କହିବେ; ତାହାହେଲେ ଆମଦେଶରେ ଖାଦ୍ୟାଭାବ ଘଟିବ । ଏବଂ ଏହି ଚକ୍ରାନ୍ତ ହେଲା ଯୁକ୍ତରାଷ୍ଟ୍ର ଆମେରିକା, କାନଡ଼ା, ଅଷ୍ଟ୍ରେଲିଆ ପରି ଦେଶମାନଙ୍କ କଂପାନୀମାନେ ପୃଥିବୀ

Digitized by srujanika@gmail.com

ବଜାରରେ ଖାଦ୍ୟକୁ ଏକଚାଟିଆ ଅଧିକାର କରିବେ । ଏହା ହୋଇଗଲାପରେ ଭାରତ ପରି ବିରାଟ ଦେଶ ମଧ୍ୟ ସୋମାଲିଆର ଦୁର୍ଦ୍ଦଶା ଭିତରକୁ ନଯିବ କିଏ କହିପାରିବ ନାହିଁ । ତେଣୁ ସେମାନଙ୍କ ରାସ୍ତାରୁ ମୁକ୍ତି ପାଇ ଆମରାସ୍ତାରେ କିପରି ଅଧିକ ଖାଦ୍ୟ ଉତ୍ପାଦନ ସହ ଆମ ଚାହିଦା ଅନୁଯାୟୀ ଅନ୍ୟ କୃଷିଜାତ ଦ୍ରବ୍ୟର ଉତ୍ପାଦନ ବୃଦ୍ଧି କରିବା ଏବଂ ଜମି ଓ କୃଷି ସଂପର୍କିତ ସଂବଳକୁ ସର୍ବଦା ବ୍ୟବହାର କରିବା ସହ ସଂରକ୍ଷିତ ରଖିପାରିବା, ତାହାହିଁ ଆମର ମୁଖ୍ୟଚିନ୍ତା ହେବା ଆବଶ୍ୟକ । ଉତ୍ପାଦନରେ ବିନିଯୋଗ ହୋଇଥିବା ଶ୍ରମର ଠିକ୍ ମୂଲ୍ୟପାଇବା ସହ ଚାଷୀ ଖର୍ଚ୍ଚକରି ଥିବା ଅନ୍ୟ ପୁଞ୍ଜି, ଚାଷ ଉପକରଣ ହିସାବକୁ ନିଆଯାଇ ଉତ୍ପାଦନର ମୂଲ୍ୟ ନିର୍ଦ୍ଧାରଣ କରାଯାଉ । ମୋଟ ଉତ୍ପାଦନ ମୂଲ୍ୟ ହିସାବକୁ ଆସିଗଲାପରେ ସେହି ମୂଲ୍ୟଦେଇ ସାଧାରଣ ଲୋକେ ଖାଦ୍ୟକ୍ରୟ କରି ପାରିବା ଶକ୍ତି ଅଛି କି ନାହିଁ ଜାତୀୟ ସ୍ତରରେ ନୀତି ନିର୍ଦ୍ଧାରଣ ହେଉ । ଯଦି ନାହିଁ, ରାଷ୍ଟ୍ର ସେହି ସହାୟକ ମୂଲ୍ୟ ପାଇଁ ଦାୟିତ୍ୱ ନେଉ । ଏହାକୁ ରିହାତି ରୂପେ ଗ୍ରହଣ କରିବାକୁ ଅନେକ ଅର୍ଥନୀତିଜ୍ଞମାନଙ୍କୁ ଅବାନ୍ତର ଲାଗିପାରେ । ଖାଦ୍ୟର ସହାୟକ ମୂଲ୍ୟ ସହ ସାମାଜିକ ନିରାପତ୍ତା ଜଡ଼ିତ । ଓଡ଼ିଶାର ଚାଷୀକୁଳର ଯେଉଁ ସାମାଜିକ ସ୍ଥିତି ସେଥିରେ ଅନେକ ପରିବାର, ଛୋଟ ଚାଷୀ ଓ କୃଷି ଶ୍ରମିକ ଅନ୍ତର୍ଭୁକ୍ତ । ଯିଏ ଚାଷୀ ତା ହାତରେ ହିଁ ଜମି ଦିଆଯାଉ । ଯାହାଫଳରେ ଏମାନେ ନିଶ୍ଚିତଭାବରେ ଚାଷରେ ରହିବେ । ଉତ୍ପାଦନ ପ୍ରକ୍ରିୟାରେ ଆବଶ୍ୟକ ସାମର୍ଥ୍ୟ ବୃଦ୍ଧି ସହ ସେମାନଙ୍କ ପାରଂପରିକ ଜ୍ଞାନର ଉପଯୋଗିତାକୁ ତ୍ୱରାନ୍ୱିତ କରିବା ପାଇଁ ପାଣି ପାଗ, ମାଟି ଓ ଆବଶ୍ୟକ ସାଧାରଣ ଜ୍ଞାନ କୌଶଳର ପ୍ରଶିକ୍ଷଣ ଚାଷୀଙ୍କ ପରିବାରରେ ପହଞ୍ଚାଇବା ବ୍ୟବସ୍ଥା କରିବା ଏକାନ୍ତ ଜରୁରୀ । କିନ୍ତୁ ଚାଷୀର ଫସଲ ଗ୍ୟାରେଣ୍ଟି ସବୁଠାରୁ ଚାଲେଞ୍ଜ । ଏହାକୁ କେବଳ ଇନ୍ଦ୍ରଙ୍କ ଦୟା ଉପରେ ଛାଡ଼ିଦେଇ ଭଲ ଫସଲ ଦେବା ବର୍ଷକୁ ଆର୍ଥିକ ସଂସ୍କାରର ସଫଳତା ବୋଲି ବାହାଦୂରୀ ନେବା ଦ୍ୱାରା ଚାଷ କିମ୍ବା ଚାଷୀ ଉପକୃତ ହେବାର ପ୍ରଶ୍ନ ଉଠୁନାହିଁ ।

Economic Survey of Indian Govt. (୧୯୯୬ - ୯୭) ରେ କୁହାଯାଇଛି - The pale of agricultural growth in recent years has been constrained by a number of factors, including the relatively slowgrowth of food grain production. The annual compound growth rate of food grain production between 1990 - 91 to 1996 - 97 at 1.7

Digitized by srujanika@gmail.com

percent, is lower than the annual rate of population growth of 1.9 percent for nineties and therefore matter of serious concerned. ଏହା ପୂର୍ବ ବର୍ଷର Eco. Survey of India (1995 - 96) ରେ ଦିଆଯାଇଥିବା ମିଥ୍ୟା କୃଷି ଅଭିବୃଦ୍ଧି ହାର ୪% ପୁନଃ ଉପସ୍ଥାପନା କରାନଯାଇ ସତ୍ୟତାକୁ ସ୍ୱୀକାର କରାଯାଇଛି । କିନ୍ତୁ Alternative Survey group ତରଫରୁ Alternative Eco. Survey (1996 - 97) ରେ କୁହାଯାଇଛି ପ୍ରକୃତରେ ଖାଦ୍ୟଶସ୍ୟ ଅଭିବୃଦ୍ଧି ହାର ୧.୩% ଏବଂ ସମୁଦାୟ କୃଷି ଯୋଜନା ଅଭିବୃଦ୍ଧି ମାତ୍ର ୨.୨% । ଏହାର କାରଣ ହେଲା କେନ୍ଦ୍ରର କୃଷି ବଜେଟରେ ଆର୍ଥିକ ସଂସ୍କାରର କୋଳାହଳ ମଧ୍ୟେ ସମଗ୍ର ବଜେଟର ମାତ୍ରା ୧୯୯୦ - ୯୧ରେ ୧୨.୬% ଥିବାବେଳେ ତାହା ୧୯୯୩ - ୯୪ରେ ଆସିଗଲା ୧୦.୯% ଓ ୧୯୯୪ - ୯୫ ରେ ୧୦.୪% । କେନ୍ଦ୍ରର ଯୋଜନା ଓ ରାଜ୍ୟମାନଙ୍କ ଦ୍ୱାରା ଅନୁସୃତ ଓ କାର୍ଯ୍ୟକାରିତା ମଧ୍ୟରେ ହେଉଥିବା ପାରସ୍ପରିକ ସାମଞ୍ଜସ୍ୟ ରହିବା ବଦଳରେ ବିରୋଧାଭାଷ ଜଣାପଡ଼େ । କ୍ରମଶଃ କେନ୍ଦ୍ର ପାଖରେ ରାଜସ୍ୱ ବ୍ୟୟର କେନ୍ଦ୍ରୀକରଣ ବୃଦ୍ଧି ଚାଲିଛି । ଏହା ଦ୍ୱାରା ରାଜ୍ୟମାନଙ୍କ ଯୋଜନା ଅର୍ଥ ହ୍ରାସ ପାଉଛି ଓ ଅଣଯୋଜନା ଖର୍ଚ୍ଚ ବୃଦ୍ଧି ହେଉଛି । ଓଡ଼ିଶାପରି ରାଜ୍ୟମାନଙ୍କର କୃଷିର ବିକାଶ ପାଇଁ ଅତିରିକ୍ତ ସଂବଳ ଲାଗି କୌଣସି ରାସ୍ତା ନାହିଁ । କେନ୍ଦ୍ରରେ ଯୋଜନା ପାଣ୍ଠିରୁ କିମ୍ବା କେନ୍ଦ୍ରର ବିଭିନ୍ନ ସହାୟକ ସ୍କିମ୍‌ରେ ଓଡ଼ିଶାର ଜଳସେଚନଠାରୁ ଆରମ୍ଭ କରି କୃଷି କ୍ଷେତ୍ରର ତଥା ଗ୍ରାମ୍ୟ ଉନ୍ନୟନ ପାଇଁ ଭିତ୍ତିଭୂମି ବିକାଶ କରିବାକୁ ରାଷ୍ଟ୍ରୀୟ ପୁଞ୍ଜି ବିନିଯୋଗର ବ୍ୟବସ୍ଥା ହିଁ ଏକମାତ୍ର ସହାୟକ । ତେଣୁ ଓଡ଼ିଶାର ଚାଷୀପାଇଁ ଏବଂ ଖାଦ୍ୟ ଶସ୍ୟର ମୂଲ୍ୟ ଉପରେ ସହାୟକମୂଲ୍ୟ ପାଇଁ କେନ୍ଦ୍ର ସରକାର ସ୍ୱତନ୍ତ୍ର ଯୋଜନା କରିବା ଆବଶ୍ୟକ; କିନ୍ତୁ ନୂଆ ଅର୍ଥନୀତିରେ ରିହାତି, ସହାୟକ ମୂଲ୍ୟ ଏବଂ ଏସବୁ ଉଠାଇ ଦେବାକୁ ନିର୍ଦ୍ଦେଶ ରହିଛି । ଏହା କେବଳ ବିକାଶଶୀଳ ଓ ଅଣବିକଶିତ ରାଷ୍ଟ୍ରମାନଙ୍କ ମେରୁଦଣ୍ଡ-କୃଷିକୁ ଭାଙ୍ଗିଦେବା ପାଇଁ ବିତ୍ତଶାଳୀ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନେ ବିଶ୍ୱବାଣିଜ୍ୟ ସଂସ୍ଥା ଜରିଆରେ ଅଙ୍ଗୀକାରବଦ୍ଧ । ସାଧାରଣଭାବେ ଆମ ଦେଶରେ ରାଷ୍ଟ୍ରାୟତ୍ତ କୃଷିକ୍ଷେତ୍ରରେ ପୁଞ୍ଜିଗଠନ ୧୯୭୦ - ୮୦ ମଧ୍ୟର ୧୭.୩%ରୁ ଖସିଆସି ୧୯୮୦ - ୯୦ ରେ ୧୧.୬% ରେ ପହଞ୍ଚିଲା । ୧୯୯୦ - ୯୪ରେ ତାହା ୯%କୁ ଖସିଆସିଛି । ପୁଣି ଏହା ତଳକୁ ତଳ ଯାଉଛି । ଏହାର କାରଣ ରିହାତି ଉଠାଇଦେବା ସହ ବର୍ତ୍ତମାନ ନରସିଂହମ କମିଟିର ସୁପାରିଶ ଅନୁଯାୟୀ କୃଷିକ୍ଷେତ୍ରରେ ବ୍ୟାଙ୍କ ଋଣ ହ୍ରାସ କରାଯାଇଛି; କିନ୍ତୁ ଆମ

Digitized by srujanika@gmail.com

ଦେଶର ଶାସକ ଓ ଅର୍ଥନୀତିର ପଣ୍ଡିତମାନେ ଜାଣିବା ଦରକାର ଯେ - ଯୁକ୍ତରାଷ୍ଟ୍ର ଆମେରିକାରେ ଉଚ୍ଚ ବୈଷୟିକ ଜ୍ଞାନ କୌଶଳ ବ୍ୟବହୃତ ଫାର୍ମ କୃଷିକ୍ଷେତ୍ର ହେଲେ ବି ଖାଦ୍ୟ ଶସ୍ୟ ଉପରେ ଚାଷୀଙ୍କୁ ରିହାତି ଦିଆଯାଉଥିଲା । W.T.O. ପରେ ଅନ୍ୟ ଆଙ୍କରେ ୧୯୯୫ ରେ ୟୁରୋପୀୟନ ୟୁନିୟନ୍ ଓ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରତ୍ୟେକ ଚାଷୀ ୨୮,୦୦୦ ଡଲାର ରିହାତି ପାଇଛନ୍ତି ବିଶ୍ୱବଜାର ପ୍ରତିଯୋଗିତା କ୍ଷମତା ହାସଲ ପାଇଁ । ଏହି ରିହାତିର ମୂଲ୍ୟ ଆମ ରାଜ୍ୟର ଜଣେ ବିଶିଷ୍ଟ ଚାଷୀର ଆୟର ପ୍ରାୟ ୭୦ ଗୁଣ ହେବ । ଏହା O.E.C.D. ରିପୋର୍ଟ ୧୯୯୬ରେ ପ୍ରକାଶିତ ହୋଇଛି । OECD ଦେଶମାନେ ୨୦୦୨ରେ ୩୧୧ ବିଲିୟନ ଡ଼ଲାର ଅର୍ଥାତ ୫ ଲକ୍ଷ କୋଟି ଟଙ୍କା ଅଧିକ କୃଷିରେ ରିହାତି ଦେଇଛନ୍ତି । ତେଣୁ ଆମ ଚାଷ ପ୍ରତି ବିମୁଖତାକୁ ହଟାଇ ଚାଷର ପୁନର୍ବିନ୍ୟାସ କରି କୃଷିକ୍ଷେତ୍ରକୁ ସୁରକ୍ଷିତ ରଖାଯାଇ ପାରିଲେ ଖାଦ୍ୟ ନିରାପତ୍ତାର ଗ୍ୟାରେଣ୍ଟି ରହିବ ଓ ସ୍ୱାଧୀନତା ସହ ସାର୍ବଭୌମତ୍ୱ ବଜାୟ ରହିବ । ଚାଷକୁ ରାସାୟନିକ ସାର ଓ କମ୍ପାନୀ ଲିଜରୁ ମୁକ୍ତ କରାଇ ଜୈବିକ ଚାଷ ପାଇଁ ସରକାରୀ ପ୍ରୋତ୍ସାହନ ଦେବା ଏକାନ୍ତ ଜରୁରୀ । ଫଳସ୍ୱରୂପ ଚାଷରେ ବ୍ୟୟଭାର କମିପାରିବ ।

ତେଣୁ ଆମ ଦେଶରେ ଓଡ଼ିଶା ତଥା ଓଡ଼ିଶାପରି ଏକ କୃଷିପ୍ରଧାନ ରାଜ୍ୟରେ ଯେଉଁଠେ ୭୦ ଭାଗ ଲୋକ ଚାଷ ସହ ଜଡ଼ିତ, ସେମାନଙ୍କ ଜୀବିକାକୁ ଗ୍ୟାରେଣ୍ଟି କରାଇବା ସହ ବହୁ ସଂଖ୍ୟକ ଲୋକଙ୍କ ଆୟ ବୃଦ୍ଧି କରିବାକୁ ହେଲେ ପ୍ରଥମେ ପାରଂପରିକ ଚାଷକୁ ଉତ୍ସାହିତ କରାଯାଇ ଜୈବିକ ଚାଷ ଓ ଚାଷୀଙ୍କୁ ରିହାତି ଦିଆଯାଇ ସାମଗ୍ରିକ କୃଷିର ବିକାଶ କରିବାକୁ ହେବ । ପ୍ରଥମେ ଓଡ଼ିଶାର ଚାଷକୁ ଏକ ସଂରକ୍ଷିତ କ୍ଷେତ୍ରରୂପେ ବିବେଚନା କରାଯାଉ । ଏଥିପାଇଁ ଏକ ସମନ୍ୱିତ ଯୋଜନା ତିଆରି କରାଯାଉ - ଯେଉଁଠେ - ଚାଷୀମାନଙ୍କ କୃଷି ଉତ୍ପାଦନ ସହ କୃଷିଭିତ୍ତିକ କ୍ଷୁଦ୍ର ଓ କୁଟୀର ଶିଳ୍ପକୁ ପୁନରୁଦ୍ଧାର କରାଯାଇ ପାରିବ ଓ ନୂଆ ନୂଆ ୟୁନିଟ ନିର୍ମାଣ ହୋଇପାରିବ । ଏହାକୁ ଶିଳ୍ପର ଶ୍ରେଣୀଭୁକ୍ତ କରାଯାଇ ଯେପରି ବ୍ୟାବସାୟିକରଣ କରିବାପାଇଁ ଚକ୍ରାନ୍ତ ଚାଲିଛି ତାହାକୁ ବାତିଲ କରାଯାଉ ଏବଂ ଜମି ଅଧିଗ୍ରହଣ ପାଇଁ ଯେଉଁ ଏକଛତ୍ରବାଦୀ ଓ ପୁଞ୍ଜିବାଦୀ ଆଇନ ହୋଇଛି - ତାକୁ ଉଠାଇ ଦିଆଯାଉ ।

ବୃହତ ଜଳଭଣ୍ଡାର ପରିକଳ୍ପନାକୁ ବାଦ ଦିଆଯାଉ । ଯେଉଁ ଜଳଭଣ୍ଡାର ହୋଇ ଯାଇଛି ଚାଷୀଙ୍କ ନାମରେ - ସେହି ଜଳକୁ ଚାଷପାଇଁ ସଦବ୍ୟବହାର

Digitized by srujanika@gmail.com

କରାଯାଉ, ପୁଣି କ୍ଷୁଦ୍ର ଜଳସେଚନ ଓ ସ୍ଥାନୀୟ ଝରଣା ସ୍ରୋତରୁ ଚାଷୀମାନଙ୍କୁ ପାଣି ଯୋଗାଇବା ପାଇଁ କମ ଅର୍ଥବ୍ୟୟରେ ଅଧିକ ଅମଳ କରାଯାଇପାରିବ । ତାହା ଚାଷୀଙ୍କ ପାରଂପରିକ ଜ୍ଞାନର ବ୍ୟବହାରରେ ସମ୍ଭବପର । ରାସାୟନିକ ଓ ଯନ୍ତ୍ରୀକରଣ ବଦଳରେ ଜୈବିକ ଚାଷକୁ ପ୍ରୋତ୍ସାହିତ କରାଯାଉ । ଏଥିପାଇଁ ମାଟିକୁ ଧ୍ୱଂସ ମୁଖରୁ ପ୍ରଥମେ ମୁକ୍ତ କରାଯାଉ ।

ଭୂତଳ ଜଳକୁ ସମତୁଲ ବ୍ୟବହାର କରିବାକୁ ଉଚିତ ଯୋଜନା କରିବା ବେଳେ - ଆଞ୍ଚଳିକ ବୈଷମ୍ୟକୁ ହଟାଇବା ପାଇଁ ଓ ବହୁ କ୍ଷୁଦ୍ରଚାଷୀ ଉପକୃତ ହେଲାପରି ଜଳସେଚନ ବ୍ୟବସ୍ଥାକୁ ବ୍ୟବସ୍ଥିତ ରୂପ ଦେବାପାଇଁ ସ୍ୱତନ୍ତ୍ର ଆଞ୍ଚଳିକ ଜୋନ୍ ଗଠନ କରାଯାଉ ଯେଉଁଠି ଆଞ୍ଚଳିକ ଅବସ୍ଥାକୁ ଧରି ଭିନ୍ନ ଭିନ୍ନ ସ୍କିମ୍ ଲାଗୁ ହୋଇପାରିବ । ଏଥିପାଇଁ ଏକ ନିର୍ଦ୍ଧାରିତ ସମୟ ବ୍ୟବସ୍ଥା ମଧ୍ୟରେ ସମ୍ବଳ ଯୋଗାଡ଼ କରାଯାଉ । ସେହି ସମ୍ବଳ ମାନବସମ୍ବଳ (ଜ୍ଞାନ ଓ ଶ୍ରମ) ଓ ସ୍ୱଳ୍ପ ପୁଞ୍ଜି (ବିଦେଶୀ ଡ଼ଲାର୍ ଆବଶ୍ୟକତା ନାହିଁ) ଏକାଠି କରାଯାଇ ପାରିବ । ଏହା ରାଷ୍ଟ୍ରୀୟ ପୁଞ୍ଜି ହେବ । ଏଥିପାଇଁ ରାଜନୈତିକ ଇଚ୍ଛାଶକ୍ତି ଦରକାର ।

ଓଡ଼ିଶାର ମାଟି ଅନୁଯାୟୀ ଆବଶ୍ୟକ ବିହନର ସଂରକ୍ଷଣ ବ୍ୟବସ୍ଥା ଓ ଚାଷୀ ଚାଷୀଙ୍କ ମଧ୍ୟରେ ବିହନ ଆଦାନପ୍ରଦାନ ବ୍ୟାଙ୍କ ସ୍ୱରୂପ ନୂଆ ବ୍ୟବସ୍ଥା ଆରମ୍ଭ କରିବା ସହ ପନି ପରିବା ଚାଷକୁ ବ୍ୟାପକ କରାଯାଇ ଶୀତଳ ଭଣ୍ଡାର ବ୍ୟବସ୍ଥାର ଆବଶ୍ୟକତା ରହିଛି । ଏହା ସହ ଗୋପାଳନ ଓ ଦୁଗଧ ଉତ୍ପାଦନ କାର୍ଯ୍ୟକ୍ରମକୁ ନେଇ ଛୋଟ ଛୋଟ ପ୍ରକଳ୍ପ ଗଢ଼ି ଉଠିବାର ଉଦ୍ୟମ କରାଗଲେ ନୂଆ ବଜାର ସୃଷ୍ଟି ହେବ, ଯେଉଁ ବଜାରରେ କୃଷି ଉତ୍ପାଦନ ପ୍ରଭୁତ୍ୱ ବିସ୍ତାର କରିବ ।

## ବିହନ ଏକଚାଟିଆ ଓ କୃଷକଙ୍କ ପରାଧୀନତା

୧୯୬୦ ଦଶକରେ ବିଶ୍ୱ ବ୍ୟାଙ୍କ ଏବଂ ଯୁକ୍ତରାଷ୍ଟ୍ର ଆମେରିକାର ସରକାର ସବୁଜ ବିପ୍ଳବ ନାମରେ ଅତ୍ୟଧିକ ଜଳ ଓ ରାସାୟନିକ ସାର ଆବଶ୍ୟକ କରୁଥିବା ବିହନ ପ୍ରବର୍ତ୍ତନ କଲେ । ଏହା ଦ୍ୱାରା ଭୂତଳ ଜଳକୁ ଅତ୍ୟଧିକ ଭାବେ ବ୍ୟବହାର କରାଗଲା ଓ ଜମିକୁ ପ୍ରଦୂଷିତ କରାଗଲା ।

୧୯୮୮ରେ ସେହି ବିଶ୍ୱବ୍ୟାଙ୍କ ଆମକୁ ବାଧ କଲାଯେ ଆମ ରାଜ୍ୟ ବିହନ ନିଗମଗୁଡ଼ିକୁ ବନ୍ଦ କରି ବହୁରାଷ୍ଟ୍ରୀୟ କଂପାନୀମାନଙ୍କୁ ବିହନ କାରବାର ପାଇଁ ଅନୁମତି ଦେବାକୁ । କାର୍ଗିଲ, ନୋଭରାଟିସ, ମନସେଣ୍ଟ, ସିଞ୍ଜେଣ୍ଟ ପରି ବିଦେଶୀ

Digitized by srujanika@gmail.com

କଂପାନୀମାନେ ଆମ ବଜାରରେ ପ୍ରବେଶ କରି ଆମ ଦେଶର ମାହିକୋ ଏବଂ ରାଲିସ କଂପାନୀମାନଙ୍କୁ କିଣି ଦେଇ ନିଜର କରିସାରିଲେଣି । ବର୍ତ୍ତମାନ ଆନ୍ଧ୍ର, କର୍ଣ୍ଣାଟକ, ମହାରାଷ୍ଟ୍ର, ହରିଆନା, ପଞ୍ଜାବର ଚାଷୀମାନେ ଅତ୍ୟଧିକ ଦାମରେ ବିହନ ଓ ରାସାୟନିକ କୀଟନାଶକ ଔଷଧ କିଣି ଶେଷରେ ଫସଲ ହରାଇବା ପରେ ଦେବାଳିଆ ହୋଇ ହଜାର ହଜାର ସଂଖ୍ୟାରେ ଆତ୍ମହତ୍ୟା କରୁଛନ୍ତି । ଆମ ଶସ୍ୟ ଉତ୍ପାଦନ ମୂଲ୍ୟ ଅତିମାତ୍ରାରେ ବୃଦ୍ଧିପାଉଥିବାବେଳେ କୃଷିଜାତ ଦ୍ରବ୍ୟର ଦାମ କମୁଛି । ଏହା ଫଳରେ ଚାଷୀମାନେ ଏକ ନକାରାତ୍ମକ ଆର୍ଥିକ ବ୍ୟବସ୍ଥା ଭିତରେ ଜୀବନ ଅତିବାହିତ କରୁଛନ୍ତି ।

ଏତିକିବେଳେ ଆମ ଦେଶର ସରକାର ବିଶ୍ୱ ବାଣିଜ୍ୟ ସଂସ୍ଥାର ନିର୍ଦ୍ଦେଶରେ ନୂଆ ପେଟେଣ୍ଟ ଓ ବିହନ ଆଇନ ତିଆରି କରୁଛନ୍ତି ଯାହାକି ବିହନ କାରବାରକୁ ବିଦେଶୀ କଂପାନୀମାନଙ୍କ ସଂପତ୍ତିରେ ପରିଣତ କରିଦେବ ଏବଂ ଆମ ଚାଷୀମାନେ ନିଜ ବିହନ ବ୍ୟବହାର କରିବା ପରିବର୍ତ୍ତେ ସେହି ବହୁରାଷ୍ଟ୍ରୀୟ ବିହନ କଂପାନୀମାନଙ୍କୁ ପ୍ରତିବର୍ଷ ରୟାଲଟି ଦେବାକୁ ବାଧହେବେ । ବାସୁମତୀ ଚାଉଳ, ନିମ, ହଳଦୀ, କଲରା, ଅଦା ପରି ଶହ ଶହ ବୃକ୍ଷଲତାରୁ ଆମେ ଖାଦ୍ୟ ଓ ଔଷଧ ବ୍ୟବହାର କରି ଆସୁଥିବାବେଳେ ଆମର ହଜାର ହଜାର ବର୍ଷର ନିଜସ୍ୱ ପୁରାତନ ଜ୍ଞାନକୁ କର୍ପୋରେଟ କଂପାନୀମାନଙ୍କ ଦ୍ୱାରା ଚୋରୀକୁ ସୁରକ୍ଷା ଦିଆଯାଉଛି ସରକାରଙ୍କ ବିହନ ଓ ପେଟେଣ୍ଟ ଆଇନର ପରିବର୍ତ୍ତନ କରାଯାଇ । ଏହା ଆମ ସ୍ୱାଧୀନତା ଉପରେ ପ୍ରଶ୍ନ ଚିହ୍ନ ଲାଗିଛି ।

ବହୁରାଷ୍ଟ୍ରୀୟ କଂପାନୀମାନେ ଜେନେଟିକ ଅନୁଭୂତ ବିହନ ପ୍ରବର୍ତ୍ତନ କରୁଛନ୍ତି ଯାହାକି ନପୁଂସକ । ସେମାନଙ୍କ ବିହନ ଅଙ୍କୁରୋଦଗମ ହେବ ଯଦି ସେହି କଂପାନୀର ରାସାୟନିକ ଔଷଧ ଆଣି ବ୍ୟବହାର କରାଯାଏ ଏବଂ ଯେଉଁ ଫସଲ ହେବ ତାହା ବିଷଧାରଣ କରିଥିବ । ବିଷାକ୍ତ ପେଷ୍ଟ ମାଟିକୁ ଉର୍ବର କରୁଥିବା କୀଟାଣୁ ଉପକାରୀ ଜୀବ ପ୍ରଜାପତି, ମହୁମାଛି ଏବଂ କେଞ୍ଚୁଆ ଗୁଡ଼ିକୁ ନଷ୍ଟ କରିଦିଏ । ବହୁରାଷ୍ଟ୍ରୀୟ କଂପାନୀ ଏବଂ ସରକାର ଯୁକ୍ତି କରୁଛନ୍ତି ଯେ ଉକ୍ତ ନୂଆ ବିହନ ଅଧିକ ଉତ୍ପାଦନ ହେଉଛି, କିନ୍ତୁ ଏହା ସତ୍ୟ ନୁହେଁ । ବରଂ ଯୁକ୍ତରାଷ୍ଟ୍ର ଆମେରିକାରେ ଆଠ ହଜାର ପରୀକ୍ଷା କରି କୁହାଯାଇଛି ଯେ ଏହା କମୁଛି । ନୂଆ ଯାନ୍ତ୍ରିକ ପ୍ରଜନନୀୟ ପ୍ରଯୁକ୍ତି ବିଦ୍ୟା ଏବଂ ନୂଆ ସତ୍ତ୍ୱାଧିକାର ଆଇନ କେବଳ ଚାଷୀଙ୍କୁ କ୍ରୀତଦାସ କରିବା ପାଇଁ ଉଦ୍ଦିଷ୍ଟ । ତେଣୁ କୃଷିକୁ ସ୍ୱାଧୀନ ରହିବାକୁ ହେଲେ

Digitized by srujanika@gmail.com

ଚାଷୀମାନେ ବୀଜ ସତ୍ୟାଗ୍ରହରେ ଯୋଗଦେବା ଦରକାର । ଏହି ବୀଜ ସତ୍ୟାଗ୍ରହ ଏକ ଚାଷୀ ଗଣ ଆନ୍ଦୋଳନ ଯାହାକି କୃଷି ଓ ପ୍ରକୃତିର ବିପଦ ଜେନେଟିକ୍ ବିହନକୁ ବିରୋଧ କରି ଅସହଯୋଗ କରିବ । ବର୍ତ୍ତମାନ ଓଡ଼ିଶାରେ କୃଷି ବିପଣନ ଆଇନର ପରିବର୍ତ୍ତନ କରାଯାଇ ଠିକାଚାଷ ନାମରେ କଂପାନୀ ଚାଷ ହେବ । ଚାଷୀଙ୍କ ହାତରୁ ଜମି ଚାଲିଯିବ ଓ ଖାଦ୍ୟ ସଂକଟ ହେବ । ଏହାକୁ ହଟାଇବା ପାଇଁ ଚାଷୀ ଆନ୍ଦୋଳନର ଆବଶ୍ୟକତା ଅତି ଜରୁରୀ ।

## ଆମଦାନୀ ଜରିଆରେ କୃଷି ବଜାରକୁ ଅପହରଣ

ବିଶ୍ୱବାଣିଜ୍ୟ ସଂସ୍ଥାର ନିୟମାବଳୀ ଭାରତୀୟ କୃଷକଙ୍କ ନିୟନ୍ତ୍ରଣରୁ ଭାରତର କୃଷି ବଜାରକୁ ଛଡ଼ାଇ ଆଣି ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ହାତରେ ଦେଇଦେବା ପାଇଁ ଭାରତ ସରକାରକୁ ବାଧ କରୁଛି । ଭାରତୀୟ ବିମାନ (ଆଇ.ସି.୮୧୪) ଅପହରଣର ଶେଷ ପର୍ଯ୍ୟାୟବେଳେ ଯୁକ୍ତରାଷ୍ଟ୍ର ଆମେରିକା ଓ ଭାରତ ଏକ ଗୁପ୍ତ ଦଲିଲରେ ଚୁକ୍ତି କରିଛନ୍ତି ଯାହାଫଳରେ ଭାରତ ବଜାରରେ ଆମେରିକାର ସମସ୍ତ କୃଷିଜାତ ଦ୍ରବ୍ୟ ବିକ୍ରି ହୋଇପାରିବ । ଏହି ଦ୍ରବ୍ୟ ମଧ୍ୟରେ ମୃତ ପଶୁ ଓ ବର୍ଜ୍ୟ ପଶୁ ପଦାର୍ଥ (ମାଂସ ଉତ୍ପାଦନ କ୍ଷେତ୍ରରୁ) ମଧ୍ୟ ଆସିବ ଯାହାକି ଇଂଲଣ୍ଡରେ ଏହା ପାଗଳ ଗାଈ ରୋଗ ସୃଷ୍ଟି କରିଥିଲା । ମୃତ ପଶୁ ଓ ମାଂସର ଆମଦାନୀ ଆମ ସଂସ୍କୃତି ଓ ସର୍ବସାଧାରଣଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ । ଏହା ବ୍ୟତୀତ ବିଦେଶରୁ ଗହମ, ଚାଉଳ, ଦୁଗ୍ଧ, ପିଆଜ, ରାଗ, ବାଜରା, ଜବାର, ମକା, ଚା, ନଡ଼ିଆ ପରି ବିଦେଶର କୃଷିଜାତ ପଦାର୍ଥର କଟକଣାବିହୀନ ଆମଦାନୀ ଫଳରେ ଆମ କୃଷିର ବିକାଶ ପ୍ରତି ଶକ୍ତ ଧକ୍କା ଦେଇ ସାରିଲାଣି ।

ଭାରତ ବିରୁଦ୍ଧରେ ଯୁକ୍ତରାଷ୍ଟ୍ର ଆମେରିକା କରିଥିବା ଏକ ବିବାଦକୁ କେନ୍ଦ୍ରକରି ଭାରତକୁ ବାଧ କରାଯାଇଛି ଆମଦାନୀ ପରିମାଣ କଟକଣା ଉଠାଇଦେବାକୁ । ଯଦିଚ ବିଶ୍ୱବାଣିଜ୍ୟ ସଂସ୍ଥା ପରିମାଣ କଟକଣା ପର୍ଯ୍ୟାୟକ୍ରମେ ଉଠାଇ ନେବାକୁ ୨୦୦୩ ସାଲରୁ ଆରମ୍ଭ ହେବାକୁ ଠିକ୍ କରିଥିଲା, କିନ୍ତୁ ଡ଼ିସେମ୍ବର ୨୮ ତାରିଖ ୧୯୯୯ ଦିନ ଭାରତ ଆମେରିକା ସହ ୩ ବର୍ଷ ଆଗରୁ ଏପରି କଟକଣା ଉଠାଇ ଦେବାକୁ ରାଜିନାମା ସ୍ୱାକ୍ଷର କଲା ଯାହାକି ୩୧ ମାର୍ଚ୍ଚ ୨୦୦୧ ସୁଦ୍ଧା ୧୪୨୯ଟି ପଦାର୍ଥରୁ ସଂପୂର୍ଣ୍ଣ କଟକଣା ଉଠାଇ ଦିଆଯାଇଛି । ସେଥିରେ କୃଷିଜାତ ଜିନିଷ ୮୫୨ଟି ଅଛି । ଆମଦାନୀ ପରିମାଣ ଉପରେ କଟକଣା ନିହାତି ଦରକାର ଯାହାଦ୍ୱାରା ଜୀବିକା, ପରିବେଶ ଓ ଜନସ୍ୱାସ୍ଥ୍ୟର ସୁରକ୍ଷା ସମ୍ଭବପର ।

Digitized by srujanika@gmail.com

***ବିଶ୍ୱ ବାଣିଜ୍ୟ ସଂସ୍ଥାର ଏକାଦଶ ଅନୁଚ୍ଛେଦରେ ପରିବର୍ତ୍ତନ କରାଯାଇ ଏପରି କଟକଣାକୁ ଅନୁମତି ଦେବା ଏକାନ୍ତ ଜରୁରୀ ଯାହାଫଳରେ ଆମ ଦେଶର କୃଷିକୁ ନ୍ୟାୟ ଦିଆଯାଇପାରିବ । କିନ୍ତୁ ଭାରତ ସରକାର ଆହୁରି ଏକ ପାଦ ଆଗକୁଯାଇ ଆମଦାନୀ କର ହ୍ରାସ କରି ଭାରତୀୟ ବଜାରରେ ଭାରତୀୟ କୃଷିଜାତ ପଦାର୍ଥକୁ ଅଲୋଡ଼ା ବସ୍ତୁରେ ପରିଣତ କରିବାକୁ ଯାଉଛନ୍ତି । ଏହାଦ୍ୱାରା ଚାଷୀ ତାର ଉତ୍ପାଦନକୁ କ୍ଷତିରେ ବିକିବାକୁ ବାଧ ଏବଂ କ୍ରମଶଃ ଚାଷୀ ହାତରୁ ଜମି ବହୁରାଷ୍ଟ୍ରୀୟ କଂପାନୀ ହାତକୁ ଚାଲିଯିବାର ପ୍ରକ୍ରିୟା ଆରମ୍ଭ ହେଲାଣି ।***

ଉଦାହରଣ ସ୍ୱରୂପ ଉତ୍ତର ବିଶ୍ୱର ଧନୀ ରାଷ୍ଟ୍ରମାନେ ଆମଦାନୀ ଉପରେ ୧୦୦ ରୁ ୩୦୦% ପର୍ଯ୍ୟନ୍ତ କର ଲାଗୁ ହେଉଥିବାବେଳେ ଆମ ଦେଶରେ ଚାଉଳ, ଦୁଗଧ, ଗହମ ଓ ଡ଼ାଲି ଉପରେ ଶୂନ କର ଲାଗୁ କରାଯାଇଛି । ଏସବୁ ପଦାର୍ଥ ଖାଦ୍ୟ ନିରାପତ୍ତା, ଗ୍ରାମାଞ୍ଚଳ ବିକାଶ ଓ ଜୀବିକାର ସୁରକ୍ଷାର ଅସଲ ଚାବିକାଠି । ସୋୟାବିନ ଉପରେ ଉରୁଗ୍ୱେ ବୈଠକ ଚୁକ୍ତି ପରେ ୧୯୯୫ରେ ଆମଦାନୀ କର ୬୫%ରୁ ୩୦%କୁ ଖସି ଆସିଲା ଏବଂ ୧୯୯୮ରେ ୧୫%କୁ ଆସିଲା । ଫଳରେ ୧୯୯୫ - ୯୬ ରେ ୬୦୦୦୦ ଟନ ଆମଦାନୀ ହୋଇଥିବାବେଳେ ୧୯୯୭ - ୯୮ ରେ ୨୩୬,୦୦୦ ଟନ ହୋଇଛି । ଆମର ଚାଷ ଜୀବିକାକୁ ସୁରକ୍ଷା ଦେବାପାଇଁ ଖାଦ୍ୟଶସ୍ୟ ଆମଦାନୀ ଉପରେ ୩୦୦% କର ଧାର୍ଯ୍ୟହେବା ଦରକାର । ୧୯୯୯ ଅଗଷ୍ଟରେ ସୋରିଷ ତେଲ ଅପମିଶ୍ରଣକୁ ନେଇ ଦୁର୍ଘଟଣା ଘଟିଲା ଦିଲ୍ଲୀ ସହରରେ, କିନ୍ତୁ ସମସ୍ତ ସ୍ଥାନୀୟ ତେଲ ଉପରେ ପ୍ରଭାବ ପଡ଼ିଲା । ଏହାକୁ ଆଳକରି ବହୁରାଷ୍ଟ୍ରୀୟ କଂପାନୀଙ୍କ ଚାପରେ ସରକାର ଉତ୍ତର ଭାରତରେ ମୁଖ୍ୟ ଖାଦ୍ୟ ତୈଳ ସୋରିଷ ତେଲକୁ ବନ୍ଦ କରିଦେଲେ ଏବଂ ସମସ୍ତ ଖାଦ୍ୟ ତେଲର ଆମଦାନୀ ଉପରେ କଟକଣା ଉଠାଇ ଦେଲେ । ସୋୟାବିନ ଓ ସୋୟା ତେଲ ଆମାଦାନୀକୁ ସହଜ ଓ ସରଳ କରି ଦିଆଗଲା । ଏହାର ପରିଣାମରେ ଆମ ଦେଶରେ ଚିନାବାଦାମ, ସୋରିଷ ପରି ତୈଳବୀଜ ଉତ୍ପାଦନ କରୁଥିବା ଚାଷୀମାନେ ବିକ୍ରିକରି ପାରିଲେ ନାହିଁ । ତେଲ କଳ ମଧ୍ୟ ବନ୍ଦ ହୋଇଗଲା । ଛୋଟ ଛୋଟ ତେଲ ଘଣା ଓ ମିଲ ବନ୍ଦ ହୋଇଗଲା । ଦର କମିଗଲା । ଚାଷୀ ସର୍ବସ୍ୱାନ୍ତ ହୋଇଗଲା । ରିହାତି ପାଇ ଆସୁଥିବା ସୋୟାବିନ ଆମ ବଜାରରେ ୩୦ ଲକ୍ଷ ଟନ ଗଦାହେଲା । ୨୦୦୨ ସାଲରେ ଏଥିପାଇଁ ଆମଦେଶକୁ ୧୦୦ କୋଟି ଡ଼ଲାର ଅର୍ଥାତ ୪୩୦୦ କୋଟି ଟଙ୍କା ବୈଦେଶିକ ମୁଦ୍ରା ହରାଇବାକୁ ପଡ଼ିଲା ।

Digitized by srujanika@gmail.com

ଆମେରିକାର ସୋୟାବିନ ଦର ଟନ ପିଛା ୧୫୫ ଡ଼ଲାର କିନ୍ତୁ ଏପରି ଶସ୍ତା ଦାମପାଇଁ ଆମେରିକା ସରକାର ଟନ ପିଛା ୧୯୪ ଡ଼ଲାର ରିହାତି ଦେଉଛି ତାର ସୋୟାବିନ ଚାଷୀଙ୍କୁ । ଏହା ଆମ ବଜାରକୁ ଆସିବା ଦ୍ୱାରା ଆମ ତୈଳବୀଜ ଉତ୍ପାଦନ କମାଇ ଦେଉଛି । ଆମ ଚିନାବାଦାମ ଦାମ ୩୦% ଖସି ଆସିଲା । ସୋୟାବିନ ଖାଇବା ଦ୍ୱାରା ପୁରୁଷ ପ୍ରଜନନ ଶକ୍ତି କମିଯାଏ ଯେହେତୁ ଏଥିରେ ଫାଇଟୋଷ୍ଟ୍ରୋଜେନ ନାମକ ଏକ ସ୍ତ୍ରୀ ହର୍ମୋନ ରହିଛି ।

ଧନୀ ଦେଶମାନଙ୍କର ମୋଟ କୃଷି ରିହାତି ପ୍ରାୟ ୩୫୩୦୦ କୋଟି ଡଲାର ଅର୍ଥାତ ୧୭ ଲକ୍ଷ କୋଟି ଟଙ୍କା ଥିବାବେଳେ ଭାରତୀୟ କୃଷି ପାଇଁ ମାତ୍ର ୨୫୦ କୋଟି ଡ଼ଲାର ଅର୍ଥାତ ୧୦୭୫୦ କୋଟି ଟଙ୍କା । ଏହାଫଳରେ ଗରିବ ଦେଶର କୃଷି ଧ୍ୱଂସ ହୋଇଯାଉଛି ଏବଂ ଏଥିରୁ ମିଳୁଥିବା ରୋଜଗାର ଏବଂ ଖାଦ୍ୟ ନିରାପତ୍ତା ବିପନ୍ନ । ଅର୍ଥାତ ବହୁଲୋକ ଭୋକରେ ରହିବେ ଯଦିଚ କେତେକ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ଶସ୍ତାରେ ଖାଦ୍ୟ ପାଇବେ, କିନ୍ତୁ କିଛି ବର୍ଷ ପରେ ଆମ ଦେଶରେ ଖାଦ୍ୟ ଉତ୍ପାଦନ କମିଗଲା ପରେ ଆମଦାନୀ ହେଉଥିବା ଖାଦ୍ୟଶସ୍ୟର ଦାମ ବହୁଗୁଣରେ ବୃଦ୍ଧିପାଇବ ଏବଂ ଅକାଳ ହିଁ ଆମକୁ ଭୋଗିବାକୁ ପଡ଼ିବ । ଶେଷରେ ଖାଦ୍ୟ ପଦାର୍ଥ ଋଣ କରି କିଣିବାକୁ ବାଧ ହେବ ଓ ବୈଦେଶିକ ମୁଦ୍ରା ପୁଣି ବିଦେଶକୁ ଚାଲିଯିବ । ଏପରି ସବସିଡ଼ି ବିଶ୍ୱ ବାଣିଜ୍ୟ ସଂସ୍ଥାର ନିୟମାବଳୀର ବାହାରେ ଏହା ରପ୍ତାନୀ ଓ ଡପିଙ୍ଗ ଯୋଗୁଁ ରିହାତି ବୋଲି ଆଳ ଦେଖାଇ ବିଶ୍ୱ ବଜାରକୁ ନିୟନ୍ତ୍ରଣ କରିବାପାଇଁ ଉଦ୍ଦିଷ୍ଟ, କିନ୍ତୁ ବିଶ୍ୱବାଣିଜ୍ୟ ସଂସ୍ଥା, ବିଶ୍ୱ ବ୍ୟାଙ୍କ ଏହାର ବିରୋଧ କରିବା ପରିବର୍ତ୍ତେ ଆମ ଚାଷୀଙ୍କୁ ଦିଆଯାଉଥିବା ରିହାତି ବନ୍ଦପାଇଁ ନିର୍ଦ୍ଦେଶ ଦେଉଛନ୍ତି । ଚାଷୀଙ୍କୁ ରିହାତି କମିଗଲାବେଳେ କର୍ପୋରେଟକୁ ରିହାତି ବୃଦ୍ଧି ପାଉଛି । ଏହାର ଜ୍ୱଳନ୍ତ ଉଦାହରଣ ବିଦ୍ୟୁତ୍ ଉତ୍ପାଦନରେ ଘରୋଇ ଶିଳ୍ପ ତଥା ବହୁରାଷ୍ଟ୍ରୀୟ କଂପାନୀମାନଙ୍କୁ ରିହାତି ଦିଆଯାଉଛି । ଏହି ବାଟ ଆର୍ଥିକ ସଂସ୍କାର କୃଷି ଅର୍ଥନୀତିର ସର୍ବନାଶ କରି ଚାଲିଥିବାବେଳେ ବିଦେଶୀ କୃଷି ବ୍ୟବସାୟର ବିନାଶ କରୁଛି । ଏହାଫଳରେ କୃଷି ଉତ୍ପାଦନ କମିବାରେ ଲାଗିଛି । ୧୯୮୦ ଦଶକରେ ୨.୫%ରୁ ୧୯୯୦ରେ ୧.୩% ଖାଦ୍ୟ ଶସ୍ୟ ଉତ୍ପାଦନରେ ହ୍ରାସ ପାଇଛି । ଏଣୁ ଖୋଲା ବାଣିଜ୍ୟ ନୀତି ଖାଦ୍ୟ ନିରାପତ୍ତା ଓ ଚାଷୀଙ୍କ ଜୀବିକା ଉପରେ ଆକ୍ରମଣ କରି ଜାତୀୟ ନିରାପତ୍ତା ପ୍ରତି ବିପଦ ସୃଷ୍ଟି କରିଛି । ମୁକ୍ତ ବ୍ୟବସାୟ ଅପେକ୍ଷା ନ୍ୟାୟ ପୂର୍ଣ୍ଣ ସୁଲଭ ବ୍ୟାପାର ହିଁ ଜୀବିକାର ଗ୍ୟାରେଣ୍ଟି ଦେଇପାରିବ ।

Digitized by srujanika@gmail.com

ତେଣୁ ଭାରତୀୟ ଚାଷୀଙ୍କ ସ୍ୱାଧୀନତା ପାଇଁ ଏକ ନୂଆ ମୁକ୍ତି ଆନ୍ଦୋଳନର ଐତିହାସିକ ଆବଶ୍ୟକତା ରହିଛି । ଆମର ଖାଦ୍ୟ, କୃଷିକୁ ବହୁରାଷ୍ଟ୍ରୀୟ କଂପାନୀ ଓ ବିଶ୍ୱ ବାଣିଜ୍ୟ ସଂସ୍ଥାର ନିୟନ୍ତ୍ରଣରୁ ମୁକ୍ତ ରଖିବାକୁ ହେବ । ଆମେ ଯଦି ଆମର ବିହନ, ଖାଦ୍ୟ, କୃଷି ତଥା ଚାଷୀଙ୍କ ସାର୍ବଭୌମତ୍ୱର ସୁରକ୍ଷା ଦେବାରେ ଆମ ଜାତୀୟ ଖାଦ୍ୟ ଓ କୃଷି ନୀତି ବିଫଳ ହେବ ତାହାହେଲେ ଆମେ ପୁଣି ଆଉଥରେ ଔପନିବେଶିକ ଶାସନାଧୀନ ହେବାକୁ ବାଧ୍ୟ ହେବା ।

ବୌଦ୍ଧିକ ଜ୍ଞାନ ସଂବଳ ବ୍ୟାପାର ଚୁକ୍ତିନାମାରୁ ବୀଜ, ବୃକ୍ଷଲତା ଓ ପଶୁ ସଂପଦକୁ ମୁକ୍ତ ରଖିବାକୁ ହେବ, ପେଟେଣ୍ଟ ଆଇନରୁ ବିହନ, ବୃକ୍ଷଲତା ଓ କୃଷିକୁ ବାହାରେ ରଖାଯାଉ । ପରିବର୍ତ୍ତିତ ପେଟେଣ୍ଟ ଆଇନକୁ ବାତିଲ କରାଯାଉ, ଆମେରିକା ଓ ଭାରତ ମଧ୍ୟରେ ଆମଦାନୀ କଟକଣା ଉଠାଇ ଦେବାକୁ ହୋଇଥିବା ଚୁକ୍ତିନାମା ରଦ୍ଦ କରାଯାଉ, ସମସ୍ତ କୃଷିଜାତ ଦ୍ରବ୍ୟର ଆମଦାନୀ ଉପରେ କଟକଣା ଲାଗୁ ହେଉ ଓ ବିଶ୍ୱ ବାଣିଜ୍ୟ ସଂସ୍ଥାରୁ ଖାଦ୍ୟ ଓ କୃଷିକୁ ମୁକ୍ତ ରଖାଯାଉ ।

## ଓଡ଼ିଶାରେ ଚାଷୀ ଆନ୍ଦୋଳନର କେତୋଟି ଦିଗ

ଓଡ଼ିଶାରେ ଚାଷୀ ଆନ୍ଦୋଳନ ସ୍ୱାଧୀନତା ପରେ କୃଷକକୁ ଜମିର ଅଧିକାର ତଥା ଭାଗ ଚାଷୀ ଆନ୍ଦୋଳନ, ଜମିକୁ ଜଳ ଦାବି କରି ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ଥାନରେ ଆନ୍ଦୋଳନ ହୋଇଥିଲା । ବିଶେଷକରି ସାମ୍ୟବାଦୀ ଓ ସମାଜବାଦୀ ରାଜନୈତିକ ଦଳମାନଙ୍କ ନେତୃତ୍ୱରେ ଚାଷୀ ଆନ୍ଦୋଳନମାନଙ୍କର ଇତିହାସ ଅଛି । ସମାଜବାଦୀ ଦଳ ତ ଆଉ ନାହିଁ । କମୁନିଷ୍ଟ ଦଳଗୁଡ଼ିକ ଭାଗ ଭାଗ ହୋଇ ରହିଥିଲେ ମଧ୍ୟ ଅତୀତର ଚାଷୀ ଆନ୍ଦୋଳନର ଆଉ ପୁନରାବୃତ୍ତି ହୋଇପାରୁନାହିଁ, କିନ୍ତୁ ବର୍ତ୍ତମାନ ଆମ ଦେଶରେ ବିଶେଷ କରି ଆମ ରାଜ୍ୟରେ ଚାଷୀମାନେ ନୂଆ ନୂଆ ସଂକଟ ଭିତରେ ଗତି କରୁଛନ୍ତି । 'ଏପର୍ଯ୍ୟନ୍ତ ଲଙ୍ଗଳ ଯାହାର ଜମି ତାର' ଦାବିଟି ଅପୂର୍ଣ୍ଣ ଥିବାବେଳେ ଚାଷୀ କିପରି ଚାଷରୁ ହଟିବ ଏକ ବିପରୀତ ପ୍ରକ୍ରିୟା ଆରମ୍ଭ ହୋଇଯାଇଛି । ଯେଉଁ ଚାଷୀ ହାତରେ ଜମି ଅଛି, ସେ ମୁଣ୍ଡରେ ହାତଦେଇ ବସିଛି ଯେ – ସେ ଚାଷ କରିବ କି ନାହିଁ ଯଦିଚ ତାର ଆଉ କୌଣସି ବିକଳ୍ପ ନାହିଁ ।

ଏପରି ଏକ ସ୍ଥିତିର ମୂଳ କାରଣ : ଚାଷରେ ଉତ୍ପାଦନ ଖର୍ଚ୍ଚ ବୃଦ୍ଧି ହେବାବେଳେ କୃଷି ଉତ୍ପାଦନର ବିକ୍ରୟ ମୂଲ୍ୟ କମିଯାଉଛି । ଜଳସେଚନର ବ୍ୟବସ୍ଥା ସମସ୍ତଙ୍କ ପାଇଁ ନଥିବାବେଳେ ଥିବା ସୁବିଧା ଚାଷୀଙ୍କ ପାଇଁ ମହଙ୍ଗା ହେଲାଣି ।

Digitized by srujanika@gmail.com

ଛଳକର ବିଗତ ୫ ବର୍ଷ ମଧ୍ୟରେ ୪ ଗୁଣା ବଢ଼ିଲାଣି । ତାହା ମଧ୍ୟ ବିଶ୍ୱବ୍ୟାଙ୍କ ଓ ଡ଼ି.ଏଫ.ଆଇ.ଡ଼ି.ର ନିର୍ଦ୍ଦେଶରେ । ଯେହେତୁ ସେମାନେ ସରକାରଙ୍କ ଋଣ ଦାତା ସାହୁକାର । ସବୁଠାରୁ ବଡ଼ ସମସ୍ୟା ହେଲା ଓଡ଼ିଶାର ମୁଖ୍ୟ କୃଷି ଉତ୍ପାଦନ ଧାନର ଦାମ ଚାଷୀଙ୍କୁ ମିଳୁନାହିଁ । ଏକଦା ଓଡ଼ିଶାରେ କୋରାପୁଟ ଓ ସମ୍ବଲପୁର ପରି ଜିଲ୍ଲାମାନଙ୍କରେ ଧାନର ଅଭାବୀ ବିକ୍ରି  ସମସ୍ୟା ଅଧିକ ଥିଲା । ସାଧାରଣତଃ ଉପକୂଳ ଜିଲ୍ଲାମାନଙ୍କରେ ଧାନର ବଜାର ଦର ସରକାରୀ ମୂଲ୍ୟଠାରୁ ଅଧିକ ଥିଲା । ଗଂଜାମ ଜିଲ୍ଲାରେ କେବେ ମଧ୍ୟ ଅଭାବୀ ବିକ୍ରିର ସ୍ଥିତି ନଥିଲା । ବରଂ ଚାଷୀ ସରକାରଙ୍କ ଧାର୍ଯ୍ୟ ଲେଭିଧାନ ଦେବାକୁ ରାଜି ହେଉନଥିଲା । ୧୯୭୫ରେ ଅବିଭକ୍ତ ଗଂଜାମ ଜିଲ୍ଲାର ଗୁରାଣ୍ଡି ଠାରେ (ବର୍ତ୍ତମାନ ଗଜପତି ଜିଲ୍ଲା) ଲେଭିଧାନ ସଂଗ୍ରହକୁ କେନ୍ଦ୍ରକରି ପୋଲିସ ଗୁଳିକାଣ୍ଡ ଘଟିଥିଲା ଓ ୫ଜଣଙ୍କ ମୃତ୍ୟୁ ଘଟିଥିଲା, କିନ୍ତୁ ଗତ ୩ ବର୍ଷ ଧରି ଗଂଜାମ ଜିଲ୍ଲାର ଚାଷୀର ଧାନ ବିକ୍ରି ହୋଇପାରୁନାହିଁ । ବିକିବାକୁ ହେଲେ ବସ୍ତା (୭୫ କି.ଗ୍ରା.) ପ୍ରତି ୧୩୦ ଟଙ୍କା କମରେ ବିକିବାକୁ ବାଧ୍ୟ ହେଉଛି । ଏହିସ୍ଥିତି ଆଜି ସମଗ୍ର ଓଡ଼ିଶାରେ । ଏହି ଅଭାବୀବିକ୍ରିକୁ କେନ୍ଦ୍ରକରି ସରକାରଙ୍କ ଦ୍ୱାରା ଘୋଷିତ ସହାୟକ ଦରରେ ଧାନ ସରକାର କିଣନ୍ତୁ ବୋଲି ଦାବିକରି ରାଜ୍ୟର ବିଭିନ୍ନ ଅଞ୍ଚଳରେ ଅସଂଗଠିତ ଚାଷୀ ପ୍ରତିବାଦର ସ୍ୱର ଶୁଣିବାକୁ  ମିଳୁଛି । ଦକ୍ଷିଣ ଓଡ଼ିଶାର କୋରାପୁଟ ଜିଲ୍ଲାର କେତେକ ସ୍ଥାନରେ ଚାଷୀ ରୋଡ଼କୁ ଆସି ପ୍ରତିବାଦ କରିବା ଖବର ମିଳୁଛି । ରାୟଗଡ଼ ଜିଲ୍ଲାର ପଦ୍ମପୁରଠାରେ ଦୁଇ ବର୍ଷ ହେଲା ଆଞ୍ଚଳିକ ସ୍ତରରେ ଚାଷୀମାନେ ସଭା ସମାବେଶ କରି ରାସ୍ତାରୋକର ଧମକ ଦେବାପରେ ଜିଲ୍ଲା କଲେକ୍ଟର  ଆସି ଧାନ କିଣିବାକୁ ମିଲମାଲିକଙ୍କୁ ବାଧ୍ୟ କରିଥିଲେ, କିନ୍ତୁ ଦୁଇଦିନ ପରେ ମିଲ ମାଲିକମାନେ ଲୁଚିଲେ, ମିଲ ବନ୍ଦ କରିଦେଲେ । ଆଜି ଅଭାବବିକ୍ରିକୁ କେନ୍ଦ୍ରକରି ଓଡ଼ିଶାରେ ଦେଖା ଦେଇଥିବା ପ୍ରତିବାଦ ପଛରେ ବରଗଡ଼, ସମ୍ବଲପୁର ଚାଷୀ ଆନ୍ଦୋଳନର ପ୍ରେରଣା ରହିଛି । ବିଗତ ୧୦-୧୫ ବର୍ଷ ମଧ୍ୟରେ  ବରଗଡ଼ ଜିଲ୍ଲାର ରାଜ୍ୟ କୃଷକ ସଂଗଠନର ନେତୃତ୍ୱରେ ଅନବରତ ଚାଷୀଙ୍କ ଦ୍ୱାରା ଏକ ସଂଗଠିତ ଆନ୍ଦୋଳନ ଅଭାବ ଧାନ ବିକ୍ରି ବିରୋଧରେ ସମ୍ଭବ ହୋଇପାରିଛି ଓ ରାଜ୍ୟ ସରକାରଙ୍କୁ ବାଧ୍ୟ କରିପାରିଛି ଚାଷୀଙ୍କ ଧାନ କ୍ରୟର ବ୍ୟବସ୍ଥା କରିବାକୁ, କିନ୍ତୁ ଏହାଦ୍ୱାରା ରାଜ୍ୟ ସରକାର ଧାନ ସଂଗ୍ରହ ନୀତିକୁ ସମୀକ୍ଷା କରିଥିଲେ ସୁଦ୍ଧା ସମଗ୍ର ରାଜ୍ୟର ଚାଷୀଙ୍କୁ ନ୍ୟାୟ ଦେବାପାଇଁ କୌଣସି ପଦକ୍ଷେପ ନେଇପାରିନାହିଁ । ଧାନର ଅଭାବୀ ବିକ୍ରିକୁ ନେଇ ମନ୍ତ୍ରୀମାନେ, ଅଫିସରମାନେ ଏପରିକି କେତେକ ରାଜନୈତିକ ନେତା ଓ ଅର୍ଥ

Digitized by srujanika@gmail.com

ଶାସ୍ତ୍ରୀମାନେ କହିଲେଣି ଚାଷୀ ଧାନ ନକରି ଅନ୍ୟ ଅର୍ଥକରୀ ଫସଲ କରୁ । ସତେ ଯେପରିକି ଓଡ଼ିଶାରେ ଧାନ ଅମଳ ଆବଶ୍ୟକତାଠାରୁ ଯଥେଷ୍ଟ ଅଧିକ ହୋଇଗଲାଣି ଯାହାଫଳରେ ଧାନ ଚାଉଳର ଆବଶ୍ୟକତା ରହୁନାହିଁ । ଏହା ସଂପୂର୍ଣ୍ଣ ଭ୍ରମ ଓ ଭୁଲ ହିସାବ । ଓଡ଼ିଶାର ଆଦିବାସୀ ମୋଟ ଜନସଂଖ୍ୟାର ୨୩% । ପ୍ରାୟ ୮୦ ଲକ୍ଷ ମଧ୍ୟରୁ ୮୦ ଭାଗ ଆଦିବାସୀ ଚାଉଳ ମାତ୍ର ତିନି ମାସ ଖାଇଥାନ୍ତି । ଆଉ ବାକି ସମସ୍ତେ ଆମ୍ବ ଟାକୁଆ, ଜଙ୍ଗଲରୁ ସଂଗ୍ରହ ଖାଦ୍ୟ, ମାଣ୍ଡିଆ ଜାଉ ଖାଆନ୍ତି ଏବଂ ବହୁ ସମୟ ପୁଷ୍ଟିକର ଖାଦ୍ୟରୁ ବଞ୍ଚିତ ରହି ଭୋକିଲାବି ରହନ୍ତି । ଆଉ ଏକ ଶ୍ରେଣୀ ହରିଜନ, ଭୂମିହୀନ ଓ ଗରିବ ଲୋକେ ପ୍ରତ୍ୟେକ ଦିନ ଦୁଇଓଳା ଖାଦ୍ୟ ପାଇନଥାନ୍ତି, ସବୁଦିନେ ସେମାନେ ରୋଜଗାର ପାଆନ୍ତି ନାହିଁ । ତେଣୁ ଯଥେଷ୍ଟ ଭାବରେ ଖାଦ୍ୟ କିଣିପାରନ୍ତି ନାହିଁ । ଯଦି ଓଡ଼ିଶାର ସମସ୍ତେ ପ୍ରତିଦିନ ଆବଶ୍ୟକ ଚାଉଳ ଖାଇ ପାରନ୍ତେ ବର୍ତ୍ତମାନର ଉତ୍ପାଦନ ନିଅଣ୍ଟ ହେବ । ତେଣୁ ଏହାର ମୂଳରେ ରହିଛି ଆମ ରାଜ୍ୟର ଗରିବ ଲୋକଙ୍କ କ୍ରୟଶକ୍ତିର ଅଭାବ । ଯଦି କ୍ରୟଶକ୍ତି ବୃଦ୍ଧି ପାଆନ୍ତା ଚାଉଳ ବଜାରରେ ବିକ୍ରି ହୋଇ ପାରନ୍ତା । ରାଜ୍ୟର ଅଧିକାଂଶ ଆଦିବାସୀ ଅଞ୍ଚଳରେ ଓ ଗରିବ ହରିଜନ ପରିବାର ୧୬ କିଲୋ ବି.ପି.ଏଲ୍. ଚାଉଳ ମାତ୍ର ୮୦ ଟଙ୍କାରେ ମାସିକ ଏକାଥରେ କିଣି ପାରନ୍ତି ନାହିଁ ବୋଲି ବି.ପି.ଏଲ. ଚାଉଳ କଳାବଜାର ହେଉଛି । ଅଭାବ ବିକ୍ରିର ଅନ୍ୟ ଏକ କାରଣ ଦାରିଦ୍ର୍ୟ । ମୂଳକାରଣ ହେଲା ଖୋଲା ବଜାର ଅର୍ଥନୀତି ଦ୍ୱାରା କୃଷି ପ୍ରତି ଅନ୍ୟାୟ ।୨୦୦୨ ବର୍ଷ ସମଗ୍ର ଓଡ଼ିଶାରେ ମରୁଡ଼ି । ମାତ୍ର ୨୫% ଧାନ ଅମଳ ହେବାବେଳେ ବି ଚାଷୀଙ୍କ ଧାନ ବିକ୍ରି ହୋଇପାରିଲା ନାହିଁ । ସେହି ଅଭାବ ବିକ୍ରି । ତାହାହେଲେ ସଂପୂର୍ଣ୍ଣ ଧାନ ଚାଷୀ ବନ୍ଦ କରିଦେଲେ ରାଜ୍ୟ କିମ୍ବା ଦେଶ ସମ୍ଭାଳିନେବ ତ ? ପୁଣି ଖାଦ୍ୟର ଅଭାବରେ ଯେଉଁ ଉତ୍କଟ ସଂକଟ ସୃଷ୍ଟିହେବ ତା'ର ପରିଣାମ କ'ଣ ହେବ ? ଓଡ଼ିଶାରେ କଳାହାଣ୍ଡି, ରାୟଗଡ଼ ପରି ପଛୁଆ ଜିଲ୍ଲାମାନଙ୍କର ଚାଷୀ କପାଚାଷ କଲେଣି । କିନ୍ତୁ କପାର ଦାମ ମିଳୁନାହିଁ । ସେମାନେ ହଜାର ହଜାର ଟଙ୍କା ଋଣ କରି ଦେବାଳିଆ । ଓଡ଼ିଶାରେ ଯଥେଷ୍ଟ ଭାବରେ ଆଖୁ ଚାଷ ହୋଇନାହିଁ । କିନ୍ତୁ ଯେତେବେଳେ ଧାନର ଅଭାବ ବିକ୍ରିନଥିଲା ସେତେବେଳେ ଆଖୁଚାଷ ଯେତିକି ହେଉଥିଲା, ଆଜି ଧାନର ଅଭାବ ବିକ୍ରିବେଳେ ଆଖୁ ଚାଷ କମିଛି ଯେହେତୁ ଆଖୁ ବିକ୍ରି ହୋଇପାରୁନାହିଁ, ତାର ଦାମ ମିଳୁନାହିଁ । ପୁଣି ମିଲ ବନ୍ଦ ହୋଇଗଲାଣି । ଓଡ଼ିଶାର ୩ଟି ଚିନିକଳ ସରକାର ଘରୋଇକରଣ କରି ବିକିଦେଲେ । ହେଲେ ବି ବିଗତ ୧୦ ବର୍ଷରେ ତାହା ବନ୍ଦ ହୋଇଗଲା । ଆସିକା ସମବାୟ ଚିନିକଳ ଲାଭ କରୁଥିଲା । ଏବେ ବି ଲାଭ କରିବ

Digitized by srujanika@gmail.com

ଯଦି ସଚ୍ଚୋଟ ସହ ପରିଚାଳନା କାର୍ଯ୍ୟ ସଂପାଦିତ ହୁଏ, କିନ୍ତୁ ବହୁ ବର୍ଷ ଆସିଲା ଚିନି କଳର ଉତ୍ପାଦିତ ଚିନି କୋଟି କୋଟି ଟଙ୍କା ମୂଲ୍ୟ ପରିମାଣ ବିକ୍ରି ନହୋଇ ପଡ଼ି ରହିଥାଏ । ଯାହା ଫଳରେ ଆଖୁଚାଷୀଙ୍କୁ ସେମାନଙ୍କ ପ୍ରାପ୍ୟ ପ୍ରଦାନ କରାଯାଇ ପାରୁନାହିଁ । ଚାଷୀ ଆଖୁଚାଷ ବନ୍ଦକରିବାକୁ ବାଧ । ଏପରି ବଜାର ପରିସ୍ଥିତି ପାଇଁ ଦାୟୀ କୃଷି ଉପରେ ଜଗତିକରଣ ତଥା ବିଶ୍ୱ ବାଣିଜ୍ୟ ସଂଗଠନର ପ୍ରଭାବ । ଖୋଲାବଜାର ଅର୍ଥନୀତି ଓ ସାମ୍ରାଜ୍ୟବାଦୀ ଦେଶମାନଙ୍କ ଚାପରେ ଆମ ଦେଶର ସରକାରମାନେ ମୁଣ୍ଡ ନୁଆଇ ଯେଉଁ ଉଦାରୀକରଣକୁ ଡ଼ାକି ଆଣିଛନ୍ତି, ତାର ଫଳାଫଳ ଚାଷୀ ଭୋଗୁଛନ୍ତି । ଆଜି ଓଡ଼ିଶାର ବିଭିନ୍ନ ସ୍ଥାନରେ ଗହମ ଅଟା ପ୍ୟାକେଟ ମିଳୁଛି ଯାହାର ଉପରେ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ଛାପ ରହିଛି । ଏପରିକି କାନଡ଼ାରୁ ଆସିଥିବା ଗହମ ଓ ଇଣ୍ଡୋନେସିଆର ଚିନି, ଥାଇଲାଣ୍ଡରୁ ଆସିଥିବା ଚାଉଳ ବିଭିନ୍ନ ଦୋକାନ ମାନଙ୍କରେ ମିଳୁଛି । କିଛିବର୍ଷ ତଳେ ରାୟଗଡ଼ାରେ ଚୀନ ଦେଶର ପାଇନ ଚାଉଳ ଏକ କିଲୋ ମାତ୍ର ୬ ଟଙ୍କାରେ ମିଳିଲା । ବର୍ତ୍ତମାନ ଓଡ଼ିଶାର ବିଭିନ୍ନ ସହରରେ ଆମେରିକାର ଟେକ୍ସମତୀ ଚାଉଳ ଶସ୍ତାରେ ମିଳୁଛି । ଏହାର ଅର୍ଥ ନୁହଁ ଯେ ସେମାନଙ୍କ କୃଷି ଜାତପଦାର୍ଥ ଶସ୍ତାରେ ଉତ୍ପାଦିତ ହେଉଛି । ସେଠାର ସରକାର ରିହାତି ଦେବା ସହ ଚାଷକୁ ସାହାଯ୍ୟ କରୁଛି ଓ ତାର ଜିନିଷ ଆମ ବଜାରକୁ ଖୋଲାରେ ପଠାଇ ଆମ ଜିନିଷ ସହ ପ୍ରତିଦ୍ୱନ୍ଦିତା କରାଉଛି । ଫଳରେ ଆମ ଚାଷୀର ଫସଲ ବିକ୍ରିହୋଇପାରୁନାହିଁ । ସେପରି ଅନ୍ୟ ଦେଶରୁ ଚିନି ଆମ ଖୋଲାବଜାରକୁ ଆସିଗଲା । ସେମାନେ ଜାଣିଶୁଣି କମ ଦରରେ ବିକିଲେ । ଆଜି ଆମ ଚିନି ବିକ୍ରିନହୋଇ ଆମ ଚିନିକଳ ବନ୍ଦ ହେବାକୁ ବସିଲାଣି । କିନ୍ତୁ ଏପର୍ଯ୍ୟନ୍ତ ଓଡ଼ିଶା ଚାଷୀ ଉଦାରୀକରଣ, ଖୋଲାବଜାର ଅର୍ଥନୀତି ଓ ଜଗତୀକରଣର ବିଷଦାନ୍ତ ସଂକ୍ରାନ୍ତରେ ସଚେତନ ହୋଇପାରିନାହିଁ ଯଦିଚ ନିଜେ ହତାଶରେ ରହିଛି ।

ଆଜି ମରୁଡ଼ିରେ ବି ସରକାର ଉଠା ଜଳସେଚନ ପଏଣ୍ଟଗୁଡ଼ିକୁ କାର୍ଯ୍ୟକ୍ଷମ କରିବା ବଦଳରେ ପାଣି ପଞ୍ଚାୟତ ନାମରେ ଚାଷୀଙ୍କୁ ବାଧ କରାଯାଉଛି ସେମାନେ ଏହାର ଦାୟିତ୍ୱ ନେବାକୁ । ଏହାପଛରେ ରହିଛି ଉଠା ଜଳସେଚନ ସମେତ କେନାଲ ପାଣିକୁ ଘରୋଇକରଣ କରିବା । ତେଣୁ ଚାଷୀ ପାଖରେ ଆଉ କୌଣସି ବିକଳ୍ପ ନାହିଁ ଚାଷକୁ ଲାଭବାନ କରାଇବା ପାଇଁ । ଏପରି ଏକ ଭାରସାମ୍ୟହୀନ ମାନସିକ ସ୍ତରରେ ଚାଷୀକୁଳ ଗତି କଲାବେଳେ କର୍ପୋରେଟ ମାଲିକମାନେ ଚାଷୀଙ୍କ ଠାରୁ ଶସ୍ତାରେ ଜମି କିଣିବାକୁ ବସିଛନ୍ତି । ଏହା ଯଦି ହୋଇଯାଏ, ଚାଷୀ ହାତରୁ ଚାଷ ଜମି ଚାଲିଯିବ । ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିବ ।

Digitized by srujanika@gmail.com

ଧାନ, ପନିପରିବାର ଅଭାବ ବିକ୍ରି ହେଉଥିବାବେଳେ କନ୍ଧମାଳ, କୋରାପୁଟ, ରାୟଗଡ଼ା ପରି ଆଦିବାସୀ ଅଞ୍ଚଳରେ ଅଦା, ହଳଦୀ ପରି ଆଦିବାସୀ ଚାଷୀଙ୍କ ଫସଲ ଅତି ଶସ୍ତାରେ ବିକ୍ରି ହେଉଛି । କିଛି ବର୍ଷ ତଳେ ଅଦା କିଲୋ ଦୁଇଟଙ୍କାରେ ବିକିଲେ କନ୍ଧମାଳ ଚାଷୀ । ତାପରେ ୪ ଟଙ୍କାରେ ବିକିଲେ ଯାହା ସହରମାନଙ୍କରେ ୨୦ ଟଙ୍କା । ଏକଦା ଆଦିବାସୀ ଅଦା କିଲୋ ୨୦ରୁ ୨୫ ଟଙ୍କାରେ ବିକିଥିଲା । କିନ୍ତୁ ତାକୁ ସୁରକ୍ଷା ଦେବାପାଇଁ ବଜାର ଉପରେ ସରକାରୀ କଳ ହସ୍ତକ୍ଷେପ କରିବା ପାଇଁ ଚାହେଁନି । ସେଥିପାଇଁ ମଧ୍ୟ କୌଣସି ବ୍ୟବସ୍ଥା ନାହିଁ । ଚାଷୀ ଶୋଷଣର ଶିକାର ହେଉଛି, ହେଉଥିବ ମଧ୍ୟ । ଉପରୋକ୍ତ ସମସ୍ୟାର ସମାଧାନ ପାଇଁ ରାଜ୍ୟସ୍ତରରେ ଚାଷୀ ଆନ୍ଦୋଳନ ଏକାନ୍ତ ଜରୁରୀ । ଏଥିପାଇଁ ଆଞ୍ଚଳିକ ସ୍ତରରେ ସଂଗଠିତ ପ୍ରତିବାଦ ହିଁ ଏକ ଦୁର୍ବାର ଆନ୍ଦୋଳନ ଗଢ଼ି ପାରିବ ।

## ଚାଷୀ ଆନ୍ଦୋଳନର ଆବଶ୍ୟକତା

ସରକାର ଓଡ଼ିଶା ଚାଷୀଙ୍କ ଧାନ ମିଲମାଲିକଙ୍କ ବଦଳରେ ନିଜେ ଜିଲ୍ଲା କଲେକ୍ଟରଙ୍କ ଜରିଆରେ କିଣନ୍ତୁ । କେନ୍ଦ୍ର ସରକାରଙ୍କ ଖାଦ୍ୟ ନିଗମ ଯେପରି ଆନ୍ଧ୍ର, ପଞ୍ଜାବ ଓ ଅନ୍ୟ ରାଜ୍ୟମାନଙ୍କରେ ଚାଷୀଙ୍କ ଧାନ କିଣି ଚାଉଳ କରିବା ପାଇଁ ମିଲକୁ ଦେଉଛନ୍ତି ଓଡ଼ିଶାରେ ତାହା କରାଯାଉ । ପୁଣି ଓଡ଼ିଶାରେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଦ୍ୱାରା ବ୍ୟବହୃତ ଚାଉଳ ଓ ଗହମ ଓଡ଼ିଶା ଚାଷୀଙ୍କ ଠାରୁ ସଂଗ୍ରହ କରାଯାଉ । ନିଅଣ୍ଟ ହେଲେ ଅନ୍ୟ ରାଜ୍ୟର ଚାଷୀଙ୍କ ଠାରୁ ସଂଗୃହୀତ ଖାଦ୍ୟଶସ୍ୟରୁ ଏଠାକୁ ଆସୁ । ଏଥିପାଇଁ ରାଜ୍ୟ ସରକାର ତଥା ରାଜନୈତିକ ସ୍ତରରେ ଇଚ୍ଛାଶକ୍ତିର ଆବଶ୍ୟକତା ରହିଛି । ଆମରାଜ୍ୟରେ ଥିବା ସରକାରୀ ବ୍ୟାଙ୍କମାନଙ୍କରୁ ସରକାର ଟଙ୍କା ଆଣି ଚାଷୀର ଧାନ କିଣିପାରିବେ । ବ୍ୟାଙ୍କମାନେ ଓଡ଼ିଶାରେ ଡ଼ିପୋଜିଟର ମାତ୍ର ୩୦ ଭାଗ ବିନିଯୋଗ କରିଛନ୍ତି । ପୁଣି ଧାନ ବ୍ୟତୀରେକ ଅନ୍ୟ ଆଦିବାସୀ ଅଞ୍ଚଳରେ ଫସଲର ଉଚିତ ମୂଲ୍ୟରେ ବିକ୍ରିପାଇଁ ସେହି ଜିନିଷର ମୂଲ୍ୟ ନିର୍ଦ୍ଧାରଣ କରି ସରକାର ତାର କମ ଦରରେ କ୍ରୟ ଉପରେ ନିଷେଧ ଜାରିକରି ନୂଆ ଆଇନ ତିଆରି କରନ୍ତୁ ଓ ସରକାରଙ୍କ ଏଜେନ୍ସି ଜରିଆରେ ସେହି ଫସଲଗୁଡ଼ିକ ସଂଗ୍ରହ କରି ବିକ୍ରି କରିବାପାଇଁ ଉପଯୁକ୍ତ ବଜାର ସୃଷ୍ଟିକରନ୍ତୁ । ଏଥିପାଇଁ ଗ୍ରାମାଞ୍ଚଳରେ କୃଷି ବଜାର ଚାଷୀଙ୍କ ପରସ୍ପର ଫସଲ ଅଦଳବଦଳ ଓ ଚାହିଦା ଅନୁଯାୟୀ କିଣା ବିକାପାଇଁ ହେବା ଦରକାର । ସେହି ବଜାରରୁ ଉଚିତ ମୂଲ୍ୟରେ ବେପାରୀମାନେ କିଣି ନେବା ବ୍ୟବସ୍ଥାକୁ ଲାଗୁ କରିବାପାଇଁ ଆଇନଗତ ବ୍ୟବସ୍ଥା ଏକାନ୍ତ ଜରୁରୀ ।

Digitized by srujanika@gmail.com

ଓଡ଼ିଶାରେ ଦରିଦ୍ର ଲୋକଙ୍କ କ୍ରୟ ଶକ୍ତି ବୃଦ୍ଧି କରିବା ପାଇଁ ସ୍ୱତନ୍ତ୍ର ଯୋଜନା ଜରିଆରେ ସଫଳ ହେବା ପର୍ଯ୍ୟନ୍ତ କେନ୍ଦ୍ର ସରକାର ପ୍ରତ୍ୟେକ ଭୋକିଲା ପରିବାରକୁ ଯଥେଷ୍ଟ ଖାଦ୍ୟ ୧୫ ଦିନ ପୂର୍ବରୁ ଯୋଗାଇ ଦିଅନ୍ତୁ । ସେହି ଖାଦ୍ୟ ବଦଳରେ ସେହି ପରିବାର ଠାରୁ ସେହି ଗ୍ରାମର ବିକାଶ ପାଇଁ ଶ୍ରମ ନିଅନ୍ତୁ ।

ଏଠି ଖୋଲା ବଜାରରେ ଶସ୍ତା ଚାଉଳ ହରିଜନ ଓ ଭୂମିହୀନ ପାଇବା ଯୋଗୁଁ ଯେଉଁ ଚାଷୀ ଓ ଜମିହୀନଙ୍କ ଭିତରେ ଦ୍ୱନ୍ଦ ଦେଖାଦେବା ପ୍ରଶ୍ନ ଉଠୁଛି ତାହାକୁ ଅନୁଧ୍ୟାନ କରିବା ଉଚିତ । ବାସ୍ତବରେ ଧାନର ଅଭାବୀ ବିକ୍ରି ଯୋଗୁଁ ଚାଉଳ ଶସ୍ତା ହେଉନାହିଁ । ଖାଦ୍ୟ ବଦଳରେ କାମ ଯୋଜନାରେ ଆସୁଥିବା ଚାଉଳ କଣ୍ଟ୍ରାକ୍ଟରମାନେ ଖୋଲା ବଜାରରେ ବିକି ଦେଉଥିବା ଯୋଗୁଁ ଚାଉଳ କିଛି ମାତ୍ରାରେ ଶସ୍ତା ହେଉଛି । କିନ୍ତୁ ଏହାଦ୍ୱାରା ଶ୍ରମଶକ୍ତିର ଉପଯୁକ୍ତ ବିନିଯୋଗ ନହୋଇ ବେକାରଙ୍କୁ କାମନଦେଇ କଣ୍ଟ୍ରାକ୍ଟର ଟ୍ରାକ୍ଟର ଓ ମେସିନଲଗାଇ କାମକରୁଛି । ଏହାକୁ ବନ୍ଦ କରାଯାଇପାରିଲେ ଭୂମିହୀନ, ହରିଜନ ବର୍ଷ ସାରା କାମ ପାଇବା ଅଧିକାରକୁ ସାବ୍ୟସ୍ତ କରିପାରିବେ । ଯଦି ଚାଷୀ ହାତରୁ ଜମି ଚାଲିଯାଏ, ତାହାହେଲେ ଜମିହୀନ ସଂଖ୍ୟା ବଢ଼ିବ ଓ କୃଷି ଶ୍ରମିକମାନେ କର୍ମହୀନ ହୋଇପଡ଼ିବେ । ଉତ୍କଟ ଦାରିଦ୍ର୍ୟ ଅପରିହାର୍ଯ୍ୟ । ତେଣୁ ଚାଷକୁ ବଜାରୀ ଅର୍ଥ ବ୍ୟବସ୍ଥା ଓ ଉଦାରୀକରଣର ଶୋଷଣରୁ ମୁକ୍ତ ରଖିବା ସହ ଚାଷର ଉତ୍ପାଦନ ମୂଲ୍ୟ ହ୍ରାସ ସହ ଛୋଟ ଓ କ୍ଷୁଦ୍ର ଚାଷୀ ହାତରେ ନିଜ ଜମିର ସୁରକ୍ଷା ପାଇଁ ମିଳିତ ଆନ୍ଦୋଳନ ଜରିଆରେ ଜଗତୀକରଣ ବିରୋଧରେ ଜନ ଜାଗରଣର ଐତିହାସିକ ଆବଶ୍ୟକତା ରହିଛି । ଚାଷପାଇଁ ଥିବା ପାଣିକୁ ଏବେ କମ୍ପାନୀମାନଙ୍କୁ ହସ୍ତାନ୍ତର ହେଉଛି । ତାର ବିରୋଧରେ ଓଡ଼ିଶାରେ ହୀରାକୁଦ ଜଳଭଣ୍ଡାରର ଜଳ ଉପରେ ଚାଷୀର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ୬ ନଭେମ୍ବର ୨୦୦୭ ଦିନ ୩୦୦୦୦ ରୁ ଉର୍ଦ୍ଧ୍ୱ ଚାଷୀ ଜେଲ ଭରୋ ଆନ୍ଦୋଳନରେ ସାମିଲ ହୋଇ ଇତିହାସ ରଚନା କରିଛନ୍ତି । ଲାଠି ମାଡ଼ ବି ଖାଇଛନ୍ତି । ଓଡ଼ିଶାର ରାଜନୈତିକ ଦଳମାନଙ୍କୁ ହଲଚଲ କରି ପାରିଛନ୍ତି । ଓଡ଼ିଶାର ଜନ ଆନ୍ଦୋଳନ ଇତିହାସରେ ପଶ୍ଚିମ ଓଡ଼ିଶାର ଉକ୍ତ ଚାଷୀ ଆନ୍ଦୋଳନ କୃଷକ ବିଦ୍ରୋହର ଏକ ପ୍ରାକ୍ ସୂଚନା ।

## ଚାଷୀ ହାତ୍ତୁ ବରଡ଼ଙ୍କୁ ଶୁଣିବା କି ?

ଓଡ଼ିଶା କୃଷକ ପଞ୍ଚାୟତ ତରଫରୁ ଏକ କୃଷକ ସଭା ଗଂଜାମ ଜିଲ୍ଲାର ଏରେଣ୍ଡ୍ରାଠାରେ ୨୦୦୩ ନଭେମ୍ବର୧୪ତାରିଖରେ ହୋଇଥିଲା । ସଂଗଠନର ସଭାପତି ରୂପେ ମୁଁ ଯୋଗ ଦେଇଥିଲି । ବକ୍ତବ୍ୟ ରଖିବା ପୂର୍ବରୁ ଉପସ୍ଥିତ ଚାଷୀମାନଙ୍କ ମଧ୍ୟରୁ

Digitized by srujanika@gmail.com

ନିଜର ଅନୁଭୂତିକୁ ପରିପ୍ରକାଶ କରିବା ପାଇଁ ଅନୁରୋଧ କଲି । ଦୁଇ ଚାରି ଜଣ କହିବା ପରେ ଜଣେ ୮୦ ବର୍ଷର ବୃଦ୍ଧ ଚାଷୀ କହିଲେ – ''ଆମ କଥା ଶୁଣୁଛି କିଏ ? ଚାଷୀ ଭିକାରୀ ହୋଇଯାଇଛି । ମୁଁ ଖଣ୍ଡେ ଭରଣ ଜମି (୨୦ ଏକର) ଚାଷ କରିବା ପରିବାରର ଚାଷୀ । ଆଜି ୮୦ ବର୍ଷରେ ମଧ କାମ କଲେ ଖାଇବି ନଚେତ ମୁଁ ବଞ୍ଚିବା ପାଇଁ କୌଣସି ବାଟ ନାହିଁ ....... ।'' ଏତିକି ପ୍ରତିକ୍ରିୟା ପ୍ରକାଶ କଲାବେଳେ ସେ କାନ୍ଦି ପକାଇଥିଲେ । ତାଙ୍କରି ମନର କଥା କହିଲାବେଳେ ଆୟୋଜନ କରିଥିବା ଯୁବକମାନେ ସ୍ତବ୍ଧ ହୋଇ ଯାଇଥିଲେ ଯେ ଏହି ସଭା ଏକ ଗାମ୍ଭୀର୍ଯ୍ୟ ପରିବେଶ ଭିତରେ ଗାଁ ମାଟିରେ ମନର କଥା ଆଲୋଚିତ ହୋଇ ପାରିଲା ବୋଲି । ମୁଁ ଆଶ୍ଚର୍ଯ୍ୟ ହୋଇ ନଥିଲି ଯେହେତୁ ଚାଷୀର ଏହି ଅବସ୍ଥା ଦେଶର ସର୍ବତ୍ର ଏବଂ ବିଶେଷ କରି ଓଡ଼ିଶାର ପ୍ରତ୍ୟେକ ଗାଁର ଚାଷୀର ଆତ୍ମ ଚିତ୍କାର କେହି ଶୁଣିବା ପାଇଁ ନାହିଁ । କିନ୍ତୁ ସେହି ବୃଦ୍ଧ ଚାଷୀଙ୍କ ସ୍ୱତଃ ପ୍ରବୃତ୍ତ ନିର୍ଗତ ହୃଦୟରବାଣୀ ମୋର ବିଚାରକୁ ଅଧିକ ଭାବରେ ପ୍ରଭାବିତ କରିଦେଲା । ସେହି ବିଚାର ହେଲା – ଆମ ଦେଶର ଚାଷ ଓ ଚାଷୀ ପ୍ରତି ଅଧିକ ବିପଦ ମାଡ଼ି ଆସୁଛି । ଏହି ବିପଦକୁ ଯଦି ସଫଳତାର ସହ ପ୍ରତିହତ କରାନଯାଏ ଆମ ଦେଶ ରସାତଳକୁ ଚାଲିଯିବ । ସମାଜ ବିଖଣ୍ଡିତ ହୋଇଯିବ । ଗାଁର ପୁନର୍ଗଠନ ଯେତେବେଳେ ସମ୍ଭବପର, ଯେତେବେଳେ ଚାଷୀ ଓ ଚାଷ ଶୋଷଣରୁ ମୁକ୍ତ ହୋଇପାରିବେ । ସେହି ବୃଦ୍ଧ ଚାଷୀଙ୍କ ନାମ ହାବୁ ବଡ଼ଡ଼ । ସେ ଆସ୍ତେ ଆସ୍ତେ ଆସି ଯାଇଥିଲେ ସଭାକୁ । ଲୁହର ଭାଷା – (''ଚାଷୀ ଭିକାରୀ ହୋଇ ଗଲାଣି ଓ ୮୦ ବର୍ଷର ଚାଷୀ ପରିଶ୍ରମ କଲେ ହିଁ ଖାଇବ'') କୁ ଆମ ତଥାକଥିତ ସଭ୍ୟ ସମାଜ, ବୁଦ୍ଧିଜୀବୀ, ରାଜନୈତିକ ନେତୃମଣ୍ଡଳୀ, ପ୍ରଶାସକ ବୁଝିବାକୁ ଆନ୍ତରିକ ଉଦ୍ୟମ କରିବେ କି ? ଆମ ବିକାଶର ପରିଣତି କ'ଣ ଚାଷୀର ଦାରିଦ୍ର୍ୟ ? ଆଜୀବନ ଶ୍ରମ କରି ଚାଲିଥିବା ଅନ୍ନଦାତା ଚାଷୀଙ୍କ କ'ଣ ଅବସର ବୟସ ନାହିଁ ? ଯଦି ଅବସର ନେବେ ତାଙ୍କରି ସାମାଜିକ ଓ ଆର୍ଥିକ ସୁରକ୍ଷା ଅଛି କି ? ଯଦି ନାହିଁ ଆମେ ଏକ ସଭ୍ୟ ସମାଜର ନାଗରିକ ବୋଲି କହିବା ନୈତିକ ଅଧିକାର ପାଇଛେ କି ? ଯଦି ସାମାଜିକ ନ୍ୟାୟ ଚାଷୀଙ୍କୁ ଦେବାକୁ ହେବ, କେବେ ଓ କେଉଁ ବାଟରେ ? ଏସବୁର ଉତ୍ତର ପାଇଁ ପ୍ରଥମେ ସ୍ୱାଭିମାନୀ ଚାଷୀ ଶ୍ରୀ ବଡ଼ଡ଼ଙ୍କ ପରି ଆମ ଦେଶର କୋଟି କୋଟି ଚାଷୀଙ୍କୁ ଶୁଣିବା ଓ ବୁଝିବା ପାଇଁ ଇଚ୍ଛା କରିବା ଏକାନ୍ତ ଜରୁରୀ ।

## ଗୋଲାମି କବଳରେ କୃଷି

## ବିହନ ବିଲ୍ – ୨୦୦୪ କାହିଁକି ଓ କାହା ପାଇଁ ?

୧୯୭୦ ପେଟେଣ୍ଟ ଆଇନରେ ୩ ଥର ପରିବର୍ତ୍ତନ ହୋଇ ସାରିଲାଣି । ବିରୋଧ ହେଲା । କିନ୍ତୁ ଶେଷରେ ଭାରତର ଜନତା ବିରୋଧରେ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ

Digitized by srujanika@gmail.com

ଏକଚାଟିଆ ବ୍ୟାବସାୟିକ ସ୍ୱାର୍ଥ ପାଇଁ ବିଶ୍ୱ ବାଣିଜ୍ୟ ସଂଗଠନର ନିର୍ଦ୍ଦେଶରେ ଖୋଦ୍ ନିର୍ବାଚିତ ସରକାରମାନେ କଲେ । କେଉଁଦଳ କେତେବେଳେ ଶାସନରେ ଥିଲେ ବି ଫରକ୍ ନାହିଁ । କାରଣ ଆମ ଦେଶର ଜଗତୀକରଣ ଓ ଖୋଲାବଜାର ଅର୍ଥନୀତିର ବୋଲାକରା ଶାସକ ଦଳ ଓ ବିରୋଧୀ ଦଳପତିମାନଙ୍କ ସାହୁକାର ଏକା । ତେଣୁ ନିର୍ଦ୍ଦେଶ ପାଳନରେ ଭିନ୍ନତା ଆସିବ କାହିଁକି ? ବରଂ କିଏ କେତେ ଆଗୁଆ ଧାଡ଼ିରେ ରହିବ ସେଥିପାଇଁ ପ୍ରତିଯୋଗିତା । ଏବେ ଭାରତୀୟ ସଂସଦରେ ପଡିରହିଛି ବିହନ ବିଲ୍-୨୦୦୪ ଯାହାକୁ ଆଇନରେ ପରିଣତ କରିବାକୁ ବର୍ତ୍ତମାନର କଂଗ୍ରେସର ମିଳିତ ସରକାର ଦାୟିତ୍ୱ ନେଇଛି । ମୁଖ୍ୟ ବିରୋଧୀରେ ଥିବା ଭାରତୀୟ ଜନତା ଦଳ ବି ଏହି ବିଲ୍‌କୁ ବିରୋଧ କରିପାରିବ ନାହିଁ । ବାମପନ୍ଥୀମାନେ ବିରୋଧ କରି ଶେଷ ପର୍ଯ୍ୟାୟରେ ସରକାରକୁ ବଞ୍ଚାଇବା ପାଇଁ ଯାଇ ଆଇନରେ ପରିଣତ ହେବାକୁ ବାଧକ ହେବେନାହିଁ ବୋଲି ଘୋଷଣା କରିବେ । ଏସବୁସତ୍ତ୍ୱେ ଜନସାଧାରଣ କ'ଣ ନୀରବ ରହିବେ ? ଅନ୍ତତଃ ବିଲ୍‌ଟି କ'ଣ ଓ କାହାପାଇଁ ଜାଣିବାର ଅଧିକାର ରହିଛି ।

ବିଲ୍‌ର ପ୍ରଥମ ଉଦ୍ଦେଶ୍ୟ ୧୯୬୬ ବିହନ ଆଇନରେ ଥିବା ଆମ ଚାଷୀଙ୍କ ଅଧିକାରକୁ ଛିନକରି ଏକ ନୂଆ ଆଇନ କରିଆରେ ଆମ ଚାଷ ଓ ବିହନକୁ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ନିୟନ୍ତ୍ରଣକୁ ଠେଲି ଦେବା ପାଇଁ ଏକ ଷଡ଼ଯନ୍ତ୍ର । ଆମ ଦେଶର ବିହନରେ ସାର୍ବଭୌମତ୍ୱ ୮୦% ଚାଷୀଙ୍କ ପାରଂପରିକ ଚାଷରୁ ଉତ୍ପାଦିତ ବିହନ ଓ ତାର ଅଦଳ ବଦଳ ଉପରେ ଓ ଅନ୍ୟ ୨୦% ସରକାରୀ ନିଗମମାନଙ୍କ ଦ୍ୱାରା ପରିଚାଳିତ ବିହନ ଉତ୍ପାଦନ କେନ୍ଦ୍ର ଓ କୃଷିଫାର୍ମ ଉପରେ । ଆମ ଦେଶର ଖାଦ୍ୟ ସୁରକ୍ଷା ନିର୍ଭର କରେ ବିହନମାନଙ୍କ ବିବିଧତା ଓ ଗଣଯୋଗାଣ ବ୍ୟବସ୍ଥା ଉପରେ । ୧୯୮୮ ସାଲରେ ବିଶ୍ୱବ୍ୟାଙ୍କର ବିହନ ନୀତି ଫଳରେ କାର୍ଗିଲ, ମନସେଣ୍ଟୋ ପରି ବହୁରାଷ୍ଟ୍ରୀୟ କଂପାନୀମାନେ ଆମ ଦେଶର ବିହନ ଯୋଗାଣ ବ୍ୟବସ୍ଥା ଭିତରେ ପ୍ରବେଶ କଲେ । କ୍ରମଶଃ ପାରଂପରିକ ଚାଷ ଓ ବିହନକୁ ବାଦ ଦେଇ ନିଜ କଂପାନୀ ବିହନକୁ ବିଭିନ୍ନ ଦାଟରେ ଚାଷୀଙ୍କୁ ବାଧ କରାଗଲା । ଏହି ପ୍ରକ୍ରିୟାରେ ସରକାରୀ କୃଷିନୀତି ମଧ ବଦଳି ଯାଉଛି । ଚାଷକୁ ବ୍ୟୟବହୁଳ କରି ଦିଆଗଲା । ଫଳରେ ବିଭିନ୍ନ ରାଜ୍ୟରେ ଚାଷୀ ଋଣଗ୍ରସ୍ତ ହୋଇ ନିଜ ଫସଲ ହରାଇବାପରେ ଆତ୍ମହତ୍ୟାର ରାସ୍ତା ବାଛିଛନ୍ତି । ଯେଉଁ ରାଜ୍ୟରେ ବିଭିନ୍ନ ଘରୋଇ କଂପାନୀଙ୍କ ବିହନ, ସାର ଉପରେ ଚାଷ ନିର୍ଭରଶୀଳ ସେଠାର ଚାଷୀଙ୍କ ଆତ୍ମହତ୍ୟା ଅଧିକ । ଏସବୁ ବିହନରୁ ପୁଣି ବିହନ ଅମଳ ଅସମ୍ଭବ । କାରଣ ଏମାନେ ବନ୍ଧ୍ୟା । ପୁଣି ଜେନେଟିକ ବିହନ ଦ୍ୱାରା ଜମି, ପରିବେଶ ଓ ସ୍ୱାସ୍ଥ୍ୟ ଉପରେ ବିପଦ ରହିଥିବାବେଳେ ଏସବୁ ପ୍ରତି କିପରି ସତର୍କତା ଅବଲମ୍ବନ କରାଯିବ ଓ ଆମ ଚାଷୀ ନିଜ ବିହନର ସଂରକ୍ଷଣ ଓ ଯୋଗାଣ

Digitized by srujanika@gmail.com

ଦ୍ୱାରା ଆତ୍ମନିର୍ଭରଶୀଳ ହୋଇପାରିବ ସେଥିପ୍ରତି କଡ଼ା ଆଇନ କରି କଂପାନୀମାନଙ୍କୁ ମୁନାଫା ଛାଇରୁ ରକ୍ଷା କରିବା ବ୍ଦଳରେ ଆମର ଚାଷୀ ଯେପରି ନିଜ ଦେଶୀ ବିହନ ଓ ପାରଂପରିକ ଚାଷ ଛାଡ଼ି କଂପାନୀମାନଙ୍କ ପ୍ରଭୁତ୍ୱକୁ ସ୍ୱୀକାର କରିବ, ସେଥିପାଇଁ ନୂଆ ବିହନ ଆଇନ ତିଆରି କରିବାକୁ କେନ୍ଦ୍ର ସରକାର ୨୦୦୪ ବିହନ ବିଲ୍ ଆଣିଛନ୍ତି ।

୧୯୬୬ ଆଇନରେ କୃଷି ସହ ଫଳମୂଳ ଚାଷ ଅନ୍ତର୍ଭୁକ୍ତ ଥିଲା । ବର୍ତ୍ତମାନ ଏହାକୁ ବଦଳାଇ ଚାଷ, ଜଙ୍ଗଲ, ବୃକ୍ଷରୋପଣ, ଔଷଧୀୟ ବୃକ୍ଷ, ଅର୍ଥକରୀ ଫସଲ ଚାଷ ପ୍ରଭୃତିକୁ କୃଷିକ୍ଷେତ୍ର ରୂପେ ଗ୍ରହଣ କରାଯିବ । ଅର୍ଥାତ କୃଷି ମନ୍ତ୍ରାଳୟରେ ଜଙ୍ଗଲ ପରିବେଶ, ସ୍ୱାସ୍ଥ୍ୟ ଓ ବାଣିଜ୍ୟ ମନ୍ତ୍ରାଳୟର ହସ୍ତକ୍ଷେପ ପାଇଁ ଦୁଆର ଖୋଲି ଦିଆଯିବ । ସଂପ୍ରତି ବିହନ ଆଇନ ଅନୁଯାୟୀ କେନ୍ଦ୍ରୀୟ କମିଟିରେ ଜଣେ ଅଧକ୍ଷଙ୍କ ସହ ଆଠ ଜଣ ମନୋନୀତ ସଭ୍ୟମାନଙ୍କ ମଧ୍ୟରୁ ଦୁଇଜଣ ବିହନ ଉତ୍ପାଦନକାରୀଥିଲେ । ପ୍ରତ୍ୟେକ ରାଜ୍ୟ ସରକାରଙ୍କ ଜଣେ ଜଣେ ସଭ୍ୟ ଥିଲେ, କିନ୍ତୁ ୨୦୦୪ ବିଲ୍‌ରେ କେନ୍ଦ୍ରର ବିଭିନ୍ନ ମନ୍ତ୍ରାଳୟର ସଚିବ ଓ ଅଫିସରମାନେ ସଭ୍ୟ ରହିବେ । କେନ୍ଦ୍ର ସରକାର ୫ ରାଜ୍ୟର କୃଷି ସଚିବଙ୍କୁ ମନୋନୀତ କରିବେ । ମାତ୍ର ଦୁଇଜଣ ଚାଷୀ ଓ ଦୁଇଜଣ ବିହନ କଂପାନୀର ପ୍ରତିନିଧି ମନୋନୀତ ହେବେ । ଏହି କମିଟି ଗଠନ ଦ୍ୱାରା ରାଜ୍ୟମାନଙ୍କ ପ୍ରତିନିଧିତ୍ୱ ଖତମ ହେବ । କୃଷି ରାଜ୍ୟ ଅଧୀନ ହୋଇଥିଲେ ବି କେନ୍ଦ୍ର ଦ୍ୱାରା ନିୟନ୍ତ୍ରିତ ହେବାକୁ ବାଧ ହେବ ।

ଏହି ବିଲ୍‌ର ୧୩ ଧାରାରେ ଯେକୌଣସି କିସମର ବିହନ ବିକ୍ରି ପାଇଁ ବାଧତାମୂଳକ ରେଜିଷ୍ଟ୍ରେସନ କରିବାକୁ କୁହାଯାଇଛି । ଅର୍ଥାତ ଚାଷୀ ନିଜ ନିଜ ବିହନ ଅଦଳ ବଦଳ ସହ ବିକ୍ରି କରିବା ନିଷେଧ ଓ ଦଣ୍ଡନୀୟ ଅପରାଧ ଯଦି ସେ ଏଥିପାଇଁ ରେଜିଷ୍ଟ୍ରିଭୁକ୍ତ ହୋଇନାହିଁ । ଏଣିକି ଭାରତର ଲକ୍ଷ ଲକ୍ଷ ଚାଷୀ ନିଜେ ବିହନ ମଧ ରଖି ବିକ୍ରି କରିପାରିବେ ନାହିଁ । ଏହି ଆଇନକୁ ବ୍ୟବହାର କରି କଂପାନୀମାନେ ଚାଷୀଙ୍କ ବିରୋଧରେ ଫୌଜଦାରୀ ମକଦ୍ଦମା ଦାୟର କରି ଚାଷୀଙ୍କୁ ବିହନ ରଖିବା ଅଧିକାରରୁ ବଞ୍ଚିତ କରିବେ । ଦୁଇ କୁଇଣ୍ଟାଲ ବିହନ ବିକ୍ରି କରିବା ଚାଷୀ ଆମ ଦେଶରେ ବହୁତ । ଏପରି କୋଟି କୋଟି ଚାଷୀ କାହିଁକି ଅନୁବନ୍ଧନ କରିବେ ? କଲେ ବି ଖର୍ଚ୍ଚାନ୍ତ ହେବ, କିନ୍ତୁ ଏହି ନିୟମକୁ ଉଲଂଘନ କଲେ ଚାଷୀର ଘରେ ପଶି ବିହନ ଇନ୍‌ସପେକ୍ଟର ଚାଷୀର ଧାନ ଜବତ କରିପାରିବ ଓ ଚାଷୀ ବିରୋଧରେ ଫୌଜଦାରୀ ମକଦ୍ଦମା ହୋଇପାରିବ । ଏଥିପାଇଁ ୫ ହଜାରରୁ ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ଜୋରିମନା ସହ ୬ ମାସ ଜେଲ ଦଣ୍ଡ ଦିଆଯାଇପାରିବ । ଏପରି ଆଇନ ଲାଗୁ ହୋଇଗଲେ ଚାଷୀ ନିଜ ପାଇଁ ମଧ ବିହନ ଉତ୍ପାଦନ କରିପାରିବ ନାହିଁ, କିନ୍ତୁ ୧୯୬୬ ବିହନ ଆଇନରେ ରହିଛି ଯେ କେବଳ କେତେକ ବିଜ୍ଞପ୍ତି ପ୍ରକାଶ ହୋଇଥିବା କେତୋଟି ନିର୍ଦ୍ଦିଷ୍ଟ ବିହନର ଗୁଣାତ୍ମକମାନ ପରୀକ୍ଷା ପାଇଁ

Digitized by srujanika@gmail.com

ବିହନ ଶିଳ୍ପମାନଙ୍କ ପ୍ରତି ଲାଗୁ ହୋଇଥିଲା; କିନ୍ତୁ ବର୍ତ୍ତମାନର ବିଲ୍ର ୩୫ ଧାରାରେ ଯେକୌଣସି ବିହନ ଯେ କୌଣସି ଚାଷୀ ବିହନ ବିକ୍ରି ପାଇଁ ରଖୁଥିବା ଘର ତନଖ୍ କରି ବିହନ ଇନ୍ସ୍‌ପେକ୍ଟର ବିହନକୁ ଜବତ୍ କରିପାରିବ । ଏହି ଆଇନ ଚାଷୀ, ଆଦିବାସୀ ଯେଉଁମାନେ ନିଜ ନିଜ ପାରଂପରିକ ଜ୍ଞାନକୁ ବ୍ୟବହାର କରି ବିହନ ସଂରକ୍ଷଣ କରନ୍ତି, ବୃକ୍ଷଲତା ଓ ଚାରା କରି ଅନ୍ୟକୁ ଦିଅନ୍ତି, ଏମାନଙ୍କ ପ୍ରତି ଏହି ଦଫା ଲାଗୁ ହେବ । ରେଜିଷ୍ଟ୍ରେସନ କରିଥିବା କଂପାନୀମାନେ ନିଜର ବିହନ, ଚାରା ବିକ୍ରି ବୃଦ୍ଧି କରିବାକୁ ଏହି ଆଇନକୁ ଲାଗୁ କରାଇବେ । ବିହନ ବିଲର ଧାରା ୨୦ରେ କୁହାଯାଇଛି ଯେ କୌଣସି ବିହନ ଉତ୍ପାଦକ, ବିକାଳୀ କିମ୍ବା ଯୋଗାଣକାରୀ ବିହନର ବ୍ୟବହାର ଓ ତାର ଫଳାଫଳ ସଂକ୍ରାନ୍ତରେ ଚାଷୀଙ୍କୁ ଜଣାଇବ ଓ ସେ ଅନୁଯାୟୀ ଫଳ ନମିଳିଲେ କ୍ଷତିପୂରଣ ପାଇଁ ୧୯୮୬ ଖାଉଟି ସୁରକ୍ଷା ଆଇନ ଅନୁଯାୟୀ କ୍ରେତା ଦାବି କରିପାରିବ । ଏହାଦ୍ୱାରା ଚାଷୀ ଭୟଭୀତ ହୋଇ ବିହନ ବିକିବା ବନ୍ଦ କରିଦେବ । ଏଠି ପ୍ରଶ୍ନଉଠୁଛି ଯେ ଏହି ଖାଉଟି ସୁରକ୍ଷା ଆଇନ ଓ ୧୯୬୬ ବିହନ ଆଇନ ରହିଥିବାବେଳେ, ୨୦୦୪ ବିହନ ବିଲ୍ ନାମରେ ନୂଆ ଆଇନ କାହିଁକି ଓ କାହାପାଇଁ ? ଆମ ଦେଶରେ ବହୁରାଷ୍ଟ୍ରୀୟ କଂପାନୀମାନେ ନିଜ ବିହନ, ସାର, ପେଷ୍ଟିସାଇଡ଼ର ବ୍ୟବସାୟକୁ ପରିବ୍ୟାପ୍ତ କରି ଆମ କୃଷି ଉତ୍ପାଦନକୁ ଯେପରି ନିଜ ନିୟନ୍ତ୍ରଣରେ ରଖିବାକୁ ବିଶ୍ୱ ବାଣିଜ୍ୟ ସଂଗଠନ ଜରିଆରେ ମୁକ୍ତ ବାଣିଜ୍ୟ ନାମରେ ପ୍ରବେଶ କରୁଛନ୍ତି, ତାହାର ପରିଣାମ ଭୟାବହ ହେବାକୁ ଯାଉଛି । ସେହି କଂପାନୀମାନଙ୍କ ଚାପରେ ସରକାର ନୂଆ ଆଇନ କରି ଚାଷୀଙ୍କ ବିହନ ସ୍ୱରାଜକୁ ଖତମ କରିବାକୁ ଯିବା ଆମ ସାର୍ବଭୌମ ପ୍ରତି ଏକ ଚାଲେଞ୍ଜ ।

ଜୈବିକ ବିବିଧତା ବିଶ୍ୱ ସମ୍ମିଳନୀର ଚିଠା ଅନୁଯାୟୀ ଭାରତ ସରକାର ଜୈବ ବିବିଧତାର ସଂରକ୍ଷଣ କରିବାକୁ ପ୍ରତିଶ୍ରୁତିବଦ୍ଧ, କିନ୍ତୁ ୨୦୦୪ ବିହନ ବିଲ୍ ଆଇନରେ ପରିଣତ ହେଲାପରେ ବିହନ କଂପାନୀମାନେ ନିଜ ନିଜର ହାଇବ୍ରିଡ଼ ଓ ଜେନେଟିକ ମୋଡ଼ିଫାଇଡ଼ ବିହନର ଏକଚାଟିଆ କାରବାର କରି ଚାଷୀଙ୍କ ପାରଂପରିକ ଚାଷ ଓ ବିହନକୁ ଲୋପ କରିଦେବେ । ଫଳରେ ଜୈବ ବିବିଧତା ମଧ୍ୟ ଧ୍ୱଂସ ହେବ । ଆଜିର ଦିନରେ ଓଡ଼ିଶାର ଉପକୂଳବର୍ତ୍ତୀ ଗାଁ ମାନଙ୍କରେ ଧାନର ଦେଶୀ ବିହନ ଲୋପ ପାଇଗଲାଣି । କଂପାନୀମାନେ ବଲାଙ୍ଗୀର, କଳାହାଣ୍ଡି ପରି ଜିଲ୍ଲାମାନଙ୍କରେ ବିଟିକଟନ ଏବଂ ସୋୟାବିନ ପ୍ରସାର କଲେଣି । ଭବିଷ୍ୟତରେ ଆନ୍ଧ୍ର ଓ କର୍ଣ୍ଣାଟକ ପରି ଓଡ଼ିଶାରେ ମଧ୍ୟ ବିହନର ବ୍ୟବହାର ପାଇଁ ଚାଷୀଙ୍କ ଆତ୍ମହତ୍ୟା ଅପରିହାର୍ଯ୍ୟ ହୋଇପଡ଼ିବ । ୨୦୦୪ ବିହନ ବିଲ୍ ଆଇନରେ ପରିଣତ ହେଲାପରେ କିଛି ବର୍ଷ ମଧ୍ୟରେ ଚାଷୀଙ୍କ ଭିତରେ ଆତଙ୍କ ଖେଳିବ ଓ ପରେ ଚାଷୀ କଂପାନୀମାନଙ୍କ ଆଗରେ ଆତ୍ମ ସମର୍ପଣ କରିବାକୁ ବାଧ ହେବେ ।

Digitized by srujanika@gmail.com

ଶେଷରେ କଂପାନୀ ବିହନର ରାଜତ୍ୱ ଚାଲିବ । ଚାଷ ଅତ୍ୟଧିକ ଖର୍ଚ୍ଚାନ୍ତ ହେବାପରେ ଚାଷୀ ଜମି ଛାଡ଼ିବାକୁ ବାଧ୍ୟ ହେବେ । ଠିକା ଚାଷ ନାମରେ କର୍ପୋରେଟ କୃଷିକ୍ଷେତ୍ର ହେବ ଯେଉଁଠି ଖାଦ୍ୟ ଉତ୍ପାଦନ ବଦଳରେ କେବଳ ଅର୍ଥକରୀ ଫସଲ ମେସିନ୍‌ର ବ୍ୟବହାରରେ ହେବ । ତାପରେ ଚାଷ ଓ ଚାଷୀ ବିପର୍ଯ୍ୟସ୍ତ । ଅନ୍ତତଃ କଂପାନୀମାନଙ୍କ ପ୍ରଭାବରୁ ମୁକ୍ତ ରହି ୧୯୬୬ ବିହନ ଆଇନକୁ କଂପାନୀମାନଙ୍କ ବିହନ ବ୍ୟବସାୟ ପ୍ରତି କଡ଼ା ଆଇନ ଲାଗୁ କରିବା ପାଇଁ ଆବଶ୍ୟକୀୟ ପରିବର୍ତ୍ତନ କରାଯାଇ ୨୦୦୪ ବିହନ ବିଲକୁ ପ୍ରତ୍ୟାହାର କରିନେବା ଏକାନ୍ତ ଜରୁରୀ । କୃଷକ ସଂଗଠନମାନଙ୍କ ମିଳିତ ଆନ୍ଦୋଳନ ହିଁ ଏପରି ଗୋଲାମି ଆଇନକୁ ପ୍ରତିହତ କରିପାରିବ । ନଚେତ ଅନ୍ଧକାର ଅପରିହାର୍ଯ୍ୟ ।



Digitized by srujanika@gmail.com

# ଆମ ଚାଷୀ କି ପାପ କଲେ ?

ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣ ପ୍ରବାହରେ କୃଷି ଓ କୃଷକଙ୍କୁ 'ମଙ୍ଗଳବାର ଛେଳି' କରିଦିଆଯାଉଛି । ଯେଉଁଠି ଅର୍ଥନୀତି, କୃଷି ସମସ୍ୟା ଓ ବିକାଶ ଉପରେ ଚର୍ଚ୍ଚା କିମ୍ବା ନୀତିଗତ କଥା କୁହାଯାଉଛି, ସେଇଠି କୃଷି ଆଉ ଲାଭଜନକ ନୁହଁ, କୃଷିରୁ ଲୋକଙ୍କୁ ହଟାଇବାକୁ ପଡିବ, କୃଷିରେ ରିହାତି ଅନାବଶ୍ୟକ ଇତ୍ୟାଦି ମନ୍ତବ୍ୟ ଦିଆଯାଉଛି । କୃଷି ଆଉ ଲାଭଦାୟକ ନୁହଁ, ଏଥିପାଇଁ ଦାୟୀକିଏ ? ଆମ କୃଷି ସଂପୂର୍ଣ୍ଣ ଭାବେ ପ୍ରାକୃତ ଓ ଜୈବିକ ଚାଷ ଆଧାରିତ ଥିଲା । ତାକୁ ଆମେ ଅଧିକ ଅମଳକ୍ଷମ ନାମରେ ଯାନ୍ତ୍ରିକ ଚାଷ ଆଡ଼କୁ ନେଇଗଲୁ ଯଦିଚ ଏବେ ବି ଆମର ସାଧାରଣ ଚାଷୀ ନିଜ ହଳ ଓ ଶ୍ରମ ଉପରେ ନିର୍ଭରଶୀଳ, କିନ୍ତୁ ଚାଷର ସମସ୍ତ ଉପକରଣ (Inputs) ଯନ୍ତ୍ରାୟନରୁ ଆସୁଛି ଯାହାକି ଆମେରିକୀୟ ମୋଡ଼େଲକୁ ଅନୁସରଣ କରାଗଲା । ସୀମାହୀନ ରାସାୟନିକ ସାରଠାରୁ ଆରମ୍ଭକରି ବିଭିନ୍ନ ଚାଷର ପ୍ରଣାଳୀରେ ପରିବର୍ତ୍ତନ କରି ସେ ଅନୁସାରେ ଯନ୍ତ୍ରପାତିର ବ୍ୟବହାରକୁ ପ୍ରଚଳନ କରାଗଲା । ଦେଶୀୟ ବିହନକୁ କ୍ରମଶଃ ଅକର୍ମା, ଅପାରିବାରିଆ ବୋଲି କହି ହାଇବ୍ରିଡ୍ ବିହନ ଦିଆଗଲା ଚାଷୀଙ୍କୁ ଅମଳର ଲୋଭ ଦେଖାଇ । ଏଥିପାଇଁ ଆବଶ୍ୟକ ସାର ଓ କୀଟନାଶକ ବ୍ୟବହାର କରିବା ଅନିବାର୍ଯ୍ୟ ହୋଇଗଲା । ଏଥିପାଇଁ ବିଦେଶରୁ ଆମଦାନୀ ହେଲା, ଦେଶରେ କଳକାରଖାନା ବସିଲା । ଧାନ ବୁଣା ବଦଳରେ ରୁଆକୁ ପ୍ରବର୍ତ୍ତାଇଲେ । ଏଥିପାଇଁ ଟ୍ରାକ୍ଟର, ଟ୍ରିଲର, କାନ୍ଧରେ ରଖି ପେଷ୍ଟିସାଇଡ୍ ସ୍ପ୍ରେ କରିବା ଉପକରଣ ପାଇଁ କମ୍ପାନିମାନେ ଉତ୍ପାଦନ ଆରମ୍ଭକଲେ । ଗୋଟିଏ ପଟେ ଚାଷର ପ୍ରଣାଳୀକୁ ବଦଳାଇ ମହଙ୍ଗାକରି ଦିଆଗଲାବେଳେ, ଚାଷୀଙ୍କ ରିହାତି କଂପାନୀମାନଙ୍କ ପାଖକୁ ଚାଲିଗଲା ସାର, ଟ୍ରାକ୍ଟର ଇତ୍ୟାଦି ଶସ୍ତା କରିବା ନାମରେ । ଚାଷୀ ଗାଁରେ ଖତ ମୂତ ଓ ବିଭିନ୍ନ ସବୁଜ ସାର ଠାରୁ ଦୂରେଇଗଲା । ଶେଷରେ ଆଜିର ଦିନରେ ଦେଶୀ ବିହନ ମଧ ଆଉନାହିଁ । କଂପାନୀମାନଙ୍କ ବିହନକୁ ପ୍ରୋତ୍ସାହନ ଦେଇ ସ୍ୱାଗତ କରୁଛନ୍ତି ସରକାରମାନେ । ଆମ ଦେଶର ବିହନର ଅସଲ ମାଲିକ ଥିଲେ ଚାଷୀ । ଏବେ ଆମଦେଶରେ ବହୁଦେଶୀୟ କମ୍ପାନୀ ମନସେଣ୍ଟୋ, ସିଞ୍ଜେଣ୍ଟା ପରି ଅନେକ କଂପାନୀ ବିହନର ଏକଚାଟିଆ ବେପାରୀ । ସେହି ବିହନ ଆମ ଚାଷୀଙ୍କ କାଳ ହୋଇଛି । କାରଣ, ଏହା ଦ୍ୱାରା ବହୁ ଅମଳର ପ୍ରଲୋଭନ ଦେଖାଇ ଚାଷୀଙ୍କୁ ସର୍ବସ୍ୱାନ୍ତ କରାଯାଉଛି । ଏଥିପାଇଁ ଯେଉଁ ଉଚ୍ଚଦାମର ସାର, ପେଷ୍ଟିସାଇଡ ଓ ଜଳ ପାଇଁ ଛୋଟ ଚାଷୀ ମଧ ହଜାର ହଜାର

Digitized by srujanika@gmail.com

ଟଙ୍କା ଋଣ କରି ଶେଷରେ ଉତ୍ପାଦନର ମୂଲ୍ୟ ନପାଇ ଆତ୍ମହତ୍ୟା କରୁଛନ୍ତି । ଆନ୍ଧ୍ର ପ୍ରଦେଶ, କର୍ଣ୍ଣାଟକ, କେରଳ, ପଞ୍ଜାବ, ମହାରାଷ୍ଟ୍ର ପରି ରାଜ୍ୟମାନଙ୍କରେ ଗତ ୧୦ ବର୍ଷ ମଧ୍ୟରେ ଏକଲକ୍ଷରୁ ଅଧିକ ଚାଷୀ ଆତ୍ମହତ୍ୟା କଲେଣି ବୋଲି ଖୋଦ୍ କେନ୍ଦ୍ରକୃଷି ମନ୍ତ୍ରୀ ସ୍ୱୀକାର କରିଛନ୍ତି । ତାଙ୍କରି ରାଜ୍ୟ ମହାରାଷ୍ଟ୍ରରେ ଗତ ଆଠ ମାସ ଧରି ପ୍ରତ୍ୟେକ ଦିନ ଏକାଧିକ ଆତ୍ମହତ୍ୟା ହେଉଛି । ଏପରିକି ଗୋଟିଏ ଗୋଟିଏ ପରିବାରରେ ବାପ, ପୁଅ, ସ୍ତ୍ରୀ ମଧ୍ୟ ନିଜ ଜୀବନ ହରାଉଛନ୍ତି । ଏହାର ମୂଳ କାରଣଟିକୁ ଦେଶର ପ୍ରଧାନମନ୍ତ୍ରୀଠାରୁ ଆରମ୍ଭକରି ରାଜ୍ୟ ମୁଖ୍ୟମନ୍ତ୍ରୀ, ଅର୍ଥଶାସ୍ତ୍ରୀ ଓ ଯୋଜନାକାରୀମାନେ ମାନିବାକୁ ପ୍ରସ୍ତୁତ ନୁହଁନ୍ତି । ସେହି କାରଣଟିର ଉପଚାର ହେଲା ଚାଷୀର ଉତ୍ପାଦନ ଖର୍ଚ୍ଚକୁ କମ କରାଇ ତାର ଉତ୍ପାଦନର ଲାଭଦାୟକ ମୂଲ୍ୟ ପ୍ରଦାନ । ଏଥିପାଇଁ କୃଷିରେ ଆର୍ଥିକ ସଂସ୍କାର କରିବା ବଦଳରେ ପ୍ରଚଳିତ ଆର୍ଥିକ ନୀତି, ଘରୋଇକରଣ, ଜଗତୀକରଣ ଓ ବିଶ୍ୱବାଣିଜ୍ୟ ସଂଗଠନର ନିୟନ୍ତ୍ରଣରୁ ଚାଷକୁ ମୁକ୍ତ କରାଯିବା ଏକାନ୍ତ ଜରୁରୀ ।

ଅତୀତରେ ଆମର ବଡ଼ ଭୁଲ ହୋଇଛି ଚାଷପ୍ରଣାଳୀ, ଚାଷରେ ବୈଷୟିକ ଜ୍ଞାନ କୌଶଳ ପ୍ରୟୋଗ ଓ ଯନ୍ତ୍ରାୟନ ସହ କୃଷି ଶିକ୍ଷା ଓ ଗବେଷଣାରେ ଆମେରିକୀୟ ଓ ୟୁରୋପୀୟ ଢ଼ାଞ୍ଚାକୁ ଗ୍ରହଣ କରିବା । ସବୁକଥା ଏଠାରେ ଆଲୋଚନା କରିବା ସମ୍ଭବପର ନୁହେଁ । ଗୋଟିଏ ଉଦାହାରଣ : ଯେଉଁଠି ଶୀତଳ ଜଳବାୟୁ, ସେଠାରେ ମାଟିରେ ଜିଆ ନଥାନ୍ତି, ଆମ ଜଳବାୟୁ ଅନୁଯାୟୀ ଆମ ଚାଷ ଜମିରେ ଜିଆର ଉପସ୍ଥିତି ଥିଲା ଓ ସେମାନଙ୍କ ଭୂମିକା ସାର ଓ ବିଭିନ୍ନ ରୋଗର ପ୍ରତିରୋଧକ ଭାବେ କାର୍ଯ୍ୟ କରୁଥିଲା । କୃଷକର ବନ୍ଧୁ ଜିଆମାନେ, କିନ୍ତୁ ଆମେରିକୀୟ ମାଟି ଓ ବିହନ ପାଇଁ ପ୍ରଯୁଜ୍ୟ ସାର ଓ କୀଟନାଶକ ଦ୍ରବ୍ୟକୁ ଆମଦେଶରେ ବ୍ୟବହାର କରାଗଲା ସେ ଦେଶର ଶିଳ୍ପଦ୍ରବ୍ୟର ବଜାର ପାଇଁ । ଆମ ଜମିର ଜିଆ ଶେଷ ହୋଇଗଲେ ରାସାୟନିକ ବିଷର ପ୍ରୟୋଗରେ । ଏହିପରି ସବୁ କିଛି ଆମର ଚାଷରେ ବିପର୍ଯ୍ୟୟ ଆସିଲା ଆମର ଚାଷୀଙ୍କ ଜ୍ଞାନ ଓ ପାରଦର୍ଶିତାକୁ ଅବଜ୍ଞା କରିବା ଯୋଗୁଁ । ଆରମ୍ଭରୁ ଆମ ମାଟି ଜଳବାୟୁ ଅନୁଯାୟୀ ଆମର ଶିକ୍ଷା ଓ ଗବେଷଣା କରି ଆମ ବିହନର ଓ ମାଟିର ଉର୍ବରତାର ସୁରକ୍ଷା କରିପାରିଥାନ୍ତୁ । ଓଲଟା ସବୁକିଛି ହରାଇ ଚାଷୀଙ୍କ ସବୁ ଉପକରଣ ଦିନକୁ ଦିନ ମହଙ୍ଗାକଲୁ । ଏଣେ ତାର ଉତ୍ପାଦନ ଦାମ ଦେବାକୁ ଆମ ସରକାର ପ୍ରସ୍ତୁତ ନୁହନ୍ତି । ବଜାରରେ କୃଷି ଓ ଶ୍ରମ ବ୍ୟତିରେକ ଆଉ ସମସ୍ତ ଉତ୍ପାଦନ ଓ ସେବାର ଦର ବହୁଗୁଣ ବଢ଼ିଚାଲିଛି । ତାହାହେଲେ କୃଷକ କି ପାପକଲା ? ଦେଶବାସୀଙ୍କ ଅନ୍ନଦାତା ଶେଷରେ ଭୋକରେ ଓ ଅଭାବରେ ଆତ୍ମହତ୍ୟା କରି ଚାଲିଥିବ, ଆଉ ଏଦେଶ ଏକ ସ୍ୱାଧୀନ ଓ ସାର୍ବଭୌମବୋଲି କହିବା କେତେ ଯଥାର୍ଥ ?

Digitized by srujanika@gmail.com

ସ୍ୱାଧୀନତା ପରଠାରୁ କୃଷିକୁ ଯେପରି ସ୍ୱାବଲମ୍ବନ ଅର୍ଥବ୍ୟବସ୍ଥାର କେନ୍ଦ୍ରବିନ୍ଦୁ କରିବାର ଆବଶ୍ୟକତା ଥିଲା, ସେଥିପ୍ରତି ପ୍ରାଥମିକତା ଦିଆଗଲା ନାହିଁ ବରଂ କୃଷିକୁ ପର ନିର୍ଭରଶୀଳ କରିଦିଆଗଲା । କୃଷିକୁ ଅବହେଳା କରାଯାଇ କୃଷକ ପ୍ରତି ଅନ୍ୟାୟ କରାଯାଉଛି । କୃଷକ ସମାଜର ସାମାଜିକ ସୁରକ୍ଷା ନଥିବାବେଳେ ଆର୍ଥିକ ଦୁର୍ଗତି ଭିତରକୁ ଠେଲି ଦିଆଯାଇଛି । ୧୯୯୧ ପରେ ଜଗତୀକରଣ ପ୍ରକ୍ରିୟାରେ ଗାଟ୍‌ର ଡ଼ଙ୍କଲ ଚିଠା କାର୍ଯ୍ୟକାରୀ ହେବାପରେ ବିଶ୍ୱବାଣିଜ୍ୟ ସଂଗଠନର ସର୍ତ୍ତପାଖରେ ଭାରତର ଶାସକଶ୍ରେଣୀ ନତମସ୍ତକ ହୋଇ ଆମ କୃଷିକ୍ଷେତ୍ରକୁ ସାମ୍ରାଜ୍ୟବାଦୀ ଶକ୍ତି ଦ୍ୱାରା ନିୟନ୍ତ୍ରିତ ବିଶ୍ୱବଜାରରେ ସମର୍ପଣ କରିଦେବା ବିଶ୍ୱାସଘାତକତା ହୋଇଛି । ସେହିଦିନଠାରୁ କୃଷିକୁ ଗୌଣକରି କର୍ପୋରେଟ ମାଲିକମାନଙ୍କ ହାତରେ ଟେକି ଦେବାପାଇଁ ଆଇନ ତିଆରି ହେଲାଣି । ପ୍ରଥମେ କୃଷିଜାତ ପଦାର୍ଥର ଆମଦାନୀ ଉପରୁ ସମସ୍ତ କଟକଣା ଉଠାଇ ଦିଆଗଲାପରେ ଆମ ବଜାରକୁ ଆମେରିକା ଚାଉଳ ଓ ଅଟା ମଧ ବିନା ଦ୍ୱିଧାରେ ଆସିଗଲାଣି । ଗୋଟିଏ ପଟେ ବିଦେଶୀ କମ୍ପାନୀମାନଙ୍କ ବି.ଟି.କପା ବିହନର ସଂପ୍ରସାରଣ ଅନ୍ୟପଟେ କପାର ମୂଲ୍ୟ ହ୍ରାସ । ପୁଣି ଖୋଲାବଜାରରେ ଆମେରିକାର ରିହାତି ପ୍ରାପ୍ତ ଶସ୍ତାକପାର ଡଂପିଙ୍ଗ । ଭାରତୀୟ ଚାଷୀ କିମ୍ବା ଯେକୌଣସି ଗରିବ ଦେଶର ଚାଷୀଙ୍କ ଉତ୍ପାଦନ ଏପରି ଅସଙ୍ଗତ ଅସମତୁଲ ପ୍ରତିଯୋଗିତାର ସମ୍ମୁଖୀନ ହୋଇପାରିବକି ? ଆମେରିକା, ୟୁରୋପ ଓ ଜାପାନ କୃଷି, ଗୋପାଳନ ଉପରେ ବିଭିନ୍ନ ଆକାରେ ରିହାତିକୁ ବଢ଼ା ଯାଉଥିବାବେଳେ ଆମର କୃଷି ଓ କୃଷକଙ୍କ ବିକାଶ ପାଇଁ କାହିଁକି କମାଇ ଦିଆଯିବ ? ଆମ ଚାଷର ନୀତି କ'ଣ ହେବ ବିଶ୍ୱ ସଂଗଠନର ନିର୍ଦ୍ଦେଶନା କାହିଁକି ? ଆମକୁ କୁହାଯାଇଛି, ଖାଦ୍ୟ ପଦାର୍ଥର ଦାମ ଶସ୍ତା ରଖିବାପାଇଁ ବିଦେଶରୁ ଆମଦାନୀ କରାଯାଉ ପଛେ ଆମ ଖାଦ୍ୟ ଉତ୍ପାଦନ କମାଇ ଦିଆଯାଉ । ଆମଚାଷୀ ଧାନ, ଗହମ, ଡାଲି, ତୈଳବୀଜ ଚାଷ ନ କରି ଅର୍ଥକରୀ ଫସଲ କରୁ କାହିଁକି ? ଭବିଷ୍ୟତରେ ଖାଦ୍ୟର ଅଭାବକୁ ଅସ୍ତ୍ରକରି ପୁଣି ଆମେରିକା ଓ ୟୁରୋପ ପ୍ରତିଯୋଗିତା କରିବେ ତୃତୀୟ ବିଶ୍ୱରେ ଔପନିବେଶୀୟ ପ୍ରଭୁତ୍ୱ ଜାହିର କରିବାପାଇଁ । ଛୋଟ ଚାଷୀଠାରୁ ଜମି ଛଡ଼ାଇ ନେବାକୁ ଠିକାଚାଷ ଓ କର୍ପୋରେଟ୍ ଚାଷପାଇଁ କେନ୍ଦ୍ରସରକାର ନୀତି ନିର୍ଦ୍ଧାରଣ କଲେଣି । ସେଥିପାଇଁ ରପ୍ତାନିଭିତ୍ତିକ କୃଷିପାଇଁ ରିହାତିର ସୁଯୋଗ ସୃଷ୍ଟି କରାଯାଉଛି । ଏହାର ମୁନାଫା ସେହି ବଡ଼ ବଡ଼ ଫାର୍ମ ତଥା କମ୍ପାନୀ ମାଲିକମାନେ ନେଉଛନ୍ତି । ଅନ୍ୟପଟେ ବିଶ୍ୱବ୍ୟାଙ୍କର ନିର୍ଦ୍ଦେଶରେ ଜଳସେଚନ ପାଇଁ ଜଳକର ବଢ଼ିବା ସହ ଜଳ ସଂପଦକୁ ଘରୋଇକରଣ କରିବା ବ୍ୟବସ୍ଥା କରାଯାଉଛି । ଆମ ଗହମ ଓ ଧାନ ଚାଷୀଙ୍କୁ ଉଚିତ ମୂଲ୍ୟ ଦିଆ ନଯାଇ ନିକଟରେ ଅଷ୍ଟ୍ରେଲିଆର ନିମ୍ନମାନ ଗହମ ୪୦ ଲକ୍ଷଟନ୍ ଆମଦାନୀ କରାଯାଇଛି ଯାହାର କ୍ୱିଣ୍ଟାଲ ପିଛା ୧୦୦୦

Digitized by srujanika@gmail.com

ଟଙ୍କା ପଡୁଛି । ଅଥଚ ପଞ୍ଜାବ, ହରିଆନାର ଚାଷୀଙ୍କୁ ୬୫୦ ବଦଳରେ ୭୫୦ ଟଙ୍କା ଦିଆଯାଇଥିଲେ ଆମ ଚାଷୀ ଉପକୃତ ହୋଇଥାନ୍ତେ ଓ ଆମଦେଶର ବୈଦେଶିକ ମୁଦ୍ରା ସଞ୍ଚିତ କରାଯାଇ ପାରିଥାନ୍ତା ।

୨୦୦୨-୦୩ ଆମେରିକାରେ ଏକଟନ ଧଳା ଚାଉଳର ଉତ୍ପାଦନ ମୂଲ୍ୟ ୪୧୫ ଡ଼ଲାର, କିନ୍ତୁ ରପ୍ତାନିକରି ଆମ ଦେଶର ବଜାରମାନଙ୍କରେ ବିକ୍ରି କରାଯାଉଛି ୨୭୪ ଡ଼ଲାର ଦରରେ । ଏହି ନିଅଣ୍ଟ ୧୪୧ ଡ଼ଲାର ଅର୍ଥାତ୍ ଭାରତୀୟ ମୁଦ୍ରାରେ ପ୍ରାୟ ୭୦୦୦ ଟଙ୍କା ରିହାତି ରୂପେ ସରକାର ବହନ କଲା । ସେହିପରି ୨୦୦୧ ରେ ଆମେରିକାର ୨୦ ହଜାର କପା ଉତ୍ପାଦନକାରୀ ମୋଟ ଉତ୍ପାଦନପାଇଁ ୩୯୦ କୋଟି ଡ଼ଲାର ରିହାତି ପାଇଲେ ଯାହାର ବିଶ୍ୱ ବଜାର ମୂଲ୍ୟ ମାତ୍ର ୩୦୦ କୋଟି ଡ଼ଲାର ଥିଲା । ଆର୍କାନସର ଜଣେ କୋଟିପତି ଜମିମାଲିକ କପାଉତ୍ପାଦନ ପାଇଁ ୬୦ ଲକ୍ଷ ଡ଼ଲାର ରିହାତି ପାଇଲା ଯାହାକି ମାଲିଦେଶର ୨୫ ହଜାର କପାଚାଷୀଙ୍କ ବାର୍ଷିକ ଆୟ ସହ ସମାନ । ସେହିପରି ଇଂଲଣ୍ଡରେ ୱେଷ୍ଟମିନିଷ୍ଟରର ଡ୍ୟୁକ (ଯିଏକି ୫୫ ହଜାର ହେକ୍ଟର ଜମିର ମାଲିକ) ରିହାତି ପାଆନ୍ତି ବାର୍ଷିକ ୩ ଲକ୍ଷ ପାଉଣ୍ଡ ଏବଂ ୧୨ ଶହ ଗାଈ ପାଇଁ ପାଇଛନ୍ତି ୩ ଲକ୍ଷ ୫୦ ହଜାର ପାଉଣ୍ଡ । ରାଣୀ ଏଲିଜାବେଥ ପାଇଛନ୍ତି ୭ ଲକ୍ଷ ୬୯ ହଜାର ପାଉଣ୍ଡ ଏବଂ ପ୍ରିନସ୍ ଚାର୍ଲସ ପାଇଛନ୍ତି ୩ ଲକ୍ଷ ପାଉଣ୍ଡ କୃଷି ରିହାତି ରୂପେ । ଡେନମାର୍କର ୧୦୯ ଜଣ ଧନୀ ଚାଷୀ ପାଇଛନ୍ତି ୧୩୪ ୩୫୩ ୟୁରୋ ମୁଦ୍ରା । ଏହି ରିହାତି ଯୋଗୁଁ କୃଷି ଆୟକାରୀ ପରିବାରର ଆୟ ସାଧାରଣ ଆୟକାରୀଠାରୁ ମୋଟାମୋଟି ଭାବେ ନେଦରଲ୍ୟାଣ୍ଡରେ ୨୭୫%, ଡେନମାର୍କରେ ୧୭୫%, ଫ୍ରାନସରେ ୧୬୦%, ଆମେରିକା ଓ ଜାପାନରେ ୧୧୦% ଅଧିକ । ଆମେରିକାର ରକ୍‌ଫେଲର ପରି କୋଟିପତିମାନେ ମଧ କୃଷି ରିହାତି ପାଆନ୍ତି କେବଳ ବ୍ଲୁବକ୍‌ସ ନାମରେ । ଆମେରିକାରେ ୨୦୦୫ ବର୍ଷରେ ୫୦୦୦ କୋଟି ଡ଼ଲାର୍ କୃଷି ରିହାତି ଦିଆଯାଇଛି । ୟୁରୋପରେ ଏକ ଗାଈ ପିଛା ଦୈନିକ ୩ ଡ଼ଲାର ରିହାତି ଦିଆଯାଉଛି । ଜାପାନରେ ବାର୍ଷିକ ପ୍ରାୟ ୨୫ ହଜାର ଟଙ୍କା ଏକ ଗାଈକୁ ରିହାତି ଦିଆଯାଏ, କିନ୍ତୁ ଆମ ଦେଶରେ ଚାଷରେ ରିହାତି ହଟାଇ ଦିଆଯାଉଛି । ଆମେରିକାରେ ଗତ ଶତାବ୍ଦୀରେ ୨୭୦ ଲକ୍ଷ ଛୋଟ ଚାଷୀଙ୍କୁ ଜମିରୁ ହଟାଇ ଦିଆଯାଇଛି, ସେମାନେ କୁଆଡ଼େ ଗଲେ ତାର ହିସାବ ନାହିଁ । ଆମେରିକାରେ ୧୨% ଜନତା ଦାରିଦ୍ର୍ୟ ଭିତରେ ଅଛନ୍ତି, ସେମାନଙ୍କ ମଧରୁ ଅନେକ ଏହି ଶ୍ରେଣୀର । ବର୍ତ୍ତମାନ ଆମେରିକାରେ ଚାଷୀଙ୍କଠାରୁ ଅଧିକ ବ୍ୟକ୍ତି ଅଛନ୍ତି ଜେଲରେ । ଆମ ଦେଶରେ ମଧ ଛୋଟ ଚାଷୀଙ୍କୁ ଜମିରୁ ଓ ସମାଜରୁ ହଟାଇବା ପ୍ରକ୍ରିୟା ହେଉଛି ଜଗତୀକରଣର ଏକ ଲକ୍ଷ୍ୟ । ଆମେରିକାରେ ଆଉ କେହି ଛୋଟ ଚାଷୀ ନାହାନ୍ତି ।

Digitized by srujanika@gmail.com

ବଡ଼ ବଡ଼ କର୍ପୋରେଟ୍ ମାଲିକ ଯନ୍ତ୍ରାୟନ ଦ୍ୱାରା ଚାଷକରି ମଧ୍ୟ ଏକ ପୁଞ୍ଜିବାଦୀ, ଘରୋଇ କରଣ ଅର୍ଥ ବ୍ୟବସ୍ଥାରେ ସରକାରୀ ରିହାତି ଉପରେ ନିର୍ଭରଶୀଳ । ଆମେରିକା ଓ ୟୁରୋପ କାହିଁକି ଧାନ ଚାଉଳ ଉତ୍ପାଦନ ନକରି ଅର୍ଥକରୀ ଫସଲ କରୁନାହାନ୍ତି ? ଲାଟିନ୍ ଆମେରିକାରେ ଖାଦ୍ୟ ଉତ୍ପାଦନ ବନ୍ଦ ଆମେରିକାର ଏହି ନୀତି ପ୍ରୟୋଗ ଯୋଗୁଁ । ଆଜି ଆଫ୍ରିକା ଓ ଆମଦେଶ ପରି ଦେଶମାନଙ୍କୁ ବାଧ୍ୟ କରାଯାଉଛି, ଖାଦ୍ୟ ବଦଳରେ ଅର୍ଥକରୀ ଫସଲ କରିବାକୁ ଓ ଆମ ସରକାରମାନେ ମଧ୍ୟ ସାହୁକାରର ହୁକୁମ ପ୍ରାପ୍ତ ସେବକପରି କରୁଛନ୍ତି, ଆମଦେଶର କୃଷିରେ ରିହାତି ନାହିଁ, କୃଷିକୁ ଛାଡ଼, କଂପାନୀକୁ ଜମି ଦେଇଦିଅ'' । କାହିଁକି ?

ଶିଳ୍ପ ପାଇଁ କଞ୍ଚାମାଲ ଯଥା ବକ୍ସାଇଟ୍ ଓ ଲୁହାପଥର ବଜାର ମୂଲ୍ୟ ୧୫୦୦ରୁ ୩୦୦୦ ଟଙ୍କା ଥିଲାବେଳେ ଲିଜ୍ ଦିଆଯାଉଛି ମାତ୍ର ୨୫ ଟଙ୍କାରୁ ୬୦ ଟଙ୍କା ଟନ୍ ପିଛା । ସେହିଭଳି ସ୍ୱତନ୍ତ୍ର ଆର୍ଥିକ କ୍ଷେତ୍ର ନାମରେ ଶିଳ୍ପମାନଙ୍କୁ କର ଛାଡ଼ କରାଯାଉଛି । ଏପରିକି ବିଦ୍ୟୁତ୍ ଦରରେ ମଧ୍ୟ । ଏପରି ରିହାତିକୁ ଅର୍ଥନୈତିକ ଦୁର୍ଗତି ବୋଲି ବିଚାର କରୁନଥିବା ଜଗତୀକରଣର ପ୍ରବକ୍ତାମାନେ ଚାଷୀଙ୍କୁ ଖାଦ୍ୟ ଉତ୍ପାଦନ ପାଇଁ ରିହାତି ଦେବାକୁ ବିରୋଧ କରନ୍ତି କାହିଁକି ?

ଆମର ୭୦ ଭାଗ ଲୋକ ଚାଷ ଉପରେ ନିର୍ଭରଶୀଳ । ଖାଦ୍ୟ ଆମ ସ୍ୱାଧୀନତାର ମୂଳଚେର । କୃଷି ବଞ୍ଚିଲେ ଦେଶ ବଞ୍ଚିବ । କ୍ଷୁଦ୍ରଚାଷୀଙ୍କୁ ନିଶ୍ଚିତ ରିହାତି ଦେବାକୁ ହେବ । କୃଷିର ବିକାଶ ସହ କୃଷିଭିତ୍ତିକ ଶିଳ୍ପ ହିଁ ଚାଷକୁ ସୁରକ୍ଷା ଦେବ ଓ ନିଯୁକ୍ତି ସୃଷ୍ଟି କରିବ । ହଁ, ଚାଷର ବ୍ୟୟ କମାଇବାକୁ ହେଲେ ପାଶ୍ଚାତ୍ୟ ଦେଶର ମୋଡ଼େଲରୁ ମୁକ୍ତହୋଇ ଆମ ପରଂପରାଗତ ଚାଷ ପ୍ରଣାଳୀ ପୁନଃ ପ୍ରୟୋଗ କରି ଆମ ବିହନ ଓ ମାଟିକୁ କେନ୍ଦ୍ର କରି ପ୍ରାକୃତ ଓ ଜୈବିକ ଚାଷପାଇଁ ପ୍ରୟାସ, ଅଧ୍ୟୟନ ଓ ଗବେଷଣା ଅତ୍ୟନ୍ତ ଜରୁରୀ ଓ ଅନିବାର୍ଯ୍ୟ । କୃଷିକୁ ସଂପୂର୍ଣ୍ଣ ବିଶ୍ୱବଜାର ନିୟମାବଳୀ ଓ ବାଣିଜ୍ୟିକ୍ ଯନ୍ତାରୁ ମୁକ୍ତ ରଖି କୃଷକ ଓ କୃଷି ଶ୍ରମିକଙ୍କୁ ମୁଖ୍ୟ ଉତ୍ପାଦନକାରୀ ରୂପେ ଗଣତିକରି ଦେଶର ସେବାକ୍ଷେତ୍ରରେ ସାମିଲ କରାଯାଉ । ପଞ୍ଚମ ବେତନ କମିସନରେ ଦରମା ବୃଦ୍ଧିକରି ଅଧିକ ୮୦ ହଜାର କୋଟି ଟଙ୍କା ରାଷ୍ଟ୍ର ବହନ କରିବା ସମ୍ଭବହେଲା । ଆଜି ଚାଷ କାହିଁକି ସେବାଭୁକ୍ତ କରା ନଯିବ ? ୬ଷ୍ଠ ବେତନ କମିସନରେ ଚାଷୀ ଓ କୃଷି ଶ୍ରମିକଙ୍କୁ ଅନ୍ତର୍ଭୁକ୍ତ କରାଯାଇ ସେମାନଙ୍କ ସେବାପାଇଁ ଆୟର ଗ୍ୟାରେଣ୍ଟି ସହ ପେନସନର ବ୍ୟବସ୍ଥା କରାଯାଉ । ଏଥିରେ ଯେଉଁମାନେ ଏକମତ ନହେବେ ସେମାନେ ଜବାବ ଦେଇ ପାରିବେକି ଚାଷୀ କି ପାପ କଲା ?



Digitized by srujanika@gmail.com

# ରୋଜଗାରବିହୀନ ବିକାଶ

ଏକ ସ୍ୱାଧୀନତା ଦିବସ ଅବସରରେ ରାଷ୍ଟ୍ରପତି ଡକ୍ଟର ଏ.ପି.ଜେ. କଲାମଙ୍କ ଅଭିଭାଷଣରେ ରାଷ୍ଟ୍ରର ବିକାଶ ପ୍ରକ୍ରିୟାର ଲକ୍ଷ୍ୟ ହାସଲ ପାଇଁ ଗୁରୁତ୍ୱ ଆରୋପ କରିଛନ୍ତି । ଆର୍ଥିକ ଅଭିବୃଦ୍ଧି ହାର ୮ ରୁ ୧୦ ପ୍ରତିଶତକୁ ବୃଦ୍ଧି କରି ଏକ ବିକଶିତ ରାଷ୍ଟ୍ର ରୂପେ ପ୍ରତିପାଦିତ କରିବାକୁ ସ୍ୱପ୍ନ ଦେଖାଇଛନ୍ତି, କିନ୍ତୁ ଏହି ତଥାକଥିତ ଅଭିବୃଦ୍ଧିର ବୃଦ୍ଧି ସହ ସାଧାରଣ ଜନତାଙ୍କ ଆୟ ବୃଦ୍ଧିର ସଂପର୍କ ଅଛିକି ନାହିଁ, ପ୍ରଥମେ ସେ ରାଷ୍ଟ୍ରର ପ୍ରଥମ ନାଗରିକ ଭାବେ ଅନୁଧ୍ୟାନ ଓ ସମୀକ୍ଷା କରିବା ଉଚିତ । ଜଗତୀକରଣର ସ୍ରୋତରେ ଭାରତରେ ଆର୍ଥିକ ସଂସ୍କାର ନାମରେ ସଂପୂର୍ଣ୍ଣ ଉଦାରୀକରଣ ନୀତିକୁ ଲାଗୁ କଲାବେଳେ କୁହାଯାଇଥିଲା ଯେ ଦେଶର ଆର୍ଥିକ ଅଭିବୃଦ୍ଧି ହାର ଗତିଶୀଳ ହୋଇ ଏକ ଶକ୍ତିଶାଳୀ ଅର୍ଥ ବ୍ୟବସ୍ଥା ସୃଷ୍ଟି କରିବ ଯାହାଦ୍ୱାରା ବେକାରୀ ଓ ଦାରିଦ୍ର୍ୟ ବିଲୋପ ହୋଇଯିବ, କିନ୍ତୁ ୧୨ ବର୍ଷର ଅନୁସୃତ ନୀତିର କାର୍ଯ୍ୟକାରିତା ପରେ ତଥାକଥିତ ଆର୍ଥିକ ଅଭିବୃଦ୍ଧି ହାର ୧୯୯୭ରେ ୬.୭ରୁ ଗତବର୍ଷ ୪.୪କୁ ଖସି ଆସିଛି । କେତେବେଳେ କମୁଛି ତ କେତେବେଳେ ବଢୁଛି । ଉଦାରୀକରଣ ଅବସ୍ଥାରେ ଅଭିବୃଦ୍ଧି ହାର ନିର୍ଭର କରୁଛି ବିଦେଶୀ ପୁଞ୍ଜି ବିନିଯୋଗ ଓ ସେବାକ୍ଷେତ୍ର ଉପରେ । ଏଦୁଇଟିର ଚାବିକାଠି ଧନୀ ଦେଶମାନଙ୍କ ନିୟନ୍ତ୍ରଣରେ । ଏଠି ବିଦେଶୀ ପୁଞ୍ଜିର ବିନିଯୋଗରେ କଳକାରଖାନା କିମ୍ବା ମାର୍କେଟର କାରବାରରେ ରାଷ୍ଟ୍ରୀୟ ଆୟରେ ବୃଦ୍ଧି ଘଟିପାରେ, କିନ୍ତୁ ସେହି ଆୟର ମୋଟା ଭାଗ କୋଟିପତି ଓ ସେମାନଙ୍କ ଦ୍ୱାରା ନିଯୁକ୍ତ ଏକଜିକ୍ୟୁଟିଭମାନଙ୍କ ଆୟର ଅଂଶ ହୋଇଥାଏ । ସାଧାରଣ ଲୋକଙ୍କ ଆୟର ବୃଦ୍ଧି ଅପେକ୍ଷା ଅନେକ ସ୍ଥାନରେ ହ୍ରାସ ହୋଇଥାଏ । କର୍ମନିଯୁକ୍ତି ସମାପ୍ତ ହୋଇଥାଏ । ଘରୋଇ ଶିଳ୍ପ ବନ୍ଦ ଓ ଛଟେଇ ଯୋଗୁଁ । ଅନ୍ୟ ପକ୍ଷରେ ପୁଞ୍ଜି ବିନିଯୋଗ ଯେଉଁଠି ହୋଇଥାଏ ମାତ୍ର କେତୋଟି ନୂଆ କର୍ମନିଯୁକ୍ତିର ସୁବିଧା ଥାଏ ଯାହାର ଲାଭଯାଏ ସେମାନଙ୍କୁ ଯେଉଁମାନଙ୍କୁ ମାସିକ ଦରମା ୩୦ ହଜାରରୁ ଏକ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ମିଳେ । କିନ୍ତୁ ଅତି କମ୍‌ରେ ଦୈନିକ ୧୦୦ ଟଙ୍କାରୁ ମାସିକ ୫ ହଜାର ପର୍ଯ୍ୟନ୍ତ ଏବଂ ହାରାହାରି ବାର୍ଷିକ ଏକ ପରିବାର ପିଛା ଅନ୍ତତଃ ୫୦ ହଜାର ଟଙ୍କାର ଆୟ କରିବା ପାଇଁ କ୍ଷମତାସମ୍ପନ୍ନ

Digitized by srujanika@gmail.com

ଚାଷୀ, ଶ୍ରମିକ ଓ କର୍ମଚାରୀମାନଙ୍କ ସଂଖ୍ୟା କମିବାରେ ଲାଗିଛି । ଏପରିକି ଆଜିବି ଓଡ଼ିଶାର କେତେକ ସ୍ଥାନରେ ଅସଂଗଠିତ ଶ୍ରମିକ ୩୦ ଟଙ୍କା ଦୈନିକ ମଜୁରୀ ପାଉଛି । ତାହା ମଧ୍ୟ ସବୁଦିନ ପାଇଁ କାମ ନାହିଁ । ତେଣୁ ଦାଦନ ଶ୍ରମିକ ହୋଇ ବାହାରେ ଅତ୍ୟାଚାରିତ ହେଉଛନ୍ତି ।

ଅର୍ଥଶାସ୍ତ୍ରୀମାନେ କହୁଛନ୍ତି ଉତ୍ପାଦନ ବୃଦ୍ଧି ନହେଲେ ଗରିବଙ୍କୁ ବାଣ୍ଟିବ କ'ଣ ? ତେଣୁ ନିଯୁକ୍ତି ଏବଂ ଉତ୍ପାଦନ ବୃଦ୍ଧି ପାଇଁ ବିଦେଶୀ ପୁଞ୍ଜି ଓ ଆର୍ଥିକ ସଂସ୍କାର ଅବଶ୍ୟମ୍ଭାବୀ, କିନ୍ତୁ ଉତ୍ପାଦନରେ ଗରିବ ଓ ବେକାରୀଙ୍କୁ ଭାଗିଦାରୀ ନ କରାଇଲେ ସେମାନଙ୍କ ହାତକୁ କ୍ରୟ ଶକ୍ତି ଆସିବ କିପରି ଓ ନିଯୁକ୍ତି ନଦେଲେ ସେମାନଙ୍କ ପକେଟକୁ ଅର୍ଥ ଆସିବ କିପରି ଓ ଉତ୍ପାଦନକୁ ଖାଉଟି ଭାବରେ କ୍ରୟ କରିବ କିପରି ? ଆଜି ରପ୍ତାନୀ ବୃଦ୍ଧି କଥା କୁହାଯାଉଛି । ୧୯୯୦ ପୂର୍ବରୁ ରପ୍ତାନୀ ଓ ଆମଦାନୀ ମଧ୍ୟରେ ଯେଉଁ ତଫାତ ଥିଲା, ଆଜି ବହୁ ଗୁଣ ଅଧିକ ହୋଇଛି । ରପ୍ତାନି ବୃଦ୍ଧି ଅପେକ୍ଷା ଆମଦାନୀର ମାତ୍ରା ଅତ୍ୟଧିକ ହୋଇଛି । କାରଣ, ବିଦେଶରୁ ଖାଉଟି ଜିନିଷ ଠାରୁ ଆରମ୍ଭ କରି କଳକାରଖାନା ଓ କୃଷି ଉପକରଣ ଏପରିକି ସାର ଓ ବିହନ ମଧ୍ୟ ବିଦେଶୀ କଂପାନୀମାନଙ୍କୁ ଅନୁମତି ଦିଆଯାଉଛି । ଏହାଦ୍ୱାରା ଆମ ଦେଶର ଉତ୍ପାଦନ କେନ୍ଦ୍ରଗୁଡ଼ିକ ବନ୍ଦ ହୋଇଯିବାକୁ ବାଧ୍ୟ । ଖାଇବା ତେଲର ଆମଦାନୀ ୧୯୯୮ରୁ ପ୍ରତିବର୍ଷ ଆମଦାନୀ ଅତିମାତ୍ରାରେ ବଢ଼ିବାରେ ଲାଗିଛି । ପାରାଦ୍ୱୀପରେ କାର୍ଗିଲ କଂପାନୀ ଖାଇବା ତେଲର ଏକ ରିଫାଇନେରୀ କାରଖାନା ପ୍ରତିଷ୍ଠା କରିଛି । ବାର୍ଷିକ ୨୫୦୦୦୦ ମାଟ୍ରିକ ଟ୍ରନ ତେଲ ଉତ୍ପାଦନ ଆରମ୍ଭ କରିଛି । ଏହାଦ୍ୱାରା ଓଡ଼ିଶାର ସମସ୍ତ ତେଲ କଳ ବନ୍ଦ ହୋଇଯିବ ଓ ଚାଷୀ ମଧ୍ୟ ବେକାର ହୋଇଯିବେ । କାରଣ ବାହାରୁ ତେଲ ଆମଦାନୀ ହୋଇ ଏଥିରେ ପ୍ରୋସେସିଂ ହେବ । ଫଳରେ ତୈଳବୀଜ ଚାଷୀ ନିଜର ଜୀବିକା ହରାଇବେ ଓ କ୍ଷତି ସହିବେ । ଏପରି ପ୍ରକ୍ରିୟାଦ୍ୱାରା ଦେଶର ଲକ୍ଷ ଲକ୍ଷ କୃଷି ଓ କ୍ଷୁଦ୍ର ଶିଳ୍ପ ଶ୍ରମିକ କର୍ମ ବିହୀନ ହୋଇପଡ଼ିଲେଣି । ଗହମ, ସୁଜି ତଥା ବିଭିନ୍ନ କିସମର ଅଟା ମଧ୍ୟ ବିଦେଶରୁ ଆମ ବଜାରକୁ ପ୍ୟାକେଟ ହୋଇ ଆସିବା ପରେ ଉତ୍ତର ଭାରତର ହଜାର ହଜାର ଅଟା ପେଷା ଚକି ବନ୍ଦ ହୋଇଗଲା । ଲକ୍ଷାଧିକ ପରିବାର ନିଜର ପେଟପାଟଣା ପାଇଁ ଆୟ ହରାଇ ବସିଲେଣି ।

ଆମ ଦେଶର ୮୦ ପ୍ରତିଶତ ଚାଷୀ ପାଖରେ ଦୁଇ ଏକରରୁ କମ ଚାଷ ଜମି ଅଛି । ପୁଣି ୮୦ ପ୍ରତିଶତ ଜନତା ଚାଷ ଉପରେ ନିର୍ଭରଶୀଳ । ପ୍ରାୟ ଦେଶର ୨୦ କୋଟି ଜନତା ଭୂମିହୀନ ଶ୍ରମିକ । ଏମାନଙ୍କ ମଧ୍ୟରୁ ଅଧିକାଂଶ ଆଦିବାସୀ

Digitized by srujanika@gmail.com

ଦଳିତ ଶ୍ରେଣୀର । ବିଗତ ୧୨ ବର୍ଷର ଆର୍ଥିକ ସଂସ୍କାର ଭିତରେ ଏମାନଙ୍କ ସ୍ଥାନ କେଉଁଠି ? ବରଂ ଏମାନଙ୍କ ପାଇଁ ନିଯୁକ୍ତି ଓ ଜୀବିକା ଯୋଗାଉଥିବା ପ୍ରାକୃତିକ ସଂପଦ ବିଦେଶୀ ପୁଞ୍ଜି ଦ୍ୱାରା ଓ ବିକାଶର ପ୍ରକ୍ରିୟା ଦ୍ୱାରା ଲୁଟ ହୋଇ ଯାଉଥିବା ଯୋଗୁଁ ଜଳ, ଜଙ୍ଗଲ ଓ ଖଣିଜର ସମାପ୍ତି ଘଟୁଛି । ପରିଶେଷରେ ନିଜ ସୀମିତ ଆବଶ୍ୟକତାକୁ ପୂରଣ କରି ପାରୁଥିବା ରୋଜଗାର ସୁବିଧାକୁ ଖତମ କରାଯାଉଛି । ଏହା ନକରାଇ ଦେବାପାଇଁ ଆଜି କାଶୀପୁର ଓ ଲାଞ୍ଜିଗଡ଼ରେ ଆଦିବାସୀମାନେ ଜୀବନ ଦେଇ ଜୀବିକା ବଞ୍ଚାଅ ଆନ୍ଦୋଳନ କରୁଛନ୍ତି । ଏହାକୁ ଆମ ରାଜନେତା ଓ ବୁଦ୍ଧିଜୀବୀମାନେ ବିକାଶ ବିରୋଧୀ ଆନ୍ଦୋଳନ ବୋଲି କହି ବିନାଶକୁ ଥୋପି ଦେଉଛନ୍ତି । ଏହାର ପରିଣାମ – ରାଷ୍ଟ୍ରୀୟ ଆୟରୁ ବଞ୍ଚିତଙ୍କ ସଂଖ୍ୟା ବୃଦ୍ଧି ଘଟିବାରେ ଲାଗିଛି ଯଦିଚ ଆର୍ଥିକ ଅଭିବୃଦ୍ଧି ହାର ଲକ୍ଷ୍ୟ ଧାର୍ଯ୍ୟ ପ୍ରଗତିର ସୂଚକ ହୋଇଛି ।

ଖୋଲା ବଜାର ଅର୍ଥ ବ୍ୟବସ୍ଥାରେ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ସଂଖ୍ୟା ୧୦ ରୁ ୨୦ ପ୍ରତିଶତ ପର୍ଯ୍ୟନ୍ତ ବୃଦ୍ଧି କରିବା ପାଇଁ ଜଗତୀକରଣର ପୃଷ୍ଠପୋଷକମାନଙ୍କ ଲକ୍ଷ୍ୟ ରହିଛି । ସେହି ଖାଉଟିମାନଙ୍କ ପାଇଁ ବଜାରକୁ ପ୍ରତିଦିନ ନୂଆ ନୂଆ ବିଳାସପୂର୍ଣ୍ଣ ସାମଗ୍ରୀ ଛଡ଼ାଯାଇଛି, ଯାହାକୁ ଦୈନନ୍ଦିନର ଆବଶ୍ୟକତା ବୋଲି ବିଜ୍ଞାପନ ଜରିଆରେ ପ୍ରଚାର କରାଯାଉଛି । ସେସବୁ ହେଲା କଂପ୍ୟୁଟର, ବହୁମୂଲ୍ୟର କଳର ଟି.ଭି. ଲୁଗାଧୁଆ ଯନ୍ତ୍ର, ଚାରି ଚକିଆ ବିଦେଶୀ ଯାନବାହନ, ରନ୍ଧାଶାଳର ଚକମକିଆ ସାମଗ୍ରୀ ସାଙ୍ଗକୁ ଶୟନ ଓ ଆୟସ ବଖରାରେ ସଜାଇବା ପାଇଁ ସାମଗ୍ରୀ । ଏପରି ଅନେକର ଉତ୍ପାଦନ ପାଇଁ ବିଦେଶରୁ ଉପକରଣ ଆସୁଛି । ସେହି ସାମଗ୍ରୀକୁ ଦେଖିବା ବି ସୁଯୋଗ ନାହିଁ ୮୦ ପ୍ରତିଶତ ଜନତାଙ୍କର, କିନ୍ତୁ ସେମାନଙ୍କ ପ୍ରାକୃତିକ ସଂପଦକୁ ବ୍ୟବହାର କରାଯାଉଛି ଓ ମୁଣ୍ଡ ଉପରେ ଋଣର ବୋଝ ରହୁଛି ମାତ୍ର ୧୦ ରୁ ୨୦ ପ୍ରତିଶତଙ୍କ ଚାହିଦା ପୂରଣ ପାଇଁ । ସେହି ଉତ୍ପାଦନ ପାଇଁ ବ୍ୟବହୃତ ବିଦେଶୀ ପୁଞ୍ଜି ଦ୍ୱାରା ସୃଷ୍ଟି ହେଉଥିବା କର୍ମନିଯୁକ୍ତି ମଧ୍ୟ ଅତି ସୀମିତ ।

ଉତ୍ପାଦନ ତୁଳନାରେ ରୋଜଗାର ଅନୁପାତ କମି କମି ଆସୁଛି । ୧୯୮୩ – ୧୯୯୩ ମଧ୍ୟରେ ଉତ୍ପାଦନର ରୋଜଗାର ଅନୁପାତ ୦.୫୨ ଥିବାବେଳେ ୧୯୯୪ ପରେ ୦.୧୬କୁ କମି ଆସିଛି । ଏହାର ଅର୍ଥ ଏକ ଏକକ ଉତ୍ପାଦନ ବୃଦ୍ଧି ହେଲାବେଳେ କର୍ମନିଯୁକ୍ତିରେ ୦.୫୨ ବୃଦ୍ଧି ପାଉଥିଲା, ଏବେ ମାତ୍ର ୦.୧୬ କର୍ମନିଯୁକ୍ତିର ଯେଉଁ ନୂଆ ଅବସର ସୃଷ୍ଟି ହେଉଛି ବୋଲି କୁହାଯାଉଛି, ତାହା କେବଳ

Digitized by srujanika@gmail.com

ମାତ୍ର ଅଳ୍ପ ମୁଷ୍ଟିମେୟଙ୍କ ପାଇଁ ଯେଉଁମାନେ ପ୍ରତିଯୋଗିତାରେ ଏକ କିମ୍ବା ଦୁଇରେ ରହିବେ, କିନ୍ତୁ ସେଠାରେ ହଜାର ହଜାର ଆବେଦନକାରୀ ଥିବେ । ଉଦାରୀକରଣ ପ୍ରକ୍ରିୟାରେ ସଂଗଠିତ କ୍ଷେତ୍ରରୁ ୨୦୦୨ ସୁଦ୍ଧା ପ୍ରାୟ ୪ ଲକ୍ଷ ୫୦ ହଜାର ନିଯୁକ୍ତି କମିଛି । ଅନ୍ୟ ଦେଶମାନଙ୍କର ଅନୁଭବରୁ ଭାରତ ଶିକ୍ଷା ନେବା ସମୟ ଆସିଛି ପ୍ରଚଳିତ ବିଶ୍ୱାୟନ ଓ ଉଦାରୀକରଣ ନାମରେ କିପରି ଅନେକ ଗରିବ ଦେଶର ଅର୍ଥ ବ୍ୟବସ୍ଥା ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଛି । ଲାଟିନ ଆମେରିକାର ଦେଶମାନଙ୍କର ମୋଟ ୪୮ କୋଟି ଜନତାଙ୍କ ମଧ୍ୟରୁ ୪୩% ଗରିବୀ ରେଖାତଳେ ରହିବାକୁ ବାଧ ହୋଇଛନ୍ତି । ଅନ୍ତରାଷ୍ଟ୍ରୀୟ ମୁଦ୍ରାପାଣ୍ଠି ଆର୍ଜେଣ୍ଟିନାକୁ ବିକାଶର ଏକ ନମୁନା ବୋଲି ଘୋଷଣା କରିଥିଲା । ଯେହେତୁ ସେ ଦେଶର ବିକାଶର ଢାଞ୍ଚା ମୁଦ୍ରାପାଣ୍ଠିର ନିର୍ଦ୍ଦେଶ କ୍ରମେ ହୋଇଥିଲା । ୧୯୯୭ରେ ନ୍ୟୁୟର୍କ ଟାଇମ୍ସ ପତ୍ରିକା ଆର୍ଜେଣ୍ଟିନାକୁ 'ଉଦାରୀକରଣର ନାୟକ' କହି ତାର ଅର୍ଥନୀତିରେ ସଫଳତାର ଭୂୟସୀ ପ୍ରଶଂସା କରି ଅନ୍ୟମାନେ ଏହାକୁ ଅନୁସରଣ କରିବା ପାଇଁ ପରାମର୍ଶ ଦେଇଥିଲାବେଳେ ମାତ୍ର ୪ ବର୍ଷ ପରେ ୨୦୦୧ ଡିସେମ୍ବରରେ ଏହି ଦେଶର ଅର୍ଥବ୍ୟବସ୍ଥା ଭୁଷୁଡ଼ି ପଡ଼ିଲା । ମଇ ୨୦୦୩ର ନିର୍ବାଚନ ବେଳକୁ ୩ କୋଟି ୭୦ ଲକ୍ଷ ଲୋକଙ୍କ ମଧ୍ୟରୁ ଅର୍ଦ୍ଧେକ ଦାରିଦ୍ର୍ୟ ଜୀବନ କଟାଉଥିଲେ ଓ କାମକରି ପାରୁଥିବା ବ୍ୟକ୍ତିଙ୍କ ମଧ୍ୟରୁ ଏକ ତୃତୀୟାଂଶ ବେକାର ହୋଇଯାଇଥିଲେ । ଏହାର ମୂଳକାରଣ ଦେଶ ଉପରେ ଋଣର ବୋଝ ଲଦି ଦିଆଯାଇଛି ବିକାଶ ନାମରେ । ଫଳରେ ଗୋଟିଏ ବର୍ଷ ମଧ୍ୟରେ ଆର୍ଜେଣ୍ଟିନାରେ ୫ ଜଣ ରାଷ୍ଟ୍ରପତି ବଦଳିଛନ୍ତି ରାଜନୈତିକ ଅସ୍ଥିରତା ଯୋଗୁଁ । ୧ ଜାନୁଆରୀ ୨୦୦୨ରେ ନିର୍ବାଚିତ ହୋଇଥିବା ରାଷ୍ଟ୍ରପତି କହିଥିଲେ ଯେ, ଉକ୍ତ ବିକାଶଧାରା ଦେଶର ୨୦ ଲକ୍ଷ ଲୋକଙ୍କୁ ଦରିଦ୍ର କରିଛି ଓ ମଧ୍ୟବିତ୍ତ ପରିବାରକୁ ନଷ୍ଟ କରିବା ସହ ଦେଶୀୟ ଶିଳ୍ପଗୁଡ଼ିକର ବିନାଶ କରିଛି । ଏହାର ପରିବର୍ତ୍ତନ ଅନିବାର୍ଯ୍ୟ । ସେହିପରି ବ୍ରାଜିଲରେ ବିଦେଶୀ ପୁଞ୍ଜିନିବେଶ ନାମରେ ଯେଉଁ ଋଣ ହେଲା ଓ ଆମଦାନୀ ବଢ଼ିଲା, ୧୯୯୪ରେ ମୋଟ ଜାତୀୟ ଉତ୍ପାଦନର ୩୦% ରୁ ୨୦୦୨ ବେଳକୁ ୬୧.୯% ଋଣର ଅନୁପାତ ବଢ଼ିଛି । ବ୍ରାଜିଲ ଦେଶର ମୁଦ୍ରାର ମୂଲ୍ୟ ହ୍ରାସ ହୋଇ ଅର୍ଥ ବ୍ୟବସ୍ଥା ବିପର୍ଯ୍ୟସ୍ତ ହୋଇଗଲା । ଆର୍ଥିକ ଅଭିବୃଦ୍ଧି ମାତ୍ର ୨ରୁ ୨.୩ ମଧ୍ୟକୁ ଖସି ଆସିଛି । ମାତ୍ର ୧% ଲୋକଙ୍କ ହାତରେ ଦେଶର ୫୩% ସଂପଦ ରହିଛି । ଆଜି ଏହି ଦେଶମାନଙ୍କରେ ଦାରିଦ୍ର୍ୟ, ବେକାରୀ ତଥା ଆର୍ଥିକ ନୀତି ବିରୋଧରେ ଗଣବିଦ୍ରୋହ ଦେଖାଦେଇଛି । ଭେନ୍‌ଜୁଏଲା, ବୋଲଭିଆ, ଆର୍ଜେଣ୍ଟିନା, ଇକ୍ୱେଟର ଓ ବ୍ରାଜିଲରେ ସରକାର ପରିବର୍ତ୍ତନ ହୋଇଛି

Digitized by srujanika@gmail.com

ଗଣବିଦ୍ରୋହକୁ କେନ୍ଦ୍ରକରି । ଏବେ ଲାଟିନ ଆମେରିକାର ବିଦ୍ରୋହୀ ରାଷ୍ଟ୍ରମାନେ ଆମେରିକା ସାମ୍ରାଜ୍ୟବାଦର ଦଲାଲ ବିଶ୍ବବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ପରି ଆର୍ଥିକ ସଂସ୍ଥା ଠାରୁ ସଂପର୍କ ଛିନ୍ନ କରି ନିଜ ଦେଶମାନଙ୍କ ମିଳିତ ଉଦ୍ୟମରେ ବ୍ୟାଙ୍କ୍ ଅଫ ସାଉଥ ନାମରେ ଏକ ବିକଳ୍ପ ବ୍ୟାଙ୍କ ପ୍ରତିଷ୍ଠା କରିଛନ୍ତି ନିଜ୍ ନିଜ ଦେଶମାନଙ୍କୁ ଶୋଷଣରୁ ମୁକ୍ତ ରଖିବା ପାଇଁ । ଆସନ୍ତାକାଲି ଭାରତରେ ବିଦ୍ରୋହ ହେବାକୁ ବାଧ୍ୟ । କାରଣ ଏ ଦେଶର ଶାସକଶ୍ରେଣୀ ମୁଖ୍ୟ ରାଜନୈତିକଦଳ ଓ ସେମାନଙ୍କ ସହଯୋଗୀମାନେ ଆମେରିକା ସାମ୍ରାଜ୍ୟବାଦର ପ୍ରଭୁତ୍ଵକୁ ସ୍ୱୀକାର କରି ଏକ ଗୁଲାମ ଅର୍ଥନୀତିକୁ ଦେଶବାସୀଙ୍କ ଉପରେ ଥୋପି ଦେଇଛନ୍ତି । ଆଜିର ଅର୍ଥବ୍ୟବସ୍ଥାରେ ଗରିବ ତଥା ବଞ୍ଚିତଙ୍କ ନିଶ୍ଚିତ ଆୟ କିପରି ନିରନ୍ତର ସମ୍ଭବପର ହେବ ସେଥିପାଇଁ ଏକ ବିକଳ୍ପ ବିକାଶଧାରା ପାଇଁ ଉଦ୍ୟମ ଏକାନ୍ତ କାମ୍ୟ । ନଚେତ ରୋଜଗାର ବିହୀନ ଆର୍ଥିକ ଅଭିବୃଦ୍ଧି ଦେଶରେ ଦାରିଦ୍ର୍ୟ ଓ ବେକାରୀ ବଢ଼ାଇବା ସହ ସାମ୍ରାଜ୍ୟବାଦୀ ଅର୍ଥ ବ୍ୟବସ୍ଥାର ନିୟନ୍ତ୍ରଣରେ ଦେଶ ରହିବ ଓ ସାଧାରଣ ଜନତାଙ୍କୁ ସର୍ବନାଶ କରିବ ।



Digitized by srujanika@gmail.com

# ଏସବୁ କାହାପାଇଁ ଓ କାହିଁକି ?

୧୯୯୧ରୁ ସମସ୍ତେ ମିଶି ଆମକୁ କହିଲେ ଆମେ ଆଉ ପଛରେ ନ ପଡ଼ିବାକୁ । ଏଥିପାଇଁ ନୂଆ ଆର୍ଥିକ ସଂସ୍କାର ଭିତରକୁ ଯିବାକୁ ବାଧ । ସମସ୍ତେର ଅର୍ଥ ସରକାର, ମୁଖ୍ୟ ବିରୋଧୀଦଳ ପ୍ରଶାସକ ଓ ବୁଦ୍ଧିଜୀବୀ । ଆମେ ଦୁଆର ବନ୍ଦ କରି ରଖି ପାରିବା ନାହିଁ ବୋଲି କହି କହି ଆମ ମୁଦ୍ରାର ମୂଲ୍ୟକୁ ହ୍ରାସ କରି ଦିଆଗଲା । ଅର୍ଥାତ ଆମ ସାଧାରଣ ଜନତାଙ୍କ କ୍ରୟ ଶକ୍ତି କମିଗଲା । ଯଦି ଆୟ ବୃଦ୍ଧି ହୋଇଥାଆନ୍ତା ତାହାହେଲେ ଅଭାବ ଓ ଦାରିଦ୍ର୍ୟ ଦୃଶ୍ୟମାନ ହୋଇନଥାନ୍ତା । କିନ୍ତୁ ଟଙ୍କାର ମୂଲ୍ୟହ୍ରାସ ସାଙ୍ଗକୁ ଛଟେଇ, ଜୀବିକା ହ୍ରାସ ସହ ସମ୍ବଳ ଅପହରଣର ପ୍ରକ୍ରିୟା ଦ୍ରୁତ ଗତିରେ ଚାଲୁ ରହିଛି । ଅନ୍ୟପଟେ ବିଦେଶୀ ପୁଞ୍ଜି, ବିଦେଶୀ କଂପାନୀ, ବିଦେଶୀ ରୁଚି ଓ ବିଦେଶୀ ପ୍ରେମରେ ଆମ ଖୋଲା ବଜାର ଧମାକାର ପ୍ରଦର୍ଶନୀ ଚାଲିଛି । ଏହାର ପରିଣାମ ସ୍ୱରୂପ ଦେଶର ଆର୍ଥିକ ଅଭିବୃଦ୍ଧିର ଫଳ ଅଳ୍ପ ସଂଖ୍ୟକ ଧନୀକ ଶ୍ରେଣୀ ପାଇଁ ଆକାଶର ତାରା ପରି ଉପଲବ୍ଧ ହୋଇପାରିଛି । ଭାରତୀୟ ସଡକରେ ୩ କୋଟି ଟଙ୍କା ମୂଲ୍ୟର ଗାଡ଼ି ବି ଚାଲିବା ଆରମ୍ଭ କଲାଣି ଓ ଦୁଇ ଲକ୍ଷ ଟଙ୍କାରୁ ଉର୍ଦ୍ଧ୍ୱ ଦାମର କାନ୍ଥ ଟଙ୍ଗା ଟି.ଭି. ମଧ୍ୟ ବ୍ୟବହାର କରାଗଲାଣି । ବିଭିନ୍ନ ବିଦେଶୀ କର୍ପୋରେଟ କଂପାନୀର executive ମାନେ ଦଶ ଲକ୍ଷ ଟଙ୍କାରୁ ଉର୍ଦ୍ଧ୍ୱ ମାସିକ ଦରମା ମଧ୍ୟ ପାଇଲେଣି । ଏହାର ସଂଖ୍ୟା ଯଦିଚ ଅତିନ୍ୟୂନ କିନ୍ତୁ ଏପରି ଏକ ପ୍ରଚାର ବାତାବରଣ ସୃଷ୍ଟି କରାଯାଇପାରିଛି ପ୍ରତ୍ୟେକ ଭାରତୀୟଙ୍କର ଜୀବନଲକ୍ଷ୍ୟ ଏହା ହେବା ଉଚିତ ବୋଲି, କିନ୍ତୁ ଏପରି ଏକ ଅସମ୍ଭବ ପରିକଳ୍ପନା ଭିତରକୁ ଯୁବକ ଯୁବତୀଙ୍କୁ ଠେଲି ଦେଇ ଏକ ହତାଶ ସମାଜ ସୃଷ୍ଟି କରାଯାଉଛି ଯେଉଁଠି ଦାରିଦ୍ର୍ୟ, ଅସାମାଜିକତତ୍ତ୍ୱ, ଅପରାଧୀକରଣ ରାଜନୀତିର ପରିବୃଦ୍ଧି ଚାଲିଛି ।

ସବୁକିଛି ଘରୋଇକରଣ ଓ ଉଦାରୀକରଣ ହୋଇଗଲେ ଦେଶ ଠିକ୍ ଚାଲିବ ବୋଲି କୁହାଯାଉଛି । ଏହାକୁ ପ୍ରଥମ କାରଣ ଦର୍ଶାଇ ଦିଆଯାଉଛି ଯେ ସରକାରଙ୍କ ପାଖରେ ପଇସା ନାହିଁ । ଲୋକଙ୍କ ପାଇଁ ଶିକ୍ଷା, ସ୍ୱାସ୍ଥ୍ୟ, ପିଇବାପାଣି, ଜଳସେଚନ ଏସବୁ ଘରୋଇ ମାଲିକାନାରେ ଚାଲିବ । ଯିଏ ପଇସା ଦେଇପାରିବ,

Digitized by srujanika@gmail.com

ସେ ପାଇପାରିବ ତା ମନମୁତାବକ ସେବା ଓ ପଦାର୍ଥ । ଏହାକୁ କୁହାଯାଉଛି 'ଉପଭୋକ୍ତାର ସ୍ୱାଧୀନତା' । ଏସବୁର ଉପଲବ୍ଧ ମାତ୍ର ୧୦ ପ୍ରତିଶତ ମୁଖର ଜନତା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ତଥା ଉଚ୍ଚ ଅଧିକାରୀ ଶ୍ରେଣୀଭୁକ୍ତ ପାଇଁ ସମ୍ଭବପର । ଉକ୍ତ ସଂଖ୍ୟା କିପରି ଆସନ୍ତା ୨୦ ବର୍ଷ ମଧ୍ୟରେ ୨୦%କୁ ବୃଦ୍ଧିପାଇବ ତାହାହିଁ ଆମ ନୀତି ନିର୍ଦ୍ଧାରଣ ଓ ଦେଶ ପରିଚାଳକମାନଙ୍କରେ ମୁଖ୍ୟ ଏଜେଣ୍ଡା । ଏହାର ପଛରେ ରହିଛନ୍ତି ବିଶ୍ୱବଜାର ନିୟନ୍ତକ ପୁଞ୍ଜିବାଦୀ ଶକ୍ତିମାନେ । ସେମାନଙ୍କ ଅସ୍ତ୍ର ହେଉଛି ଆର୍ଥିକ ସାମ୍ରାଜ୍ୟବାଦ ଯାହାକୁ ବ୍ୟବହାର କରି ଆମ ବଜାର ଭିତରେ ସେମାନଙ୍କ ବାଣିଜ୍ୟିକ ଜିନିଷ ଆମ ବଜାରରେ ସ୍ୱାଧୀନଭାବେ ବିଚରଣ କରି ପାରିବ । ସେମାନଙ୍କ ସୁଖଯାତ୍ରାର ଲକ୍ଷ୍ୟ ହାସଲ ପାଇଁ ଆମ ଦେଶର ସରକାରମାନେ ମୁଖର ହୋଇ ଆମ ପାଇଁ ମଧ୍ୟ ତାହା ବିକାଶର ସଫଳତା ରୂପେ ଜୟ ଜୟ ଗାନ କରୁଛନ୍ତି । ତାକୁ ଫିଲ୍‌ଗୁଡ୍ ଫେକ୍ଟର ଅର୍ଥାତ 'ସୁଖ ଅନୁଭବ ବାତାବରଣ' ବୋଲି ଏବେ ଦାବି କରାଯାଉଛି ।

ସରକାରଙ୍କ ପାଖରେ ଅର୍ଥର ଅଭାବ । ନିଅଣ୍ଟ ପରିମାଣକୁ ଭରଣା କରିବା ପାଇଁ କେନ୍ଦ୍ର ସରକାର ପ୍ରତିଦିନ ସରକାରୀ ଶିଳ୍ପକୁ ବିକ୍ରି କରିବା ସହ ବ୍ୟାଙ୍କ, ବୀମା, ତୈଳ ଉତ୍ପାଦନ ଖଣି କ୍ଷେତ୍ରରେ ବିଦେଶୀ ପୁଞ୍ଜି ବିନିଯୋଗ ପାଇଁ ଦୁଆର ଖୋଲା କରିଦେଲେଣି । ଏସବୁ କେବଳ ବ୍ୟାବସାୟିକ ଲାଭ ପାଇଁ ହିଁ ମୁଖ୍ୟ ଲକ୍ଷ୍ୟ ହେବ । ଏଥି ସହ ଜଡ଼ିତ ଦେଶର ଏକତା, ସଂହତି, ଜୀବିକାର ଗ୍ୟାରେଣ୍ଟି ଓ ଆର୍ଥିକ ସାର୍ବଭୌମତ୍ୱ ଗୌଣ ହୋଇଯାଇଛି । ପରିବର୍ତ୍ତିତ ବଜାରର ଚେହେରାରେ ଯୁବସମାଜ ସ୍ୱପ୍ନ ଦେଖିବାକୁ ବିଜ୍ଞାପନ ଜରିଆରେ Feel good factor ପରି ମାନସିକତା ତିଆରି କରାଯାଉଛି । ଅନ୍ୟଦିଗଟିରେ ପ୍ରତିଦିନ କ୍ଷୁଦ୍ର ଶିଳ୍ପ, ଛୋଟ ଛୋଟ ଉଦ୍ୟୋଗ ବନ୍ଦ ହୋଇଯାଉଛି । ଲକ୍ଷ ଲକ୍ଷ ଜୀବିକା ଖତମ ହୋଇଯାଉଛି । ହଜାର ହଜାର ସ୍କୁଲ ଓ କଲେଜ ବନ୍ଦ ହୋଇଯାଉଛି, ଶିକ୍ଷକମାନଙ୍କ ପାଇଁ ଦରମା ନାହିଁ, ହସପିଟାଲରେ ଔଷଧ ନାହିଁ ବୋଲି ସାଧାରଣ ରୋଗୀଠାରୁ ସେବା ଫିଜ୍ ଆଦାୟ ହେଉଛି । ଚାଷୀଙ୍କ ଉତ୍ପାଦନର ମୂଲ୍ୟ ଦେବାକୁ ଅର୍ଥନୀତି ମନା କରୁଛି । ଖାଦ୍ୟରେ ରିହାତି ଦେବା ଏକ ଆର୍ଥିକ ବୋଝ, ତେଣୁ ଗୋଦାମରେ ଦୁଇ କୋଟି ଟନ ଗହମ ଓ ଚାଉଳ ମହଜୁଦ୍ ଥିଲେ ବି ଦେଶର ପ୍ରାୟ ୨୬ କୋଟି ଲୋକ ଅନାହାର ଓ ଅର୍ଦ୍ଧାହାରରେ ରହିବା ଏକ ସ୍ୱାଭାବିକ ସ୍ଥିତି ହୋଇଯାଇଛି ।

କିନ୍ତୁ ଭୋଟ ଆସିଲାବେଳକୁ ପୁଣି ମୁଖର ଜନତାକୁ ସନ୍ତୁଷ୍ଟ କରିବାକୁ ହେବ ଯେଉଁମାନେ ଜନମତ ସୃଷ୍ଟିକରିପାରିବେ ଓ ଖବରକାଗଜରେ, ଟି.ଭି.

Digitized by srujanika@gmail.com

ପରଦାରେ ଆର୍ଥିକ ପ୍ରଗତିର ପ୍ରଚାର ଚାଲିଲେ ସାଧାରଣ ଲୋକଙ୍କ ଦୁଃଖ ସଂପୂର୍ଣ୍ଣ ଘୋଡ଼ାଇ ହୋଇଯିବ । ତେଣୁ କେନ୍ଦ୍ର ସରକାର ବିନା ବଜେଟ ଆଗତ କରି ବିଦେଶରୁ ଆସୁଥିବା ପଦାର୍ଥ ଉପରେ ସୀମା ଶୁଳକ୍ ୨୫%ରୁ ୨୦%କୁ ହ୍ରାସ କରିଥିବା ବେଳେ ୧୯୯୮ରେ ସ୍ୱଦେଶୀ ଶିଳ୍ପକୁ ସଂରକ୍ଷଣ ଦେବାପାଇଁ ଉଦ୍ଦିଷ୍ଟ ବିଦେଶୀ ଜିନିଷ ଉପରୁ ଆଦାୟ ହେଉଥିବା ଅତିରିକ୍ତ କର ସଂପୂର୍ଣ୍ଣ ଉଠାଇ ଦେଇଛନ୍ତି । ଏହାଦ୍ୱାରା ସରକାର ୧୧୦୦୦ କୋଟି ଟଙ୍କା ରାଜସ୍ୱ ହରାଇଲେ । କିନ୍ତୁ ଉଚ୍ଚ ଶ୍ରେଣୀର ଉପଭୋକ୍ତା ସନ୍ତୁଷ୍ଟ ହେଲେ । ଆର୍ଥିକ ସଂସ୍କାର ଓ ଉଦାରୀକରଣ ଆୟ ବୃଦ୍ଧି କଥା କୁହାଯାଉଥିଲାବେଳେ ୧୯୯୧-୯୨ରେ ମୋଟ କର ରାଜସ୍ୱ ମୋଟ ଘରୋଇ ଉତ୍ପାଦନ (ଜିଡିପି)ର ୧୦.୩% ଥିବାବେଳେ ୨୦୦୧-୨୦୦୨ରେ ୮.୬%କୁ ଖସିଆସିଛି । କେନ୍ଦ୍ରୀୟ କରଆୟରେ ଉକ୍ତ ୧.୭% ହ୍ରାସର ପରିମାଣ ୨୦୦୨-୦୩ ପାଇଁ ପ୍ରାୟ ୨୨୪୫୧ କୋଟି ଟଙ୍କା । ଏହି ଦର ହ୍ରାସ ଧନୀ ଓ ପୁଞ୍ଜିପତି ତଥା ଉଚ୍ଚ ଶ୍ରେଣୀ ପାଇଁ ରିହାତିର ଅନ୍ୟ ନାମ ନୁହଁକି ? ଯେଉଁ ଧନୀ ଦେଶମାନଙ୍କ ନିର୍ଦ୍ଦେଶରେ ଆମ ଆର୍ଥିକ ନୀତି ନିର୍ଦ୍ଧାରିତ ହେଉଛି ସେହି ଦେଶମାନଙ୍କର ଜିଡ଼ିପିର ୧୬ ରୁ ୨୦% ମୋଟ କର ରାଜସ୍ୱ ଆୟ ହେଉଛି । ଆମ ଦେଶରେ ଏହା ହୋଇଥିଲେ, ଏକ ଲକ୍ଷରୁ ଦେଢ଼ ଲକ୍ଷ କୋଟି ଟଙ୍କା ଅଧିକ ରାଜସ୍ୱ ମିଳିପାରିଥାନ୍ତା । ଏହାଦ୍ୱାରା ଗୁରୁତ୍ୱପୂର୍ଣ୍ଣ ଜାତୀୟ ଉତ୍ପାଦନ କ୍ଷେତ୍ରରୁ ପୁଞ୍ଜି ପ୍ରତ୍ୟାହାରର ଆବଶ୍ୟକତା ପଡ଼ିନଥାନ୍ତା କିମ୍ବା ଶିକ୍ଷା ଓ ସ୍ୱାସ୍ଥ୍ୟ ତଥା କୃଷି କ୍ଷେତ୍ରରେ ସରକାର ସାଂବିଧାନିକ ଦାୟିତ୍ୱରୁ ଓହରି ଯିବାକୁ ଦେଶବାସୀ ପ୍ରତି ବିଶ୍ୱାସଘାତକତା କରିନଥାନ୍ତେ । ସରକାର ଅର୍ଥାତ୍ ୧୯୯୧ରୁ ଆଜି ପର୍ଯ୍ୟନ୍ତ ଦଳମତ ନିର୍ବିଶେଷରେ କେନ୍ଦ୍ରର ସମସ୍ତ ସରକାର; କିନ୍ତୁ କେନ୍ଦ୍ରର ଜଣେ ଦାୟିତ୍ୱବାନ ରାଜସ୍ୱ ସଚିବ ଭୁରେଲାଲଙ୍କ ତଥ୍ୟ ଓ ଜବାହାରଲାଲ ବିଶ୍ୱବିଦ୍ୟାଳୟର ଅର୍ଥନୀତି ପ୍ରଫେସର ଅରୁଣ କୁମାରଙ୍କ ବ୍ଲାକ ମନି ବହିର ତଥ୍ୟ ଅନୁଯାୟୀ ବିଦେଶ ବ୍ୟାଙ୍କରେ ଗଚ୍ଛିତ ଲୁଚ୍ଚାୟିତ କଳାଧନ ୧୧୦୦୦ କୋଟି ଡ଼ଲାର ଅର୍ଥାତ ୫୫୦୦୦୦ ଟଙ୍କା । ଏକଥା ସେ ସାତବର୍ଷ ତଳେ କହିଥିଲେ । ବର୍ତ୍ତମାନ ତାହା ଦୁଇଗୁଣ ହୋଇ ଯାଇଥିବ । ଏ ଅର୍ଥ କିପରି ଦେଶକୁ ଅଣାଯିବ ସେ କଥା କେହି ଚିନ୍ତା କରୁନାହାନ୍ତି ।

ଆଜି ଚାଷୀଙ୍କୁ ରିହାତି ନାମରେ ସିଂହଭାଗ ଅର୍ଥ ବରାଦ ଚାଲିଯାଉଛି ସାର କାରଖାନା ମାଲିକ ଓ ଯନ୍ତ୍ରପାତି ତଥା ଟ୍ରାକ୍ଟର କାରଖାନା ମାଲିକଙ୍କ ପାଖକୁ । ଅନ୍ୟପଟେ ବିହନ ଓ ଜଳସେଚନ ପାଇଁ ଯେଉଁ ରିହାତି ତାହା ଉଠାଇ ଦିଆଯାଇ ଜଳକର ବୃଦ୍ଧି କ୍ରମାଗତଭାବେ ଚାଲିଛି । ଅନ୍ୟପଟେ ଜଳର ଘରୋଇକରଣ

Digitized by srujanika@gmail.com

କରିବାକୁ କେନ୍ଦ୍ର ଓ ଓଡ଼ିଶା ସରକାର ନୀତି ଘୋଷଣା କରିସାରି ସେ ଦିଗରେ କାର୍ଯ୍ୟ ଆରମ୍ଭ କରିସାରିଲେଣି । ଆମ ଦେଶରେ ଚିକିତ୍ସା, ସ୍ୱାସ୍ଥ୍ୟ ନାମରେ ଯେତିକି ଖର୍ଚ୍ଚ ହେଉଛି ତାହାର ମାତ୍ର ୧୮% କେବଳ ଲୋକଙ୍କ ପାଇଁ । ଆଉ ବାକି ୮୨% ବ୍ୟାବସାୟିକ ସର୍ତ୍ତ ପୂରଣ ପାଇଁ । ବିଶ୍ୱବ୍ୟାଙ୍କର ରିପୋର୍ଟ ଅନୁଯାୟୀ ଆମ ଦେଶର ମାତ୍ର ୧୦% ଖର୍ଚ୍ଚ ହୁଏ ସବୁଠାରୁ ଗରିବ ୨୦% ପ୍ରତିଶତ ଜନସଂଖ୍ୟାର । ୩୧% ଖର୍ଚ୍ଚ ହୁଏ ସର୍ବୋଚ୍ଚ ୨୦% ଧନୀଙ୍କ ପାଇଁ ।

ଆଜି ବିଦେଶୀ ମୁଦ୍ରା ଭଣ୍ଡାରକୁ ନେଇ ଖୁବ୍ ପ୍ରଂଶସନୀୟ ସ୍ତମ୍ଭ ଲେଖା ଚାଲିଛି । ଏହାର ପରିମାଣ ଦଶ ହଜାର କୋଟି ଡ଼ଲାର ଅର୍ଥାତ ପ୍ରାୟ ୫ ଲକ୍ଷ କୋଟି ଟଙ୍କା । ଏହିତକ ସବୁ କ'ଣ ଆମ ଦେଶର ଉପାର୍ଜନ ? କିମ୍ବା ଆମ ରପ୍ତାନିରୁ ଆସିଛି ? ଏହି ଦୁଇଟିରୁ ଗୋଟିଏ ବି ନୁହଁ । ଏହାର ଅର୍ଦ୍ଧାଧିକ ହେଉଛି ଭାରତୀୟ ସେୟାର ବଜାରରେ ନିବେଶ ପୁଞ୍ଜି ଯାହାର ପ୍ରତ୍ୟକ୍ଷ ଉତ୍ପାଦନ ସହ କୌଣସି ସଂପର୍କ ନାହିଁ ଏବଂ ଏହା ଏକ ଅସ୍ଥିର ପୁଞ୍ଜି । ଯେତେବେଳେ ଅର୍ଥନୀତିର ଦୁର୍ବଳତା ଦେଖାଦେବ କିମ୍ବା ଅନ୍ୟତ୍ର ଲାଭର ଆଶା ଦିଶିବ ସେତେବେଳେ ଏହି ପୁଞ୍ଜି ତତ୍‌କ୍ଷଣ ସ୍ଥାନାନ୍ତରିତ ହୋଇଯିବ ଅନ୍ୟ ଦେଶକୁ । ପୁଞ୍ଜିନିବେଶକ ହେଉଛି ସୁପ୍ରିମ । ଆଉ ବାକି ବିଭିନ୍ନ ଆନ୍ତର୍ଜାତିକ ସଂସ୍ଥାର ଋଣ ତାହା ମଧ୍ୟ ସେମାନଙ୍କ ସର୍ତ୍ତାବଳୀରେ ଖର୍ଚ୍ଚ ହେବ । ଅତି କମ୍ ଅଂଶ ଭାରତୀୟ କଂପାନୀ କିମ୍ବା ଉତ୍ପାଦନର ରପ୍ତାନୀରୁ ଆସିଥିବା ବୈଦେଶିକ ମୁଦ୍ରା । ସେହି ଭିତରୁ କିଛି ଅଂଶ ବିଦେଶରେ କାମ କରୁଥିବା ବ୍ୟକ୍ତିମାନଙ୍କ ନିଜସ୍ୱ ଆୟ । ତେଣୁ ଏଥିରେ ଆମ ଦେଶର ଆର୍ଥିକ ପ୍ରଗତି ଓ ସ୍ଥିରତାର କୌଣସି ଗ୍ୟାରେଣ୍ଟି ନାହିଁ । ଅନ୍ୟପଟେ ଆମର ଆନ୍ତର୍ଜାତିକ ବାଣିଜ୍ୟ କାରବାର ଭାଗ ବର୍ତ୍ତମାନ ବିଶ୍ୱର ମାତ୍ର ୦.୮ ପ୍ରତିଶତ ମଧ୍ୟରେ ସୀମିତ ଅଛି । ଆମର ରପ୍ତାନି ଅପେକ୍ଷା ଆମଦାନୀ ଏବେ ବି ବୃଦ୍ଧି ଘଟୁଛି । ଏହି ଆମଦାନୀର ପରିଣାମ ସ୍ୱରୂପ ଆମ ଦେଶୀୟ ଉତ୍ପାଦନ ହ୍ରାସ ହେବା ସହ ଲକ୍ଷ ଲକ୍ଷ ପରିବାର ବିଭିନ୍ନ କ୍ଷେତ୍ରରୁ ଜୀବିକା ହରାଇବା ସହ ପ୍ରାକୃତିକ ସମ୍ବଳରୁ ମଧ୍ୟ ବଞ୍ଚିତ ହେଉଛନ୍ତି ।

ଓଡ଼ିଶାରେ ଚାଷୀଙ୍କ ଧାନ କିଣିବାକୁ କେନ୍ଦ୍ର କିମ୍ବା ରାଜ୍ୟ ସରକାରଙ୍କ ଅର୍ଥର ଅଭାବ । ପୁଣି ବିଗତ ୧୫ ବର୍ଷ ହେଲା ୧୫୦୦ ହାଇସ୍କୁଲର ଶିକ୍ଷକ ଶିକ୍ଷୟତ୍ରୀମାନଙ୍କୁ ପଇସାଟିଏ ମଧ୍ୟ ଅନୁଦାନ ଦେବାକୁ ସକ୍ଷମ ନଥିବା ବେଳେ ପ୍ରତ୍ୟେକ ପ୍ରାଥମିକ ସ୍କୁଲରେ ଆବଶ୍ୟକ ଶିକ୍ଷକ ନିଯୁକ୍ତି ହୋଇପାରିନଥିବା ସତ୍ୱେ ଖାସ କୋକାକୋଲା ପରି ବିଦେଶୀ ମୃଦୁପାନୀୟ କଂପାନୀକୁ ବିକ୍ରିକର ୬ ବର୍ଷ ପାଇଁ ଛାଡ଼ିବା ନିଷ୍ପତ୍ତି କାହିଁକି ଓ କାହାପାଇଁ ? ଏଥିରୁ ପ୍ରାୟ ଅତିକମରେ ୫୦ କୋଟି

Digitized by srujanika@gmail.com

ଟଙ୍କା ଆଦାୟ ହୋଇ ଶିକ୍ଷାନୁଷ୍ଠାନମାନଙ୍କୁ ଅନୁଦାନ ଦିଆଯାଇ ପାରିଥାନ୍ତା । ଫଳରେ ସେଗୁଡ଼ିକୁ ବିଭିନ୍ନ ଆଳ ଦେଖାଇ ବନ୍ଦ କରିବା ପାଇଁ ସରକାର ଦୁଃ ସାହସ କରିନଥାନ୍ତେ । ସେହିପରି ଆମେରିକା କଂପାନୀ କାର୍ଗିଲକୁ ଡ଼ାକିଆଣି ବିକାଶ ନାମରେ ପାରାଦୀପରେ ଖାଇବା ବିଶୋଧିତ ତେଲ ବସାଇ ନଥାନ୍ତେ ଯାହାର ଉତ୍ପାଦନ ପରେ ଓଡ଼ିଶାର ତେଲ କଳ ଗୁଡ଼ିକ ବେକାର ହୋଇଯିବେ ଓ ହଜାର ହଜାର ଲୋକେ ଜୀବିକା ହରାଇବା ସହ ଦୁଇ ଲକ୍ଷ ତୈଳବୀଜ ଚାଷୀ ଚାଷ ବନ୍ଦ କରିବାକୁ ବାଧ ହେବେ । ଏହାଦ୍ୱାରା ସେମାନଙ୍କ ତୈଳବୀଜର ଚାହିଦା ରହିବ ନାହିଁ । କାରଣ ଏହି କଂପାନୀର କଞ୍ଚାମାଲ ଆସିବ ବିଦେଶରୁ । ପୁଣି ଓଡ଼ିଶା ବଜାରରେ ଯେତିକି ଚାହିଦା ତାଠାରୁ ଅଧିକ ଉତ୍ପାଦନ କରିବ । ତାହାହେଲେ ଓଡ଼ିଶାର ଚାଷୀ, ମୂଲିଆ, ଛୋଟ ବ୍ୟବସାୟୀ ଯେଉଁମାନେ ତୈଳ ଉତ୍ପାଦନ ସହ ସଂପୃକ୍ତ ସେମାନଙ୍କ ଭବିଷ୍ୟତ ପ୍ରଚଳିତ ବିକାଶ ଚକରେ ପେଶି ହୋଇଯିବା ନିଶ୍ଚିତ । ଏହି କଂପାନୀକୁ ସରକାର ପ୍ରାୟ ୧୦୦ କୋଟି ଟଙ୍କା ବିକ୍ରିକର ଛାଡ଼କରିବେ । ତାହାହେଲେ ଏସବୁ ଆର୍ଥିକ କାରବାର କାହାପାଇଁ ଓ କାହିଁକି ?

ଏସବୁ ବିଷୟ ନିର୍ବାଚନରେ ଆଲୋଚନାକୁ ଆସିପାରୁ ନାହିଁ । କାରଣ ନିର୍ବାଚନ କେବଳ କ୍ଷମତାର ପ୍ରତିଯୋଗିତା ଭିତରେ ଆବଦ୍ଧ । ସାଧାରଣ ଜନତାଙ୍କ ମୌଳିକ ସମସ୍ୟାଗୁଡ଼ିକୁ ପ୍ରସଙ୍ଗ କରିବା ଅପ୍ରାସଙ୍ଗିକ ହୋଇସାରିଲାଣି । କେବଳ ବଳ, କଳ, କୌଶଳ ସାଙ୍ଗକୁ ଏବେ ବୈଷୟିକ ଜ୍ଞାନର କରାମତି ଦେଖାଇ କିପରି ଫିଲ୍‌ଗୁଡ଼ ଫେକ୍ଟର (ଭଲ ଲାଗୁଛି) ଅନୁଭବକୁ ଆଲୋଚ୍ୟ ବିଷୟ କରିହେବ ସେଥିପାଇଁ ସରକାରମାନେ ବ୍ୟସ୍ତଥିବାବେଳେ ମୁଖ୍ୟ ବିରୋଧୀଦଳ ଗୁଡ଼ିକ ବର୍ତ୍ତମାନର ସରକାରଟା ଆଉ ଭଲ କରୁନି ବୋଲି ଯୁକ୍ତିହିଁ ପ୍ରମୁଖ ପ୍ରସଙ୍ଗ ହେବାକୁ ଯାଉଛି । ଏ ମଧ୍ୟରେ ସାଧାରଣ ଜନତା କେବଳ ଭୋଟଦାତା ହୋଇ ମଙ୍ଗଳବାର ଛେଳି ହୋଇ ବଳି ପଡ଼ିବାକୁ ରହିଥାନ୍ତି, ଏକଥା କ୍ଷମତାଶୀଳ ରାଜନେତାମାନେ ଚାହାଁନ୍ତି । କିଛି ପରିବର୍ତ୍ତନର ଆଶା ଦେଖି ହୁଅନ୍ତା ଯଦି ଭୋଟର ନାଗରିକମାନେ ଭୋଟବେଳେ ଓ ପରେ ଅନ୍ତତଃ ପଚାରନ୍ତେ ଏସବୁ କାହିଁକି ଓ କାହାପାଇଁ ?



Digitized by srujanika@gmail.com

# ଅଖାଦ୍ୟରୁ ଅନାହାର ମୃତ୍ୟୁ

## ସ୍ୱାଧୀନତାର ଫଳ ଆମ୍ବ କୋଇଲି ପୁଷ୍ଟିକର ଖାଦ୍ୟ କି ?

୨୦୦୧ ଜୁଲାଇ୨୭ରେ କାଶୀପୁର ପଞ୍ଚାୟତର ପଣସଗୁଡ଼ାଠାରେ ୭ ଜଣଙ୍କ ଅପମୃତ୍ୟୁ ସଂକ୍ରାନ୍ତରେ ବିଷାକ୍ତ ଛତୁ ଭକ୍ଷଣ ଯୋଗୁଁ ବୋଲି ପ୍ରଚାରିତ ହେଲା । ପୁଣି ଆଉ ୪ ଜଣ ବିଲମାଳରେ ମୃତ୍ୟୁର ଶିକାର ହେଲାପରେ ଆମ୍ବଟାକୁଆ କୋଇଲିରୁ ସଂଗୃହୀତ ଖାଦ୍ୟ ଖାଇ ମରିବା କଥା କୁହାଗଲା । ପୁଣି ବାରଂବାର ଖାଦ୍ୟ ବିଷାକ୍ତ ହୋଇଯିବା ଯୋଗୁଁ ଲୋକେ ମରିଛନ୍ତି ବୋଲି ଗଣମାଧମ ଜରିଆରେ ସରକାରଙ୍କ ସ୍ପଷ୍ଟୀକରଣ ଆସୁଥାଏ । ଓଡ଼ିଶା ବିଧାନସଭାର ବର୍ଷାକାଳୀନ ଅଧିବେଶନ ଶେଷ ହୋଇଗଲା, କିନ୍ତୁ ମୁଖ୍ୟ ବିରୋଧୀଦଳ କଂଗ୍ରେସ ପାର୍ଟି କାଶୀପୁରରେ ଘଟୁଥିବା ଅନାହାର ମୃତ୍ୟୁର କାରଣ ଅଖାଦ୍ୟ ଓ ଅନାହାର ବୋଲି ପ୍ରଶ୍ନକରି ଝଡ଼ ସୃଷ୍ଟି କରିପାରିଲା ନାହିଁ । କଂଗ୍ରେସ ନିଜେ ଚଳିତ ସରକାରଙ୍କ ପୂର୍ବରୁ ୫ ବର୍ଷ କ୍ଷମତାରେ ଥିଲାବୋଲି ବୋଧହୁଏ ନିଜର ପାପ ପ୍ରତି ସଚେତନ ରହି କାଶୀପୁର ଅନାହାର ମୃତ୍ୟୁର ମୂଳରେ ଥିବା ଦାରିଦ୍ର୍ୟକୁ ଲୋକଲୋଚନକୁ ଆଣିବା ପାଇଁ ଉଚିତ ମନେ କଲାନାହିଁ । ଏପରି ମୃତ୍ୟୁ ସଂଖ୍ୟା ୧୯ରେ ପହଞ୍ଚି ଗଲାଣି ଅଗଷ୍ଟ ୨୪ ବେଳକୁ । ବିଗତ ୭ ବର୍ଷ ଧରି ଜମି, ଜଳ, ପାହାଡ଼ର ସୁରକ୍ଷା ସହ ଜୀବନ ଓ ଜୀବିକାର ଅଧିକାର ନେଇ ଦୁର୍ବାର ଜନ ଆନ୍ଦୋଳନ କରୁଥିବା କାଶୀପୁର ଆଦିବାସୀ ମାନଙ୍କ ଗାଁ ମାନଙ୍କରେ ମୃତ୍ୟୁର ସୁଅ ଛୁଟିଥିବାବେଳେ ରାଜ୍ୟ ସରକାରଙ୍କ ସଂପୂର୍ଣ୍ଣ ନୀରବତା ଓ ପ୍ରମୁଖ ବିରୋଧୀ ରାଜନୈତିକ ଦଳମାନଙ୍କ ଉଦାସୀନତା ଅନାହାର, ଅଖାଦ୍ୟ ଭକ୍ଷଣକୁ ବିଷପାନରେ ପରିଣତ କରିଦେଲା । ଅନୁଧ୍ୟାନ ଓ ବିଶ୍ଳେଷଣ ପରେ ମୋର ଉପଲବ୍ଧି - ଆମ ସମାଜରେ ଏପରି ମଣିଷ ଅଛନ୍ତି ଯେଉଁମାନେ ଶାସକ, ପ୍ରଶାସନ ଓ ପ୍ରତିଷ୍ଠିତ ବ୍ୟକ୍ତି ବିଶେଷଙ୍କ ମାନସରେ ଅମଣିଷ । ସେମାନଙ୍କ ସଂଖ୍ୟା ବହୁତ ଯଦି ଏହି ତଥାକଥିତ ପ୍ରତିଷ୍ଠିତ ମଣିଷମାନଙ୍କ ସଂଖ୍ୟା ଅତି କମ୍ । ତଥାପି ବହୁଜନଙ୍କ ମାନଦଣ୍ଡର ମାପକାଠି ଏହି ଅଳ୍ପଙ୍କ ହାତରେ । ଅଖାଦ୍ୟକୁ ପୁଷ୍ଟିକର ଖାଦ୍ୟ, ଅନାହାରମୃତ୍ୟୁକୁ, ଅପମୃତ୍ୟୁ ଓ ବିଷାକ୍ତ ଖାଦ୍ୟ ସେବନରୁ ମୃତ୍ୟୁ ତଥା ମଣିଷମାନଙ୍କୁ ଅମଣିଷ ବୋଲି ପ୍ରମାଣପତ୍ର ଦେବାରେ ଏମାନେ ଖୁବ୍ ପାରଦର୍ଶୀ । କିନ୍ତୁ ମୃତ୍ୟୁର ସତ୍ୟତା ଉଦ୍‌ଘାଟନ ହେବା ଅବଶ୍ୟମ୍ଭାବୀ ଓ ଅନିବାର୍ଯ୍ୟ । ଏହାକୁ କେହି ଅଟକାଇ ପାରିବନାହିଁ ।

Digitized by srujanika@gmail.com

ଅଗଷ୍ଟ ୨୭ରେ ଭୁବନେଶ୍ୱର ପହଞ୍ଚି ସାଂବାଦିକମାନଙ୍କ ସମ୍ମୁଖରେ ୧୯ଜଣଙ୍କ ଅନାହାର ମୃତ୍ୟୁର ବିବରଣୀ ସହ ଏହା ମୂଳରେ ଥିବା ବିଗତ ବର୍ଷ ମାନଙ୍କର ପ୍ରଶାସନିକ ଅବହେଳା ପ୍ରତି ଦୃଷ୍ଟି ଆକର୍ଷଣ କରି ସରକାର ଏହି ଅପମୃତ୍ୟୁକୁ ଅନାହାର ମୃତ୍ୟୁ ବୋଲି ସ୍ୱୀକାର କରି ଲୋକଙ୍କ ବଞ୍ଚିବାର ଅଧିକାରକୁ ସୁରକ୍ଷା ଦିଅନ୍ତୁ ବୋଲି ଦାବି ଉପସ୍ଥାପନ କରିଥିଲି । ଗଣମାଧ୍ୟମ ଏହି ତଥ୍ୟକୁ ଆଧାର କରି ପୁଣି ଅଧିକଭାବରେ ଅନୁସନ୍ଧାନମୂଳକ ଖବର ପ୍ରକାଶ କରି ଓଡ଼ିଶାରୁ ଦାରିଦ୍ର୍ୟକୁ ପୁନଃ ଲୋକଲୋଚନକୁ ଚର୍ଚ୍ଚାର ବିଷୟ ରୂପେ ଆଣି ପାରିଲେ । ଏହାପରେ ଜାତୀୟ ମାନବିକ ଅଧିକାର ଆୟୋଗଙ୍କ ତଦନ୍ତ ଓ ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶ (ଭୋକିଲା ଲୋକଙ୍କ ପେଟକୁ ଦାନା ପହଞ୍ଚାଇବାକୁ) ଓଡ଼ିଶା ସରକାରଙ୍କ ନିଦ (ଜାଣି ଶୋଇ ରହିଥିବା)କୁ ଭାଙ୍ଗିଲା ଓ ଏକ ସମୟରେ ସଂସଦରେ ଗଣମାଧ୍ୟମରେ ସଂବାଦ ପରିବେଷଣକୁ କେନ୍ଦ୍ର କରି ଅନାହାର ମୃତ୍ୟୁ ସଂପର୍କରେ ପୁଣି ବହୁ ବର୍ଷ ପରେ ଜାତୀୟ ସ୍ତରରେ ଆଲୋଚ୍ୟ ବିଷୟ ହୋଇ ପାରିଲା । (ଯଦିଚ କିଛି ସମୟରେ ପରେ ଏଥିପ୍ରତି କାହାର ନିଘା ରହିଲା ନାହିଁ) ।

ଆଲୋଚନାର ଗୋଟିଏ ମହତ ଦିଗ ହେଉଛି ସଂପ୍ରତି ବିଗତ ଦଶନ୍ଧିର ଜଗତୀକରଣ, ଉଦାରୀକରଣ, ଘରୋଇକରଣ ତଥା ନୂତନ ଆର୍ଥିକ ନୀତିର ହୁଳହୁଳିରେ ବିକାଶ ଓ ସମୃଦ୍ଧିର ସଫଳତାରୁ ଯେପରି ଜୟ ଜୟଗାନ କରାଯାଇଆସିଛି ଏବଂ ଏହାର ଆଉ ବିକଳ୍ପ ନାହିଁ ବୋଲି ଯେପରିଭାବେ ନୂଆ ରୁଢ଼ିବାଦକୁ ସ୍ଥାପନ କରାଯାଉଛି ତାରି ଭିତରେ ଦାରିଦ୍ର୍ୟର ପ୍ରଶ୍ନଟି ସଂପୂର୍ଣ୍ଣଭାବେ ଉଭେଇ ଆସୁଥିଲା । ଏକ ମିଥ୍ୟା ଚେହେରାକୁ ଦର୍ପଣ ଆଗରେ ଠିଆ କରାଇ ନକଲିରୁ ଅସଲିର ରୂପାୟନ ଚାଲିଛି ସତେ ଯେପରିକି ଦାରିଦ୍ର୍ୟର ସମାଧାନ ମଧ୍ୟ ରହିଛି ଜଗତୀକରଣର ସ୍ୱପ୍ନର ସୌଦାଗରମାନଙ୍କ ପାଖରେ । ଏପରି ଏକ ସମୟରେ କାଶୀପୁର ଅନାହାର ମୃତ୍ୟୁ ଆଲୋଚନା ଦାରିଦ୍ର୍ୟର ବାସ୍ତବ ସ୍ଥିତି ଓ ତାହା ସହ ଜଡ଼ିତ ସାମାଜିକ ଆର୍ଥିକ ବିକାଶର ନଗ୍ନଚିତ୍ର ଓ ରାଷ୍ଟ୍ରଶକ୍ତିର ଚାରିତ୍ରିକ ଅବକ୍ଷୟ ଲୋକଲୋଚନକୁ ଆଣିପାରିଛି । ଦାରିଦ୍ର୍ୟକୁ ଘୋଡ଼ାଇବା ଏକ ବିଫଳ ଉଦ୍ୟମ ଏବଂ ଅପରାଧ ମଧ୍ୟ । କାରଣ ଦାରିଦ୍ର୍ୟର ଦୌରାମ୍ୟ ଯମଠାରୁ ଅଧିକ ଶକ୍ତିଶାଳୀ । ମୃତ୍ୟୁର ପାଞ୍ଜି ଯମରାଜ ହାତରେ; କିନ୍ତୁ ମୃତ୍ୟୁସହ ସଂଘର୍ଷରତ ନିଷ୍ପେସିତ ନିରୀହ ଭୋକିଲା ମାଟିର ମଣିଷମାନଙ୍କ ଅଶାନ୍ତ ହୃଦୟର ଚିତ୍କାର ବିଦ୍ୟୁତ ପରି ଶକ୍ତିମାନ । ମୃତ୍ୟୁକୁ ସ୍ୱୀକାର କରିବା ସରକାର ପ୍ରତି ବିପଦ ବୋଲି ଭାବି ଅତୀତରୁ ଏପର୍ଯ୍ୟନ୍ତ କୌଣସି ସରକାର ସତ୍ୟହେଲେ ବି ମାନିବାକୁ ପ୍ରସ୍ତୁତ ନୁହନ୍ତି, କିନ୍ତୁ ନ ମାନିଲେ ବି ପରୋକ୍ଷରେ ସ୍ୱୀକାର କରିବାକୁ ବାଧହୋଇ କ୍ଷଣିକ ଭୟରୁ ମୁକ୍ତିପାଇବା ପାଇଁ ସାମୟିକ ପ୍ରତିକାର ପାଇଁ ତତ୍ପରତା ପ୍ରକାଶ କରନ୍ତି ।

Digitized by srujanika@gmail.com

ଅନ୍ୟପଟେ ନକାରାତ୍ମକ ଦିଗଟି ହେଉଛି ଅନାହାର ମୃତ୍ୟୁକୁ କେନ୍ଦ୍ରକରି ଆଞ୍ଚଳିକ ସ୍ତରରୁ ଜାତୀୟ ସ୍ତର ପର୍ଯ୍ୟନ୍ତ ଯେଉଁ ଆଲୋଚନା ହେଉଛି ସେଥିରେ ଅନାହାର ମୃତ୍ୟୁ ନାହିଁ-ହଁ ମଧ୍ୟରେ ମୃତ୍ୟୁର କାରଣ ଖୋଜା ଚାଲିଛି । ସରକାର ନିଜ ଦାୟିତ୍ୱରୁ ଓହରିବା ପାଇଁ ବିଷାକ୍ତ ଖାଦ୍ୟ ମୃତ୍ୟୁର କାରଣ ବୋଲି କହିଦେଇ ସାମ୍ବିଧାନିକ ଦାୟିତ୍ୱରୁ ଖସିଯିବାକୁ ଉଦ୍ୟମ କରୁଛନ୍ତି । ଅବଶ୍ୟ ବର୍ତ୍ତମାନର ରାଜ୍ୟ ବିଜେଡ଼ି ବିଜେପି ସରକାର କେବଳ ଏକଥା କରୁଛନ୍ତି ତାହା ନୁହଁ, ଅତୀତର ସମସ୍ତ ସରକାର କେନ୍ଦ୍ରରୁ ଆରମ୍ଭ କରି ରାଜ୍ୟ ପର୍ଯ୍ୟନ୍ତ କେହି ମଧ୍ୟ ଅନାହାର ମୃତ୍ୟୁକୁ ସ୍ୱୀକାର କରି ସାମ୍ବିଧାନିକ କର୍ତ୍ତବ୍ୟ ପାଳନ କରିନାହାନ୍ତି । ଏଥିପାଇଁ ସଚ୍ଚୋଟ ମାନସିକତା ଓ ନୈତିକ ସାହସର ଆବଶ୍ୟକତା ରହିଛି ରାଜନୈତିକ ନିଷ୍ପତ୍ତି ଓ ବିଚାରରେ ।

## ଆମ୍ବଟାକୁଆ କୋଇଲି ମଣିଷ ଖାଦ୍ୟ କି ?

ଯେକୌଣସି ସଭ୍ୟ ସମାଜ ଖାଦ୍ୟକୁ ଅଖାଦ୍ୟ କିମ୍ବା ଅଖାଦ୍ୟକୁ ଖାଦ୍ୟ ବୋଲି କହିନପାରେ । ତେଣୁ ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ମୁଖ୍ୟସଚିବ ପର୍ଯ୍ୟନ୍ତ ଯେଉଁମାନେ ବର୍ତ୍ତମାନର ଶାସନ ଦାୟିତ୍ୱରେ ରହିଛନ୍ତି ଓ ସାଧାରଣ ନାଗିରକଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀ ପର୍ଯ୍ୟନ୍ତ କୁହନ୍ତୁ ଆମ୍ବର କୋଇଲି ମଣିଷର ଖାଦ୍ୟ କି ? ଆଜିର ଜଗତୀକରଣର ପ୍ରବକ୍ତାମାନେ ବିଶ୍ୱ କଥା କହି ଇଣ୍ଟରନେଟ ଯୁଗର ମଣିଷମାନେ ପ୍ରଗତି ପାଇଁ ଗର୍ବ କରିବାକୁ ଆହ୍ୱାନଦେବାବେଳେ କାଶୀପୁରର ଆଦିବାସୀ କିମ୍ବା ହରିଜନ ଚାଉଳ, ଗହମ ସବୁଦିନ ଖାଇପାରୁନାହିଁ ବୋଲି ଖାଦ୍ୟ ନ ମିଳିଲେ ଆମ୍ବ କୋଇଲିର ଗୁଣ୍ଡକୁ ଜାଉ କରି ଖାଉଛି ଯାହାକି ମଣିଷ ପାଇଁ ଅଖାଦ୍ୟ । ହଁ ଏହା କେବଳ ଆଜି ଖାଉନାହିଁ, ସେ ବହୁଦିନରୁ ଖାଇଆସୁଛି । କେତେବେଳେ ଓ କାହିଁକି ? ଯେତେବେଳେ ତା ପାଖରେ ତା ନିଜ ଉତ୍ପାଦନରୁ ମିଳିଥିବା ଚାଉଳ, ମାଣ୍ଡିଆ, ସୁଆଁ, ମକା ନିଅଣ୍ଟ ହୁଏ କିମ୍ବା ଅଭାବ ପଡ଼ିଥାଏ ଓ ତା ହାତରେ କାମ ନଥାଏ ଉପାର୍ଜନ କରି ଖାଦ୍ୟ କିଣିବାକୁ, ସେତେବେଳେ ବାଧ ହୋଇ ଏହି ଅଖାଦ୍ୟକୁ ଖାଇବାକୁ ବାଧ ହୋଇଥାଏ । ଏହାର ଅର୍ଥନୁହେଁ ଏସବୁ ପାରଂପରିକ ଖାଦ୍ୟ । ଦାରିଦ୍ର୍ୟ ସୀମାରେଖା ଟାଣିଲାବେଳକୁ ମଣିଷ ପାଇଁ ଦୈନିକ ଆବଶ୍ୟକ ଖାଦ୍ୟ ଅତିକମରେ ୨୨ ଶହ କେଲୋରୀ ନିର୍ଦ୍ଧାରିତ, କିନ୍ତୁ ଆମ ସମାଜର ସବାତଳ ଲୋକଟି ଏତକ ପାଉଛି କି ନାହିଁ କିମ୍ବା ପାଇବ କିପରି ଆମେ ସେଥିପ୍ରତି ଦୃଷ୍ଟିନଦେଇ ମଣିଷ ମରୁଥିବା ବେଳେ ତା ମୃତ୍ୟୁକୁ ସ୍ୱୀକାର କରିବୁ ନାହିଁ ବୋଲି ଆମେ କହିପାରୁଛୁ କୋଇଲି ମଧ୍ୟ ଏକ ପୁଷ୍ଟିକର ଖାଦ୍ୟ । ଅନେକ ଆର୍ଟିକଲରେ ମଧ୍ୟ ଲେଖାଗଲା ଆମ୍ବ କୋଇଲିରୁ କି କି ଭିଟାମିନ୍ ମିଳୁଛି ଏହା ତଥାକଥିତ ସଭ୍ୟ

Digitized by srujanika@gmail.com

ଲୋକମାନଙ୍କ ବୁଦ୍ଧିର କରାମତି । ଆମକୁ ଆମେ ଧିକ୍ ବୋଲି କହିବୁ ନାହିଁ, କିନ୍ତୁ ସଭ୍ୟ ସମାଜ ବା ସିଭିଲ୍ ସୋସାଇଟି ଯଦି ଥାନ୍ତା ଆମକୁ ଅନ୍ତତଃ ଧିକାର କରିଥାନ୍ତା ଏବଂ ସେହିଦିନ ଓଡ଼ିଶାର ମୁଖ୍ୟ ଶାସନ ସଚିବ ନିଜ ନିଯୁକ୍ତି ହରାଇଥାନ୍ତେ ଆମ୍ବ କୋଇଲିର ରସ ପୁଷ୍ଟିକର ଖାଦ୍ୟ ବୋଲି କହିଦେବାପରେ । ଆମ୍ବ ଟାକୁଆ ଅଦଳ ବଦଳରେ ଚାଉଳ ଦିଆଯିବା ଘୋଷଣା ମଧ୍ୟ ଆଉ ଏକ ଉପହାସ ଆମ ରାଜ୍ୟର ରାଜସ୍ୱମନ୍ତ୍ରୀଙ୍କର ।

ସରକାର ଓ ସରକାରୀ କଳକୁ ପ୍ରଶ୍ନ । ବିଷାକ୍ତଖାଦ୍ୟ ଯଦି କାରଣ, ତାହାହେଲେ ଗୋଟିଏ ଘଟଣାପରେ ଆଉ ପୁନରାବୃତ୍ତି ନହେବା ପାଇଁ ଓ ଖାଦ୍ୟଜନିତ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଚିକିତ୍ସା ଓ ଅନ୍ୟ ପଦକ୍ଷେପ କାହିଁକି ନିଆଗଲାନାହିଁ । ଅଖାଦ୍ୟକୁ ଖାଦ୍ୟ ବୋଲି ଯେତେବେଳେ କୁହାଯାଇପାରୁଛି ଲୋକଙ୍କୁ ସ୍ୱାସ୍ଥ୍ୟ ସୁବିଧା, ଶିକ୍ଷା ସୁବିଧା, ଯୋଗାଇବାର ଆବଶ୍ୟକତାକୁ ଉପଲବ୍ଧ କରାଯାଇ ପାରିବ କିପରି ? ଆମ୍ବ କୋଇଲିର ଚୁନାକୁ ଘୁସୁରି ଖାଦ୍ୟରେ ପରିଣତ କରାଯାଇ ପାରେ ଏବଂ ଏହା ମଣିଷ ଖାଦ୍ୟ ନୁହଁ ବୋଲି ବିଶେଷଜ୍ଞମାନେ କହିସାରିଲେଣି ।

## ଅନାହାର ମୃତ୍ୟୁ କିପରି ଆସେ ?

ଗୋଟାଏ ଦିନରେ କେବେ ଅନାହାର ମୃତ୍ୟୁ ହୁଏନାହିଁ । ଏପରିକି ୨୧ ଦିନ ଅନଶନ କରି ମହାତ୍ମାଗାନ୍ଧୀ ମରିନଥିଲେ, କିନ୍ତୁ ଗାନ୍ଧୀ ଯଦି ଅଭାବଯୋଗୁଁ କାଶୀପୁରର ଆଦିବାସୀ ପରି ଅନେକ ଦିନ ଅଖାଦ୍ୟ ଖାଇବାକୁ କିମ୍ବା ଭୋକରେ ରହିବାକୁ ବାଧ ହୋଇଥାନ୍ତେ ତାହାହେଲେ ତାଙ୍କରି ମୃତ୍ୟୁ ଅନଶନ କାଳରେ ନିଶ୍ଚିତ ହୋଇଥାନ୍ତା । ଶରୀର ପାଇଁ ଶକ୍ତି ସଞ୍ଚିତ ହୋଇ ରହିଥାଏ ତାହା କିଛିଦିନ ଭୋକିଲା ଦେହକୁ ବଞ୍ଚାଇପାରେ । ଯଦି ଯଥା ପରିମାଣର ଖାଦ୍ୟ ନାହିଁ, ପୁଷ୍ଟିକର ଖାଦ୍ୟ ନାହିଁ, ଭୋକର ଦାଉରେ ଅଖାଦ୍ୟ ଭକ୍ଷଣ କରେ ତାହାହେଲେ ମୃତ୍ୟୁ ପୂର୍ବରୁ ରୋଗାଗ୍ରସ୍ତ ହେବାକୁ ବାଧହୁଏ । ଶେଷରେ ମୃତ୍ୟୁ । ତାହାକୁ ଅପମୃତ୍ୟୁ କିମ୍ବା ବିଷାକ୍ତ ଖାଦ୍ୟଜନିତ ମୃତ୍ୟୁ କହିବା ମିଥ୍ୟା ଓ ପ୍ରବଞ୍ଚନା ମାତ୍ର ।

ଆମ ଦେଶର National Nutrition Monitoring Bureau of Survey ଅନୁଯାୟୀ ୪୮.୫ ପ୍ରତିଶତ ସାବାଳକ ପୁଷ୍ଟିକର ଖାଦ୍ୟରୁ ବଞ୍ଚିତ । ୬୫ ପ୍ରତିଶତ ଜନତା ଆବଶ୍ୟକ ଔଷଧ ପାଇ ପାରନ୍ତି ନାହିଁ ବୋଲି ଜାତିସଂଘର ୟୁଟିଡ଼ିପି କହୁଛି । ଏକ ତୃତୀୟାଂଶ ଶିଶୁ ଜନ୍ମବେଳେ ସ୍ୱାଭାବିକ ଓଜନଠାରୁ କମ୍ । ୮୮ ପ୍ରତିଶତ ଅନ୍ତସତ୍ତ୍ୱା ମହିଳା ରକ୍ତହୀନ (ଏନ୍‌ମିକ) ହୋଇଥାନ୍ତି । ଏହାସତ୍ତ୍ୱେ ୧୯୯୯ - ୨୦୦୦ କେନ୍ଦ୍ର ବଜେଟରେ ଦାରିଦ୍ର୍ୟ ସୀମାରେଖା ତଳେଥିବା ପରିବାରଙ୍କ

Digitized by srujanika@gmail.com

ପାଇଁ ଉଦ୍ଦିଷ୍ଟ ଚାଉଳ ଗହମର ଦାମ ୬୮% ବୃଦ୍ଧି କରାଗଲା । ଏସବୁ ପରିସଂଖ୍ୟାନ କାଶୀପୁର ଓ ଓଡ଼ିଶାର ଅନେକ କାଶୀପୁର ମାନଙ୍କରେ ସତ୍ୟ । ଏପରିକି ଓଡ଼ିଶାର ଶିଶୁ ମୃତ୍ୟୁହାର ସମଗ୍ର ଦେଶରେ ସର୍ବାଧିକ ଯାହାକି ଏକ ହଜାରରେ ୯୭ । ଏହାର ମୁଖ୍ୟକାରଣ ଦାରିଦ୍ର୍ୟ ସହ ଜଡ଼ିତ ଜୀବନଶୈଳୀର ନିମ୍ନମାନ । ଯେଉଁଠି କିଣିବା ଶକ୍ତି ନାହିଁ ବୋଲି ୧୬ କେଜି ଚାଉଳ (ବିପିଏଲ କାର୍ଡ଼) ଏକାଥରକେ କିଣିବାକୁ ଅକ୍ଷମ, ସେହିଠାରେ ଅନାହାର ମୃତ୍ୟୁ ନହେଲେ ଆଶ୍ଚର୍ଯ୍ୟ ହେବାକଥା । ତେଣୁ ମାଲନିଉଟ୍ରିସନ ହେଉ, ଅଖାଦ୍ୟ ହେଉ ଏହା ଖାଦ୍ୟାଭାବରୁ ମୃତ୍ୟୁ ବୋଲି ସ୍ୱୀକାର କଲେ ହିଁ ଯାଇ ସେହି ମଣିଷମାନଙ୍କ ପାଇଁ ନ୍ୟାୟ କରିହେବ ଏବଂ ଭବିଷ୍ୟତରେ ଏହାର ପୁନରାବୃତ୍ତି ହେବ ନାହିଁ । ନଚେତ ବାରଂବାର କଳାହାଣ୍ଡି, କାଶୀପୁର ଘଟଣା ଓଡ଼ିଶାରେ ଘଟିଚାଲିଥିବ । କେବଳ ସାମୟିକ ଝଡ଼ ପରେ ଯଥା ପୂର୍ବଂ ତଥା ପରଂ ସ୍ଥିତି ରହିଥିବ ।

## ଦାରିଦ୍ର୍ୟ କମିଛି ବା ବୃଦ୍ଧିପାଇଛି ?

ଗ୍ଲୋବାଲାଇଜେସନର ପ୍ରବକ୍ତାମାନେ ତଥା ତାପାଇଁ କାମ କରୁଥିବା ଅର୍ଥନୈତିକ ବିଶାରଦମାନେ ସତ୍ୟ ଉପରେ ଆଧାରିତ ଭୂଇଁ ତଳ ବାସ୍ତବତାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁନ୍ତି । କେବଳ ବିଶ୍ୱସ୍ତରୀୟ ଜୀବନ ମାନଦଣ୍ଡର କଥା କହି କଂପ୍ୟୁଟର ଓ ଇନ୍‌ଫର୍ମେସନ୍ ଟେକୋନଲଜିର ଯୁଗୋପଯୋଗୀ ମଣିଷ ତିଆରି ପାଇଁ ସମାଜକୁ ଆଗକୁ ନେବା ଆସ୍ଫାଳନ କରିଥାନ୍ତି । ସେମାନେ ଜାଣନ୍ତି ଏସବୁ ମାତ୍ର ୨୦ ପ୍ରତିଶତ ଜନତାଙ୍କ ପାଇଁ ସମ୍ଭବପର ହେବ ସମସ୍ତ ଶକ୍ତିର ଉପଯୋଗରେ । ଆଉ ବାକି ୮୦ ପ୍ରତିଶତ ଅନ୍ଧାର ଭିତରେ ରହିବେ ସେମାନେ ପ୍ରତିଯୋଗିତାର ଯୋଗ୍ୟତାରୁ ବଞ୍ଚିତ ହୋଇ । ଉଚ୍ଚ ଶ୍ରେଣୀ, ଉଚ୍ଚ ଜାତି ତଥା ଉଚ୍ଚ ବ୍ୟକ୍ତି ବିଶେଷଙ୍କ ମାନସିକତା ଆମ ଦେଶର ନୀତି ନିର୍ଦ୍ଧାରଣ ବିଶେଷ କରି ରାଜନୈତିକ ସଂସ୍କୃତିକୁ ପ୍ରଭାବିତ କରିଛି । ଏଠାରେ ନୋବେଲ ପୁରସ୍କାରପ୍ରାପ୍ତ ଅର୍ଥନୈତିକ ଅମର୍ତ୍ତ୍ୟସେନଙ୍କ ମନ୍ତବ୍ୟ ପ୍ରତି ଦୃଷ୍ଟି ଆକର୍ଷଣ କରୁଛି । - ସେ ୧୯୯୭ରେ କହିଥିଲେ : ''ଭାରତ ତୁଳନାରେ ଆଫ୍ରିକାରେ କ୍ଷୁଧା, ରୋଗବ୍ୟାଧି ଅକାଳ ବିୟୋଗର ହାର ବେଶି, କିନ୍ତୁ ଶିଶୁ ପୁଷ୍ଟିକର ଖାଦ୍ୟ ଅଭାବ ଆଫ୍ରିକାର ୨୦-୪୦% ଶିଶୁ ସମ୍ମୁଖୀନ ହେଉଥିବାବେଳେ ଭାରତର ୪୦-୬୦% ଶିଶୁଙ୍କ ପାଇଁ ଏହି ସମସ୍ୟା ଲାଗି ରହିଛି । ମୂଳ କାରଣ, ସମସ୍ତଙ୍କ ପାଖରେ ଆବଶ୍ୟକ ଖାଦ୍ୟ ପହଞ୍ଚିବା ସମ୍ଭବପର ହୋଇନାହିଁ । କେବଳ ଖାଦ୍ୟ ଉତ୍ପାଦନ ଓ ସଂଗ୍ରହ ବୃଦ୍ଧି ହୋଇଗଲେ ଭୋକ ଚାଲିଯାଏ ନାହିଁ, କିନ୍ତୁ ଏହି ଲକ୍ଷ୍ୟ ହାସଲ କରିବା ପାଇଁ ତଳସ୍ତରରେ ଅର୍ଥନୈତିକ ଅଭିବୃଦ୍ଧିକୁ ପ୍ରୋତ୍ସାହନ, କର୍ମନିଯୁକ୍ତିର ସଂପ୍ରସାରଣ, ଉତ୍ପାଦନର

Digitized by srujanika@gmail.com

ବିବିଧକରଣ, ସ୍ୱାସ୍ଥ୍ୟ ସେବାରେ ଉନ୍ନତି, ଗରିବ ମାତା ଓ ଶିଶୁମାନଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା, ନିରକ୍ଷରତା ଦୂରୀକରଣ, ଗଣତନ୍ତ୍ର ଓ ଗଣମାଧ୍ୟମର ଦୃଢ଼ୀକରଣ, ଲିଙ୍ଗଭେଦ ପରି ସାମାଜିକ ଅସମାନତାର ଦୂରୀକରଣ ପରି ଅନେକ ପଦକ୍ଷେପ ନେବାକୁ ପଡ଼ିବ । ଲୋକେ ଯେଉଁ ସୁବିଧା ସୁଯୋଗ ଗୁଡ଼ିକରୁ ବଞ୍ଚିତ ହେଉଛନ୍ତି ସେସବୁରୁ କ୍ଷୁଧାକୁ ଅଲଗା କରିହେବ ନାହିଁ ।''

ଏସବୁକୁ ବିଚାରକୁ ନିଆଗଲେ ସାଧାରଣ ଜନତାଙ୍କ ଜୀବନଶୈଳୀର ମାପକାଠି କେବଳ ୨୨୦୦ କେଲୋରି ଖାଦ୍ୟରେ ସୀମିତ ନୁହେଁ । କିନ୍ତୁ ୫୪ ବର୍ଷର ସ୍ୱାଧୀନତା ପରେ ବି ଆମ ଲୋକେ ଖାଦ୍ୟ ଅଭାବରୁ ଆମ୍ବ ଟାକୁଆ, ତେନ୍ତୁଳି ମଞ୍ଜିରୁ ଚୂନା ଖାଉଥିବାବେଳେ ତା ପାଖରେ ଥିବା ଜମି, ଜଳ, ଜଙ୍ଗଲ ପରି ପ୍ରାକୃତିକ ସଂପଦଗୁଡ଼ିକୁ ଶେଷ କରିବାରେ ଲାଗିଛୁ ଓ ତାଠାରୁ ଛଡ଼ାଇନେବାର ପ୍ରକ୍ରିୟାକୁ ବିକାଶର ସଫଳତା ବୋଲି କହୁଛୁ ।

କୃଷି ଉତ୍ପାଦନ ୮୦ ଦଶକରେ ବଢ଼ିଛି, କିନ୍ତୁ ଭାରତ କୃଷି ଉତ୍ପାଦନରେ ଆତ୍ମନିର୍ଭରଶୀଳ ହୋଇଗଲା ବୋଲି ଯେପରି ଚିତ୍ରଣ କରାଯାଉଛି ତାହା ନିକଟ ଭବିଷ୍ୟତରେ ଏକ ମିଥ୍ ରୂପେ ପ୍ରମାଣିତ ହେବ । ପୂର୍ବାପେକ୍ଷା ଆମେ ଉତ୍ପାଦନ ବୃଦ୍ଧି କରିଛୁ କିନ୍ତୁ ଯେତିକି ଆମେ ବର୍ତ୍ତମାନ କରିଛୁ, ଯଦି ସମସ୍ତ ଜନତା ଆବଶ୍ୟକ ଖାଦ୍ୟ ପ୍ରତିଦିନ ଖାଉଥାନ୍ତେ ତାହା ଆମକୁ ଯଥେଷ୍ଟ ହୁଅନ୍ତା କି ? ବାର୍ଷିକ ୨୦ କୋଟି ଟନ ଖାଦ୍ୟ ଉତ୍ପାଦନରେ ଆମ ଦେଶ ପହଞ୍ଚିଛି । ୧୦୦ କୋଟି ଜନତାଙ୍କୁ ବାଣ୍ଟି ଦେଲେ ଦୈନିକ ୨୦୦ ଗ୍ରାମ ମୁଣ୍ଡ ପିଛା ଖାଦ୍ୟ ଉତ୍ପାଦନ ହେଉଛି, କିନ୍ତୁ ଅଶୀଦଶକରେ ଯେଉଁ ହାରରେ କୃଷି ଉତ୍ପାଦନ ବୃଦ୍ଧି ପାଇଥିଲା, ନବେ ଦଶକରେ ଜଗତୀକରଣର କୁପ୍ରଭାବରେ ଏବଂ କୃଷି ପ୍ରତି ଅବହେଳା ଯୋଗୁଁ ତାହା କମିବାରେ ଲାଗିଛି । ୧୯୯୯ - ୨୦୦୦ ରେ ୨୦୮.୯ ନିୟୁତ ଟନ ଖାଦ୍ୟ ଉତ୍ପାଦନ ହୋଇଥିବାବେଳେ ୨୦୦୦-୨୦୦୧ ରେ ତାହା ୧୯୯ ନିୟୁତ ଟନକୁ ଖସିଆସିଛି । ୧୯୯୨-୯୩ରୁ ଓଡ଼ିଶାର ଧାନ ଉତ୍ପାଦନ ବୃଦ୍ଧି ହାର କମିଛି କିମ୍ବା ଯଥା ସ୍ଥିତିରେ ରହିଛି । ବିଶେଷ କରି ପ୍ରାକୃତିକ ବିପର୍ଯ୍ୟୟରେ ବିଶେଷ କ୍ଷତି ହୋଇଛି । କୃଷିର ବିକାଶ ପ୍ରତି ଆଖି ବୁଜି ଦିଆଯାଇଛି ।

ଓଡ଼ିଶାର ଛୋଟଚାଷୀ ଓ ନାମମାତ୍ର ଚାଷୀ ଓ ଭୂମିହୀନ କୃଷି ଶ୍ରମିକ ସଂଖ୍ୟା ବେଶି । ଏଥିରେ ଆଦିବାସୀ, ହରିଜନ ୫୦ ଭାଗ । କିନ୍ତୁ ଜମି, ଜଳ ଓ ଜଙ୍ଗଲ ସଂପଦକୁ କେନ୍ଦ୍ରକରି ସେଗୁଡ଼ିକର ଉତ୍ପାଦନ ଶକ୍ତି ବୃଦ୍ଧି ସହ ସ୍ଥାନୀୟ ଜନତାଙ୍କ କ୍ରୟଶକ୍ତି ବୃଦ୍ଧି କରିବା ପାଇଁ କୌଣସି ସଫଳ ଯୋଜନା ହୋଇନାହିଁ । ବରଂ ସେହି ସଂବଳକୁ ଲୋକଙ୍କ

Digitized by srujanika@gmail.com

ହାତରୁ ଛଡ଼ାଇ ନେବାକୁ ଯୋଜନା ହୋଇଛି ବିଭିନ୍ନ ବିକାଶ ଆଳରେ । ଫଳରେ ଯିଏ ଉତ୍ପାଦନ କରୁଛି ଓ କରିବାକୁ ଶ୍ରମଶକ୍ତି ସହ ପ୍ରସ୍ତୁତ ଅଛି, ତା ପାଇଁ ରାଷ୍ଟ୍ରର ଯେଉଁ ଦାୟିତ୍ୱ ତାହା କରାଯାଇ ନାହିଁ ।

## କାଶୀପୁରରେ ଚାଲିଛି କ'ଣ ?

ବିଗତ ୧୩ ବର୍ଷ ଧରି ସେଠାରୁ ଲୋକେ ନିଜ ଜୀବନ ଓ ଜୀବିକାର ଅଧିକାର ପ୍ରାକୃତିକ ସଂପଦର ସୁରକ୍ଷା ପାଇଁ ଜନ ଆନ୍ଦୋଳନ କରି ଆସୁଛନ୍ତି । ଶିଳ୍ପନାମରେ ସେମାନଙ୍କ ଥିବା ଜମି ଚାଲିଯିବ ଓ ଜଳ ନଷ୍ଟ ହୋଇଯିବ । ପୁଣି କେତେବର୍ଷ ପରେ ବିନାଶକାରୀ ଆଲୁମିନା ପ୍ଲାଣ୍ଟ ଉତ୍ପାଦନ ଶେଷ ହେଲାବେଳକୁ ସେଠାରେ ଏକ ମରୁଭୂମି ସୃଷ୍ଟି ହୋଇ ସାରିଥିବ । ଏହି ବିକାଶ ପ୍ରକ୍ରିୟାରେ ନିରୀହ ଆଦିବାସୀଟିକୁ ବଳି ପକାଇ ବିକାଶର କଥା କୁହାଯାଉଛି । ଆଜି କୃଷିର ବିକାଶ ପାଇଁ ତା ନାମରେ ୬୦ କୋଟି ଟଙ୍କା ଆଇଫାଡ଼ରୁ ଋଣ ଆଣି ୧୯୮୭ ରୁ ୯୭ ମଧ୍ୟରେ ଖର୍ଚ୍ଚ କରାଗଲା । କିନ୍ତୁ କୋଟି କୋଟି ଟଙ୍କା ଆତ୍ମସାତ ସାଙ୍ଗକୁ ଯେଉଁ କିଛି କାମ ହେଲା ତାହାର ଫଳ ଭୋଗକରିବ ବର୍ତ୍ତମାନ କଂପାନୀ । ସେଠାର ଆଦିବାସୀ ନୁହଁ । ତାର ଜମିକୁ ଜଳର ବ୍ୟବସ୍ଥା କରାଗଲା ନାହିଁକି ତାର ଜଙ୍ଗଲକୁ ସୁରକ୍ଷିତ ରଖାଗଲା ନାହିଁ । ସେଥିପାଇଁ ଆଜି ଉଦ୍ୟମ ହୋଇଥିଲେ ଅନାହାର ମୃତ୍ୟୁ କିମ୍ୱା ଅଖାଦ୍ୟକୁ ଖାଦ୍ୟ ରୂପେ ବ୍ୟବହାର କରିବା ସମସ୍ୟା ସୃଷ୍ଟି ହୋଇନଥାନ୍ତା । ସମସ୍ୟା କେଉଁଠି ଗଣ୍ଠି ବାନ୍ଧିଛି ନିରୀକ୍ଷଣ କରିବା ଏକାନ୍ତ ଜରୁରୀ । ବିଲମାଳ ଗ୍ରାମର ଯେଉଁ ପରିବାର ୪ ଜଣ ଅଖାଦ୍ୟ ଖାଇ ମଲେ, ସେମାନଙ୍କର ୩ଟି ପରିବାରର ୬ ଏକରରୁ ୪.୬ ଏକର ଜମି କଂପାନୀ ପାଇଁ ଅଧିଗ୍ରହଣ କରାଯାଇଛି । ଆନ୍ଦୋଳନ ଚାଲିଛି ବୋଲି ଜମିକୁ କଂପାନୀ ନେଇପାରିନାହିଁ । ଆଜି ଜମିଥାଇ ବି ଖାଦ୍ୟ ଅଭାବରୁ ଅଖାଦ୍ୟ ଖାଇ ମଲେ । ସଂପୂର୍ଣ୍ଣଭାବେ ଜମି ଉଚ୍ଛେଦ ହୋଇଗଲା ପରେ ଆଦିବାସୀ ପରିବାର ଯିବେ କୁଆଡ଼େ ? ଖାଇବେ କଣ ? ଆଜି ଯଦି ତାର ଜମିର ବିକାଶ ହୋଇଥାନ୍ତା ଲଗାତାର ବର୍ଷା ଯୋଗୁଁ ଯେଉଁ ଫସଲ ନଷ୍ଟ ହେଲା ପୁଣି ବିକଳ୍ପ ଚାଷ ପାଇଁ ତାକୁ ତିଆର କରିଥାନ୍ତୁ ଓ ପାହାଡ଼ ମାନଙ୍କର ସ୍ଲୋପରେ ସେମାନଙ୍କ ଜ୍ଞାନକୁ ବ୍ୟବହାର କରି ଉନ୍ନତଚାଷ ପାଇଁ ସମର୍ଥ କରାଇଥାନ୍ତୁ ତାହାହେଲେ ଆଜି ସେମାନେ କର୍ମହୀନ ହୋଇନଥାନ୍ତେ କିମ୍ୱା କ୍ଷୁଧାର ଶିକାର ହୋଇନଥାନ୍ତେ । ଏହା ପରିବର୍ତ୍ତେ ସେମାନଙ୍କ ଭୂମି ଉପରେ ଥିବା ସଂବଳକୁ ନେବାପରେ ଭୂଇଁ ତଳେ ଥିବା ସଂପଦକୁ ଲୁଟ କରି ନେବା ପାଇଁ ବିଦେଶୀ କଂପାନୀ ମାନଙ୍କର ଚକ୍ରାନ୍ତ ଫାଶରେ ପଡ଼ିଛନ୍ତି ଆମ ଶାସନ ଓ ସମାଜ ପରିଚାଳକମାନେ ।

---

Digitized by srujanika@gmail.com

ଅନ୍ୟପଟେ ଭାରତ ସରକାରଙ୍କ ଗୋଦାମରେ ଖାଦ୍ୟ ସଂଗ୍ରହ ବୃଦ୍ଧି ପାଇଲା । ୧୯୯୭ରେ ୧୫ ନିୟୁତ ଟନ୍‌ରୁ ୨୦୦୧ ବେଳକୁ ୬୫ ନିୟୁତ ଟନ ଗଚ୍ଛିତ ଅଛି । କିନ୍ତୁ ରେସନ ଦୋକାନରେ ବିକ୍ରି ୧୭.୧ ନିୟୁତ ଟନ୍‌ରୁ ୧୨.୧ ନିୟୁତ ଟନ୍‌କୁ ଖସି ଆସିଲା । ୧୯୯୩ରୁ ୨୦୦୦ ପର୍ଯ୍ୟନ୍ତ କେନ୍ଦ୍ର ସରକାର ସଂଗ୍ରହ କରିଛନ୍ତି ୨୧୨.୮ ନିୟୁତ ଟନ ଖାଦ୍ୟ ଶସ୍ୟ । କିନ୍ତୁ ରାଜ୍ୟମାନେ ଲୋକଙ୍କୁ ବିକ୍ରି କରି ପାରିଛନ୍ତି ମାତ୍ର ୧୨୯.୩ ନିୟୁତ ଟନ । ଏହାର କାରଣ ଦରବୃଦ୍ଧି ସାଙ୍ଗକୁ ସାଧାରଣ ଗରିବ ଲୋକଙ୍କ କ୍ରୟଶକ୍ତି କ୍ଷୟ । ବର୍ତ୍ତମାନ ଆମ ଦେଶର ଗୋଦାମମାନଙ୍କରେ ୧୮ ନିୟୁତ ଟନ ଖାଦ୍ୟ ଶସ୍ୟ ପଚିଯାଇ ଅଖାଦ୍ୟରେ ପରିଣତ ହୋଇଥିବାବେଳେ ଆମ ଦେଶର ଅନେକ କାଶୀପୁର ଗ୍ରାମମାନଙ୍କର ଲୋକେ ଆମ୍ବ ଟାକୁଆ କୋଇଲି ଚୁନାଠାରୁ ଆରମ୍ଭ କରି ବିଭିନ୍ନ ଅଖାଦ୍ୟ ଭକ୍ଷଣ କରି ଅନାହାରରେ ମରୁଛନ୍ତି । ଜଗତୀକରଣରେ, ଦାରିଦ୍ର୍ୟ ଦୂରୀକରଣ, ଗରିବୀ ହଟାଅ, ଅର୍ଥନୈତିକ ଅଭିବୃଦ୍ଧି ବିକାଶର ରଥ ଚକର ଗତି କୁଆଡ଼କୁ ଯାଇଛି ସମସ୍ତେ ମିଶି ଆତ୍ମ ନିରୀକ୍ଷଣ କରିବାର ସମୟ ଆସିଛି ।

ଉତ୍ପାଦନ ବୃଦ୍ଧି ସତ୍ତ୍ୱେ ଅକାଳ ଓ ଅନାହାର ମୃତ୍ୟୁ ଅନିବାର୍ଯ୍ୟ ଯେହେତୁ ଇତିହାସରୁ ଆମେ କିଛି ଶିଖିଲୁ ନାହିଁ । ୧୯୩୦ ବେଳକୁ ମହାତ୍ମାଗାନ୍ଧୀ ସ୍ୱରାଜ ପାଇଁ ଲବଣ ସତ୍ୟାଗ୍ରହର ଡାକରା ପାଇଁ ପ୍ରସ୍ତୁତି ଆରମ୍ଭ କରିବା ମୂଳରେ ଥିଲା ସାଧାରଣ ଗରିବ ଲୋକଙ୍କ ଆୟ ଓ ତତ୍‌କାଳୀନ ଭାରତରେ ଶାସନ କରୁଥିବା ବ୍ରିଟିଶ ବାଦଶାହଙ୍କ ବ୍ୟୟ ମଧ୍ୟରେ ଆକାଶ ପାତାଳ ଫରକ । ଭାଇସରାୟ ଲର୍ଡ଼ ଇରଉଇନ୍‌ଙ୍କୁ ପତ୍ର ଲେଖି – ଗାନ୍ଧିଜୀ କହିଥିଲେ ଯେ – "ଆମ ଦେଶର ଗରିବ ଲୋକଙ୍କ ଦୈନିକ ଆୟ ମାତ୍ର ଦୁଇ ଅଣା ଥିବାବେଳେ ଆପଣଙ୍କ ଖର୍ଚ୍ଚ ଦୈନିକ ସାତ ଶହ ଟଙ୍କା । ପୁଣି ଆମ ଲୋକଙ୍କ ଝାଳ ବୁହା ଆୟରୁ ତୁମ ବିଳାସବ୍ୟସନ ଅପବ୍ୟୟ । ତଫାତ୍ ହେଲା ୫୬୦୦ ଗୁଣ । ଏହା ଅସହ୍ୟ ଏବଂ ଏଥିରୁ ମୁକ୍ତି ପାଇବାକୁ ହେଲେ ଆମ ସ୍ୱରାଜ ଅନିବାର୍ଯ୍ୟ" । ଏହା ଗାନ୍ଧୀଙ୍କ ହୃଦୟରେ ଭୂକଂପ ସୃଷ୍ଟି କରିଥିଲା ବୋଲି ଶୋଷଣରୁ ମୁକ୍ତି ପାଇଁ ଦାଣ୍ଡି ଯାତ୍ରା କରିଥିଲେ ଲୁଣ ମାରିବା ପରି ସ୍ୱାବଲମ୍ବନ ଅଧିକାରକୁ ସାବ୍ୟସ୍ତ କରିବା ପାଇଁ । ଏହା ପୂର୍ବରୁ ୧୯୨୧ରେ ଗାନ୍ଧିଜୀ ଓଡ଼ିଶାର ଦାରିଦ୍ର୍ୟକୁ ଚିହ୍ନିଥିଲେ । ଆଜି ସ୍ୱରାଜର ୫୪ ବର୍ଷ ପରେ ଗାନ୍ଧୀଙ୍କ ଦେଶରେ ସାଧାରଣ ଜନତାଙ୍କ ସଂବଳରୁ ଆୟ ଓ ଟିକସରୁ ସେମାନଙ୍କ ସେବା ପାଇଁ ନିୟୋଜିତ ରାଜ କର୍ମଚାରୀଙ୍କ ପାଇଁ ମାସିକ ଆୟ ପାଞ୍ଚ ହଜାର ଟଙ୍କାରୁ ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ଥିବାବେଳେ ପାହାଡ଼ତଳେ ଥିବା ଲୋକଟି ମାସିକ ମାତ୍ର ୧୬ କେ.ଜି. ଚାଉଳ ୮୦ ଟଙ୍କାରେ କିଣିବାକୁ ଅସମର୍ଥ । ପୁଣି ଭାରତବର୍ଷର ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀମାନଙ୍କ ପାଇଁ ହେଉଥିବା ଖର୍ଚ୍ଚର ହିସାବ ଜାଣିଲେ ମାନସିକ ଯନ୍ତ୍ରଣା ହେବା

Digitized by srujanika@gmail.com

ସ୍ୱାଭାବିକ । ପୁଣି ଆମ ଜଗତୀକରଣ ଓ ବଜାର ଅର୍ଥନୀତିର ଭାଉରେ ବେସରକାରୀ କର୍ପୋରେଟ executive ନିଯୁକ୍ତି ମିଳିଗଲେ ମାସିକ ଆୟ ଏକ ଲକ୍ଷ ଟଙ୍କାରୁ ସେପଟେ । ମୁଦ୍ରାସ୍ଫୀତି ମଧ୍ୟ ଏକ ନିତିଦିନିଆ ଘଟଣା । ଏସବୁ ଏକାସାଥେ ଚାଲିଛି, ଚାଲିବ । ଏସବୁ ଚାଲିଲେ ଅକାଳ ଓ ଅନାହାର ମଧ୍ୟ ଅବଶ୍ୟମ୍ଭାବୀ । ଏହାର ନିରାକରଣ ପାଇଁ ଆମ ଦେଶ ଓ ରାଜ୍ୟମାନଙ୍କର କ୍ୟାବିନେଟରେ ଯଦି ଆଲୋଚନା ହେଉଥାନ୍ତା, ରାଜନୈତିକ ସ୍ତରରେ ଦାୟିତ୍ୱ ଓ ଉତ୍ତର ଦାୟିତ୍ୱ ରହିଥାନ୍ତା କିମ୍ବା ଏସବୁର ଅଭାବରେ ଏକ ଶକ୍ତିଶାଳୀ ଓ କାର୍ଯ୍ୟକ୍ଷମ ସିଭିଲ ସୋସାଇଟିଥାନ୍ତା, ତାହାହେଲେ ଆଜି ଆମ ପାଖରେ ଏପରି ଏକ ବିଭୀଷିକା ଠିଆ ହୋଇନଥାନ୍ତା । ଏସବୁକୁ ଚାଲେଞ୍ଜ କରିବା ପାଇଁ ଯଦି ରାସ୍ତା ଖୋଜିବା ତାହାହେଲେ ପ୍ରଥମେ – ସେହି କାଶୀପୁରର ସାଧାରଣ ମଣିଷଟିକୁ କେନ୍ଦ୍ରକରି ବିକାଶ, ପ୍ରଗତି, ଅର୍ଥନୀତି ଓ ରାଜନୀତିର ନୀତି ନିର୍ଦ୍ଧାରଣ ଏକାନ୍ତ ଜରୁରୀ ନଚେତ ସମାଜ ଭାଙ୍ଗିବାର ଆରମ୍ଭ ହେଲାଣି, ତାକୁ ଭ୍ରଷ୍ଟ, ସ୍ୱାର୍ଥପର ଓ ବଜାରୀ ପ୍ରବଞ୍ଚକମାନେ ଅଟକାଇ ପାରିବେ ନାହିଁ । ଧ୍ୱଂସଆଡ଼କୁ ସମସ୍ତେ ଯିବା । ପ୍ରକୃତିର ସନ୍ତୁଳନ ଏକାନ୍ତ ଜରୁରୀ । ପ୍ରାକୃତିକ ବାୟୁମଣ୍ଡଳରୁ ବିଧିବିଧାନର ଗଣ୍ଡି ଭିତରେ ବଢ଼ିଥିବା ମଣିଷମାନଙ୍କ ବଞ୍ଚିବାର ଅଧିକାରକୁ ସ୍ୱୀକାର କଲେ ହିଁ କ୍ଷୁଧାମୁକ୍ତ ଆଧୁନିକ ସମାଜଟିଏ ପାଇପାରିବା ।

## କନ୍ଧମାଳ ଜିଲ୍ଲାରେ ଅଖାଦ୍ୟରୁ ଅନାହାର ମୃତ୍ୟୁ ସରକାର ଓ ଭଦ୍ର ସମାଜ ବିଚାର କରିବେ କି ?

୨୦୦୨ ସେପ୍ଟେମ୍ବର ୨୦ ତାରିଖରେ କନ୍ଧମାଳ ଜିଲ୍ଲାର ଦାରିଙ୍ଗିବାଡ଼ି ବ୍ଲକର ବ୍ରାହ୍ମଣୀଗାଁ ପୋଲିସ ଥାନା ଅଞ୍ଚଳର ସରାମୁଳି ପଞ୍ଚାୟତର ବିଭିନ୍ନ ଗ୍ରାମ ଦେଇ ପାହାଡ଼ ଉପରେ ଥିବା ବୁଦେଡ଼ି ଗ୍ରାମ ବୁଲି ଅନୁଧ୍ୟାନ କଲୁ । ଏସବୁ ଗ୍ରାମମାନଙ୍କରେ ୭୦ ଭାଗ ଆଦିବାସୀ ଓ ୩୦ ଭାଗ ହରିଜନ ଅଛନ୍ତି ।

ଅଧିକାଂଶଙ୍କ ଘରେ ଆମ୍ବ ଟାକୁଆ ଓ ସଲପ ଗଛର ଛାଲି ଗଚ୍ଛିତ ଅଛି । ଯାହା ପାଖରେ ଚାଉଳ ଅଛି ତାହା ଅଳ୍ପ କେତୋଟି ଦିନ ପାଇଁ । ଆମ୍ବ କୋଇଲିର ଗୁଣ୍ଡର ଚୁନାରେ ଜାଉ କରନ୍ତି ଓ ସେଥିରେ ପୋଷେ ଚାଉଳ ମିଶାନ୍ତି । ଯଦି ଖାଲି ଚାଉଳ ଖାଇବେ ତାହା ୪/୫ ଦିନରେ ଶେଷ ହୋଇଯିବ । ଏପରିକି ୧୬ କିଲୋ ବିପିଏଲ ଚାଉଳ ଗୋଟିଏ ପରିବାର ଏକ ସପ୍ତାହରେ ଖାଇଦେବେ । ତାହା ମଧ୍ୟ ସମସ୍ତେ ଉଠାଇ ପାରନ୍ତି ନାହିଁ । ଯେହେତୁ କ୍ରୟ ଶକ୍ତିନାହିଁ । ତେଣୁ ଗଣ୍ଡେ ଚାଉଳକୁ ଦେଖି ଯେ କହିବ ଯେ ଆମ୍ବ ଟାକୁଆ ଏକ ପାରଂପରିକ ଖାଦ୍ୟ ତାଠାରୁ ବଳି ଅମାନବିକତା ଆଉ କିଛି ହୋଇନପାରେ ।

Digitized by srujanika@gmail.com

ଗାଁର ସ୍ତ୍ରୀ ପୁରୁଷ ଲୋକେ କହିଲେ "ଆମେ ଚାଉଳ ଯଦି ସବୁବେଳେ କିଣିପାରନ୍ତୁ ତାହାହେଲେ ଏପରି ଅଖାଦ୍ୟ କାହିଁକି ଖାଆନ୍ତୁ ।" ସଲପ ଗଛର ମଂଜ ଛାଲିକୁ ଶୁଖାଇ ସେଥିରୁ ଗୁଣ୍ଡ ବାହାର କରି ପୁଣି ତାକୁ ପାଉଡ଼ର କରି ଜାଉକରି ଖାଆନ୍ତି । ସେହି ଜାଉ ମଧ ଅଠା ଅଠା ପରି ହୋଇଥାଏ । ଏପ୍ରିଲ ମାସରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ଖାଆନ୍ତି । ପ୍ରାୟ ମାସକୁ ୨୦/୨୫ ଦିନ । ଆଉ ବାକି ଦିନ ଅନ୍ୟ ଫସଲ ଆଦାୟ ହେଲେ ଚଳନ୍ତି । ଏହି ବର୍ଷ ବର୍ଷା ଆରମ୍ଭରୁ ପାହାଡ଼ ଫସଲ ମଧ ନାହିଁ । ବର୍ଷ ସାରା ଏପରି ଅଖାଦ୍ୟ ଖାଇବେ ଏ ବର୍ଷ । ଗତ ଦୁଇ ମାସ ହେଲା ଏପର୍ଯ୍ୟନ୍ତ ମରୁଡ଼ି ଜନିତ କାମ ପାଇଁ ଖାଦ୍ୟ ପହଞ୍ଚି ନାହିଁ । ଏପରି ଅଖାଦ୍ୟ ଖାଇବାର ପରିଣତି ବିଭିନ୍ନ ରୋଗ ଏବଂ ସ୍ୱାସ୍ଥ୍ୟ ଭଙ୍ଗ । ଚିକିତ୍ସା ପାଇଁ ହସପିଟାଲକୁ ଯିବା ଅସମ୍ଭବ କିମ୍ବା ସ୍ୱାସ୍ଥ୍ୟ ସେବା ପହଞ୍ଚାଇବା ବ୍ୟବସ୍ଥା ମଧ୍ୟ ନାହିଁ ।

ସେପ୍ଟେମ୍ବର ୧୪ ଓ ୧୫ ତାରିଖ ମଧରେ ଗୋଟିଏ ପରିବାରର ୩ ଜଣ ମହିଳା ବୁଢ଼େଡ଼ି ଗାଁରେ ମରିଗଲେ । ବାନ୍ତି କଲାପରେ ୩ ଦିନ ପଡ଼ିରହିଲେ । ବିଳମ୍ବରେ ହସପିଟାଲକୁ ନେବା ବ୍ୟବସ୍ଥା ପରେ ସେହି ପରିବାରର ଆଉ ଦୁଇଜଣ ସ୍ୱାମୀ ସ୍ତ୍ରୀ ମଲେ ୧୬ ତାରିଖରେ । ଶେଷ ଦୁଇଜଣଙ୍କ ୩ଟି ଝିଅ ବର୍ତ୍ତମାନ ଚିକିତ୍ସାଧିନ । ଗୋଟିଏ ପରିବାରର ୫ ଜଣ ଶେଷ ହୋଇଗଲେ । ବର୍ତ୍ତମାନ ଏକ ବର୍ଷରୁ ୭ ବର୍ଷ ବୟସର ୩ଟି ଝିଅ ଅଛନ୍ତି, ସେମାନଙ୍କ ପାଇଁ ଆଉ କେହି ନାହିଁ ।

ତାଳିଙ୍ଗ ପଞ୍ଚାୟତର କାଲିଙ୍ଗ ଗ୍ରାମରେ ଗତ ୧୩ ଓ ୧୫ ତାରିଖରେ ଦୁଇଜଣ ମରିଛନ୍ତି । ଏହି ଦୁଇଗ୍ରାମର ମୃତବ୍ୟକ୍ତିମାନଙ୍କ ନାମ : ସୁନେଲୀ ପାଟମାଝି, ବୁଲି ପାଟମାଝୀ, ତରଗାବାଲି ଆଲୁ ପାଟମାଝି, ସିକାବାଲିଆଲୁ ପାଟମାଝି, ତରଗାସା ପାଟମାଝି, ଟୁଣିଆ ଛାଟିଆ, ପଟାଗୁଡ଼ିଆଲୁ ମଲିକ । ବୁଦୁମଲା ଗ୍ରାମର ଅଶ୍ୱିନୀ ବଳିୟାର ସିଂ ଝାଡ଼ାବାନ୍ତିରେ ମରିଗଲେ ଚିକିତ୍ସା ଅଭାବରୁ ।

## କୁଟେଡ଼ି ଗାଁର ଅବସ୍ଥା :

୪୦ ବର୍ଷରୁ ଥିବା ୟୁ.ପି. ସ୍କୁଲର ଏ ପର୍ଯ୍ୟନ୍ତ ଘର ନାହିଁ । ତଥାପି ୪୩ ଜଣ ଛାତ୍ରଛାତ୍ରୀ ପଢ଼ନ୍ତି । ଜଣେ ଶିକ୍ଷକ ନିଯୁକ୍ତ ହୋଇଛନ୍ତି । ପିଇବା ପାଇଁ ନଳକୂପ ଖଣ୍ଡିଏ ନାହିଁ । ଏପରି ହିଣ୍ଡୁରାଗୁଡ଼ା, ସିଙ୍ଗାକୁଟି ଗ୍ରାମରେ ମଧ ପିଇବାପାଣି ନାହିଁ ।

ପ୍ରାୟ ଚାଷଜମି ନାହିଁ । କେବଳ ପାହାଡ଼ର ଫସଲ ଉପରେ ନିର୍ଭରଶୀଳ । ବର୍ଷା ନାହିଁ ବୋଲି ଏ ବର୍ଷ ଫସଲ ମଧ ନାହିଁ । ଲୋକଙ୍କ ହାତରେ କାମ ମଧ ନାହିଁ । ବର୍ତ୍ତମାନ

Digitized by srujanika@gmail.com

ଅଖାଦ୍ୟ ଖାଇ ଲୋକେ ମଲା ପରେ ୫୦ ହଜାର ଟଙ୍କାର ରାସ୍ତା କାମ କରିବାକୁ ଗ୍ରାମଲୋକଙ୍କୁ କୁହାଯାଇଛି । କାମହେଲେ ବି ଚାଉଳ ନାହିଁ କି ମୂଲ ଏ ପର୍ଯ୍ୟନ୍ତ ଦିଆଯାଇନାହିଁ । ଗତ ୨୦ ବର୍ଷ ମଧ୍ୟରେ ଗାଁରୁ ପ୍ରାୟ ୬୦ ପରିବାର ଅନ୍ୟତ୍ର ଚାଲିଗଲେଣି ।

ମୃତ ପରିବାରରେ ଗଣ୍ଡେ ଚାଉଳ ଥିଲାବୋଲି ସରକାରୀ ଅଫିସର ଯାହା କହୁଛନ୍ତି ତାହା ସେହି ପରିବାରର ନୁହେଁ । ସେହି ପରିବାରର ମୁଖ୍ୟ ଜଣେ ଗ୍ରାମର ବିଶ୍ୱସ୍ତ ହୋଇଥିବାରୁ ଗାଁ କୋଠର ମୁଠି ଚାଉଳ ଓ ଚର୍ଚ୍ଚର ପ୍ରଚାରକଙ୍କର ଚାଉଳ ତାରି ପାଖରେ ରଖାଯାଇଥିଲା । ଉକ୍ତ ସରାମୁଳି ପଞ୍ଚାୟତର ଏବେ ବି ୧୦୦ ପରିବାର ବିପିଏଲ କାର୍ଡ଼ ପାଇବାରୁ ବଞ୍ଚିତ ।

ସରପଞ୍ଚ incharge CDMOଙ୍କୁ ଗଦାପୁର ରାସ୍ତାରେ ଭେଟି ଅଖାଦ୍ୟ ଖାଇ ଅସୁସ୍ଥ ହୋଇପଡ଼ିଥିବା ଘଟଣା କହିଲେ ମଧ୍ୟ କୌଣସି ପଦକ୍ଷେପ ନିଆଗଲା ନାହିଁ । ନେଇଥିଲେ ଆଉ ତିନି ଜଣ ବଞ୍ଚିଯାଇଥାନ୍ତେ ।

୫ ଜଣ ମରିବା ପରେ ଜିଲ୍ଲା କଲେକ୍ଟର ଓ ଅଫିସରମାନେ ପହଞ୍ଚିବା ପରେ ଆଜି ବି ସେହି ଗ୍ରାମରେ ଲୋକେ ଆମ୍ବ କୋଇଲି ଓ ସଲପଛାଲିର ଗୁଣ୍ଡକୁ ଚୁନା କରିବାରେ ବ୍ୟସ୍ତ । ନହେଲେ ଖାଲିପେଟରେ ରହିବେ । ଏହି ଅଖାଦ୍ୟଗୁଡ଼ିକୁ ଖାଇଲାପରେ ଆଜି ନହେଲେ କାଲି ମରିବାକୁ ବାଧ । ତଥାପି ଆମେ ଏହାକୁ ଅନାହାର ମୃତ୍ୟୁ ବୋଲି ଯଦି ମାନିବା ନାହିଁ, ତାହାହେଲେ ସରକାର ଓ ଭଦ୍ର ସମାଜ ବିଚାର କରନ୍ତୁ ଏହାକୁ କ'ଣ କହିବା ? ଏହାର ପ୍ରତିକାର ପାଇଁ ସରକାରଙ୍କ ଦାୟିତ୍ୱ କ'ଣ !

କାଶୀପୁରରେ ଏହି ଅଖାଦ୍ୟ ଭକ୍ଷଣରୁ ମୃତ୍ୟୁକୁ ଜାତୀୟ ମାନବିକ ଅଧିକାର କମିଶନ ଅନାହାର ମୃତ୍ୟୁ ନୁହଁ ବୋଲି କହିବା ପରେ ଏହି ଅଖାଦ୍ୟ ଭକ୍ଷଣକୁ ମାନବିକ ଅଧିକାରଭୁକ୍ତ ବୋଲି କହିବା ନା ଏକ ବର୍ବର ସମାଜର ଦାରିଦ୍ର୍ୟ ପ୍ରତି ଅଟହାସ୍ୟ ବୋଲି କହିବା ? ଅନ୍ତତଃ ସରକାରଙ୍କ ନିଜ ବିବେକ ବୋଲି କିଛି ନଥିଲେ ବି ଅନ୍ତତଃ ସଚେତନଶୀଳ ନାଗରିକ ସମାଜ ଚିନ୍ତା କରିବା ଏକାନ୍ତ ଜରୁରୀ ।

## ଆମେ ମାନିନେଇଥିବା ନୀତିରୁ ବିଚ୍ୟୁତି କାହିଁକି ?

ଆମ ସମ୍ବିଧାନରେ ଜୀବନର ଅଧିକାର ରହିଛି । ଜୀବନ ପାଇଁ ଜୀବିକା ଏକ ଅତ୍ୟାବଶ୍ୟକ । ସେହି ଅଧିକାରକୁ ସ୍ୱୀକାର କରିବା ବଦଳରେ ତାକୁ ଛଡ଼ାଇ ନେବା ଅଧିକାର ସରକାରଙ୍କର ଆସିଲା କେଉଁଠି ? ସଂବିଧାନର ୫ମ ଅନୁଚ୍ଛେଦ ଅନୁଯାୟୀ

Digitized by srujanika@gmail.com

ଆଦିବାସୀ ଜନଜାତି ଅଞ୍ଚଳର ଜମି, ଜଙ୍ଗଲ ଓ ଖଣି ଅଣ ଆଦିବାସୀଙ୍କୁ ହସ୍ତାନ୍ତର ହେବା ନିଷିଦ୍ଧ । ଏହାର ଲକ୍ଷ୍ୟ ଥିଲା ଆଦିବାସୀଙ୍କ ବଞ୍ଚିବାର ଅଧିକାରକୁ ସୁରକ୍ଷିତ ରଖିବା ସହ ପ୍ରାକୃତିକ ସଂପଦର ସଂରକ୍ଷଣ ମଣିଷ ସମାଜ ତଥା ଭବିଷ୍ୟତ ବଂଶଧରଙ୍କ ପାଇଁ ସମ୍ଭବପର ହେବ । ତାକୁ ପଦାଘାତ କରି ଜଙ୍ଗଲ ସଫା କରିଦେଲୁ । ଜମିକୁ ବ୍ୟବସାୟୀକରଣ କରିବା ପ୍ରକ୍ରିୟା ଚାଲୁ ରଖିଛୁ । ଖଣି ଶେଷ କରିବାକୁ ଆମ ବଡ଼ ମଣିଷମାନେ ବିଦେଶୀ ସାହୁକାରମାନଙ୍କ ପାଖରେ ଚୁକ୍ତିବଦ୍ଧ । ଲୋକେ ପାଇବେ କଣ ? କେବଳ ବିକାଶର ସ୍ଲୋଗାନ ।

୧୯୮୬ରେ ଜାତିସଂଘର ବିକାଶ ଅଧିକାର ସମ୍ମିଳନୀରେ ଏକ ଘୋଷଣାନାମାରେ ପ୍ରତ୍ୟେକ ବ୍ୟକ୍ତିର ବିକାଶ ପାଇଁ ଅଧିକାରକୁ ସ୍ୱୀକାର କରାଯାଇଥିଲା, କିନ୍ତୁ ୧୯୯୩ରେ ଭିଏନାରେ ମାନବିକ ଅଧିକାର ସମ୍ମିଳନୀରେ ବିକାଶ ଅଧିକାରକୁ ଏକ ମାନବ ଅଧିକାର ରୂପେ ମାନ୍ୟତା ଦିଆଗଲା । ସେଥିରେ କୁହାଗଲା, ପ୍ରତ୍ୟେକ ଦେଶର ନାଗରିକ ନିଜ ଦେଶର ଅଭିବୃଦ୍ଧି ଓ ବିକାଶରେ ନିଜର ଅଧିକାର ସାବ୍ୟସ୍ତ କରିବ ଯାହାଦ୍ୱାରା ଆର୍ଥିକ, ସାମାଜିକ, ସାଂସ୍କୃତିକ ଏବଂ ରାଜନୈତିକ ବିକାଶର ସଫଳତାକୁ ସେ ଏପରି ଉପଭୋଗ କରିପାରିବ ଯେ ତାର ସମସ୍ତ ମାନବିକ ଅଧିକାର ଓ ସ୍ୱାଧୀନତା ସଂପୂର୍ଣ୍ଣଭାବେ ସାବ୍ୟସ୍ତ ହୋଇପାରିବ ।

ଏହି ଘୋଷଣାନାମାର ଅନୁଚ୍ଛେଦ ୧ର ଉପଚ୍ଛେଦ (୨) ଅନୁଯାୟୀ ବିଭିନ୍ନ ଜନ ସମାଜ ନିଜ ନିଜ ବିକାଶର ରାସ୍ତା ନିଜସ୍ୱ ବିଚାର ଓ ନିଷ୍ପତ୍ତି ଅନୁଯାୟୀ ହେବ । ମଣିଷମାନେ ହିଁ ବିକାଶର କେନ୍ଦ୍ର ବିନ୍ଦୁ ହେବାକୁ ପଡ଼ିବ । ଅନୁଚ୍ଛେଦ (୨)ର (୧) ଅନୁଯାୟୀ ଜନଜାତି ତଥା ବିଭିନ୍ନ ଜନ ସମାଜ ଏବଂ ଜନ ସମୁଦାୟଙ୍କ ସାର୍ବଭୌମ ଅଧିକାର ନିଜ ନିଜ ଅଞ୍ଚଳରେ ଥିବା ପ୍ରାକୃତିକ ସଂପଦ ଓ ସଂବଳ ଉପରେ ରହିବ । ଏହି ଅଧିକାର ଭିତରେ ପ୍ରତ୍ୟେକ ବ୍ୟକ୍ତି ହିତାଧିକାରୀ ରୂପେ ସକ୍ରିୟ ଅଂଶ ଗ୍ରହଣ କରିପାରିବେ ।

ଘୋଷଣାନାମାର ଅନୁଚ୍ଛେଦ (୮)ରେ କୁହାଯାଇଛି ଯେ ବିକାଶର ଅଧିକାର ସମସ୍ତଙ୍କ ପାଇଁ ଶିକ୍ଷା, ସ୍ୱାସ୍ଥ୍ୟସେବା, ଖାଦ୍ୟ, ବାସସ୍ଥାନ, କର୍ମନିଯୁକ୍ତି ଏବଂ ଆୟର ନ୍ୟାୟୋଚିତ ବଣ୍ଟନ ପରି ପ୍ରାଥମିକ ତଥା ମୌଳିକ ସଂବଳ ଗୁଡ଼ିକ ପାଇବା ପାଇଁ ସମାନ ସୁଯୋଗ ରହିବାକୁ ପଡ଼ିବ ।

ଏପରି ଘୋଷଣାନାମାରେ ଭାରତ ସରକାର ନିଜେ ହସ୍ତାକ୍ଷର କରିଛନ୍ତି, କିନ୍ତୁ ସେଗୁଡ଼ିକୁ ନିଜ ଦେଶରେ କାର୍ଯ୍ୟକାରୀ କରିବା ପାଇଁ କୁଣ୍ଠିତ କାହିଁକି ? ବରଂ ଏସବୁର ବିପରୀତ ଦିଗରେ କାର୍ଯ୍ୟ କରିବା ନିଜେ ନିଜକୁ ଠକିବା ପରି ନୁହଁକି ?

---

Digitized by srujanika@gmail.com

୧୯୮୫ ଓ ୧୯୮୭ରେ ବିଶିଷ୍ଟ ସମାଜବାଦୀ ନେତା କିଶନ ପଟ୍ଟନାୟକ ଓ ବିଶିଷ୍ଟ ସାମ୍ୟବାଦୀ ନାଗଭୂଷଣ ପଟ୍ଟନାୟକ କଳାହାଣ୍ଡି ଓ କୋରାପୁଟର ଅନାହାର ମୃତ୍ୟୁ ଉପରେ ଆବେଦନକୁ ସୁପ୍ରିମକୋର୍ଟ ଜନସ୍ୱାର୍ଥ ମାମଲା ରୂପେ ଗ୍ରହଣ କରିଥିଲେ । ସେଥିରେ ରାଜ୍ୟ ସରକାର ଅନାହାର ମୃତ୍ୟୁକୁ ଅସ୍ୱୀକାର କଲେ ମଧ ଉଚ୍ଚତମ ନ୍ୟାୟାଳୟ ଗରିବ ଲୋକଙ୍କ ଦୁର୍ଦ୍ଦଶାକୁ ସମୀକ୍ଷା କରି ଅନାହାର ମୃତ୍ୟୁ ସଂଖ୍ୟା ଅନ୍ତତଃ ଗୋଟିଏ ଦୁଇଟି ନିଶ୍ଚିତ ହୋଇଥିବ ବୋଲି କହିଥିଲେ ଏବଂ ଏହି ଅନାହାର ମୃତ୍ୟୁକୁ ରୋକିବା ପାଇଁ ସରକାର ବିଭିନ୍ନ ପଦକ୍ଷେପ ନେବାକୁ ନିର୍ଦ୍ଦେଶ ଦେଇଥିଲେ ୧୯୮୯ରେ ।

ସେହିପରି ୧୯୯୮ରେ ଓଡ଼ିଶା ହାଇକୋର୍ଟରେ କଳାହାଣ୍ଡି ଓ ବଲାଙ୍ଗିରରେ ଅନାହାର ମୃତ୍ୟୁ ନେଇ ଏକ ଜନସ୍ୱାର୍ଥ ମାମଲା ବିଚାର ହୋଇଥିଲା । ହାଇକୋର୍ଟଙ୍କ ନିର୍ଦ୍ଦେଶରେ ଜଣେ ଅବସରପ୍ରାପ୍ତ ଜଜ୍‌ଙ୍କ ଦ୍ୱାରା ହୋଇଥିବା ଏକ ତଦନ୍ତ ରିପୋର୍ଟରେ କୁହାଯାଇଛି ଯେ ଲୋକେ କହୁଛନ୍ତି ଯେ କିଛି ଖାଇବାକୁ ନପାଇ ମରିଗଲେ । ତତ୍‌କାଳୀନ ସରକାର ଅନାହାର ମୃତ୍ୟୁକୁ ଅସ୍ୱୀକାର କରିଥିଲେ ମଧ ମୃତବ୍ୟକ୍ତିଙ୍କ ପରିବାରକୁ ୨୫ ହଜାରରୁ ୪୦ ହଜାର ଟଙ୍କା ପର୍ଯ୍ୟନ୍ତ କ୍ଷତିପୂରଣ ଦେବାକୁ କୋର୍ଟ ନିର୍ଦ୍ଦେଶ ଦେଇଥିଲେ ଏବଂ ଲୋକଙ୍କ ଆୟ ପାଇଁ ଭୂସଂସ୍କାର ଓ ସେମାନଙ୍କ ବିକାଶ ପାଇଁ କେତକ ନିର୍ଦ୍ଦିଷ୍ଟ ପ୍ରସ୍ତାବ ମଧ ଦିଆଯାଇଥିଲା । ୧୯୯୬ରେ ଜାତୀୟ ମାନବିକ ଅଧିକାର କମିସନ ନିକଟରେ କେନ୍ଦ୍ରର କୃଷିମନ୍ତ୍ରୀ ଚତୁରାନନ୍ଦ ମିଶ୍ର ନିଜେ ଓଡ଼ିଶା ଗସ୍ତରୁ ଫେରି ଅନାହାର ମୃତ୍ୟୁଜନିତ ଏକ ଅଭିଯୋଗ ପତ୍ର ଦାଖଲ କରିଥିଲେ । ମନ୍ତ୍ରୀଙ୍କ ପତ୍ରରେ ୨୬ ଜଣଙ୍କ ଅନାହାର ମୃତ୍ୟୁ ପ୍ରକାଶ ପାଇଥିବା ସଂବାଦପତ୍ର ଗୁଡ଼ିକୁ ଦେଇଥିଲେ । ସେତେବେଳେ ମଧ ଜିଲ୍ଲା ପ୍ରଶାସନ ଓ ରାଜ୍ୟ ସରକାର ଅସ୍ୱୀକାର କରିଥିଲେ ଅନାହାର ମୃତ୍ୟୁକୁ । କମିସନଙ୍କ ତଦନ୍ତ ରିପୋର୍ଟ ନୂଆପଡ଼ା, କଳାହାଣ୍ଡି, ବଲାଙ୍ଗିର ଜିଲ୍ଲାର ୨୧ଟି ମୃତ୍ୟୁର ଯାଞ୍ଚ କରି ୧୭ଟି ଅନାହାର ମୃତ୍ୟୁ ବୋଲି ଉଲ୍ଲେଖ କରିଥିଲେ । କମିସନ ମଧ ଏପରି ସ୍ଥିତିକୁ ସମୀକ୍ଷା କରି ଲୋକଙ୍କ ପାଖରେ କାମ ସହ ଖାଦ୍ୟ ପହଞ୍ଚାଇବା ପାଇଁ ଏବଂ ଗ୍ରାମ୍ୟ ଅର୍ଥନୀତିର ବିକାଶ କରି ଲୋକଙ୍କୁ ଜୀବିକାର ସୁରକ୍ଷା ପାଇଁ ରାଜ୍ୟ ସରକାରଙ୍କୁ ପରାମର୍ଶ ଦେଇଥିଲେ ।

ନିକଟ ଅତୀତର ଏସବୁ ଘଟଣାବେଳେ ଆଜିର ଶାସକଦଳମାନେ ସେତେବେଳେ ବିରୋଧୀ ଦଳରୂପେ ଥିଲେ । ଆଜି କ୍ଷମତାରେ ରହି ବାସ୍ତବତାକୁ ସ୍ୱୀକାର କରିବାକୁ ପଛଘୁଞ୍ଚା କାହିଁକି ? ବିରୋଧୀଦଳରେ କଂଗ୍ରେସ ପରି ଅତୀତର ପାପ ପାଇଁ ପ୍ରାୟଶ୍ଚିତ କରିବାକୁ ମଧ ପ୍ରସ୍ତୁତ ନୁହଁ ବୋଲି ଆନ୍ତରିକତାହୀନ ପ୍ରତିବାଦର

Digitized by srujanika@gmail.com

ବିବୃତ୍ତିଟି ଦେଇ ନୀରବ । ନଚେତ ଓଡ଼ିଶାର ମୃତ୍ୟୁର ସୁଅ ଜୁଲାଇ ୨୭ରୁ ଅଗଷ୍ଟ ୨୭ ପର୍ଯ୍ୟନ୍ତ ଚାଲିଥିବାବେଳେ ସରକାର ଓ ବିରୋଧଦଳର ରାଜନେତାମାନେ ମଉନ ହୋଇ ରହିନଥାନ୍ତେ । ଅମର୍ତ୍ତ୍ୟସେନଙ୍କ ବିଚାରରେ ଖାଦ୍ୟ ସମସ୍ୟା ଏବଂ କ୍ଷୁଧା ନିବାରଣ ପାଇଁ ଲୋକେ ପ୍ରତିକାର ଦାବି କରି ସରକାରଙ୍କୁ କିଭଳି ଉତ୍ତରଦାୟୀ କରାଉଛନ୍ତି ତାହା ଏକ ବଡ଼ ଆବଶ୍ୟକତା । ରାଜନୈତିକ ଓ ନାଗରିକ ଅଧିକାରଗୁଡ଼ିକର ପ୍ରୟୋଗ ଖାଦ୍ୟ ସମସ୍ୟା ନିରାକରଣ ଦିଗରେ ବେଶ ସହାୟକ । ଅପେକ୍ଷାକୃତ ସ୍ୱାଧୀନ ସଂବାଦପତ୍ର ଓ ସକ୍ରିୟ ବିପକ୍ଷ ଦଳ ଥିବା ଗୋଟିଏ ଗଣତାନ୍ତ୍ରିକ ଦେଶରେ ସାଧାରଣତଃ ଲୋକେ ଭୋକିଲା ରହିବା ସ୍ଥିତି ଆସେ ନାହିଁ ।

ଆମ ଦେଶରେ ଭୋକିଲାରେ କୋଟି କୋଟି ଲୋକ ରହୁଥିବା କଥା ସମସ୍ତେ ଜାଣନ୍ତି । ନିଜେ କୃଷିମନ୍ତ୍ରୀ ଅଜିତ ସିଂହ କହିଛନ୍ତି ଯେ ୩୦ କୋଟି ଲୋକଙ୍କ ପାଖରେ ଆବଶ୍ୟକ ଖାଦ୍ୟ ନାହିଁ । ତାହାହେଲେ ଆମ ଦେଶରେ ଗଣତନ୍ତ୍ର ନାହିଁ । ହଁ, ସକ୍ରିୟ ସଚ୍ଚୋଟ ବିରୋଧୀ ଦଳର ଅଭାବ ରହିଛି ଓ ସମୟେ ସମୟେ ଗଣମାଧମ ଜନମତ ସପକ୍ଷରେ ଆଲୋଡ଼ନ ସୃଷ୍ଟି କରି ପାରୁଥିବାବେଳେ ଅଧିକାଂଶ କ୍ଷେତ୍ରରେ ସ୍ୱାଧୀନ ନୁହଁନ୍ତି । କାରଣ ଖବର କାଗଜ ଓ ଗଣମାଧମ ପୁଞ୍ଜିପତିଙ୍କ ଦ୍ୱାରା ପରିଚାଳିତ ।

## ଆଉ ଏକ ଭୟଙ୍କର ସ୍ଥିତି ଆସିବ

ଓଡ଼ିଶାରେ ବର୍ତ୍ତମାନ ବିଭିନ୍ନ ଅଞ୍ଚଳରେ ପ୍ରାକୃତିକ ବିପର୍ଯ୍ୟୟରେ ଫସଲ ନଷ୍ଟ ହୋଇଥିଲେ ମଧ ଚଳିତବର୍ଷ ଅନ୍ୟ ଅଞ୍ଚଳର ଉତ୍ପାଦନ କରିଥିବା ଚାଷୀ ନିଜ ଧାନର ଉଚିତ ମୂଲ୍ୟ ପାଇ ପାରିଲା ନାହିଁ ଯେହେତୁ ଖାଦ୍ୟ ନିଗମ କିଣିଲା ନାହିଁ । ବଜାରରେ ବାଧହୋଇ କମଦରରେ ବିକ୍ରି କଲା । ଖାଦ୍ୟ ନିଗମ ଓ ଓଡ଼ିଶା ପ୍ରାଶାସନିକ ସ୍ତରରେ ଦୁର୍ନୀତିଗ୍ରସ୍ତ ଅଫିସର ଓ ରାଜନେତାମାନଙ୍କ ଅସାଧୁମେଣ୍ଟ ଚାଷୀଙ୍କୁ ହତାଶ କରିଥିବା ବେଳେ ଦେଶର ଖୋଲାବଜାର ଅର୍ଥନୀତି ଓ ବିଦେଶୀ ଖାଦ୍ୟ ପଦାର୍ଥ ଆମ ବଜାର ଭିତରକୁ ବିନା କଟକଣାରେ ପ୍ରବେଶ କଲାପରେ ଆମ ଖାଦ୍ୟ ସୁରକ୍ଷାକୁ ଅକାମିକରି ଆମ ଚାଷକୁ ଦେବାଳିଆ କରିବା ଷଡ଼ଯନ୍ତ୍ର ଚାଲିଛି । ତାର ଫଳାଫଳ ଆମ ଚାଷର ବିପର୍ଯ୍ୟୟ ଆଣିବ । ସେତିକିବେଳେ ପୁଣି ଚାଷୀ ଜମିରୁ ହଟିବାକୁ ବାଧ ହେବ ଏବଂ ଜମି ହସ୍ତାନ୍ତର ହେବାର ପ୍ରକ୍ରିୟା ଚାଲୁ ରହିବ । ଚାଷ କର୍ପୋରେଟ ସଂପତ୍ତି ହୋଇଯିବ । ଆମ ଖାଦ୍ୟ ଉତ୍ପାଦନରେ ବାଧା ହେବ । ପୁଣି ଖାଦ୍ୟ ଭାବରେ ବିଦେଶୀ କଂପାନୀ ଉପରେ ନିର୍ଭର କରିବାକୁ ହେବ । ସେଥିପାଇଁ ବର୍ତ୍ତମାନଠାରୁ ଆମ ଦେଶରେ ଓ ଓଡ଼ିଶାରେ ମଧ କାର୍ଗିଲ, ମନସେଣ୍ଟୋ ପରି ବହୁରାଷ୍ଟ୍ରୀୟ ବିହନ କଂପାନୀମାନେ ଆମ ଚାଷ ଭିତରକୁ

Digitized by srujanika@gmail.com

ଦଖଲ ନେବାକୁ ବସିଲେଣି । ତାହାର ପ୍ରତିରୋଧ ପାଇଁ ବଳିଷ୍ଠ ସ୍ୱର ଉତ୍ତୋଳନ ହୋଇପାରୁନି ଯେହେତୁ ଚାଷୀ ପାଖରେ ଖବର ନାହିଁ । ଅନ୍ୟପଟେ ବିକାଶ ନାମରେ ଚାଷଜମି ଜଙ୍ଗଲ ଓ ଜୈବ ବିବିଧତା ଧାରଣ କରି ରହିଥିବା ପ୍ରାକୃତିକ ସଂପଦଗୁଡ଼ିକୁ ବ୍ୟାବସାୟିକ ଲାଭଖୋର କଂପାନୀମାନଙ୍କ ହାତରେ ଟେକିଦେବା ପାଇଁ ବିଗତ ୧୦ ବର୍ଷର ସମସ୍ତ ସରକାରମାନଙ୍କ ପ୍ରଥମ କାର୍ଯ୍ୟ ହୋଇ ଆସିଛି । ଏହାର ପରିଣାମ ଖାଦ୍ୟ ସଙ୍କଟ ଘନୀଭୂତ ହେବ । ମାଟିର ମଣିଷମାନେ ନିଜ ଭିଟାମାଟିରୁ ଉଚ୍ଛେଦ ହେଉଛନ୍ତି । ଦୁର୍ଭିକ୍ଷ ସାଙ୍ଗକୁ କର୍ମହୀନଲୋକେ ଭୋକରେ ଛଟପଟ ହେଉଛନ୍ତି । ଭବିଷ୍ୟତରେ ଲୋକେ କୁଢ଼ କୁଢ଼ ମରିବେ । ସେତେବେଳେ ଏହି ମୃତ୍ୟୁର ନାମକରଣ ବିଷାକ୍ତ ଖାଦ୍ୟ ଭକ୍ଷଣ ବଦଳରେ ଆଉ କ'ଣ ହେବ, ସେତେବେଳର ଶାସକଶ୍ରେଣୀଙ୍କ ମସ୍ତିଷ୍କରୁ ନିର୍ଦ୍ଧାରିତ ହେବ, କିନ୍ତୁ ଭୋକିଲା ଲୋକଙ୍କୁ ମୁକ୍ତି ମିଳିବ ନାହିଁ ।

ଆଜି କାଶୀପୁର ଏକ ପରୀକ୍ଷାଗାର । ବିଗତ ୭ ବର୍ଷ ଧରି କଂପାନୀରାଜ ଚାଲିଛି ସେଠାରେ କେବଳ ଲୋକଙ୍କୁ ନିଜ ଜୀବିକା ଅଧିକାରରୁ ଉଚ୍ଛେଦ କରିବା ପାଇଁ । ସେମାନଙ୍କ ଜମି ଜଳର ବିକାଶ ସରକାରୀ କାର୍ଯ୍ୟକ୍ରମରେ ନାହିଁ । ସେଠାରେ ଆଦିବାସୀଙ୍କ ଜମି ବଡ଼ ବଡ଼ ଅଣ ଆଦିବାସୀ ସାହୁକାରଙ୍କ ହଡ଼ପରେ । ସେହି ଜମିକୁ ଉଦ୍ଧାର କରି ଲୋକଙ୍କୁ ଦେବାର ଉଦ୍ୟମ ନାହିଁ । ପୁଣି ଥିବା ଜମିକୁ ନେଇଯିବାବେଳେ ପ୍ରତିରୋଧ କରୁଥିବା ଜନ ଆନ୍ଦୋଳନକୁ ଚପାଇଦେବା ପାଇଁ ପ୍ରଶାସନିକ ଦମନଲୀଳା ଓ ପ୍ରତିଶୋଧ । ସେହି ଅଞ୍ଚଳର ସ୍ୱାସ୍ଥ୍ୟ ସେବା, ପିଇବା ପାଣି, ଶିକ୍ଷାର ବିକାଶ କିମ୍ବା ଛୋଟ ଛୋଟ ଜଳ ପ୍ରକଳ୍ପ ବିକାଶର କାର୍ଯ୍ୟକ୍ରମରେ ନାହିଁ । ବାଗ୍ରିଝୋଲ କ୍ଷୁଦ୍ର ଜଳ ଭଣ୍ଡାରରେ ଛୋଟ ମରାମତି ଅଭାବରୁ ପାଣି ରହୁନାହିଁ ଦୀର୍ଘ ୫ ବର୍ଷ ହେଲା । ସେଥିପାଇଁ ସରକାରଙ୍କ ଆଖି ପଡୁନାହିଁ । ଏସବୁ ଜାଣିଶୁଣି କୁହାଯାଉଛି । କାରଣ କଂପାନୀର ସେବାକରି ପ୍ରଗତିର ଧ୍ୱଜା ଉଡାଇ ବାହା ବାହା ନେବା ପାଇଁ ରାଜନେତାମାନେ ଯେପରି ପାଗଳ, ସେହିପରି ଜନ ଆନ୍ଦୋଳନକୁ ଚାପି ଦେବାପାଇଁ ଆନ୍ଦୋଳନରତ ଜନତାଙ୍କ ଭାତହାଣ୍ଡିରେ ବିଷ ମିଶାଇ ମାରିବା ପାଇଁ ପାଗଳା କୁକୁର ପରି ପ୍ରତିଶୋଧ ନେଉଛି ପ୍ରଶାସନିକ କଳ । ଆଜି ପ୍ରଶାସନିକ ଓ ରାଜନୈତିକ ସ୍ତରରେ କାଶୀପୁରରେ ମାନବିକତାକୁ ହତ୍ୟା କରାଯାଇଛି । ସେଇଥିପାଇଁ ଅନାହାର, ଅଖାଦ୍ୟଜନିତ ମୃତ୍ୟୁ । ଏହି ମଣିଷକୃତ ମୃତ୍ୟୁପାଇଁ ଆଜି ନବୀନ ସରକାର ଯେତିକି ଦାୟୀ ତାଠାରୁ ଅଧିକ ଦାୟୀ ଅତୀତର ସରକାରମାନେ । ବିଶେଷ କରି ଜାନକୀ ସରକାରଙ୍କ ୧୪ ବର୍ଷରେ କାଶୀପୁର ମାଟିର ଉର୍ବରତାକୁ ବନ୍ଧ୍ୟାକରି ଦେବା ପାଇଁ ଜନବିରୋଧୀ ଯୋଜନା ନାମରେ ଲୁଟ ଚାଲିଲା ଓ କଂପାନୀରାଜକୁ ଉତ୍ସାହିତ କରାଗଲା । ଆଜି ସେ ମଧ କୁମ୍ଭୀର କାନ୍ଦଣା କରି

Digitized by srujanika@gmail.com

ପୁଣି କଂପାନୀର ସ୍ୱାର୍ଥ ପାଇଁ ଓକିଲାତି ଆରମ୍ଭ କରିଛନ୍ତି । ଆଜି କ୍ଷୁଧାରୁ ମୁକ୍ତି ପାଇବାକୁ ହେଲେ ଲୋକ ହାତରେ ଜମି, ଜଳ ଓ ଜଙ୍ଗଲର ଗ୍ୟାରେଣ୍ଟି ସହ ସେହି ସଂବଳର ବିକାଶରେ ହିଁ ଖାଦ୍ୟ ଅଧିକାର ସାକାର ହୋଇପାରିବ । ଅନ୍ୟଥା ବିକଳ୍ପ ନାହିଁ ।

## ଜନମଙ୍ଗଳ ରାଷ୍ଟ୍ରର ଦାୟିତ୍ୱ

ଆମ ସଂବିଧାନରେ ଆମେ ଆମ ଅଧିକାରକୁ ଉଲ୍ଲେଖ କରି ରାଷ୍ଟ୍ରର ଦାୟିତ୍ୱ ନିର୍ଦ୍ଧାରଣ କରିଛୁ । ରାଷ୍ଟ୍ରର ଦାୟିତ୍ୱ ନିଜ ଜନ୍ତାଙ୍କ ଅଧିକାରକୁ ସୁରକ୍ଷା ଦେବା ଓ ସଂବିଧାନର ନିର୍ଦ୍ଦେଶକୁ ମାନି ନେବା, କିନ୍ତୁ ରାଷ୍ଟ୍ରର ସାର୍ବଭୌମତ୍ୱକୁ ରାଷ୍ଟ୍ର ପରିଚାଳକମାନେ ଦୁର୍ବଳ କରିସାରିଲେଣି ସାମ୍ରାଜ୍ୟବାଦୀଶକ୍ତିମାନଙ୍କ ଭୟ ଓ ପ୍ରଲୋଭନର ବଶବର୍ତ୍ତୀ ହୋଇ । ଆଜି ରାଷ୍ଟ୍ର ଜନମଙ୍ଗଳ ଦାୟିତ୍ୱରୁ ନିଜକୁ ଦୂରେଇ ନେଉଛି । ସବୁକିଛି ଘରୋଇକରଣ ଓ ବେପାରୀ ହାତରେ ଟେକିଦେବାର ପ୍ରକ୍ରିୟାକୁ ଜଗତୀକରଣର ଅନିବାର୍ଯ୍ୟତା ରୂପେ ଲଦି ଦିଆଯାଉଛି । ଫଳରେ ଆଜି ଲୋକଙ୍କ ଅଧିକାର ବିପଦଗ୍ରସ୍ତ । ରାଷ୍ଟ୍ର ଶକ୍ତି କେବଳ ଏକ ପୋଲିସ ଷ୍ଟେଟର ଭୂମିକାକୁ ଶକ୍ତିଶାଳୀ କରିବାପାଇଁ ପ୍ରଶାସନିକ ସ୍ତରରେ ଆଧୁନିକୀକରଣ ଚାଲିଛି । ଏହି ପ୍ରକ୍ରିୟା ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରତି ଏକ ଚାଲେଞ୍ଜ । ସାମାଜିକ ସୁରକ୍ଷା ଓ ଆର୍ଥିକ ନ୍ୟାୟ ରାଷ୍ଟ୍ରର ଦାୟିତ୍ୱର ସୀମା ବାହାରକୁ ଚାଲିଗଲା ପରେ ଅନାହାର ମୃତ୍ୟୁ କଥା କହିବା ଦୂରେଥାଉ ସେ ସଂକ୍ରାନ୍ତରେ ଚିନ୍ତା ବି କରିବା ଏକ ଅପରାଧ ହୋଇଯିବ । ଏପରି ଏକ ସ୍ଥିତି କେବଳ ପରିକଳ୍ପନାର ବସ୍ତୁ ନୁହଁ । ଜନଶକ୍ତିକୁ ଦୁର୍ବଳ କଲେ ରାଷ୍ଟ୍ର ଆପେ ଆପେ ଦୁର୍ବଳ ହୋଇଯିବ । କେବଳ ଏକ ବଳିଷ୍ଠ ଅସ୍ତ୍ର ରୂପେ ଅନ୍ୟର ହାତରେ ବ୍ୟବହୃତ ହେବ । ଆଜି ଆମକୁ ଏକ ସଭ୍ୟ ସମାଜର ସଭ୍ୟ ରୂପେ ନିଜକୁ ମୂଲ୍ୟାୟନ କରିବା ପାଇଁ ଆମ ପାଖରେ ଥିବା ସର୍ବନିମ୍ନ ଲୋକଙ୍କ ଜୀବନ ସହ ଆମ ରାଜନୈତିକ, ସାମାଜିକ ଓ ଆର୍ଥିକ ବ୍ୟବସ୍ଥାଟିର ସଂପର୍କ ସଭ୍ୟତାର ମାପ କାଠି ନା ତାର ବିପରୀତ ସଠିକ୍ ସମୀକ୍ଷା କରିବା ଏକ ଆହ୍ୱାନ ।



Digitized by srujanika@gmail.com

# 'ସୁଖଦ ଅନୁଭବ' ବନାମ 'ଦୁଃଖଦ ଅନୁଭୂତି'

ଆଗୁଆ ନିର୍ବାଚନ ପାଇଁ ଘଣ୍ଟବାଜ ହେବା ବେଳକୁ ନୂଆ ନୂଆ ସ୍ଲୋଗାନର ଆବଶ୍ୟକତା ଥାଏ ଜନତାଙ୍କ କର୍ଣ୍ଣ ଓ ଚକ୍ଷୁ ବନ୍ଧନ କରିବାରେ ସଫଳ ହେବାକୁ । ଶାସକ ଦଳ ଓ ନେତା ଏହି କାର୍ଯ୍ୟରେ ଅଗ୍ରଣୀ ରହିବା ସ୍ୱାଭାବିକ ଯେହେତୁ ନିଜ ପ୍ରଶାସନର ବିଫଳତାକୁ ଯେନକେନ ପ୍ରକାରେଣ ଘୋଡ଼ାଇ ନରଖିଲେ ଭୋଟ ସଂଗ୍ରହ ସମ୍ଭବପର ହେବନାହିଁ । ବର୍ତ୍ତମାନ ଲୋକସଭା ଭଙ୍ଗ ହୋଇଗଲା । ନୂଆ ସ୍ଲୋଗାନ ହେଲା, ଆର୍ଥିକ କ୍ଷେତ୍ରରେ ଉପଲବ୍ଧି ହେଉଛି feel good factor ଏହାର ଭାଷାନ୍ତର ଖୋଦ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପାୟୀଙ୍କ ମୁହଁରୁ ନିର୍ଗତ ହେଉଛି 'ସୁଖଦ ଅନୁଭବ' । ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ଡି.ଏଫ୍.ଆଇ.ଡ଼ି. ପରି ସାମ୍ରାଜ୍ୟବାଦୀ ଦଲାଲି ସଂସ୍ଥାମାନେ ଋଣଦାତା ହୋଇ ଗରିବ ଦେଶମାନଙ୍କ ପାଇଁ ନୂଆ ସାହିତ୍ୟ, ନୂଆ ସଂସ୍କୃତି ସୃଷ୍ଟି କରି ଦିଅନ୍ତି ଯାହାରି ଉଦ୍ଦେଶ୍ୟ ସେ ଦେଶର ଜନତା ନିଜ ମୂଳଚିକୁ ଭୁଲିଯିବେ ଋଣଦାତାଙ୍କ ଓ ଦୟାର ପାତ୍ର ହୋଇ ରହିଥିବେ । ଭାରତର ଆର୍ଥିକ ମୂଲ୍ୟାୟନକୁ ଏକପଦୀରେ ପ୍ରକାଶ କରିବା ପାଇଁ ମଧ ଇଣ୍ଡିଆ ସାଇନିଂ, ଫିଲ୍‌ଗୁଡ୍ ଫେକ୍ଟର 'Feel good factor' ସେହିଆଡୁ ଆସିଛି । ଏତକ କହିବାର ଅର୍ଥ ସରକାରଙ୍କ ସଫଳତା ଅଜାଡ଼ି ହୋଇପଡୁଛି ।

ହଁ, ସଫଳତା କାହାପାଇଁ ? ଦଶ ହଜାର କୋଟି ଡଲାର ବିଦେଶୀ ମୁଦ୍ରା ଭଣ୍ଡାରରେ ଅଛି । ଏହା କାହାର ? ପୁଣି ଏହି ଅର୍ଥର ସିଂହ ଭାଗ କାହାପାଇଁ ଖର୍ଚ୍ଚ ହେଉଛି ? ଯେଉଁମାନେ ବିଦେଶ ଯାତ୍ରା କରୁଛନ୍ତି, ଯେଉଁମାନଙ୍କ ପାଇଁ ବିଦେଶୀ ଗାଡ଼ି, ବିଦେଶୀ ସୌଖୀନ ଜିନିଷ ଆମ ବଜାରକୁ ଆସୁଛି ସେମାନଙ୍କ ପାଇଁ ବିଦେଶୀ ମୁଦ୍ରାର ଆବଶ୍ୟକତା ପୂରଣ ହେଉଛି । ଏପରିକି ଆମ ଦେଶୀୟ କୃଷି ଓ ଶିଳ୍ପଜାତ ପଦାର୍ଥକୁ ଅପଦାର୍ଥ ରୂପେ ବିବେଚନା କରି ବିଦେଶରୁ ସେ ସବୁ ସାଧାରଣ ଖାଉଟି ଜିନିଷ ଭାବେ ଆମ ବଜାରକୁ ଆସିଗଲା ପରେ ସେଗୁଡ଼ିକର ବିକ୍ରି ମୂଲ୍ୟର ସମୁଦାୟ ଅର୍ଥ ପୁଣି ସେହି ବିଦେଶୀ ମୁଦ୍ରା ଆକାରରେ ବିଦେଶକୁ ଚାଲିଯିବ । ୨୦୦୦ ଓ ୨୦୦୧ ମଧ୍ୟରେ ୧୪୨୯ଟି ଆମ ସାଧାରଣ ଚାଷୀ, କାରିଗରଙ୍କ

Digitized by srujanika@gmail.com

ଦ୍ୱାରା ଉତ୍ପାଦିତ ପଦାର୍ଥ ସହ ପ୍ରତିଯୋଗିତା ପାଇଁ ବିଦେଶରୁ ଆସିଥିବା ସମସ୍ତ କଟକଣା ଉଠାଇ ଦେଲେ କେନ୍ଦ୍ର ସରକାର । ଯେଉଁମାନେ ଆମ ଦେଶରେ ମେକଡ଼ୋନାଲଡ୍‌ର ଚିକେନ୍ ତରକାରୀ, ଅଷ୍ଟ୍ରେଲିଆର ସେଓ ଓ ନାସ୍‌ପାତି, ଆମେରିକାର ଟେକ୍ସମତି ଚାଉଳ ଖାଇ ପାରୁଛନ୍ତି, ଉଡାଜାହାଜର ଟିକଟର ଦାମ ଶସ୍ତା ହୋଇଯାଉଛି ଘରୋଇକରଣ ପରେ, ଦିଲ୍ଲୀ, ବମ୍ବେ ପରି ସ୍ଥାନରେ ଶିଶୁର ସ୍କୁଲ ପ୍ରବେଶ ପାଇଁ ଯେଉଁମାନେ ଏକ ଲକ୍ଷ ଟଙ୍କା ଦେଇପାରନ୍ତି, ସେମାନେ କେବଳ 'ସୁଖଦ ଅନୁଭବ' କରୁନାହାନ୍ତି, ବର୍ତ୍ତମାନ ଖୁବ୍ ମହାନ ବୋଲି ମଧ୍ୟ ଅନୁଭବ କଲେଣି । ତେଣୁ "Feel greater" ପାଇଁ ଶାସକ ଦଳର କେତେକ ନେତା ଆଗୁଆ କହିସାରିଲେଣି । କାଳେ ସରକାରୀ କର୍ମଚାରୀମାନେ ଖରାପ ଅନୁଭବ ପରିପ୍ରକାଶ କରିବେ ବୋଲି ସେମାନଙ୍କ ମହଙ୍ଗାଭତ୍ତା ମଧ୍ୟ ବଢ଼ାଇ ତାକୁ ଦରମାରେ ମିଶାଇ ଦେବାପରେ ସୁଖଦ ଅନୁଭବୀମାନଙ୍କ ସଂଖ୍ୟା ବୃଦ୍ଧି ମଧ୍ୟ ସରକାର କରି ଦେଇପାରିଲେ । ସୁନ୍ଦରୀ ପ୍ରତିଯୋଗିତା ମାଧ୍ୟମରେ ଯୁବତୀମାନଙ୍କୁ ଫେସନ ଦୁନିଆର ସ୍ୱପ୍ନ ଦେଖାଇ ସେମାନଙ୍କୁ ସୁଖଦ ଅନୁଭବର ସ୍ୱାଦ ଚଖାଇ ଦିଆଯାଉଛି ।

ଆରପଟେ, ରାସ୍ତା କଡ଼ରେ ଠେଲାଗାଡିରେ ଚଣା ଓ ଗୁପୁନି ବିକାଳୀମାନେ ବିପଦ ମଣିଲେଣିଯେ ସେମାନଙ୍କ ଗୁଜରାଣ ଅସମ୍ଭବ ହୋଇପଡ଼ିବ ଯେଉଁଦିନ ବିଦେଶୀ କଂପାନୀମାନଙ୍କ ପ୍ୟାକେଟ ମଧ୍ୟ ରାସ୍ତାକଡ଼ ଷ୍ଟଲରେ ବିକ୍ରି ହେବ । ଏପରି ବ୍ୟବସ୍ଥା ବଡ଼ ବଡ଼ ସହରମାନଙ୍କରେ ଆରମ୍ଭ ହୋଇଗଲାଣି । ଆମ ସ୍କୁଲ କଲେଜ ପିଲାମାନେ ବିଦେଶୀ ମାର୍କା ଆଳୁଚିପ୍‌ସ କିମ୍ୱା ବିଷ ମିଶା ପେପ୍‌ସି କପ୍ ଧରି ଯେପରି ଠାଣିରେ ରାସ୍ତାକଡ଼ରେ ଗପ ମାରୁଛନ୍ତି, ଦେଖିଲେ ମନେହୁଏ ଅନ୍ଧକାରମୟ ଆସନ୍ତାକାଲିର ନାଗରିକମାନେ ଆଜି କିପରି 'ସୁଖଦ ଅନୁଭବ'ରେ ସ୍ୱପ୍ନରେ ଭାସି ଆକାଶରେ ଉଡୁଛନ୍ତି । ସେମାନଙ୍କ ଯେ ପକ୍ଷଛେଦନ ହୋଇଯାଉଛି ଏକଥା ସେମାନଙ୍କୁ ଜଣାନାହିଁ । କାରଣ, ଆଜିର ଆର୍ଥିକ ନୀତି ଓ ବ୍ୟବସ୍ଥା କେବଳ ୨୦ ପ୍ରତିଶତ ଜନତାଙ୍କ ସୁଖଦ ଅନୁଭବ ପାଇଁ ବଜାର ସୃଷ୍ଟି କରିବା ସହ ବଜାରକୁ ସକ୍ରିୟ ରଖିବା ପାଇଁ ସେମାନଙ୍କ ଆୟ ବୃଦ୍ଧି, ବ୍ୟାବସାୟିକ ପ୍ରତିଯୋଗିତା ହିଁ ଉଦ୍ଦିଷ୍ଟ । ଆଉ ବାକି ୮୦ ପ୍ରତିଶତ ଜନତାଙ୍କୁ ଉପେକ୍ଷା ସହ ଅପେକ୍ଷା କରିବାକୁ ପଡ଼ିବ । ସେଦିନ କେବେ ଆସିବ ବୋଲି ଚାହିଁ ରହିଥିବେ । ସେମାନଙ୍କ ପାଇଁ ସ୍ୱପ୍ନ ସୃଷ୍ଟି କରାଯାଉଥିବ । ଏମଧ୍ୟରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ନିଜର ଅସ୍ମିତା ହରାଇବେ । ବିଗତ ୫ ବର୍ଷ ମଧ୍ୟରେ ଦେଶର ପ୍ରାୟ ୧୬ ହଜାର ଚାଷୀ ଆତ୍ମହତ୍ୟା କରି ସାରିଲେଣି ବୋଲି ଖାଦ୍ୟ ବିଶେଷଜ୍ଞ ଡକ୍ଟର ଦେବେନ୍ଦର ଶର୍ମା କହିଛନ୍ତି । ପ୍ରାୟ

Digitized by srujanika@gmail.com

୪ ଲକ୍ଷ ଛୋଟ ବଡ଼ ଶିଳ୍ପ ଓ କଳ ବନ୍ଦ । ଚାଷୀ ଧାନ ବସ୍ତା ପ୍ରାୟ ୧୫୦ ଟଙ୍କା କମରେ ବିକିବାକୁ ବାଧ୍ୟ ହେଉଛି । କ୍ଷୁଦ୍ର ଚାଷୀ ଓ ଭୂମିହୀନ କୃଷି ଶ୍ରମିକ ଦାଦନ ହୋଇ ବାହାରେ ନିର୍ଯ୍ୟାତିତ ହେଉଛନ୍ତି । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଅନାହାର ମୃତ୍ୟୁ ହେଉଛି ଅଥଚ ଆମ ଶାସକଶ୍ରେଣୀ କହନ୍ତି ପ୍ରଗତିର ସଫଳତା ମିଳିଛି । ଆମ ରାଜ୍ୟର ହଜାର ହଜାର ସ୍କୁଲ ଶିକ୍ଷକ ଦୀର୍ଘ ୧୫ ବର୍ଷ ଧରି ବିନା ଦରମାରେ ପାଠ ପଢ଼ାଉଛନ୍ତି । ଏପର୍ଯ୍ୟନ୍ତ ୧୫ ହଜାର ରାଜସ୍ୱଗ୍ରାମରେ ପ୍ରାଥମିକ ସ୍କୁଲ ନାହିଁ । ୫ହଜାର ପ୍ରାଥମିକ ବିଦ୍ୟାଳୟରେ ଶ୍ରେଣୀ ଗୃହ ନାହିଁ । ୨୦ ହଜାର ଶିକ୍ଷକ ପଦବୀ ଖାଲିଅଛି । ନିଯୁକ୍ତି ହୋଇପାରୁନାହିଁ ବୋଲି ବିନା ଶିକ୍ଷକରେ ପାଠପଢ଼ା ଚାଲିଛି । ଶାସନରେ ଏପରି ସୁଖଦ ଅନୁଭବ ଚାଲିଛି ଯେ ଅନେକ ସ୍କୁଲରେ ଶିକ୍ଷକ ଥାଇ ବି ପାଠପଢ଼ା ହେଉନାହିଁ । ଶିକ୍ଷକ, ଛାତ୍ର, ଛାତ୍ରୀ ଓ ଅଭିଭାବକମାନଙ୍କ ପାଇଁ ଏ ସବୁ ଦୁଃଖଦ ଅନୁଭୂତି ।

ସ୍କାମ କହିଲେ ବୋଫର୍ସ ଦୁର୍ନୀତିକୁ ବୁଝାଉଥିଲା । ସେହି ୬୪ କୋଟି ଟଙ୍କାର ମାମଲାର ଶୁଣାଣୀ ୧୫ ବର୍ଷ ଧରି ଶେଷ ହୋଇନଥିବାବେଳେ ହର୍ଷଦ ମେହେଟା ଠାରୁ ଆରମ୍ଭ କରି ୟୁଟିଆଇ ଓ ଷ୍ଟାମ୍ପ ପେପର ତେଲିଗି ଘୋଟାଲାରେ ହୋଇଥିବା ଲକ୍ଷାଧିକ କୋଟି ଟଙ୍କା ବା ଲୁଟ ଧନକୁ କେଉଁଠି ବାଜ୍ୟାପ୍ତି କରାଯାଇପାରିନାହିଁ, କିମ୍ବା ତାହାର ପୁନରାବୃତ୍ତି ହେବ ନାହିଁ ବୋଲି କେହି ଗ୍ୟାରେଣ୍ଟି ଦେଇପାରୁନାହିଁ । ଏପରି ଭ୍ରଷ୍ଟାଚାର ସତ୍ତ୍ୱେ ଦୁର୍ନୀତି ବିରୋଧୀ ଭାଷଣ ନିଶ୍ଚିତଭାବେ ସୁଖଦ ଅନୁଭବ ସୃଷ୍ଟି କରୁଥିବ ସେହିମାନଙ୍କ ପାଇଁ ଯେଉଁମାନେ ତ୍ରିଶୂଳ ବଣ୍ଟନ ଆଉ ମନ୍ଦିର ନିର୍ମାଣ ନାମରେ ଭଣ୍ଡାମିକୁ ଦେଶପ୍ରେମ ବୋଲି କହୁଛନ୍ତି ଓ ଆଉ ଦଳେ ପରିବାରର ପୁଅ ଝିଅ କ୍ୱାଇଁକୁ ନେଇ ରାଜନୀତି କରିବାକୁ ଦେଶପାଇଁ ଉତ୍ସର୍ଗ ବୋଲି ଭାବୁଛନ୍ତି ।

ଏବେ କୁହାଯାଉଛି, ବୈଦେଶିକ ମୁଦ୍ରା ଭଣ୍ଡାରରେ ଦଶ ହଜାର କୋଟି ଡ଼ଲାର ଅର୍ଥାତ ପ୍ରାୟ ୫ ଲକ୍ଷ କୋଟି ଟଙ୍କା ଗଚ୍ଛିତ ଅଛି । ଏସବୁ ଆମ ଦେଶବାସୀଙ୍କ ଅର୍ଜିତ ପୁଞ୍ଜିନୁହଁ । ଏଥିରୁ ଅଧିକାଂଶ ବିଦେଶୀଙ୍କ ଦ୍ୱାରା ଷ୍ଟକ ଏକ୍ସଚେଞ୍ଜରେ ଖଟାଇଥିବା ପୁଞ୍ଜି । ଭାରତ ସରକାର ଏ ମଧ୍ୟରେ ଅନୁମତି ଦେଇଛନ୍ତି ଯେ ଯିଏ ଚାହିଁବ ୨୫ ହଜାର ଡ଼ଲାର ପର୍ଯ୍ୟନ୍ତ ଅର୍ଥାତ ପ୍ରାୟ ୧୧ ଲକ୍ଷ ଟଙ୍କା ବଦଳ କରି ଷ୍ଟେଟ ବ୍ୟାଙ୍କରୁ ବିଦେଶୀ ମୁଦ୍ରା କିଣି ପାରିବ । ଏହି ଟଙ୍କା ପାଇଁ କେହି ହିସାବ ମାଗିବ ନାହିଁ ଏତେ ଟଙ୍କା କୁଆଡୁ ଆସିଲା ଓ କୁଆଡ଼େ ଯିବ । ଏହି ଅର୍ଥ ବିଦେଶର ଯେକୌଣସି ବ୍ୟାଙ୍କରେ ରଖାଯାଇପାରେ । ଏହି ସୁବିଧା ସୁଯୋଗ

Digitized by srujanika@gmail.com

କାହାପାଇଁ ? ଏସବୁ ସେହି ବଡ଼ବଡ଼ିଆଙ୍କ ପାଇଁ ଯିଏ କଳା ଟଙ୍କାକୁ ଧଳା କରିପାରିବ । ତାପାଇଁ ଏହା ନିଶ୍ଚିତ 'ସୁଖଦ ଅନୁଭବ' । ଅନ୍ୟପକ୍ଷରେ ବଜାର ଅର୍ଥନୀତିରେ ସ୍ୱପ୍ନ ଦେଖୁଥିବା ବେକାର ଯୁବକଯୁବତୀ ପାଇବେ କ'ଣ ? ପୁଣି ଗାଁର ଶ୍ରମିକ ପାଇଁ କାମର ଗ୍ୟାରେଣ୍ଟି କେଉଁଠି ? ଆଦିବାସୀଙ୍କୁ ଜଙ୍ଗଲରୁ ବିସ୍ଥାପିତ କରି ଜଙ୍ଗଲକୁ ବହୁରାଷ୍ଟ୍ରୀୟ କଂପାନୀମାନଙ୍କୁ ଦେବାପାଇଁ ପ୍ରକ୍ରିୟା ଆରମ୍ଭ ହୋଇଯାଇଛି । ଜୀବିକା ସହ ନିଜର ସାମାଜିକ ଓ ସାଂସ୍କୃତିକ ଅସ୍ମିତା ହରାଉଥିବା ବନବାସୀର ଏହି ଦୁଃଖଦ ସ୍ଥିତି ପାଇଁ 'ସୁଖଦ ଅନୁଭବ'ର ପ୍ରବକ୍ତାମାନଙ୍କ ପାଖରେ କିଛି ଉତ୍ତର ଅଛି କି ? 'ଫିଲ ଗୁଡ୍ ଫେକ୍ଟର' ପାଇଁ 'ଭାରତ ଉଦୟ' ନାମରେ କେନ୍ଦ୍ର ସରକାର ବିଜ୍ଞାପନ ଓ ପ୍ରଚାର ବାବଦରେ ୪୦୦ କୋଟି ଟଙ୍କା ଗତ ନଭେମ୍ବର ମାସରୁ ଖର୍ଚ୍ଚ କରିସାରିଲେଣି ।

ସାଧାରଣ ଲୋକଙ୍କ କ୍ରୟଶକ୍ତି କମୁଛି ଯଦିଚ କେତେକ ମୁଷ୍ଟିମେୟ ଶ୍ରେଣୀର ରୋଜଗାର ଆକାଶଛୁଆଁ ହେଲାଣି । ଦରଦାମ ୧୦ ବର୍ଷ ମଧ୍ୟରେ ହିସାବକଲେ ମୁଦ୍ରାର ମୂଲ୍ୟ କମିବାରେ ଲାଗିଛି । ଗରିବ ବ୍ୟକ୍ତିଟି ଏକ ଲିଟର କିରୋସିନୀ ଏକାଥରକେ କିଣି ପାରୁ ନାହିଁ । ଯେହେତୁ ତାର ଦାମ ୫ ଗୁଣା ବଢ଼ିଯାଇଛି । ସାଧାରଣ କୃଷକଟିଏ ସାର କିମ୍ବା କୃଷି ଉପକରଣ କିଣିବାକୁ ସକ୍ଷମ ହେଉନାହିଁ । ଓଡ଼ିଶା ପରି ରାଜ୍ୟରେ ୧୫ ହଜାର ଉଠା ଜଳସେଚନ ପଏଣ୍ଟରୁ ୧୦ ହଜାର ଅକାମି ଏବଂ ସରକାର ପାଣି ପଞ୍ଚାୟତ ନାମରେ ଅଧିକାଂଶ ପଏଣ୍ଟକୁ ଅଚଳ କରି ରଖିଛନ୍ତି ଯେହେତୁ ବିଦ୍ୟୁତ୍ ବିଲ ପୈଠ ହୋଇନାହିଁ ବୋଲି ।

ଆମ ରାଜ୍ୟରେ ଦୁର୍ନୀତି, ଭ୍ରଷ୍ଟାଚାର ନିତିଦିନିଆ ଅଭ୍ୟାସ ହୋଇସାରିଲାଣି । ସରକାରୀ ଅଫିସର, ମନ୍ତ୍ରୀ, ବିଧାୟକମାନଙ୍କ ଉପରେ ଘର ଭଡ଼ା, ବିଦ୍ୟୁତ୍ ଭଡ଼ା ବାବଦରେ ଶହେ କୋଟି ଟଙ୍କାରୁ ଉର୍ଦ୍ଧ୍ୱ ଅନାଦେୟ ବକେୟା ପଡ଼ିଛି । ଅଥଚ ସରକାର ସ୍ୱାସ୍ଥ୍ୟ କେନ୍ଦ୍ରରେ ସାଧାରଣ ରୋଗୀଠାରୁ ଅର୍ଥ ଆଦାୟ କରିବା ଅନିବାର୍ଯ୍ୟ ବୋଲି କହୁଛନ୍ତି । ଗାଁର ସ୍କୁଲ ବନ୍ଦ, କାଁଭାଁରେ ଥିବା ହସପିଟାଲ ମାନଙ୍କରେ ଡାକ୍ତର ନାହାନ୍ତି କି ଔଷଧ ନାହିଁ । ଗାଁ ଗାଁରେ ବଞ୍ଚିବାର ରାସ୍ତା ଜୀବିକା ଚାଲିଯାଉଛି । ଜଙ୍ଗଲ, ଖଣି ଲୁଟ ହେଉଛି ବୋଲି ଆଦିବାସୀ ଅସୁରକ୍ଷିତ । ଜଳର ଘରୋଇକରଣ ପାଇଁ ରାସ୍ତା ସଫା ହୋଇଯାଉଛି । ସବୁକିଛି ବିକାହେବ । ସକ୍ଷମ ଗ୍ରାହକ ସୃଷ୍ଟି ପାଇଁ ପରିବେଶ ତିଆରି କରିବା ପାଇଁ ଭିତ୍ତିଭୂମି ନିର୍ମାଣ କରିବ ସରକାର । ଗ୍ରାହକଟି କେଉଁ ଶ୍ରେଣୀର ? ନିଶ୍ଚିତ ପ୍ରଥମ ଶ୍ରେଣୀର । ଆଉବାକି

Digitized by srujanika@gmail.com

'ସୁଖଦ ଅନୁଭବ'ର ଆରପଟେ ରହି ଦୁଃଖଦ ଅନୁଭୂତିକୁ ଜାକିଧରି ଥାଆନ୍ତୁ । ଭୋଟବି ହେଉ, ଇଏ ନହେଲେ ସିଏ ଆସିଯାଆନ୍ତୁ, କିନ୍ତୁ ଦୁଃଖ ବୁଝିବାକୁ କେହିନଥିବେ । ଯଦି ବୁଝିବାକୁ ହେବ ତାହାହେଲେ ଭୋଟବେଳେ ଓ ଭୋଟବାହାରେ ପଚାରିବାକୁ ହେବ - ''ତୁମ ସୁଖଦ ଅନୁଭବ'ରେ ଆମର 'ଦୁଃଖଦ ଅନୁଭୂତି' ପାଇଁ ଦାୟୀ କିଏ ? ଏଥିପାଇଁ ପ୍ରାୟଶ୍ଚିତ କେବେ ?'' ତାହାହେଲେ ଯାଇ ଏକ ବିକଳ୍ପର ରାସ୍ତା ଖୋଲିବ ।



୧

Digitized by srujanika@gmail.com

# କମ୍ପାନୀ ବାଦଶାହ ଆସିଥିଲେ ....

ଆମ ଦେଶର ଗାରିମା ବୋଧହୁଏ ସ୍ୱାଧୀନତା ଦିବସ ଅଗଷ୍ଟ ୧୫ ଓ ଗଣତନ୍ତ୍ର ଦିବସ ଜାନୁଆରୀ ୨୬ ଏହି ଦୁଇଦିନ ମଧ୍ୟରେ ହିଁ ଆବଦ୍ଧ । ଆଉ ସବୁଦିନେ ଆମ ଲୋକଙ୍କୁ ଏପର୍ଯ୍ୟନ୍ତ ସ୍ୱାଧୀନ ହେବାକୁ ଦେଉନାହୁଁ । ସାଧାରଣ ଜନତାର ନିଜ ଭାଷାକୁ ଏପର୍ଯ୍ୟନ୍ତ ରାଜଭାଷାରେ ବ୍ୟବହାର କରାଯାଇନାହିଁ । ନିଜ ଜମି, ଜଳ ଓ ଜଙ୍ଗଲର ଅଧିକାର ଆଉ କାହାପାଖକୁ ଚାଲିଗଲାଣି । ପୁଣି ଆମ ଦେଶର ଆର୍ଥିକ ନୀତିର ରିମୋଟ କଣ୍ଟ୍ରୋଲ ରହିବ ୱାସିଂଟନରେ ଯେଉଁଠେ ପୃଥିବୀର ପ୍ରାକୃତିକ ସଂବଳକୁ ଅପହରଣ କରିବା ପାଇଁ ସମସ୍ତ ଚକ୍ରାନ୍ତ ହେଉଅଛି । କୁବେର ଦେଶର ରାଜଧାନୀ ୱାସିଂଟନ । ନିଜ ସଂପତ୍ତିର ମାଲିକାନାରୁ ନୁହଁ ବରଂ ପ୍ରାକୃତିକ ସଂପଦର ଅସଲ ଅଧିକାରୀ ସାଧାରଣ ଗରିବ ଲୋକ ଲୋହିତ ଭାରତୀୟଙ୍କୁ ହଟାଇ ସେମାନଙ୍କ ସଭ୍ୟତାକୁ କବର ଦେଇ ସେମାନଙ୍କ ପାଣି, ପବନ, ପାହାଡ଼ ଓ ଝରଣାର ଶୋଷଣ ଉପରେ ଆଜିର ଆମେରିକାର ଭିତ୍ତିଭୂମି ତିଆରି ହୋଇଛି । କ୍ରମଶଃ ଲାଟିନ ଆମେରିକା, ଦକ୍ଷିଣ ଆଫ୍ରିକା ଏବଂ ଆଜିର ଦିନରେ ଏସିଆ ମହାଦେଶର ବିଭିନ୍ନ ଗରିବ ରାଷ୍ଟ୍ରମାନଙ୍କର ଶସ୍ତାଶ୍ରମ, ଅମୂଲ୍ୟ ପ୍ରାକୃତିକ ସଂପଦକୁ ଲୁଟ କରି ନେବା ପାଇଁ ଆର୍ଥିକ ସାମ୍ରାଜ୍ୟବାଦର ଅସ୍ତ୍ରକୁ ପ୍ରୟୋଗ କରି ଆସି ଜଗତୀକରଣର ନୂଆ ମନ୍ତ୍ର ଜରିଆରେ ବିଶ୍ୱ ବାଣିଜ୍ୟ ସଂସ୍ଥା ପରି ଭସ୍ମାସୁରକୁ ସୃଷ୍ଟି କରିଛି ସେହି ଆମେରିକାର ରାକ୍ଷସ ଶକ୍ତି । ଯାହାର ବାହନ ହେଉଛନ୍ତି ଅକ୍ଟୋପସ ରୂପରେ ବହୁରାଷ୍ଟ୍ରୀୟ କଂପାନୀମାନେ ଯେଉଁମାନଙ୍କ ମୂଳ ଲକ୍ଷ୍ୟ ହେଲା ଲୋଭ, ଲାଭ କେବଳ ଲାଭ । ମଣିଷ ରକ୍ତରେ ହୋରି ଖେଳିବା ପାଇଁ ସେମାନେ କୁଣ୍ଠାବୋଧ କରନ୍ତି ନାହିଁ । ସେହି କଂପାନୀମାନଙ୍କ ତରଫରୁ ବାଦଶାହ ହୋଇ ଆସିଥିଲେ ଆମ ଭାରତକୁ ଅତିଥି ବେଶରେ । ସେ ହେଉଛନ୍ତି ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ ।

ଯେ କୌଣସି ରାଷ୍ଟ୍ର ମୁଖ୍ୟଙ୍କୁ ସ୍ୱାଗତ କରିବା କିମ୍ୱା ଅତିଥି କରାଇ ଯଥା ସମ୍ମାନ ଦେବା ଆମ ଦେଶର ପରଂପରା । ଏଥିରେ କାର୍ପଣ୍ୟ କରିବା ଅନୁଚିତ, କିନ୍ତୁ ଅତିଥି ସତ୍କାର ନାମରେ ଯଦି ଆମ ସ୍ୱାଭିମାନକୁ ଜଳାଞ୍ଜଳି ଦେଉ, ଆମ ସ୍ୱାଧୀନତା, ଆମ ସାର୍ବଭୌମତ୍ୱକୁ ବନ୍ଧା ପକାଇ ଦାସତ୍ୱର ମାନସିକତାକୁ ପରିପ୍ରକାଶ କରାଯାଏ

Digitized by srujanika@gmail.com

ତାହାହେଲେ ଆମ ଦେଶର ଗତି କୁଆଡ଼କୁ ଯାଉଛି ତାହା ବାରିବାରେ କୌଣସି ଅସୁବିଧା ନାହିଁ ।

କ୍ଲିଣ୍ଟନ ଆସିବେ ବୋଲି ଏକ ମାସ ପୂର୍ବରୁ ଆମ ଗଣମାଧ୍ୟମ, ଖବର କାଗଜରେ ଅଗ୍ର ଲେଖା, ବିଜ୍ଞାପନ, କେନ୍ଦ୍ର ସରକାରଙ୍କ ଆତୁରତାପୂର୍ଣ୍ଣ ଚଳଚଞ୍ଚଳ, ପୁଣି ଆଉ କେତେକ ରାଜ୍ୟ ସରକାରର ମୁଖ୍ୟମାନଙ୍କ ମଧ୍ୟରେ ବାଦଶାହଙ୍କ ସାନ୍ନିଧ ଲାଭ ପାଇଁ ପ୍ରତିଯୋଗିତା, ବାଦଶାହଙ୍କ ସାଥିରେ ଆସୁଥିବା ବିଦେଶୀ କଂପାନୀମାନଙ୍କ ସଫଳ ଦଲାଲ ହେବାର ସମ୍ଭାବନାର ସ୍ୱପ୍ନରେ ବିଭୋର ହୋଇଥିବା ଭାରତୀୟ ବଣିକ ସଂଘର କାର୍ପଟଦାରମାନଙ୍କ ମଧ୍ୟରେ ଆଲୋଡ଼ନ ଓ ସେମାନଙ୍କ ବିଜ୍ଞାପନ, ସର୍ବୋପରି ଆମ ପ୍ରଧାନମନ୍ତ୍ରୀଙ୍କ ସମେତ ମନ୍ତ୍ରୀମାନେ ବାଦଶାହଙ୍କ ସହ କିପରି ବସିବେ, ଉଠିବେ, ହସିବେ କଥା କହିବେ ଓ ଶେଷରେ ବର ପ୍ରାପ୍ତ ହେବାପାଇଁ ଦିନରାତି ରିହାର୍ସଲରେ ଗଗନପବନ ପ୍ରକମ୍ପିତ ହୋଇଉଠିଲା । ସାଧାରଣ ଲୋକେ ଯେଉଁଠି ଶୁଣିଲେ ସେମାନେ ଅନୁଭବ କଲେ ଯେ ସତେ ଯେପରି କିଏ ଗୋଟେ ଆସୁଛି ଆମକୁ କିଛି ଦେଇଦେବାକୁ, ଯାହାଫଳରେ ଆମ ଦୁଃଖ ଦୂର ହୋଇଯିବ ! ଶେଷରେ ଗତ ଏକମାସରୁ ଊର୍ଦ୍ଧ୍ୱ ଏକ ଛଳନାପୂର୍ଣ୍ଣ ମିଥ୍ୟାର ପାହାଡ଼ ତିଆରି କରାଗଲା ଯେଉଁଠେ ପ୍ରବଞ୍ଚନା ବ୍ୟତୀତ ଆଉ କିଛିନାହିଁ । ଭାରତ ସରକାର ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପାୟୀଙ୍କ ନେତୃତ୍ୱରେ ଚାହିଁଲାଯେ ଆମେରିକାକୁ ଯେକୌଣସି ମୂଲ୍ୟଦେଇ ସନ୍ତୁଷ୍ଟ କରି ରଖିବାକୁହେବ ଯାହାର ଶ୍ରେୟ ଆଗାମୀ ଭବିଷ୍ୟତରେ ଭାରତୀୟ ଜନତା ପାର୍ଟିର ରାଜନୀତି ରକ୍ଷା କବଚ ପରି କାମକରିବ । କେବଳ ଆମେରିକା ସାମ୍ରାଜ୍ୟବାଦ ଠାରୁ ସୁରକ୍ଷା ପାଇବା ପାଇଁ ପ୍ରତିଯୋଗିତାରେ ଭାରତୀୟ ଜନତା ପାର୍ଟି ଓ କଂଗ୍ରେସ ଦୁହେଁ ବିଦେଶୀ କଂପାନୀମାନଙ୍କ ବାଦଶାହ କ୍ଲିଣ୍ଟନଙ୍କୁ ସନ୍ତୁଷ୍ଟ କରିବାପାଇଁ ସଚେଷ୍ଟ ହେଲେ ।

କ୍ଲିଣ୍ଟନ ଆସିବା ପୂର୍ବରୁ ତାଙ୍କର ସହ କିଏ ଖାଇବ, କିଏ ବୁଲିବ, ତାଙ୍କରି ପରିବାରର ଲୋକଙ୍କୁ ଦେହରକ୍ଷୀ ପରି ଆତିଥ୍ୟ ଦେବାରେ କେଉଁମାନେ ସୁଯୋଗ ପାଇବେ, ସେଥିପାଇଁ ଠିକ୍ ହୋଇଯାଇଥିଲା । କ୍ୟାବିନେଟ ମନ୍ତ୍ରୀ ତଥା ବୈଦେଶିକ ବ୍ୟାପାର ଦାୟିତ୍ୱରେ ଥିବା ଯଶବନ୍ତ ସିଂହ କ୍ଲିଣ୍ଟନଙ୍କ ଝିଅ ଓ ଶାଶୁଙ୍କ ସାଥିରେ ପ୍ରଟୋକଲରେ ଗଲେ ଆପ୍ୟାୟିତ କରିବାପାଇଁ । ଏଠାରେ ପ୍ରଶ୍ନ ହୋଇପାରେ ଆତିଥ୍ୟ ଦେବାରେ କଣ ଅପରାଧ ଅଛିକି ? କିନ୍ତୁ ବଙ୍ଗଳାଦେଶରୁ କିମ୍ବା ବ୍ରାଜିଲ ପରି ଦେଶମାନଙ୍କରୁ ଆସିଥିବା ରାଷ୍ଟ୍ରମୁଖ୍ୟମାନଙ୍କ ପରିବାରର ସଦସ୍ୟମାନଙ୍କୁ ଏପରି ଆତିଥ୍ୟ ଦେବାକୁ ଆମ କ୍ୟାବିନେଟ ମନ୍ତ୍ରୀମାନେ ଆଗେଇ ଆସିଛନ୍ତି କି ନା ଆସିବେ ?

Digitized by srujanika@gmail.com

କ୍ଲିଣ୍ଟନ ଆସିଲେ । ବହୁଚର୍ଚ୍ଚିତ ପଟୁଆର ସରିଗଲା । ଦିଲ୍ଲୀରେ ଫୁଲ ସଜାଠାରୁ ଆରମ୍ଭ କରି ରାଜସ୍ଥାନରେ ପୁରାତନ ରାଜପ୍ରାସାଦକୁ ରଙ୍ଗବେରଙ୍ଗ କରିବା, ଆଗ୍ରାରେ ରସିକ କ୍ଲିଣ୍ଟନଙ୍କ ପାଇଁ ତାଜମହଲର ସ୍ୱପ୍ନପୁରୀ ସାଜସଜା ହାଇଦ୍ରାବାଦ ସହରକୁ ପରୀ ରାଇଜରେ ପରିଣତ କରିବାର ପ୍ରାକ୍ ପ୍ରସ୍ତୁତି ଓ ବମ୍ବେରେ ଭାରତୀୟ ବେପାରୀଙ୍କ ଦଲାଲିନାମାର ସମାବର୍ତ୍ତନ ଉତ୍ସବରେ ଆୟୋଜନ ହୋଇଗଲା । ବାଦଶାହଙ୍କ ସହ ଆସିଥିଲେ ୧୫୦୦ କଂପାନୀ ମାଲିକ, ପରିଚାଳକ ଓ ସେମାନଙ୍କ ହିସାବ ଲେଖାକିମାନେ । କ୍ଲିଣ୍ଟନ ଆସିବାର ୩ ମାସ ପୂର୍ବରୁ ୧୪୨୯ ଗୋଟି ଅମେରିକୀୟ ଉତ୍ପାଦିତ ଦ୍ରବ୍ୟ ଭାରତୀୟ ବଜାରରେ ସ୍ୱାଧୀନ ବିଚରଣ କରିବା ପାଇଁ ବାଟ ଖୋଲି ଦେଇଛନ୍ତି । ଏଠାର ୫ ଦିନ ରହଣି ଫଳରେ କିପରି ଆମେରିକାର କଳକାରଖାନା ଓ ସେମାନଙ୍କ କୃଷିଜାତ ଦ୍ରବ୍ୟ ଭାରତର ଖାଉଟି କିଣିବାକୁ ବାଧ ହେବେ ତାହା ମଧ୍ୟ ବକ୍ତୃତା ମଧ୍ୟରେ ଛାଟିଆ ନିର୍ଦ୍ଦେଶ ଦେଇଚାଲିଗଲେ । ଆଉ ସେ କଣ ଦେଲେ ସେ କଥା କାହାକୁ ଜଣା ନାହିଁ । କେବଳ ପ୍ରଧାନମନ୍ତ୍ରୀ ଜାଣିଥିବେ । ସଂସଦର ସେଣ୍ଟ୍ରାଲ ହଲରେ ବାଦଶାହଙ୍କ ସହ କରମର୍ଦ୍ଦନ କରିବାପାଇଁ ଅନେକ ନିର୍ବାଚିତ ପ୍ରତିନିଧିମାନେ ଭାଗ୍ୟବାଦୀ ହୋଇଗଲେ । ଯେଉଁ ବାମପନ୍ଥୀ ସାଂସଦମାନେ କ୍ଲିଣ୍ଟନଙ୍କ ଭାଷଣକୁ ତିରସ୍କାର କଲେ ସେମାନଙ୍କୁ ଗୋଷ୍ଠୀଛଡ଼ା ବୋଲି ସ୍ୱଦେଶୀ ଟ୍ରେଡ୍‌ମାର୍କା ବିଜେପି ଓ ଦେଶପ୍ରେମୀ ମାର୍କା କଂଗ୍ରେସର ମୁଖପାତ୍ରମାନେ ଟାପରା କଲେ । ଏଥିରୁ ଜାଣିହେଉଛି ବାଦଶାହଙ୍କ ହୁକୁମର ପ୍ରଭାବ କେତେ ଦୂରଯାଏଁ କାମଦେଉଛି ।

ହେଲେ, ସେ ଗଲାପରେ ଭାରତରେ ଆମେରିକାର ଗୋଇନ୍ଦା ସଂସ୍ଥା ଦୋକାନ ଖୋଲିବାକୁ ଅନୁମତି ପାଇଗଲା । ଆମ ହାଣ୍ଡିଶାଳଠାରୁ ସେନାଶାଳ ପର୍ଯ୍ୟନ୍ତ ଖବର ତାଙ୍କରି ପାଖରେ ଆଗ ପହଞ୍ଚିବା ବ୍ୟବସ୍ଥାଟି ଆମ ସରକାର କରିଦେଲେ ସନ୍ତ୍ରାସବାଦର ମୁକାବିଲା ନାମରେ ।

୫୩ ବର୍ଷର ସ୍ୱାଧୀନତା ପରେ ବି ଆମ ଜୀବନ ଓ ଜୀବିକାର ଗ୍ୟାରେଣ୍ଟିକୁ ଭୁଲିଯାଇ କେବଳ ପର ଉପରେ ନିର୍ଭର କରିବାର ମାନସିକତାକୁ ଅଧିକ ସୁଦୃଢ଼ କରିଚାଲିଛି ବୋଲି ଆଜି ଆମ ଦେଶର ଚାଳକମାନେ ଆତ୍ମବିଶ୍ୱାସ ହରାଇ କେବଳ ନିଜ ଆସନଟିକୁ ଭିଡ଼ିଧରି ରହିବା ସୁଖ ମଧ୍ୟରେ ଦେଶବାସୀଙ୍କ ସ୍ୱାଭିମାନକୁ ଭୁଲି ଯାଉଛନ୍ତି । ଏହା ନହୋଇଥିଲେ ଆମ ଦେଶର ବଜାରକୁ ନିୟନ୍ତ୍ରଣ କରିବାକୁ ସମସ୍ତ ଚକ୍ରାନ୍ତ କରି ଜଗତୀକରଣ ନାମରେ ମୁକ୍ତ ବାଣିଜ୍ୟକୁ ଥୋପି ଦେଇ ଆମ ଗରିବ ଚାଷୀ, ତନ୍ତୀ, ବାଳଶ୍ରମିକଙ୍କ ପେଟରେ ନାତ ମାରୁଥିବା ଆର୍ଥିକ ସାମ୍ରାଜ୍ୟବାଦର ମୁଖ୍ୟ ଖଳନାୟକଙ୍କ ଆଗମନକୁ ଏପରି ଏକ ନାଟକୀୟ ଢଙ୍ଗରେ ସମଗ୍ର ଦେଶରେ

Digitized by srujanika@gmail.com

ରଙ୍ଗୀନ ସ୍ୱପ୍ନର ପରିବେଶ ସୃଷ୍ଟି କରାଯାଇନଥାନ୍ତା । ତାହା ଦେଶକୁ ପୁଣି ଔପନିବେଶର ପ୍ରଭୁ ପାଖରେ ସମର୍ପଣ କରିଦେବାର ପ୍ରାକ୍ ସୂଚନା ବୋଲି ଅନୁଭବ କରିହେଉଛି । ଏହି ଅନୁଭବରୁ ହୁଏତ ବିଦ୍ରୋହ ସୃଷ୍ଟିହେଲେ ଦେଶର ସ୍ୱାଧୀନତାକୁ ନିଶ୍ଚିତଭାବେ ସୁରକ୍ଷା କରାଯାଇପାରିବ । ଯଦି ଅନୁଭବରୁ ଉଦାସୀନତା ଆସେ ତାହାହେଲେ ପୁଣି ଦେଶବାସୀଙ୍କୁ ବହୁମୂଲ୍ୟ ଦେବାକୁ ହେବ ଆଜିର ଶାସକ ଶ୍ରେଣୀର ଅକ୍ଷମଣୀୟ ପାପକାର୍ଯ୍ୟର ପରିଣାମ ସ୍ୱରୂପ ।

ଇତିହାସ ଏବେବି ସାକ୍ଷୀ – କ୍ଲାଇବ ବିଜୟୀ ହୋଇ କଲିକତା ସହରରେ ପ୍ରବେଶ କରିଚାଲୁଥିବାବେଳେ ସାଥିରେ ମାତ୍ର ୧୫୦୦ ବ୍ରିଟିଶ ସୈନିକ ଥିଲେ । କିନ୍ତୁ ହଜାର ହଜାର କଲିକତାବାସୀ ସେଦିନ ଧାଡ଼ି ହୋଇ ଠିଆ ହୋଇଥାନ୍ତି ତାଙ୍କୁ ଦେଖିବାକୁ ସତେ ଯେପରିକି ଆକ୍ରମଣକାରୀକୁ ସ୍ୱାଗତ କରାଯାଉଛି । କ୍ଲାଇବ ନିଜ ଆତ୍ମ ଜୀବନରେ ଲେଖିଛନ୍ତି ଯଦି ଲୋକେ ଘୃଣାରେ ଛେପ ପକାଇଥାନ୍ତେ ତାହାହେଲେ ସେ ପୋତି ହୋଇଯାଇଥାନ୍ତେ, କିନ୍ତୁ ତାହା ନହେବାରୁ ଆମକୁ ୨ ଶହ ବର୍ଷ ପରାଧୀନ ରହିବାକୁ ହେଲା । ଇତିହାସର ପୁନରାବୃତ୍ତି ନହେଉ ଏହା ହିଁ ଆଜିର ଅନୁଚିନ୍ତା ।

## ପୁଣି ଆସିଲେ ଆତଙ୍କବାଦୀ ବାଦଶାହା

ଆତଙ୍କବାଦ ଓ ସନ୍ତ୍ରାସବାଦ ବିଲୋପ ନାମରେ ବିଶ୍ୱରେ ଆତଙ୍କ ସୃଷ୍ଟି କରି ଚାଲିଛନ୍ତି ଆମେରିକା ରାଷ୍ଟ୍ରପତି ଜର୍ଜ ଡବ୍ଲୁ ବୁଶ୍ । ନିଜ ଦେଶର ପ୍ରଭୁତ୍ୱକୁ ସର୍ବତ୍ର ଜାହିର କରିବାକୁ ଯାଇ ନିଜ ଦେଶର ବହୁରାଷ୍ଟ୍ରୀୟ କଂପାନୀମାନଙ୍କର ପ୍ରବେଶକୁ ଅନ୍ୟ ବିକାଶଶୀଳ ଓ ଗରିବ ଦେଶମାନଙ୍କରେ ସହଜ କରିବାକୁ ବିଭିନ୍ନ ଦେଶ ଗସ୍ତ କରନ୍ତି । ସାଥିରେ ନେଇଥାନ୍ତି ବାଣିଜ୍ୟ-ସାମ୍ରାଜ୍ୟବାଦୀ ଅସ୍ତ୍ରକୁ । ୨୦୦୬ ଫେବୃଆରୀ ୧ ତାରିଖ ଦିନ ସେ ଭାରତରେ ପହଞ୍ଚିଲେ ନିଜ ଦେଶର ସେନାଙ୍କ ନିରାପତ୍ତା ବଳୟରେ । ସମଗ୍ର ଦିଲ୍ଲୀ ସହର ଏକ ମାସ ପୂର୍ବରୁ ଆମେରିକା ଗୁଇନ୍ଦା ବିଭାଗ ଅଧିନରେ ସ୍କେନିଙ୍ଗ୍ ହେଉଥିଲା । ପ୍ରତିଦିନ ଆମ ଦେଶର ଖବରକାଗଜ, ଗଣମାଧ୍ୟମରେ ବାଦଶାହଙ୍କ ରହଣି, ଖାଦ୍ୟ, ଗସ୍ତ କାର୍ଯ୍ୟକ୍ରମ, ତାଙ୍କରି ଗାଡି, ଫୋନ, ସାଥିରେ ଆସୁଥିବା କୁକୁରମାନଙ୍କ ସଂକ୍ରାନ୍ତରେ ଖବର ପ୍ରଚାରିତ ହେଉଥାଏ ସତେ ଯେପରିକି ଭାରତର ଜନସାଧାରଣଙ୍କ ଭାଗ୍ୟ ବିଧାତା ହୋଇ ସେ ଆସୁଛନ୍ତି । ଏପରିକି ତାଙ୍କ ନିରାପତ୍ତା ଅନୁସନ୍ଧାନ ପାଇଁ ନିୟୋଜିତ କୁକୁରମାନେ ମଧ୍ୟ ସେ ରହିବା ହୋଟେଲର ବଖରା ସଂରକ୍ଷିତ ହୋଇଥିଲା । ତାଙ୍କ କୁକୁରମାନଙ୍କୁ କୁକୁର ବୋଲି ସମ୍ବୋଧନ ନ କରିବା ପାଇଁ ଆମେରିକାରୁ ନିର୍ଦ୍ଦେଶ ଆସିଥିଲା । ବିଭିନ୍ନ ନାମ କମାଣ୍ଡର, କର୍ଣ୍ଣେଲ ଇତ୍ୟାଦି ନାମରେ ହିଁ ସଂବାଦ ପରିବେଷଣ କରିବା ପାଇଁ କୁହାଯାଇଥିଲା ।

Digitized by srujanika@gmail.com

ଭାରତ ସରକାର ଆମେରିକା ରାଷ୍ଟ୍ରପତିଙ୍କ ଆଜ୍ଞାଧୀନ କର୍ମଚାରୀ ରୂପେ ଆଣବିକ ଚୁକ୍ତିପତ୍ର ସ୍ୱାକ୍ଷର କରିବା ପାଇଁ ପ୍ରସ୍ତୁତ କରି ରଖିଥିଲେ । ବାଦଶାହୀ ଢ଼ଙ୍ଗରେ ବୁଶ୍ ଭାରତଗସ୍ତ କରି ଚାଲିଗଲେ । ଇରାକ୍ ଆକ୍ରମଣ ପରେ ଇରାନକୁ ଧ୍ୱଂସ କରିବାକୁ ଷଡ଼ଯନ୍ତ୍ର କରୁଥିବା ବିଶ୍ୱର ବଡ଼ ସନ୍ତ୍ରାସବାଦୀ ବୁଶ୍‌ଙ୍କ ବିରୋଧରେ ଆମ ଦେଶରେ ଜନ ପ୍ରତିବାଦ ପ୍ରଭାବଶାଳୀ ଥିଲା । କିନ୍ତୁ କେନ୍ଦ୍ର ସରକାର ଓ ମୁଖ୍ୟ ବିରୋଧୀଦଳ ଭାରତୀୟ ଜନତା ପାର୍ଟି ବୁଶ୍‌ଙ୍କ ଆଗମନକୁ ସ୍ୱାଗତ କରି କିଏ କେତେ ପାଖର ହେବ ସେଥିପାଇଁ ପ୍ରତିଯୋଗିତା ଚାଲିଥିଲା । ଇରାନ୍ ବିରୋଧରେ ଭାରତ ସରକାର ଆମେରିକା ସପକ୍ଷରେ ଭୋଟ ଦେବା ପରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ଓ ଭାରତୀୟ ଜନତା ପାର୍ଟି କଂଗ୍ରେସ ସରକାରଙ୍କୁ ସମର୍ଥନ ଦେଲେ । ବୁଶ୍‌ଙ୍କ ବିରୋଧରେ ଜନ ପ୍ରତିବାଦକୁ ବିଜେପି ସମାଲୋଚନା କଲା । ଏଥିରୁ ଜାଣିହେଉଛି ଭାରତୀୟ ରାଜନୀତିରେ ମାର୍କିନ୍ ପ୍ରଶାସନର ହାତ କେତେ ଦୂର ପର୍ଯ୍ୟନ୍ତ ଲମ୍ବିଲାଣି । ବାଦଶାହ ଆସି ଚାଲିଗଲା ପରେ ଆମ ଦେଶର କୃଷି ଓ ଶିଳ୍ପରେ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ପ୍ରବେଶ ସୁଗମ ହୋଇପାରିଛି । ଆଣବିକ ଚୁକ୍ତି ସହ ଜ୍ଞାନ ଓ ଗବେଷଣା ନାମରେ ଆଉ ଏକ ଚୁକ୍ତି ହୋଇଛି ଯାହାଦ୍ୱାରା ଆମ ଦେଶର କୃଷିକୁ କଂପାନୀକରଣ କରାଯିବ । ଏହି ଦୁଇଚୁକ୍ତି ଆମ ଦେଶର ସ୍ୱାଧୀନତା ଓ ସାର୍ବଭୌମତ୍ୱ ପ୍ରତି ବିପଦ ହୋଇ ରହିବ ।



Digitized by srujanika@gmail.com

# ଜଗତୀକରଣ ବଜାରରେ ମାଟିର ମଣିଷ

ମାଟି ସହିତ ମାଟିର ମଣିଷର ଯେଉଁ ସମ୍ପର୍କ ରହିଛି ଏବଂ ଜଙ୍ଗଲ ଓ ମାଟି ସହିତ ପରିବେଶର ଯେଉଁ ସଂପର୍କ ରହିଛି, ସେହି ପ୍ରାକୃତିକ ସମ୍ପଦ ଉପରେ ସାଧାରଣ ଲୋକଙ୍କର ଅଧିକାର ଅଛି କି ନାହିଁ ? ଯଦି ଅଛି, ତାହାହେଲେ ସେ ଅଧିକାରକୁ ସୁରକ୍ଷା କରିବା ପାଇଁ ସରକାରମାନେ ଦାୟିତ୍ୱ ନେଇଛନ୍ତି ନା ଏ ଅଧିକାରରୁ ବଞ୍ଚିତ କରିବାପାଇଁ ଚାହୁଁଛନ୍ତି ? ଆଦିବାସୀ ହେଉ ବା ଚାଷୀ ହେଉ ଏମାନଙ୍କର ଅଧିକାର ଅଛି ଜଙ୍ଗଲ ସହିତ, ଚାଷ ଜମି ସହିତ । ସେହିମାନଙ୍କର ଅଧିକାରକୁ ଛଡ଼େଇ ନେବାର ପ୍ରକ୍ରିୟା ଚାଲିଛି, ନା ସେହିମାନଙ୍କ ଅଧିକାରକୁ ଆହୁରି ସୁରକ୍ଷିତ କରିବା ପାଇଁ ? ବିଭିନ୍ନ ଦଳ ସରକାରରେ ଅଛନ୍ତି, ରାଜ୍ୟରେ ଅଛନ୍ତି, କେନ୍ଦ୍ରରେ ମଧ୍ୟ ଅଛନ୍ତି । ସେହିମାନଙ୍କ ଦାୟିତ୍ୱ କଣ ? ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଯଦି ଆମେ ନଭାବି ଯେତେ ସଂଘର୍ଷ କଲେ ମଧ୍ୟ ଆମେ ପ୍ରକୃତରେ କାହାପାଇଁ ସଂଘର୍ଷ କରିବୁ ଓ କେଉଁଥିପାଇଁ ସଂଘର୍ଷ କରିବୁ । ତାର ମାନେ କିଛି ରହିବ ନାହିଁ । ପ୍ରକୃତରେ ଶତ୍ରୁକୁ ଆମେ ଚିହ୍ନଟ କରିବାକୁ ହେବ । ତେବେ ଏ ଶତ୍ରୁକୁ ବ୍ୟକ୍ତି ରୂପେ ଖୋଜିବା ବଦଳରେ ଆଦର୍ଶଗତ ବିଚାର ଦୃଷ୍ଟିରୁ କିଏ ବର୍ତ୍ତମାନ ଆମକୁ କୁଆଡ଼କୁ ନେଉଛି, ଚିନ୍ତା କରିବା ଏକାନ୍ତ ଜରୁରୀ । ବର୍ତ୍ତମାନ ଏକବିଂଶ ଶତାବ୍ଦୀ ମୋହରେ ସାରା ପୃଥିବୀ ନାଚିବାରେ ଲାଗିଛି । ଆମେ ଭାରତୀୟମାନଙ୍କ ପାଇଁ ନୂତନ ଶତାବ୍ଦୀ ୨୦୦୧ରେ ଆସିବା ପୂର୍ବରୁ ଜଗତୀକରଣ ପୃଷ୍ଠପୋଷକମାନଙ୍କ ପାଇଁ ଏକ ବର୍ଷ ପୂର୍ବରୁ ଆସିଥିଲା । କେବଳ ମିଳିଯିବା ନାମରେ ବେପାର ନାହିଁ । ଆମ ଭାରତୀୟମାନଙ୍କ ପାଇଁ ୨୦୦୧ ଆସିଲେ ନୂତନ ଶତାବ୍ଦୀ ଆସିବ, କିନ୍ତୁ ଏଭଳି ଏକ ଜଗତୀକରଣ ବିଶ୍ୱର ଯେଉଁମାନେ ନିୟନ୍ତକ, ଆଜି ସେମାନେ ବଟନଚିପି କହୁଛନ୍ତି ଆମେ ପୃଥିବୀକୁ ଦେଖିପାରୁଛୁ । ସାମାଜିକ, ଆର୍ଥିକ ଓ ନୈତିକ ମୂଲ୍ୟବୋଧକୁ ନେଇ ନାହିଁ, କେବଳ ବ୍ୟାବସାୟିକ ଢ଼ାଞ୍ଚା, ବ୍ୟାବସାୟିକ ଲାଭକୁ ନେଇକରି ଆଜି ବିଶ୍ୱବାସୀଙ୍କୁ ଏକ ବୋଲି କହି ଜଗତୀକରଣର ପ୍ରଚାର ଚାଲିଛି । ପୃଥିବୀର ଗରିବ ରାଷ୍ଟ୍ରମାନଙ୍କର ଗରିବ ଲୋକ ମାନଙ୍କର ଜୀବିକାର ଉତ୍ସ ଯେଉଁ ପ୍ରାକୃତିକ ସମ୍ବଳ ରହିଛି : ନଦୀ, ଝରଣା, ଚାଷଜମି ଏବଂ ଜଙ୍ଗଲ ଏବଂ ମାଟି ତଳେଥିବା ଜିଆ । ଏ ସମସ୍ତ ସମ୍ପତ୍ତିକୁ ଧନୀରାଷ୍ଟ୍ରମାନେ

Digitized by srujanika@gmail.com

ସେମାନଙ୍କ ବ୍ୟାବସାୟିକ ଲାଭପାଇଁ, ସେମାନଙ୍କର ସମସ୍ତ ଉପଭୋଗ ପାଇଁ ଏକ ଜାଲ ବିଛାଇ ସାରିଲେଣି । ସେଥିରେ ଛନ୍ଦି ହେଲେଣି ଭାରତ ପରି ଦେଶମାନଙ୍କର ମଧ ପ୍ରତିଷ୍ଠିତ ଲୋକମାନେ, ଯେଉଁମାନେ ଶାସକ ଶ୍ରେଣୀ ଭକ୍ତ ସାଜିଲେଣି । ଶାସକ ଶ୍ରେଣୀ ଅର୍ଥ ଯେଉଁମାନେ କେବଳ ଧନ ଓ ରାଜନୀତି ବଳରେ ସମାଜକୁ ନିୟନ୍ତ୍ରଣ କରିବାର କ୍ଷମତା ହାସଲ କରିସାରିଲେଣି, ସେମାଙ୍କ ସମେତ ପ୍ରଶାସନିକ ଅଫିସର କିମ୍ବା ବଡ଼ ବଡ଼ ମିଲ୍ର ମାଲିକ ହୋଇପାରନ୍ତି । ଦଳମତ ନିର୍ବିଶେଷରେ ଯେଉଁମାନେ କେବଳ କ୍ଷମତାକୁ ନେଇ ସମ୍ପତ୍ତି ଅର୍ଜନ କରିଛନ୍ତି, କ୍ଷମତାରେ ଅଛନ୍ତି ଓ କ୍ଷମତାକୁ ଆସିବା ପାଇଁ ପ୍ରତିଯୋଗିତା କରୁଛନ୍ତି ସେହିମାନେ ମଧ । ଏଭଳି ସଂଖ୍ୟା ଯଦି ଆମେ ଗଣନା କରିବା ତାହାହେଲେ ଭାରତବର୍ଷରେ ଶତକଡ଼ା ୨ ରୁ ଅଧିକ ହେବେନାହିଁ, କିନ୍ତୁ ଏହିମାନେ ସେମାନଙ୍କ ଜାଲରେ ପଡ଼ିଛନ୍ତି ଏବଂ ଆମ୍ଭମାନଙ୍କୁ ମଧ ସେ ଭିତରକୁ ଟାଣିବାକୁ ଚାହୁଁଛନ୍ତି । ଆମେ ସେ ଭିତରେ ନ ପଶିବା ପାଇଁ ଚାହିଁଲେ ମଧ କୌଣସି ଆଳରେ ସେ ଜାଲରେ ଫସିବାକୁ ଯାଉଛେ ଏବଂ ତାର ପରିଣାମ ସ୍ୱରୂପ ଆଜି ଜଙ୍ଗଲ ଉପରେ ଅଧିକାରକୁ ଆଦିବାସୀମାନଙ୍କ ଠାରୁ ଛଡ଼େଇ ନିଆଯାଉଛି । ଚିଲିକା ଉପରେ ମତ୍ସ୍ୟଜୀବୀମାନଙ୍କ ଯେଉଁ ଅଧିକାର, ତାଠୁ ଛଡ଼େଇ ନିଆ ଯାଉଛି । ଚାଷ ଜମି ଉପରେ ସାଧାରଣ ଚାଷୀର ଅଧିକାରକୁ ମଧ ଆସ୍ତେ ଆସ୍ତେ ଛଡ଼େଇ ନିଆଯାଉଛି । ଗୋପାଳପୁର ଅଞ୍ଚଳର ପଚିଶ ହଜାର ଲୋକଙ୍କୁ ବଞ୍ଚିବାର ରାସ୍ତାରୁ ହଟେଇ ଟାଟା କଂପାନୀ ହେବାର ଯେଉଁ ଯୋଜନା ଥିଲା, ଏହାର ଏକ ପ୍ରକୃଷ୍ଟ ଉଦାହରଣ । ଏ ଯୋଜନା ସାଧାରଣ ଲୋକଙ୍କ ପାଇଁ ନୁହଁ, ଏହି ଯୋଜନା ସେମାନଙ୍କ ପାଇଁ ଯେଉଁମାନେ ପୃଥିବୀକୁ ନିୟନ୍ତ୍ରଣ କରିବାକୁ ଚାହାଁନ୍ତି । ଯେଉଁମାନେ ନୀତି ତିଆରି କରୁଛନ୍ତି ୱାଶିଂଟନ, ଲଣ୍ଡନ, ଜର୍ମାନୀରେ, ସେମାନେ ଭାରତବର୍ଷରେ ମଧ ନୀତି ନିର୍ଦ୍ଧାରଣ କରୁଛନ୍ତି । ଏ ଅବସ୍ଥା ଆସିଗଲାଣି, ଏବଂ ଯାହା ଟିକିଏ ଟିକିଏ ହେଉଥିଲା, ତାହା ଦଶବର୍ଷ ହେଲାଣି ଭାରତବର୍ଷର ନୀତି ହୋଇଗଲା । ଆର୍ଥିକ ନୀତି, ବ୍ୟାବସାୟୀକ ନୀତି ନିର୍ଦ୍ଧାରଣରେ ଆମର କୌଣସି ଅଧିକାର ନାହିଁ । ଆମର କୌଣସି କହିବା ଅଧିକାର ରହିବ ନାହିଁ । ସେମାନେ ଯାହା ଚାହିଁବେ, ଆମେ ତାହା କରିବୁ । ସେମାନଙ୍କ ତିଆରି ଜିନିଷର ବଜାର ପାଇଁ ଯାହା ଦରକାର ଆମ ବଜାର ମଧ ସେହି ଅନୁସାରେ ନିୟନ୍ତ୍ରିତ ହେବ । ଭାରତ ବର୍ଷର ଚାଷୀଙ୍କ ସମ୍ପର୍କରେ ଯଦି କୁହାଯାଏ କୌଣସି ଡ୍ୟାମ ହୋଇଛି କିନ୍ତୁ ଚାଷୀ ପାଖରେ ପାଣି ପହଞ୍ଚି ପାରୁନି । କାହାପାଇଁ ବିଦ୍ୟୁତ ତିଆରି ହେଉଛି ? କାରଖାନାକୁ ଯିବ, ଚାଷୀ ପାଇଁ ନୁହଁ । ଓଡ଼ିଶାରେ ଯେତେ ଜଳଭଣ୍ଡାର ଯୋଜନା ହୋଇଛି ଚାଷୀ

Digitized by srujanika@gmail.com

ନାଁରେ ହୋଉଛି । କିନ୍ତୁ ଚାଷୀକୁ ପାଣି ଦିଆଯାଉନି । ଆଗ ବଡ଼ ବଡ଼ କଳକାରଖାନାମାନଙ୍କୁ ବିଦ୍ୟୁତ ଦିଆଯାଉଛି । ଆଜି ରେଙ୍ଗାଲି ହେଉ କି କୋଲାବ ହେଉ, ହଜାର ହଜାର କୋଟି ଟଙ୍କା ବିଶ୍ୱ ବ୍ୟାଙ୍କରୁ ଋଣ ଆଣିବୁ ଚାଷୀ ନାଁରେ । କିନ୍ତୁ ଆଗଚାଷୀ ସୁବିଧା ନପାଇ, ସୁବିଧା ପାଉଛି ଇଣ୍ଡଷ୍ଟ୍ରି । ଏଇ ଇଣ୍ଡଷ୍ଟ୍ରି ସବୁ କୋଟି କୋଟି ଟଙ୍କା ବାକି ରଖୁଛନ୍ତି, ତାକୁ ଛାଡ଼ କରୁଛୁ ପୁଣି, ଏଠିଚାଲିଛି ଏକ ତନ୍ତ୍ର । ଏ ତନ୍ତ୍ରର ନିୟନ୍ତ୍ରକ ବିଶ୍ୱ ବ୍ୟାଙ୍କ୍ ଓ ବିଶ୍ୱ ବ୍ୟାଙ୍କର ମାଲିକ ହେଉଛନ୍ତି ଆମେରିକାର ରାଷ୍ଟ୍ରପତି ଓ ତାଙ୍କ ସହଯୋଗୀମାନେ । ପୃଥିବୀକୁ ନିୟନ୍ତ୍ରଣ କରୁଛନ୍ତି ସେଇମାନେ ।

ଆମେ ପ୍ରକୃତ କଥା ନବୁଝି ଚାକଚକ୍ୟରେ ଭାସି ଯାଇଛେ । ଏ ହେଉଛି ଜାତିସଂଘ ତରଫରୁ ପୃଥିବୀର ଆର୍ଥିକ, ସାମାଜିକ ଉପରେ ଏକ ମାନବିକ ସମ୍ବଳ ବିକାଶ ରିପୋର୍ଟ ତିଆରି ହେଉଛି ପ୍ରତିବର୍ଷ । ୧୯୯୯ର ଜାତିସଂଘର ଏକ ରିପୋର୍ଟ ଅନୁଯାୟୀ ପୃଥିବୀର ବିଶେଷଜ୍ଞମାନେ ଯେଉଁମାନେ ଆମେରିକାର ଦୃଢ଼ ସମର୍ଥକ ହୋଇମଧ ରିପୋର୍ଟରେ କେତୋଟି ସତକଥା ଲେଖିବାକୁ ବାଧ ହୋଇଛନ୍ତି ଏବଂ ରିପୋର୍ଟ ଅନୁସାରେ ପୃଥିବୀର ଲୋକସଂଖ୍ୟାର ୨୦ ଭାଗ ଲୋକ ସର୍ବୋଚ୍ଚ ଧନୀ ଶ୍ରେଣୀର ଅନ୍ତର୍ଭୁକ୍ତ । ବିଶେଷକରି ଆମେରିକା, ଲଣ୍ଡନ ପରି ଧନୀ ଦେଶମାନଙ୍କର ଏହି ଶ୍ରେଣୀର ୨୦ ଭାଗ ଲୋକ ସମଗ୍ର ବିଶ୍ୱର ଆୟର ୮୬ ପ୍ରତିଶତ ଏହିମାନଙ୍କ ପାଖକୁ ଯାଉଛି । ମଧବିତ୍ତ ୬୦ ଭାଗ ଲୋକ ସର୍ବୋଚ୍ଚ ଆୟର ୧୩ ପ୍ରତିଶତ ନେଉଛନ୍ତି ଏବଂ ସର୍ବନିମ୍ନ ୨୦ ଭାଗ ମଧରେ ଥିବା ଦରିଦ୍ରତମ ବିଶ୍ୱବାସୀ ସେମାନେ ପାଉଛନ୍ତି ମାତ୍ର ୧ ଭାଗ । ଏମାନଙ୍କ ମଧରୁ ଭାରତ ପରି ବିକାଶଶୀଳ ଓ ଦରିଦ୍ରତମ ଦେଶବାସୀ ଅଛନ୍ତି । ଆମେ ଓଡ଼ିଶାବାସୀ ଏହି ଦରିଦ୍ରତମ ତାଲିକାର ଅନ୍ତର୍ଭୁକ୍ତ । ବିଶ୍ୱର ବ୍ୟବସାୟ କ୍ଷେତ୍ରରେ ଉକ୍ତ ସର୍ବୋଚ୍ଚ ୨୦ ଭାଗ ଲୋକ ୮୨ ପ୍ରତିଶତ ଅଂଶୀଦାର ଏବଂ ମଧବିତ୍ତ ୬୦ ଭାଗ ଲୋକଙ୍କ ୧୭ ପ୍ରତିଶତ ଥିବାବେଳେ ଶେଷ ୨୦ ଭାଗ ଦରିଦ୍ରତମ ଲୋକଙ୍କ ବ୍ୟବସାୟ ବିଶ୍ୱର ମାତ୍ର ୧ ଭାଗ । ବିଶ୍ୱର ବର୍ତ୍ତମାନର କମ୍ପ୍ୟୁଟର ଯୁଗରେ ବୈଷୟିକ କୌଶଳକୁ ପୃଥିବୀର ସେହି ପ୍ରଥମ ଧନୀକ ଶ୍ରେଣୀ ୨୦ ପ୍ରତିଶତ ଲୋକେ ୯୨.୫ ପ୍ରତିଶତ ଉପଭୋଗ କରୁଥିବାବେଳେ ମଧବିତ୍ତ ୬୦ ପ୍ରତିଶତ ଲୋକ ୭.୫ ପ୍ରତିଶତ ଓ ଦରିଦ୍ରତମ ୨୦ ଭାଗ ଲୋକ ୦.୨ ପ୍ରତିଶତ ବ୍ୟବହାର କରୁଛନ୍ତି । ଏପରି ଏକ ସ୍ଥିତିରେ ବିଶ୍ୱର ଅସମାନତାର ମାନ ଚିତ୍ରରେ ତିନିଚତୁର୍ଥାଂଶ ଲୋକ କେଉଁଠି ଅଛନ୍ତି, ତାହା ଆମେ ଅନୁଭବ କରିପାରୁଛେ । ଏହାସତ୍ତ୍ୱେ ଯେଉଁମାନେ ଟିଭି, ରେଡ଼ିଓ, ଖବରକାଗଜ ମାଧ୍ୟମରେ ଆମକୁ ବାରମ୍ବାର ନୀତିବାଣୀ ଶୁଣାଉଛନ୍ତି ଯେ ବିନା ବିଶ୍ୱକରଣରେ ଆମେ ଚଳିପାରିବା ନାହିଁ । ଆମକୁ

Digitized by srujanika@gmail.com

ଆମେରିକା ସହିତ ତାଳଦେଇ ଚାଲିବାକୁ ହେବ । ଏପରି କହିବା ମୂଳରେ ରହିଛି ଆମପରି ଗରିବ ଲୋକଙ୍କୁ ବୋକା ବନାଇବା । ଆମକୁ କୁହାଯାଇଛି ଯେ ବିଦେଶୀ କମ୍ପାନୀ ନ ଆସିଲେ ଆମର ବିକାଶ ହେବନାହିଁ । ଉଦାହରଣ ହେଲା, ଆମ ଦେଶରେ ଗୋଟିଏ କିମ୍ବା ୨ ପ୍ରକାର ସାବୁନ ହେଲେ ଚଳିବ ନାହିଁ । ଏଥିପାଇଁ ୧୦୦ ପ୍ରକାରର ସାବୁନର ଆବଶ୍ୟକତା ରହିଛି ବୋଲି କୁହାଯାଉଛି । ଟାଟା କଂପାନୀ ଜରିଆରେ କିମ୍ବା ଆଲୁମିନା କମ୍ପାନୀ ଜରିଆରେ ଚାଷୀ ଓ ଆଦିବାସୀଙ୍କ ଜମି, ଜଳ ଓ ଜଙ୍ଗଲକୁ ମରୁଭୂମି ନକଲେ ବିକାଶ ଅସମ୍ଭବ ବୋଲି କହୁଛନ୍ତି । ପ୍ରତିଯୋଗିତା ଅନିବାର୍ଯ୍ୟ ବୋଲି ବାରମ୍ବାର କୁହାଯାଉଛି । ଏସବୁ କେବଳ ସାହୁକାରମାନଙ୍କ ନିର୍ଦ୍ଦେଶିତ ଅବୋଲକରା କାହାଣୀ । ସେମାନେ ଆସିବେ, ଆମ ବଜାରକୁ ଅକ୍ତିଆର କରିବେ । ଶୋଷଣ କରି ମୁନାଫା ନେଇ ପୁଣି ସେମାନଙ୍କ ଦେଶକୁ ଚାଲିଯିବେ ।

## ଖାଦ୍ୟ ସଂକଟ

ଆମ ଚାଷୀପାଖରେ ହଜାର ହଜାର କିସମର ଧାନ, ଗହମ ରହି ଆସିଥିଲା, କିନ୍ତୁ ବର୍ତ୍ତମାନ ସେହି ଧନୀ ଦେଶମାନଙ୍କର ଚାପରେ ଆମର ୧୯୭୦ର ପେଟେଣ୍ଟ ଆଇନ ବଦଳାଇ ଦେଲୁ ଯାହା ଫଳରେ କ୍ରମଶଃ ଆମ ବିହନ ଉପରେ ଆମଚାଷୀଙ୍କ ଅଧିକାର ରହିବ ନାହିଁ । ବିଦେଶୀ କମ୍ପାନୀମାନେ ନୂଆ ଉଦ୍ଭାବନ ନାମରେ ଏପରିକି ନୂଆ ପ୍ୟାକିଙ୍ଗ କରି ମଧ ଆମ ବଜାରରେ ଆମେ ଉତ୍ପାଦିତ ଜିନିଷକୁ ବିକ୍ରି କରାଇ ଦେବେ ନାହିଁ । ବାସୁମତୀଚାଉଳକୁ ଚୋରିକରି ନେଇ ଆମେରିକା ଟେକ୍ସୋମତୀ ନାଁ ଦେଇ ସାରିଲାଣି । ସମୟ ଆସିବ ପେଟେଣ୍ଟ ଆଇନର ଆଳରେ ଆମଚାଷୀଙ୍କ ଚାଉଳ ବଜାରରେ ବିକ୍ରି କରିବାକୁ ହେଲେ ସେହି ବିଦେଶୀ କମ୍ପାନୀମାନଙ୍କୁ ପଇସା ଦେଇ ଅନୁମତି ଆଣିବାକୁ ପଡ଼ିବ । ସମୟ ଆସିବ, ଉତ୍ପାଦନ କରିବାର ଅଧିକାର ମଧ ରହିବ ନାହିଁ । ଯଦି ଆମଚାଷୀ ସେମାନଙ୍କ ପେଟେଣ୍ଟଭୁକ୍ତ ବିହନ ବ୍ୟବହାର ନକରି ନିଜ ବିହନ ବ୍ୟବହାର କରି ଉତ୍ପାଦନ କରେ, ତାହାହେଲେ ଆମ ଜମି, ଆମ ଜଳବାୟୁ ଆମ ବିହନର ଅଧିକାରୀ ଆମଚାଷୀମାନଙ୍କ ଉପରେ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଅଭିଯୋଗ ଆଣି ବିଚାରାଳୟରେ ଦଣ୍ଡ ଦେଇପାରିବେ । ଏପରି ସ୍ୱଦେଶୀ ତଥା ସ୍ୱାଧୀନତା ସାର୍ବଭୌମତ୍ୱର ଶତ୍ରୁ ରୂପେ ପରିଚିତ ପେଟେଣ୍ଟ ଆଇନକୁ ଆମ ସଂସଦରେ ଗୃହୀତ କରାଇଲେ ତଥାକଥିତ ସ୍ୱଦେଶୀର ଡ଼ିଣ୍ଡିମ ପିଟି ଆସିଥିବା ବର୍ତ୍ତମାନର ବିଜେପି ସରକାର । ଯେଉଁ ବିଜେପି ଏକଦା ମୁଖ୍ୟ ବିରୋଧୀଦଳ ରୂପେ ରହି କଂଗ୍ରେସ ଶାସନରେ ଏହି ପେଟେଣ୍ଟ ବିଲ୍‌କୁ ବିରୋଧ କରି ଗୃହୀତ କରାଇ ଦେଇନଥିଲା,

Digitized by srujanika@gmail.com

ଆଜି ସେ କ୍ଷମତାରେ ରହି କଂଗ୍ରେସ ସାହାଯ୍ୟରେ ବିଲ୍‌କୁ ଗୃହୀତ କରାଇବା ପଛରେ ବିଦେଶୀ କମ୍ପାନୀମାନଙ୍କ ଶକ୍ତି କେତେଦୂର ଆମ ଦେଶର ପ୍ରଶାସନ ଓ ରାଜନୀତିରେ ଦଖଲ ଅଛି ଏଥିରୁ ସ୍ପଷ୍ଟ ବାରି ହେଉଛି । ଯେତେବେଳେ ଆମ ଗରିବ ଲୋକମାନଙ୍କର ବେକ ଉପରେ କୁରାଢ଼ି ପଡୁଛି, ସେତିକିବେଳେ ବହୁରାଷ୍ଟ୍ରୀୟ କମ୍ପାନି ଓ ଆମ ଦେଶର ଶାସକ ଶ୍ରେଣୀ ଏକ ଷଡ଼ଯନ୍ତ୍ରରେ ଆବଦ୍ଧ ହୋଇ ଗରିବ ଲୋକଙ୍କୁ ବଞ୍ଚିବାର ଅଧିକାରରୁ ବଞ୍ଚିତ କରାଇବାରେ ବ୍ୟସ୍ତ । ଏଇଥିପାଇଁ ଆମଚାଷୀଙ୍କ ପରମ୍ପରାଗତଚାଷକୁ ଖତମ କରି ବିଦେଶୀ କମ୍ପାନୀଙ୍କ ବ୍ୟାପାର ପାଇଁ ନୂଆ ଯାନ୍ତ୍ରିକ ପ୍ରଯୋଜନ ପ୍ରଯୁକ୍ତିବିଦ୍ୟାକୁ ନେଇ ଆସିଥିବା ଜି.ଏମ୍. ସୋୟାବିନ୍ ଚାଷ କରିବା ପାଇଁ କୁହାଗଲାଣି । ପ୍ରଥମତଃ ଏହା ସ୍ୱାସ୍ଥ୍ୟପକ୍ଷେ ହାନିକାରକ । ଏହାକୁ ୟୁରୋପ୍ ବଜାର ପ୍ରତ୍ୟାଖ୍ୟାନ (ବ୍ୟାନ୍) କରିସାରିଛି । ପୁଣି ସୋୟାବିନଚାଷ ଫଳରେ ଆମ ଦେଶର ସୋରିଷ, ରାଶି ଓ ଚିନାବାଦାମ୍ ପରି ତୈଳବୀଜ ଉତ୍ପାଦନ କମିବାରେ ଲାଗିବ । ଶେଷରେ ଆନ୍ଧ୍ରରେ କପାଚାଷୀ ଶହ ଶହ ସଂଖ୍ୟାରେ ଯେପରି ଆତ୍ମହତ୍ୟା କଲେ, ସୋୟାବିନ୍ ଚାଷରେ ତାହା ବହୁଗୁଣରେ ପ୍ରତିଫଳିତ ହେବ । ମହାବାତ୍ୟାପରେ ଆମ ଓଡ଼ିଶାରଚାଷୀଙ୍କୁ ପ୍ରଲୋଭିତ କରିବାପାଇଁ ବିଦେଶୀ ବିହନ କମ୍ପାନୀମାନଙ୍କ ଦଲାଲମାନେ ଲାଗି ପଡ଼ିଲେଣି । ଯେକୌଣସି ପ୍ରାକୃତିକ ବିପର୍ଯ୍ୟୟ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ପାଇଁ ଅପୂର୍ବ ସୁଯୋଗ । ଅଭାବ ଓ ଦାରିଦ୍ର୍ୟର ଫାଇଦା ସେମାନେ ନେଇଥାନ୍ତି । ଏହାର ପରିଣତି ଏପରି ହେବ, ଯେତେବେଳେ ଆମଚାଷୀଙ୍କ ପାଖରେ ଦେଶୀ ବିହନ ନଥିବ । ଏବଂ ଆମ ଖାଦ୍ୟ ଉତ୍ପାଦନ ନିୟନ୍ତ୍ରିତ ହେବ ବିଦେଶୀ କମ୍ପାନୀଙ୍କ ମୁନାଫାକୁ ନେଇ । ଏହାଫଳରେ ଖାଦ୍ୟ ସଙ୍କଟ ଓ ବେରୋଜଗାର ଆହୁରି ଅନିବାର୍ଯ୍ୟ ହୋଇପଡ଼ିବ । ଗତବର୍ଷ ଆନ୍ଧ୍ରର କପା ଚାଷୀଙ୍କୁ ଆମ କେନ୍ଦ୍ର ସରକାର ବୈଜ୍ଞାନିକ ଓ କୃଷି ବିଶାରଦମାନେ ରକ୍ଷା କରି ପାରିଲେ ନାହିଁ । ଯେହେତୁ, ସେହି କପା ମଞ୍ଜି ବିଦେଶୀ କମ୍ପାନୀ ଦ୍ୱାରା ଚାଷୀପାଖକୁ ଆସିଥିଲା ଏବଂ ତାହା ହତ୍ୟାକାରୀ ବୀଜ ରୂପେ ପରିଗଣିତ ହେଲା । ତଥାପି ଆମ ଦେଶର ଶାସକମାନଙ୍କ ଆଖି ଖୋଲୁନାହିଁ ଏବଂ ମନ୍‌ସେଣ୍ଟୋ ପରଚାଷୀହନ୍ତା ବିହନ କମ୍ପାନୀକୁ ଡ଼ାକି ଆଣିଛନ୍ତି, ଏହି କମ୍ପାନୀ ଆମ ମାଟି ଓ ପାଣିକୁ ନଷ୍ଟ କରିଦେବ । ଏହା କାହିଁକି ହେଉଛି ବୋଲି ପଚାରିଲେ ଉତ୍ତର ହେବ ବିଶ୍ୱକୁ ଯେଉଁମାନେ ସାମ୍ରାଜ୍ୟବାଦୀ ଶକ୍ତିମାନେ ନିୟନ୍ତ୍ରଣ କରିବାକୁଚାହୁଁଛନ୍ତି ସେମାନେ ଆମ ଦେଶର ଶାସକ, ପ୍ରଶାସକ ଓ କେତେକ ବୁଦ୍ଧିଜୀବୀଙ୍କୁ ବିଭିନ୍ନ ପ୍ରଲୋଭନ କୌଶଳ ପ୍ରୟୋଗ କରି ହାତରେ ରଖୁଛନ୍ତି । ୱାଶିଂଟନରୁ ଯେଉଁ ଫତୁଆ ଆସୁଛି ତାହା ଦିଲ୍ଲୀ ଓ ଭୁବନେଶ୍ୱରର ବାହାଦୁରମାନେ ମାନି ନେଉଛନ୍ତି । ତେଣୁ ଆମ

Digitized by srujanika@gmail.com

ଲୋକ ଚାହୁଁନଥିବା ଆଇନ ପ୍ରଣୟନ ହେଉଛି । ଯାହାଦ୍ୱାରା ଚାଷୀହାତରୁ ଜମି ଛଡ଼େଇ ନେବାର ବନ୍ଦୋବସ୍ତ ହୋଇଛି । ଜଙ୍ଗଲରୁ ଆଦିବାସୀକୁ ହଟାଇ ଦିଆଯାଉଛି ଏବଂ କମ୍ପାନୀମାନଙ୍କୁ ଆଣି ବୃକ୍ଷରୋପଣ କାର୍ଯ୍ୟ ମଧ୍ୟ ଦିଆଯାଉଛି, କିନ୍ତୁ ବୃକ୍ଷରୋପଣରେ ଶାଳଗଛ ଲଗା ଯାଉନାହିଁ । ଯେଉଁ ଗଛ ଇଣ୍ଡଷ୍ଟ୍ରିକୁ ଯିବ, ସେହି ଗଛ ଲଗାଯାଉଛି ତଥା ଆଗରୁ ଥିବା ଗଛ କଟାଯାଉଛି । ଆଜି ଯେଉଁକଥା ପୃଥିବୀର ବହୁ ବୈଜ୍ଞାନିକମାନେ କହିସାରିଲେଣି, କିନ୍ତୁ ଆମ ବିଶ୍ୱବିଦ୍ୟାଳୟର ବୁଦ୍ଧିଜୀବୀଭାବେ ଯେଉଁମାନେ ଅଛନ୍ତି ସେମାନେ ସାହସ କରୁନାହାନ୍ତି ତାହାକୁ କହିବାକୁ । ସେମାନେ ଭାବୁଛନ୍ତି ଏପରି ହୋଇ ନଥିବ । କାରଣ ଆମର ଖବର କାଗଜରେ ଯେଉଁମାନେ ଲେଖୁଛନ୍ତି, ସେମାନେ ବିଦେଶୀମାନଙ୍କ କଥାକୁ ସମର୍ଥନ କରି ଲେଖୁଛନ୍ତି ତାର ବିକଳ୍ପ ନାହିଁ ହେବ ନାହିଁ । କିନ୍ତୁ ଆମେ ଆମର ନିଜସ୍ୱ ଚିନ୍ତାଧାରା ବିଚାରକୁ ଚାପି ଦେଇ ସେମାନଙ୍କର କଥାରେ ଆମେ ଚାଲୁଛେ । ଆଜି ସବୁଠୁ ବଡ଼ ବିପଦ ହେଉଛି ପୃଥିବୀ ପାଇଁ, ସାଧାରଣ ଗରିବ ଲୋକ ପାଇଁ ପରିବେଶ, ମାଟି ଜଙ୍ଗଲ, ଜମି ଓ ଜଳପାଇଁ, ବିନାଶକାରୀ ଟେକ୍‌ନୋଲୋଜି । ବୈଷୟିକଜ୍ଞାନ କୌଶଳକୁ ବ୍ୟବହାର କରି ଯେଉଁ ଯନ୍ତ୍ରପାତି ତିଆରି ହେଉଛି ତାହା ଆମକୁ ଖାଦ୍ୟ, ବସ୍ତ୍ର, ଜମି ଠାରୁ ବଞ୍ଚିତ କରିଦେଉଛି । ଆମେ ବିଜ୍ଞାନର ବିରୋଧୀ ନୋହୁଁ କିନ୍ତୁ ଆମେ ଏପରି ବିଜ୍ଞାନକୁ ଚାହୁଁ ଯେଉଁ ବିଜ୍ଞାନ ମଣିଷକୁ ମଣିଷ ଭାବରେ ତିଆରି କରିପାରେ । ମଣିଷକୁ ବଞ୍ଚିବା ପାଇଁ ତା' ପେଟକୁ ଦାନା କନା ଦେଇପାରେ, କିନ୍ତୁ ଆଜି ବିଜ୍ଞାନ ଜରିଆରେ ମାଟିକୁ ମରୁଭୂମି କରାଯାଉଛି । ଟେକେନୋଲୋଜି ନାଁରେ ପରିବେଶକୁ ଧ୍ୱଂସ କରାଯାଉଛି । ବର୍ତ୍ତମାନ ଓଡ଼ିଶାରେ ଘଟିଥିବା ମହାବାତ୍ୟାର ମୁଖ୍ୟ ଦାୟୀ ବର୍ତ୍ତମାନର ବିକାଶ ପ୍ରକ୍ରିୟା । ଯେଉଁଠି ଟେକନଲୋଜି ସର୍ବେସର୍ବା । ଗତ ୧୫ ବର୍ଷ ମଧ୍ୟରେ ଓଡ଼ିଶାରେ ୭ ଡ଼ିଗ୍ରୀ ଉତ୍ତାପ ବଢ଼ିଛି । ଏହାର କାରଣ ଆମେ ଜଙ୍ଗଲକୁ କାଟି ଦେଉଛୁ । ଭାରତର ମାନଚିତ୍ରରୁ ଜଣାଯାଉଛି, ଆସନ୍ତା ୫୦ ବର୍ଷ ଭିତରେ ଯେଉଁ ଉତ୍ତାପ ବଢ଼ିବ, ତାହା ସାମୁଦ୍ରିକ ଜୀବଜନ୍ତୁ ଓ ଜଙ୍ଗଲକୁ ସଂପୂର୍ଣ୍ଣ ଧ୍ୱଂସ କରିଦେବ । ଏହା ବୈଜ୍ଞାନିକମାନେ କହୁଛନ୍ତି ।

ଯେଉଁ ଯୁକ୍ତରାଷ୍ଟ୍ର ଆମେରିକା ସମସ୍ତ ପରିବେଶ ବିନାଶ ପାଇଁ ଦାୟୀ, ସେହି ଦେଶର ପରିବାର ପିଛା ଦୁଇ ଦୁଇଟା କାର୍ ରହିବ ଓ ଭୋଗବିଳାସ ପାଇଁ ପୃଥିବୀର ବିଭିନ୍ନ ସ୍ଥାନରେ ପ୍ରାକୃତିକ ସମ୍ପଳ ଓ ମାନବ ସମ୍ପଳକୁ ବ୍ୟବହାର କରିଚାଲିଛନ୍ତି । ଫଳରେ ପୃଥିବୀର ପ୍ରଦୂଷଣ ପାଇଁ ଆମେରିକା ବେଶୀ ଦାୟୀ ଏବଂ ଆମେରିକାର ଲାଭ ପାଇଁ ଅନ୍ୟ ଦେଶମାନଙ୍କରେ ମଣିଷ ଓ ପ୍ରକୃତି ବିରୋଧୀ ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟା ଜରିଆରେ ସମ୍ପଳକୁ ଖତମ୍ କରି ଦିଆଯାଉଛି ଏବଂ ପରିବେଶକୁ ପ୍ରଦୂଷିତ

Digitized by srujanika@gmail.com

କରାଯାଉଛି । ଆରେମିକାର ପୂର୍ବତନ ଉପରାଷ୍ଟ୍ରପତି ଅଲଗୋରେ ବହୁଦିନ ତଳୁ ଏକ ବହି ଲେଖିଛନ୍ତି, ସେହି ବହିର ନାଁ Balancing of the Earth ସେଥିରେ ସେ ଉଦ୍‌ବେଗ ପ୍ରକାଶ କରି ଲେଖିଛନ୍ତି ଯେ ମଣିଷ ପ୍ରଯୁକ୍ତି ବିଦ୍ୟାକୁ ଯେଭଳି ଭାବରେ ଅସଦ୍ ବ୍ୟବହାର କରିଚାଲିଛି. ତାହାଦ୍ୱାରା ପୃଥିବୀର ସ୍ଥିତି ଉପରେ ବିପଦ ସୃଷ୍ଟି ହେଲାଣି । ପ୍ରକୃତିରେ ଅସନ୍ତୁଳନ ମଣିଷ ସମାଜ ପାଇଁ ମଧ ଘୋର ସଙ୍କଟ ସୃଷ୍ଟି କରିବ । ତେଣୁ ମଣିଷକୁ ପୁନଃବିଚାର କରିବାକୁ ହେବ ତାର ପ୍ରକୃତି ସହିତ କିଭଳି ଭାବରେ ସମ୍ପର୍କ ରହିବ । ଏଥିରେ ସେ କହିବାକୁଚାହିଁଛନ୍ତି ଯେ ସମ୍ପଦକୁ ଶେଷ କରଚାଲିଥିବା ନୂଆ ନୂଆ ପ୍ରଯୁକ୍ତି ବିଦ୍ୟା ମାନବ ସମାଜର ବିକାଶର ସମାଧାନ ନୁହଁ । ଏକ ବିକଳ୍ପ ପ୍ରକ୍ରିୟା ପାଇଁ ସେ ଆହ୍ୱାନ କରିଛନ୍ତି । କାଲିକି ସେ ରାଷ୍ଟ୍ରପତି ହୋଇପାରନ୍ତି । ଆମେରିକାର ବର୍ତ୍ତମାନର ସମ୍ରାଜ୍ୟବାଦ ଚରିତ୍ରକୁ ସେ ମଧ ପରିପୁଷ୍ଟ କରିବେ, କିନ୍ତୁ ଆମେ ଆଜି ଏଠାରେଚିନ୍ତା କରିବା ସମୟ ଆସିଛି ଏବଂ ଆମ ବୁଦ୍ଧିଜୀବିମାନେ ଧନଶାଳୀ ବିଦେଶୀଙ୍କୁ ଯେପରି ଭାବରେ ଅନୁକରଣ କରି ଆସୁଛନ୍ତି, ସେମାନେ କ୍ଷଣିକ ପାଇଁଚିନ୍ତା କରିବା ଉଚିତ ସେହି ଆମେରିକାର ଆଲ୍‌ଗୋରେ ଯେତେବେଳେ ନିଜସ୍ୱ ଅନୁଭବ ବିଚାରକୁ ଜଣେ ମଣିଷ ଭାବରେ ଦେଖୁଛନ୍ତି, ସେ ସତଟିକୁ ପରିପ୍ରକାଶ କରିବା ପାଇଁ ଆଗେଇ ଆସିଛନ୍ତି । ତେଣୁ ଆମେ ଭାରତୀୟମାନେ ଆମ ପରିବେଶ, ଆମ ପ୍ରାକୃତିକ ସମ୍ପଦକୁ ସୁରକ୍ଷା କରି ଆମର କିପରି ଜୀବିକାର ସ୍ଥାୟିତ୍ୱ ରହିବ, ସେଥିପାଇଁ ଆମେ ସଚେତନ ହେବା ଦରକାର । ଗତ କିଛି ଦିନ ତଳେ ଆମେରିକାର ବାଣିଜ୍ୟ ବିଭାଗ ସେକ୍ରେଟେରୀ ଏକଚିଠି ଲେଖି ଆମ ଭାରତ ସ୍ୱତନ୍ତ୍ର ସଚିବଙ୍କୁ ଜଣାଇଦେଲେଯେ ଆଗାମୀ ମାର୍ଚ୍ଚ ୩୧ ତାରିଖ ମଧରେ ସାତ ଶହ ପନ୍ଦରଟି ଖାଉଟି ଦ୍ରବ୍ୟ ଉପରେ ଥିବା କଟକଣାକୁ ଉଠାଇ ଦିଆଯାଉ ଏବଂ ପରବର୍ତ୍ତୀ ଏକ ବର୍ଷ ମଧରେ ଆଉ ସାତ ଶହଚଉଦଟି ଦ୍ରବ୍ୟ ଉପରେ ବାଣିଜ୍ୟ କଟକଣା ଉଠାଇ ଦିଆଯିବ । ଏହାର ଅର୍ଥ ଆମ ବଜାରରେ ଅମେରିକାର ପ୍ରତ୍ୟେକ ଜିନିଷ ଖୋଲାରେ ଆସି ବିକ୍ରି ହେବ, ଏପରିକି ଗହମ,ଚାଉଳ, ପରିବା ମଧ ସେଠାରୁ ଆସିବ । ଏହିଚିଠି ଜରିଆରେ କୁହାଯାଇଛି ଯେ ଭାରତ ସରକାର ଏହାକୁ ଗ୍ରହଣ କଲାପରେ ଏହିଚିଠିଟି ହିଁ ଚୁକ୍ତିନାମାରେ ମୂଳଭିତ୍ତି ହେବ । ଅର୍ଥାତ୍ ଏପରି ଏକ ଆମ ଦେଶ-ବିରୋଧି ନିଷ୍ପତ୍ତି ସଂସଦରେ ଆଲୋଚନା ନ ହୋଇ ଦୁଇ ସରକାର ମଧରେ ଚୁକ୍ତି ହୋଇଗଲା । ଏହା ଫଳରେ ଆମେରିକାରୁ ମୂଳା ମଧ ଆସି ଆମ ଗାଁ ବଜାରରେ ବିକ୍ରି ହେବ । ଏହା ମଧ ସମ୍ଭବ ଯେ ପ୍ରଥମେ ଖୁବ୍ ଶସ୍ତାରେ ଆମେରିକା ମୂଳା ଆମ ଲୋକ ପାଇବେ । ଉଦ୍ଦେଶ୍ୟ ଆମଚାଷୀ ଆଉ ମୂଳା ଉତ୍ପାଦନ କରିବେ ନାହିଁ । ଏପରି ଅନେକ କୃଷି

Digitized by srujanika@gmail.com

ଉତ୍ପାଦନ ଚାଷୀ ବନ୍ଦ କରିବାକୁ ବାଧ୍ୟ ହେବ । ପୁଣି ଏକ ସମୟ ଆସିବ, ସେହି ମୂଲ୍ୟାରଦାମ୍ ୧୦ ଗୁଣ ବଢ଼ିଯିବ । ଆମେ ସେମାନଙ୍କ ଉପରେ ନିର୍ଭରଶୀଳ ହୋଇ ସାରିଥିବୁ ଓ ଆମର ଚାଷ ଦୁର୍ବଳ ହୋଇ ସାରିଥିବ । ଖାଦ୍ୟ ଶସ୍ୟ ଛାଡ଼ି ବ୍ୟାବସାୟିକ କୃଷି ଉତ୍ପାଦନକୁ ବିଦେଶୀ କମ୍ପାନୀମାନଙ୍କ ଦ୍ୱାରା ଉତ୍ସାହ ପ୍ରଦାନ କରାଯାଇ ଆମ ଜମିର ଉର୍ବରତାକୁ ମଧ୍ୟ ନଷ୍ଟ କରି ଦିଆଯାଇଥିବ । ଏପରି ସ୍ଥିତି ହେବାର ଚିତ୍ର ଆମ ପାଖରେ ନାଚୁଛି । ମେକ୍ସିକୋ ଓ ବ୍ରାଜିଲ୍‌ରେ ବିଶ୍ୱବ୍ୟାଙ୍କ୍ ଓ ବହୁରାଷ୍ଟ୍ରୀୟ କମ୍ପାନୀମାନେ ମିଶି ସେମାନେ ସଫଳତାର ସହ ସେଠାର କୃଷି ଓ ଜଙ୍ଗଲଭିତ୍ତିକ ଅର୍ଥ ବ୍ୟବସ୍ଥାକୁ ଧ୍ୱଂସ କରି ସାରିଲେଣି । ତେଣୁ ଖାଦ୍ୟ ଉପରେ ନିର୍ଭରଶୀଳ କରାଇ ଦେଶକୁ ଆର୍ଥିକ ପରାଧୀନତା ଆଡ଼କୁ ନେଇଯିବ । ଏହା ହେଉଛି ବାଣିଜ୍ୟ ଜରିଆରେ ସାମ୍ରାଜ୍ୟବାଦୀଙ୍କ ଚକ୍ରାନ୍ତ ।

ଆଜି ଯେଉଁ ଯୁକ୍ତରାଷ୍ଟ୍ର ଆମେରିକାକୁ ଦେଖୁଛେ, ସେହି ଦେଶ ଥିଲା ବିଶେଷ କରି ଆଦିବାସୀ ଓ ନିଗ୍ରୋମାନଙ୍କ ଭୂମି । ଲୋହିତ ଭାରତୀୟମାନେ ସେଠାର ଆଦିମ ଅଧିବାସୀ । ସେହି ଅଧିବାସୀମାନଙ୍କୁ ହଟାଇ ଉପନିବେଶବାଦ୍ ଜରିଆରେ ବିକାଶ ନାମରେ ସେଠାର ପ୍ରାକୃତିକ ସମ୍ପଳକୁ ଶୋଷି ଦିଆଗଲା, ବେପାରୀଙ୍କ ଫାଇଦା ପାଇଁ ଓ ଲୋକଙ୍କ ହାତରୁ ଜମି, ଜଳ, ଜଙ୍ଗଲ ଛଡ଼ାଇ ନିଆଗଲା । ସିୟାଟଲ୍‌ର ତତ୍‌କାଳୀନ ଆଦିବାସୀ ମୁଖ୍ୟ ସେମାନଙ୍କ ଭିଟାମାଟି ନ ଛାଡ଼ିବା ପାଇଁ ଆହ୍ୱାନରେ କହିଥିଲେ ଯେ ଆମ ମାଟି, ପାଣି ପବନରେ ଆମ ପୂର୍ବ ପୁରୁଷମାନଙ୍କର ରକ୍ତ ହିଁ ପ୍ରବାହିତ ହେଉଛି । ଏହା ଆମର ଅମୂଲ୍ୟ ସଂପଦ ଜମି, ଜଳ ଓ ଆକାଶ ବିକ୍ରିହେବାବସ୍ତୁ ନୁହଁ । ଏହା ଆମ ଜୀବନ । ଏହା ଆମର ସଂସ୍କୃତି । ଏହା ଆମର ସ୍ୱାଭିମାନ । ଆଜି ସେହି ଡ଼ାକ ଓଡ଼ିଶାର କାଶୀପୁର ଅଞ୍ଚଳରେ ଆଦିବାସୀ ଆହ୍ୱାନ ଦେଉଛି ଆଲୁମିନା ପ୍ଲାଣ୍ଟ ବିରୁଦ୍ଧରେ, ଗୋପାଳପୁରରେ ଚାଷୀ ଟାଟା ଇସ୍‌ପାତ ବିରୁଦ୍ଧରେ ନିଜ ଜମିକୁ ବଞ୍ଚାଇବା ପାଇଁ ଲଢ଼େଇ କରିଛି । ଚିଲିକାର ମତ୍ସ୍ୟଜୀବୀ ବେପାରୀ ଓ କମ୍ପାନୀ ହାତରୁ ମୁକ୍ତ କରିବା ପାଇଁ ଜୀବନ ଦେଇଛି । ଜଳ, ଜମି ଓ ଜଙ୍ଗଲର ସୁରକ୍ଷା ସହିତ ମାଟିର ମଣିଷମାନଙ୍କ ଜୀବନ ଓ ଜୀବିକାର ସୁରକ୍ଷା ବନ୍ଧା ହୋଇଛି । ଏହାକୁ ରକ୍ଷା ନକରି ପାରିଲେ ସ୍ୱାଧୀନତା ମଧ୍ୟ ବିପନ୍ନ ହୋଇଯିବ ।

ଆମକୁ ଇତିହାସରୁ ଶିକ୍ଷାନେବାକୁ ହେବ । ଏକଦା ଆମକୁ ପରାଧୀନ କରିଥିଲା ଇଷ୍ଟ ଇଣ୍ଡିଆ କଂପାନୀ । ଖଣ୍ଡିଏ ଦୋକାନ କରିବାକୁ ଆସି ବ୍ୟାବସାୟିକ ସାମ୍ରାଜ୍ୟ ବିସ୍ତାର କରିବା ପରେ ପୁଣି ଆମ ଦେଶକୁ ଶାସନ କଲେ ଦୁଇଶହ ବର୍ଷ । କ୍ଲାଇବ ଯେତେବେଳେ ପଲାସୀଯୁଦ୍ଧରେ ସିରାଜଦୌଲାଙ୍କୁ ପରାସ୍ତ କରି କଲିକତା

Digitized by srujanika@gmail.com

ରାଜରାସ୍ତାରେ ଚାଲିଆସୁଥିଲେ ତାଙ୍କରି ସହଥିଲେ ମାତ୍ର କେଇଟା ଜଣ ସୈନିକ । କିନ୍ତୁ ରାସ୍ତାରେ ହଜାର ହଜାର ଲୋକେ ଠିଆ ହୋଇ ନୀରବରେ ଦେଖୁଛନ୍ତି କ୍ଲାଇବଙ୍କ ଆଗମନକୁ । କ୍ଲାଇବ ନିଜେ ଲେଖିଛନ୍ତି, ସେଦିନ ଯଦି ଲୋକେ ଘୃଣାରେ ଛେପ ପକାଇଥାନ୍ତେ ତାହାହେଲେ ଆମେ ପୋତି ହୋଇଯାଇଥାନ୍ତୁ, କିନ୍ତୁ ପରାଜିତ ଶାସକଙ୍କର ପ୍ରଜାମାନେ ଦେଖୁଥାନ୍ତି ସତେ ଯେପରିକି ତାଙ୍କରି ନୂଆ ରାଜା ନିଜର ହୋଇସାରିଲେଣି । ବ୍ରିଟିଶ ଶାସନ ପ୍ରଥମେ ଆମ କୃଷି, ହସ୍ତତନ୍ତ ଓ କୁଟୀର ଶିଳ୍ପକୁ ଭାଙ୍ଗିଦେଲା ସେମାନଙ୍କ ଶିଳ୍ପଜାତ ଦ୍ରବ୍ୟର ବଜାର ପାଇଁ । ଆମ ଆର୍ଥିକ ମେରୁଦଣ୍ଡକୁ ଭାଙ୍ଗିଦେଲାପରେ ଆମକୁ ଶାସନ କରିବା ସହଜ ହେଲା । ସେହିପରି ଆଜି ଯେପରି ଭାବରେ ବିଦେଶୀ କଂପାନୀମାନଙ୍କୁ ଆମ ସରକାର ଓ ଦେଶର ପ୍ରତିଷ୍ଠିତ ଶ୍ରେଣୀର ଲୋକେ ସ୍ୱାଗତ କରୁଛନ୍ତି, ତାହା ଆମ ସ୍ୱଦେଶୀ ଅର୍ଥ ବ୍ୟବସ୍ଥା ପ୍ରତି ବିପଦ । ୩ ବର୍ଷ ତଳେ ଆମ ଦେଶର ଜଣେ ଅର୍ଥମନ୍ତ୍ରୀ ଆମେରିକା ଯାଇ ସେଠାରେ ଉପସ୍ଥିତ ବିଦେଶୀ ଶିଳ୍ପପତିମାନଙ୍କୁ ଉଦ୍‌ବୋଧନ ଦେଇ ସ୍ୱାଗତ କରିଥିଲେ, ଆମ ଦେଶକୁ ପୁଣି ଆସ । ଦୁଇଶହ ବର୍ଷ ପର୍ଯ୍ୟନ୍ତ ସୁଖ ସମ୍ଭୋଗରେ ତୁମ ବେପାର କରିବ । ସେଥିପାଇଁ ଆମେ ସବୁ ସୁବିଧା ଦେବୁ ।'' ଏକଥା କହିଲାପରେ ବି ଆମ ଦେଶରେ ଆଲୋଡ଼ନ ନାହିଁ । ସଂସଦ ଅଚଳହେଲା ନାହିଁ । ଯେହେତୁ ୧୯୯୧ରୁ ଏପର୍ଯ୍ୟନ୍ତ ୩ଟି ଭିନ୍ନ ଭିନ୍ନ ସରକାରର ଆର୍ଥିକ ନୀତି ଅଭିନ୍ନ । ଆମ ଦେଶର ସ୍ୱାର୍ଥ ବିରୋଧୀ ପେଟେଣ୍ଟ ଆଇନ ପରିବର୍ତ୍ତନ ଓ ବୀମା କ୍ଷେତ୍ରରେ ବିଦେଶୀ ଅନୁପ୍ରବେଶ ପରି ଆଇନକୁ ବାଜପାୟୀ ସରକାର ମୁଖ୍ୟ ବିରୋଧୀ ଦଳ କଂଗ୍ରେସର ସହଯୋଗରେ ଗୃହୀତ କରାଇନେଲେ ଯଦିଚ ବିରୋଧୀ ଦଳରେ ଥିଲାବେଳେ ଭାରତୀୟ ଜନତା ପାର୍ଟି ବିରୋଧ କରୁଥିଲେ । ଏପରି ଏକ ଅବସ୍ଥା ବର୍ତ୍ତମାନ ଆସିଛି । ଆମକୁ ଆତ୍ମସମୀକ୍ଷା କରିବାକୁ ହେବ, ଆମର ରାଜନୈତିକ ବିକଳ୍ପ ପାଇଁ ଯାହାକି ଆମ ସାର୍ବଭୌମତ୍ୱର ସୁରକ୍ଷା ପାଇଁ ନୂଆ ବିକାଶର ଧାରାକୁ ଲାଗୁ କରିପାରିବ । ସ୍ୱାଧୀନତା ଆନ୍ଦୋଳନବେଳେ ମହାତ୍ମାଗାନ୍ଧୀ ସ୍ୱଦେଶୀ ଅର୍ଥନୀତି ସ୍ଥାପନା ପାଇଁ ପ୍ରଥମେ ହସ୍ତତନ୍ତକୁ ପୁନରୁଦ୍ଧାର କରିଥିଲେ ଯାହା ଫଳରେ ବିଦେଶୀ ବସ୍ତ୍ର କଂପାନୀ କ୍ଷତବିକ୍ଷତ ହୋଇ ଓ ଆମ ଲୋକେ ରୋଜଗାର ପାଇଁ ସ୍ୱାଭିମାନକୁ ଫେରି ପାଇଥିଲେ । ସେହି ଅର୍ଥ ବ୍ୟବସ୍ଥା ପାଇଁ ପୁଣି ସଂଗ୍ରାମ କରି ପାରିଲେ ଯାଇ ଜଳ, ଜମି, ଜଙ୍ଗଲର ଅଧିକାର ଲୋକଙ୍କ ପାଖରେ ରହିବ । ନଚେତ ଆସନ୍ତା ୨୦ ବର୍ଷ ମଧ୍ୟରେ ଆମ ଲୋକଙ୍କ ହାତରୁ ସମସ୍ତ କ୍ଷମତା ଓ ଅଧିକାର ଚାଲିଯିବ ।



Digitized by srujanika@gmail.com

# ବଜାରୀଙ୍କ ପାଇଁ ସୁନ୍ଦରୀ ପ୍ରତିଯୋଗିତା

ବିଶ୍ୱ ସୁନ୍ଦରୀ ପଦ ବିଶ୍ୱ ସୁନ୍ଦରୀ ପ୍ରତିଯୋଗିତାର ସଫଳତା ସତେ ଯେପରିକି ଏକ ଜାତୀୟ ସମ୍ମାନ ହୋଇ ସାରିଲାଣି, ସେହି ଆଡ଼କୁ ଆମ ଯୁବକଯୁବତୀଙ୍କ ମାନସିକତାକୁ ତିଆରି କରିବାରେ ଆମ ଦେଶର ଗଣମାଧ୍ୟମ ସଂବାଦପତ୍ରଗୁଡ଼ିକ ମଧ୍ୟରୁ ଅଧିକାଂଶ ନିୟୋଜିତ । ବିଶେଷକରି ଉଦାରୀକରଣ ଓ ବିଶ୍ୱକରଣର ପ୍ରବାହରେ ସୁନ୍ଦରୀ ପ୍ରତିଯୋଗିତାର ପରିସର ମଧ୍ୟ ଖୁବ୍ ଚଳଚଞ୍ଚଳ ହୋଇଉଠିଛି । ଏପରିକି ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ବିଶ୍ୱ ସୁନ୍ଦରୀ ପ୍ରତିଯୋଗିତାରେ ବିଜୟୀ ଭାରତୀୟ ଝିଅଙ୍କୁ ଅଭିନନ୍ଦନ ଜଣାଇବା ପରେ ଏହା ଜାତୀୟ କର୍ମସୂଚୀରେ ସ୍ୱୀକୃତ ହୋଇଗଲା ବୋଲି ଧରିବା କି ନାହିଁ ଅଲଗା ପ୍ରଶ୍ନ, କିନ୍ତୁ ଏଥିପ୍ରତି ଥିବା ସଂକଟ ଓ ମାନସିକ ଦ୍ୱିଧା ପ୍ରତି ଆଉ ଖାତିରି ରହିଲା ନାହିଁ । କାରଣ ପ୍ରଧାନମନ୍ତ୍ରୀ ଏଥିରେ ପ୍ରଭାବିତ ।

ରାଷ୍ଟ୍ରର ଦାୟିତ୍ୱ ଓ ରାଷ୍ଟ୍ରପ୍ରତି କର୍ତ୍ତବ୍ୟ ପ୍ରତି ଆଖିବୁଜି ବ୍ୟକ୍ତିବାଦକୁ ଆଗେଇ ନେଉଥିବା ଆମ ଦେଶର ରାଜନୀତି ଓ ରାଜନୈତିଜ୍ଞ ଠାରୁ ଅଧିକ କଣ ଆଶା କରାଯାଇପାରେ ? ସୁନ୍ଦରୀ ପ୍ରତିଯୋଗିତା ଏକ ନାରୀ ବିରୋଧୀ ପ୍ରକ୍ରିୟା । ଯେଉଁ ବଜାର ଅର୍ଥନୀତିରେ ମାନବିକତା, ସଭ୍ୟତା ଓ ଅନୁଶାସନ ପ୍ରତି କୌଣସି ସମ୍ମାନ ନାହିଁ ସେହି ଅର୍ଥ ବ୍ୟବସ୍ଥାରେ ମଣିଷ ଜୀବନଟିକୁ ସୌଦା କରାଯାଉଥିବାବେଳେ ମିଥ୍ୟା ସ୍ୱପ୍ନପୁରୀର ଅପସରା କହି ଯୁବତୀଙ୍କୁ ଲଙ୍ଗଳା କଣ୍ଢେଇଟିର ବେଶ ଭୂଷାରେ ବିଜ୍ଞାପନର ସାମଗ୍ରୀ କରିବା ସେମାନଙ୍କ ବ୍ୟାବସାୟିକ ପ୍ରବଣତା ଛଡ଼ା ଆଉ କିଛି ନୁହେଁ । ଆମରି ସମାଜର ସାଧାରଣ ଶ୍ରେଣୀର ପରିବାର ଲୋକେ ଏହାକୁ ଆମରି ପିଲାଙ୍କ ମାନସିକତାକୁ ବିଷାକ୍ତ କରି ଲିଙ୍ଗଭେଦର ବିଷମତାକୁ ଆହୁରି ଅଧିକ ଦୃଢ଼ୀଭୂତ କରିବା ବେଳେ ଏହାର ପ୍ରତିବାଦ ବଦଳରେ ନୀରବତାର ସହ ଏହାକୁ ଗ୍ରହଣ କରିନେବା ଦୁଃଖଦାୟକ । ସୁନ୍ଦରୀ ପ୍ରତିଯୋଗିତା ଆଧୁନିକତାର ପ୍ରତୀକ ନୁହଁ, ବରଂ ଏହା ଏକ ଅପସଂସ୍କୃତିର ବାହକ । ଏହା ସହ କଳା ଧନ ଓ ମୁନାଫା ପାଇଁ ଲାଳାୟିତ ପୁରୁଷପ୍ରଧାନ୍ୟ ସମାଜରେ ପୁଣି ନାରୀଙ୍କୁ ଖୁବ୍ ଲାଭଦାୟକ ସୁନ୍ଦର ଓ ଶସ୍ତା ସାମଗ୍ରୀ କରି ରଖିବା ପିଶାଚ ସମାଜର ମାନସିକତା ।

Digitized by srujanika@gmail.com

ସୁନ୍ଦରୀ ପ୍ରତିଯୋଗିତା ପୂର୍ବରୁ କେଉଁ ଦେଶର ସୁନ୍ଦରୀଙ୍କୁ ମୁକୁଟ ପିନ୍ଧାଇ ଦିଆଯିବ ଏହା ପୂର୍ବ ନିର୍ଦ୍ଧାରିତ ଯୋଜନା । ଏହି ପ୍ରତିଯୋଗିତା ମୂଳରେ ବେପାରୀ ତଥା କୋଟିପତିଙ୍କ ପୁଞ୍ଜି ବିନିଯୋଗ କରାଯାଇଥାଏ । ବିଜ୍ଞାପନ ଶିଳ୍ପଜାତ ଦ୍ରବ୍ୟର ବ୍ୟବସାୟ ପାଇଁ ଏକ ଅପରିହାର୍ଯ୍ୟ ଅଙ୍ଗ ହୋଇସାରିଲାଣି । ତେଣୁ ବିଜ୍ଞାପନ କ୍ଷେତ୍ର ଏକ ଶିଳ୍ପ ହୋଇସାରିଲାଣି ଯେଉଁଠି ଯୁବତୀମାନଙ୍କ ନଗ୍ନ ଅଙ୍ଗ ପ୍ରଦର୍ଶନ ଏକ ମୁଖ୍ୟ କଞ୍ଚାମାଲ ରୂପେ ପରିଗଣିତ । ଆଜି ଜଗତୀକରଣ ପରିପ୍ରେକ୍ଷୀରେ ସମସ୍ତ ଧନଶାଳୀ ଦେଶର ବେପାରୀ ଓ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ଖୋଲା ପ୍ରବେଶ ପରେ ଆମ ଦେଶର ବଜାରକୁ ସେମାନେ ହାତଛଡ଼ା କରିବେ କିପରି ? ସେଇଥିପାଇଁ ଆମ ଯୁବତୀଙ୍କୁ ସୁନ୍ଦରୀ ରାଣୀର ମୁକୁଟ ପିନ୍ଧାଇ ସେହି ସୁନ୍ଦରୀଙ୍କ ଚେହେରା ଜରିଆରେ ଆମକୁ ମିଛ କହିବେ ସେମାନଙ୍କ ଦ୍ରବ୍ୟର ଚାହିଦା ପାଇଁ । ବର୍ତ୍ତମାନ ଲଣ୍ଡନରେ ଶେଷ ହୋଇଥିବା ବିଶ୍ୱ ସୁନ୍ଦରୀ ପ୍ରତିଯୋଗିତାରେ ଭୁଲ ଉତ୍ତର ଦେବା ସତ୍ତ୍ୱେ ପ୍ରିୟଙ୍କା ଚୋପ୍ରାକୁ ପିନ୍ଧାଇ ଦିଆଗଲା ମୁକୁଟ । କାହିଁକି ? ଏହା ପୂର୍ବ ନିର୍ଦ୍ଧାରିତ । ଆମ ବଜାର ଉପରେ ବିଦେଶୀ ପୁଞ୍ଜିପତିଙ୍କ ଲୋଲୁପ ଦୃଷ୍ଟି । ଏହି ସଫଳତା ନାମରେ ଆମ ଦେଶରେ ବିଜ୍ଞାପନ ଶିଳ୍ପକୁ ଲମ୍ଫ ମାରିବେ ଆମ ଝିଅମାନେ । ପ୍ରିୟଙ୍କାର ଭୁଲ ଉତ୍ତରଟି କଣ ଥିଲା ଜାଣନ୍ତି ? ପ୍ରଶ୍ନ ଥିଲା – ପୃଥିବୀର ଜୀବିତ ମହିଳାମାନଙ୍କ ମଧ୍ୟରୁ କାହାକୁ ତୁମେ ସର୍ବଶ୍ରେଷ୍ଠ ମାନିବ ? ଉତ୍ତର – ମଦର ଟେରେସା । କିନ୍ତୁ ମଦର ଟେରେସା ମୃତ । ସତରେ ! ପ୍ରତିଯୋଗିତା କାହିଁକି ଓ କାହାପାଇଁ ? ଏକଥା ବୁଝିବାକୁ କଷ୍ଟ ହେବ ନାହିଁ ।



Digitized by srujanika@gmail.com

# ଓଡ଼ିଶାର ଶିଳ୍ପାୟନ କାହା ସ୍ୱାର୍ଥରେ ?

'ହିନ୍ଦ୍ ସ୍ୱରାଜ' ଲେଖାଯାଇଥିଲା ୧୯୦୮ ସାଲରେ । ବ୍ରିଟିଶ ଶାସନଦ୍ୱାରା ତାହା ବାଜ୍ୟାପ୍ତି ହୋଇଥିଲା । ଲେଖକ ମହାତ୍ମାଗାନ୍ଧୀ ଶିଳ୍ପ ବିକାଶ ନାମରେ ଶୋଷଣ ଓ ଆଧୁନିକତା ନାମରେ ବିଷପାନକୁ ମଣିଷ ସଭ୍ୟତାରେ ବିଘଟନର ବିଲକ୍ଷଣ ବୋଲି ସତର୍କ କରାଇ ଦେଇଥିଲେ । ଲେଖାର ମୂଳରେ ମୌଳିକ ବିଚାରଥିଲା ଯେ ବିଜ୍ଞାନର ଆବିଷ୍କାରକୁ ନେଇ ମଣିଷର ସୌଖୀନ ବିଳାସ ବ୍ୟସନ ପାଇଁ ବିକାଶର ଧାରା ଓ ଲକ୍ଷ୍ୟ ସୁବିଧାବାଦ ଓ ଶୋଷଣବାଦରେ ପରିଣତ ନହେଉ । ଆବଶ୍ୟକତା ଠାରୁ ଅଧିକ ବ୍ୟବହାର ଏକ ଅପରାଧ । ଅନେକଙ୍କ ଶ୍ରମକୁ ବେକାର କରି ଅଧିକ ଉତ୍ପାଦନକ୍ଷମ ଯନ୍ତ୍ରାୟନ ଜରିଆରେ ଉପଭୋକ୍ତାବାଦର ବୃଦ୍ଧି କରାନଯାଉ । ଏକଥା କହିଲାବେଳେ ଭାରତ ସମେତ ପୃଥିବୀର କୋଟି କୋଟି ମାଟିର ମଣିଷମାନଙ୍କ ଜୀବିକା ଓ ସେମାନଙ୍କ ମୌଳିକ ଆବଶ୍ୟକତା ପାଇଁ ନିରନ୍ତର ବିକାଶ (sustainable development) ପ୍ରଶ୍ନଟି ବାରଂବାର ପ୍ରଶ୍ନବାଚୀ ହୋଇ ଉଠୁଥିଲା ପାଶ୍ଚାତ୍ୟ ଦେଶମାନଙ୍କର ଶିଳ୍ପାୟନଦ୍ୱାରା ପ୍ରକୃତି ଉପରେ ହେଉଥିବା ବର୍ବର ଧର୍ଷଣ ପରିପ୍ରେକ୍ଷୀରେ । ପୁଣି ମହାତ୍ମାଗାନ୍ଧୀ ଆଉ ୨୦ ବର୍ଷପରେ ଭବିଷ୍ୟତ ଦ୍ରଷ୍ଟାରୂପେ କହିଲେ : ''ଧରିତ୍ରୀ' ମାତା ପାଖରେ ଯେଉଁ ପ୍ରାକୃତିକ ସଂପଦ ରହିଛି, ତାହା ପୃଥିବୀର ପ୍ରତ୍ୟେକଙ୍କ ସର୍ବନିମ୍ନ ଆବଶ୍ୟକତା ପାଇଁ ଯଥେଷ୍ଟ, ତାହା ମଧ ଯୁଗ ଯୁଗ ଧରି ସମ୍ଭବପର । କିନ୍ତୁ ପ୍ରତ୍ୟେକଙ୍କ ଲୋଭ, ଅପବ୍ୟୟ ଓ ସୁଖ ସମ୍ଭୋଗ ପାଇଁ ଆଦୌ ଅଣ୍ଟିବ ନାହିଁ ।'' ସବୁଠାରୁ ଦୁର୍ଦ୍ଦଶା ହେଲା ଆମ ଦେଶ ସମେତ ବିକଶିତ ଦେଶମାନଙ୍କର ଅର୍ଥନୈତିଜ୍ଞମାନେ ଗାନ୍ଧୀଜୀଙ୍କ ଉକ୍ତ ମୌଳିକ ଚିନ୍ତନର ସତ୍ୟତା ଭିତରେ ଥିବା କଠୋର ଅର୍ଥନୈତିକ ବାସ୍ତବତାକୁ ଗ୍ରହଣ କରିବା ପରିବର୍ତ୍ତେ ତାଙ୍କୁ ବିଜ୍ଞାନ ବିରୋଧୀ ବୋଲି ମନେକଲେ, କିନ୍ତୁ ଆଜିର ବିକଶିତ ଦେଶମାନଙ୍କରେ ସମ୍ବଳର ସଂକଟ ଓ ପ୍ରାକୃତିକ ବିପର୍ଯ୍ୟୟର ଘଟଣାବଳୀକୁ ସେମାନଙ୍କ ଅର୍ଥନୈତିଜ୍ଞ ଓ ଯୋଜନାକାରୀମାନେ ଅଧ୍ୟୟନ କରି ବୁଝିସାରିଲେଣି ଯେ-ଧରିତ୍ରୀ-ମାଆ ପାଖରେ ଥିବା ସଂପଦ ଅତି ସୀମିତ ଓ ସରନ୍ତି ସଂବଳର ପୁନଃ ସୃଷ୍ଟିର ସମ୍ଭାବନା ଲକ୍ଷ ଲକ୍ଷ ବର୍ଷ ପାଇଁ ମଧ ସମ୍ଭବପର ନୁହେଁ । ଏବେ ଏହି ସତ୍ୟତାକୁ ଧନୀଦେଶମାନେ ନିଜ ନିଜ ଦେଶର ସ୍ୱାର୍ଥ ପାଇଁ ପ୍ରୟୋଗ କଲାବେଳେ ଅନ୍ୟ ବିକାଶଶୀଳ ଓ ଦରିଦ୍ର ଦେଶମାନଙ୍କ ସମ୍ବଳଗୁଡ଼ିକ

Digitized by srujanika@gmail.com

ଉପରେ ଆଧିପତ୍ୟ ବିସ୍ତାର କରି ସେଗୁଡିକର ନିଃଶେଷ କରି ଦେବାର ପ୍ରକ୍ରିୟା ଜାରି ରଖିଛନ୍ତି । ଏହି ପ୍ରକ୍ରିୟାର ନୂଆ ନାମ ଦେଇଛନ୍ତି ଗ୍ଲୋବୀକରଣ ବା ଖୋଲା ବିଶ୍ୱ ବଜାରୀକରଣ ଯେଉଁଠି ଡ଼ଲାରର ପ୍ରଭୁତ୍ୱ ଜାହିର ରହିବ ।

ଆମେରିକା ପୃଥିବୀର ସମସ୍ତଙ୍କଠାରୁ ଅଧିକ ପ୍ରାକୃତିକ ସଂପଦର ବ୍ୟବହାରକାରୀ । ତା' ଦେଶର ଖଣିଜ ତୈଳକୁ ଆସନ୍ତା ଏକଶତ ବର୍ଷ ପାଇଁ ସାଇତି ରଖି ଆରବ ଦେଶର ତେଲ ଖଣିଗୁଡ଼ିକୁ ବ୍ୟବହାର କରିବା ପାଇଁ ନିଜ ସାମ୍ରାଜ୍ୟବାଦୀ ଶକ୍ତିକୁ ପ୍ରୟୋଗ କରୁଛି । ସେଇଥିପାଇଁ ଇରାକ ଉପରେ ବର୍ବର ଆକ୍ରମଣ । ସେହିପରି ନିଜର ଲୁହାପଥର ଅଛି ୧୫୦୦ କୋଟି ଟନ୍ । ସେ ଦେଶରୁ ଲୁହାପଥର ରପ୍ତାନି ଅସମ୍ଭବ । କାନଡ଼ା ଓ ଜର୍ମାନୀ ଆଲୁମିନା ଉତ୍ପାଦନରେ ଆଗୁଆ ଥିଲେ । କିନ୍ତୁ ନିଜର ବକ୍‌ସାଇଟ୍ ଖଣିର ସଂରକ୍ଷଣ ପାଇଁ ଓ ଆଲୁମିନା ପରି ସର୍ବାଧିକ ପ୍ରଦୂଷଣକାରୀ ଶିଳ୍ପକୁ ବନ୍ଦ କରିଦେବାପାଇଁ ନିଷ୍ପତ୍ତି ନେଲାବେଳେ ଏଗୁଡ଼ିକୁ ବିଦେଶୀ ପୁଞ୍ଜି ନିବେଶ ନାମରେ ଆମ ଦେଶ ସମେତ ପ୍ରାକୃତିକ ସଂପଦର ଅଧିକାରୀ ଗରିବ ଦେଶମାନଙ୍କୁ ସ୍ଥାନାନ୍ତର କରାଯାଉଛି । ସେଗୁଡିକୁ ଆମ ଦେଶର ସରକାର, ବିଭିନ୍ନ ରାଜନୈତିକ ଦଳ ଓ ବିକାଶର ଠିକାଦାର, ବୁଦ୍ଧିଜୀବୀମାନେ ସ୍ୱାଗତ କରି ସ୍ୱର୍ଗରୁ ଅମୃତ ଝରିବ ବୋଲି ପ୍ରବଚନ ଦେଉଛନ୍ତି । ଓଡ଼ିଶାକୁ ଏହି ବିକାଶର ପରୀକ୍ଷାଗାରରେ ପରିଣତ କରାଯାଇଛି । ଓଡ଼ିଶାରେ ଲୁହା, ବକ୍‌ସାଇଟ, କ୍ରୋମାଇଟ, ମାଙ୍ଗାନିଜ ସମେତ ଅନେକ ଖଣିଜ ସଂପଦ କ୍ରମଶଃ ହ୍ରାସ ହୋଇ ଯାଉଛି । ଏସବୁ ଯେଉଁଠି ଅଛି, ସେ ସବୁ ଜଙ୍ଗଲ ତଥା ଆଦିବାସୀ ଅଞ୍ଚଳ ଏବଂ ଏସବୁ ସ୍ଥାନ ରାଜ୍ୟର ଅଧିକାଂଶ ଜଳସ୍ରୋତର ଉତ୍ସସ୍ଥଳୀ । ତେଣୁ ଖଣିଜ ସଂପଦ ଅଛି ବୋଲି ତାକୁ ଖୋଳି ତାଡ଼ି ବେପାରୀଙ୍କ ହାତରେ ଟେକି ଦେଇ ଶିଳ୍ପାୟନ ପାଇଁ ଅନିବାର୍ଯ୍ୟ ବୋଲି କହିବା କେତେ ଯଥାର୍ଥ ତାହା ପ୍ରତ୍ୟେକ ସଚେତନଶୀଳ ଦେଶପ୍ରେମୀ ନାଗରିକ ଚିନ୍ତାକରିବା ଏକାନ୍ତ ପ୍ରୟୋଜନ । ଯେଉଁଠି ବକ୍‌ସାଇଟ ଅଛି ସେଠି ଜଳର ସ୍ରୋତ ରହିଛି । ଏହି ସତ୍ୟତାକୁ ସୁପ୍ରିମକୋର୍ଟଙ୍କ କେନ୍ଦ୍ରୀୟ କ୍ଷମତା ସଂପନ୍ନ କମିଟି କଳାହାଣ୍ଡି-ରାୟଗଡ଼ା ଜିଲ୍ଲାର ନିୟମଗିରିରେ ବକ୍ସାଇଟ୍ ଖଣି ଖନନକୁ ନିଷିଧ କରିବାକୁ ବୈଜ୍ଞାନିକ କାରଣ ସହ ସ୍ପଷ୍ଟମତ ଦେଇଛି । କାଶୀପୁର, ଲାଞ୍ଜିଗଡ଼, ଲକ୍ଷ୍ମୀପୁର, ଯଶମନ୍ତପୁର, ସିମିଳିଗୁଡ଼ା, ଗନ୍ଧମାର୍ଦ୍ଦନ ଅଞ୍ଚଳ ଗୁଡ଼ିକରେ ଥିବା ବକ୍‌ସାଇଟ୍ ଖଣି ଆଲୁମିନା ଉତ୍ପାଦନ ପାଇଁ ଦେଶୀ ବିଦେଶୀ କଂପାନୀମାନଙ୍କୁ ଦେଇଦେବା ପାଇଁ ଅନେକ ଚୁକ୍ତି ହୋଇସାରିଲାଣି । ଏସବୁର ଭୌଗୋଳିକ ସ୍ଥିତିକୁ ଦେଖିଲେ ଅନେକ ଘଞ୍ଚ ଜଙ୍ଗଲ, ସଂରକ୍ଷିତ ପର୍ବତ ଓ ଜୈବ ବିବିଧତା ପୂର୍ଣ୍ଣ ପ୍ରାକୃତିକ ସଂବଳ ରହିଛି ଯେଉଁଠି ବଂଶଧାରା, ନାଗାବଳୀ, ଇନ୍ଦ୍ରାବତୀ,

Digitized by srujanika@gmail.com

କୋଲାବ, ତେଲ ପରି ଅନେକ ନଦୀ ଓ ଚିରସ୍ରୋତା ଝରଣାମାନଙ୍କ ଜଳସ୍ରୋତ ଜନ୍ମ ନେଇଛନ୍ତି । ଖଣି ଖନନର ପ୍ରାୟ ୨୦ ବର୍ଷ ପରେ ଏସବୁ ମରୁଭୂମିରେ ପରିଣତ ହେବ, ଜଳ ରହିବ ନାହିଁ । ଥିବା ଜଳ ଖଣି ଓ ଆଲୁମିନା ପ୍ରକଳ୍ପର ବର୍ଜ୍ୟବସ୍ତୁ ଦ୍ୱାରା ପ୍ରଦୂଷିତ ହେବ, ଆଉ ୨୦ ବର୍ଷ ପରେ ଓଡ଼ିଶାର ବକ୍‌ସାଇଟ୍ ପ୍ରାୟ ୭୦ ଭାଗ ଶେଷ ହୋଇଯାଇଥିବ । ସେହିପରି ଲୁହାପଥର ଗତ ୬୦ ବର୍ଷ ଧରି ଯେତିକି ଶେଷ ହେଲାଣି ଆମେ ପାଇଲୁ କ'ଣ ଓ ହରାଇଲୁ କ'ଣ ହିସାବ ହେଲାଣିକି ? ଏପରିକି ରାଉରକେଲା ଇସ୍ପାତ କାରଖାନା ରାଷ୍ଟ୍ରାୟତ ପ୍ରକଳ୍ପ ହେଲେ ବି କିଛି ନିଯୁକ୍ତି ବିନା ଓଡ଼ିଶାକୁ ମିଳିଛି କ'ଣ ? ଟାଟା ଏବେ ବି ଜାମସେଦ୍‌ପୁରକୁ ନେଉଥିବା ଲୁହାପଥର ଟନ ପିଛା ରୟାଲଟି ଦେଉଛି ମାତ୍ର ୧୧ ଟଙ୍କା ଯାହାକୁ ସେ ଅନ୍ୟ ଖଣିକୁ ଲିଜ୍ ଦେଇ ବିକ୍ରି କରୁଛି ୨୭୦୦ ଟଙ୍କାରେ । ବର୍ତ୍ତମାନ ଓଡ଼ିଶାରେ ପୋସ୍କୋ ସମେତ ୩୭ଟି ଇସ୍ପାତ କାରଖାନା ପାଇଁ ସରକାର ଚୁକ୍ତି କରି ସାରିଲେଣି । ଏହା ଆଗରୁ କଳିଙ୍ଗ ନଗରରେ ୬ ଗୋଟି ଇସ୍ପାତ କାରଖାନା ନିର୍ମାଣକାର୍ଯ୍ୟ ଚାଲିଛି । ଲୁହାପଥର ଗଚ୍ଛିତ ଅଛି ଆମ ଓଡ଼ିଶାରେ ପ୍ରାୟ ୪୨୦୦ ନିୟୁତ ଟନ । ଏଥିରୁ ଲିଜ ଦିଆ ସରିଛି ପ୍ରାୟ ୩୧୦୦ ନିୟୁତ ଟନ । ଆଉ ମାତ୍ର ୧୦୦୦ ନିୟୁତ ଟନ ମଧ୍ୟରୁ ପୋସ୍କୋ ନେବ ୬୦୦ ଟନ ଓ ତା ନିଜ ଦେଶ ପାଇଁ ନେବ ଆଉ ୪୦୦ ଟନ । ବର୍ତ୍ତମାନ ସୁଦ୍ଧା ରାଜ୍ୟରେ ଆଖିବୁଜା ସ୍ପଞ୍ଜ ଆଇରନ୍ ଶିଳ୍ପର ସୁଅ ଛୁଟିଛି ଯାହା କୃଷି, ଜଳ ଓ ବାୟୁ ଧ୍ୱଂସ କରି ମଣିଷକୁ ମୃତ୍ୟୁଯନ୍ତ୍ରଣାକୁ ଠେଲିବାରେ ଲାଗିଛି । ଏସବୁ ଶିଳ୍ପର କ୍ଷତି ବୁଝାମଣା ପତ୍ରରେ ସଂଶୋଧନ କରିଦେଲେ ଭରଣା ହୋଇପାରିବ ନାହିଁ । ମୂଳତଃ ଏସବୁର ଆବଶ୍ୟକତା ଅଛିକି ନାହିଁ, ଉତ୍ପାଦନର ଉପଭୋକ୍ତା କେଉଁମାନେ ଓ କେଉଁ ଦେଶ ? ଏହାର ମୁନାଫା ପାଇବ କିଏ ? ନିଯୁକ୍ତି ଓ ବିନିଯୁକ୍ତି କେତେ ? ପରିବେଶର ସନ୍ତୁଳନ ଓ ତାହା ସହ ଲକ୍ଷ ଲକ୍ଷ ମାଟିର ମଣିଷମାନଙ୍କ ଜୀବନ ଓ ଜୀବିକାର ସୁରକ୍ଷାର ସ୍ଥିତି କ'ଣ ହେବ ? ଏସବୁ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ ବିକାଶର ଭାଗ୍ୟ ବିଧାତାମାନଙ୍କୁ ବାଧ କରାନଗଲେ ବିନାଶର ଧ୍ୱଂସ ସ୍ତୁପ ପାଖରେ ବସି ବିଳାପ କରୁଥିବା ଆସନ୍ତାକାଲିର ପିଲାମାନେ ଆଜିର ନାଗରିକ ସମାଜ ଓ ପରିଚାଳକମାନଙ୍କୁ ଭବିଷ୍ୟତ ଇତିହାସରେ ଘୃଣ୍ୟ କରି ରଖିଦେବେ ।

ଲୁହାପଥର, ମାଙ୍ଗାନିଜ, କ୍ରୋମାଇଟ୍ ଖୋଳିଦେବା ସ୍ଥାନ ଗୋରୁମହିଷାଣିଠାରୁ ଆରମ୍ଭ କରି ଯୋଡ଼ା, ବଡ଼ବିଲ୍, ସୁକିନ୍ଦା, ସୁନ୍ଦରଗଡ଼, କେଉଁଝର ଓ ମୟୂରଭଞ୍ଜ ଜିଲ୍ଲାର ଜଙ୍ଗଲ ବିଲୁପ୍ତ ହେବା ସହ ଜଳର ସ୍ରୋତ କମିଛି ଓ ପ୍ରଦୂଷଣର ଶିକାର ହୋଇଛନ୍ତି ଅଞ୍ଚଳବାସୀ । ଏପରିକି ଖଣିରେ କାମ କରୁଥିବା ଶ୍ରମିକର ମାତ୍ର

Digitized by srujanika@gmail.com

୪୦ ବର୍ଷରେ ମୃତ୍ୟୁ ହେଉଛି କିମ୍ବା ଅକର୍ମଣ୍ୟ ହୋଇଯାଉଛି । ଆଜି ପୋସ୍କୋ ପାଇଁ ଖଣି ଖନନ ହେବ କେଉଁଝର ଜିଲ୍ଲାର ଖଣ୍ଡାଧାର ଓ ମେଲଣ୍ଡଲି ପର୍ବତରେ । ଏଠି ପ୍ରଚଣ୍ଡ ଜଳପ୍ରପାତ ଓ ଝରଣା ରହିଛି ଯାହାକି ବୈତରଣୀ ନଦୀର ପ୍ରମୁଖ ଜଳସ୍ରୋତ । ଏଠି ଖଣି ଖନନ ହେବାପରେ ଏବଂ ଆସନ୍ତା ୩୦ ବର୍ଷ ମଧ୍ୟରେ ସମସ୍ତ ଲୁହାଖଣି ଶେଷ ହେଲାବେଳକୁ ଲୁହା କାରଖାନାମାନଙ୍କର ବ୍ଲାଷ୍ଟଫର୍ଣ୍ଣସ, ବର୍ଜ୍ୟବସ୍ତୁ ଦ୍ୱାରା ଜଙ୍ଗଲର କ୍ଷୟକ୍ଷତି, ଜଳ ଓ ବାୟୁର ପ୍ରଦୂଷଣ ଓ ଚାଷଜମିର ରୂପାନ୍ତରର ପରିଣାମର ସଠିକ୍ ହିସାବ କରିବାକୁ ସରକାର କାହିଁକି କୁଣ୍ଠିତ ? ପୁଣି ଶିଳ୍ପ ପାଇଁ ଜଳ ଓ ବିଦ୍ୟୁତ୍‌ର ଆବଶ୍ୟକତା ପୂରଣ ହେଲାବେଳକୁ ରାଜ୍ୟବାସୀଙ୍କ ପାଇଁ ଥିବା ଜଳ ନିଶ୍ଚିତଭାବେ ଚାଷ ଓ ପିଇବା ପାଣି ପାଇଁ ନିଅଣ୍ଟ ହେବ । କେବଳ ୩୭ଟି ଇସ୍ପାତ କାରଖାନା ପାଇଁ ସରକାରଙ୍କ ଅନୁଯାୟୀ ଜଳର ଆବଶ୍ୟକ ଦୈନିକ ୪୩୪ ନିୟୁତ ଗ୍ୟାଲେନ । ବେଦାନ୍ତ ଆଲୁମିନା ପ୍ଲାଣ୍ଟ ପାଇଁ ତେଲନଦୀରୁ ଦୈନିକ ଖର୍ଚ୍ଚ ହେବ ୪ କୋଟି ଲିଟର ଅର୍ଥାତ ୫୦ ଲକ୍ଷ ଲୋକଙ୍କ ଆବଶ୍ୟକତା ପୂରଣ କରୁଥିବା ଜଳ । ଏପରି ଅନେକ ଶିଳ୍ପ ପାଇଁ ଅନେକ ନଦୀ ଓ ଜଳ ଭଣ୍ଡାରରୁ ଜଳ ଦିଆଗଲା ପରେ ଜଳର ଅଭାବ କେଉଁ ପରିସ୍ଥିତି ସୃଷ୍ଟି କରିବ ତାର ଏକ ନିଚ୍ଛକ ଚିତ୍ର ଉପସ୍ଥାପନ କରିବାପରେ ଓଡ଼ିଶାବାସୀଙ୍କ ସ୍ୱାର୍ଥ ପାଇଁ କେଉଁ ଶିଳ୍ପର ଆବଶ୍ୟକତା ଅଛି ତାକୁ ବିଚାର କରିବା ପାଇଁ କାହିଁକି ପଛଘୁଞ୍ଚା ? ଜଳ, ଜମି, ଜଙ୍ଗଲ ଓ ସ୍ୱଚ୍ଛ ବାୟୁମଣ୍ଡଳ ଶେଷ ହୋଇଗଲା ପରେ ଏହି ଆଲୁମିନା ଓ ଇସ୍ପାତ ପରି ଅନେକ ଶିଳ୍ପର ଚିମିନି ଧୂଆଁ ଓ ନିଆଁକୁ ଧରିତ୍ରୀ ସମ୍ଭାଳି ପାରିବ ତ ?

ଏକଦା ଶିଳ୍ପ କିଛି ଶ୍ରମନିଯୁକ୍ତ କରୁଥିଲା । ବର୍ତ୍ତମାନ ଶିଳ୍ପାୟନ ଶ୍ରମବିରୋଧୀ ଓ ବୈଷୟିକ ଜ୍ଞାନ କୌଶଳର ପ୍ରୟୋଗରେ ସର୍ବନିମ୍ନ ନିଯୁକ୍ତି ହିଁ ବଜାର ପ୍ରତିଦ୍ୱନ୍ଦିତାର ଏକ ସଫଳ ମାପକାଠି । ବରଂ ଜଙ୍ଗଲ, ଜମି ଓ ଜଳର କ୍ଷୟ ପରେ ଉତ୍ପାଦନ ତାରି ଉପରେ ନିର୍ଭରଶୀଳ ଲକ୍ଷ ଲକ୍ଷ ମାଟିର ମଣିଷମାନଙ୍କ ଜୀବିକା ଚାଲିଗଲା ପରେ ସେହି ବିନିଯୁକ୍ତର ଆର୍ଥିକ ପରିଣାମ ଆଜିର ବଜାର ଅର୍ଥନୀତିରେ ହିସାବ କରା ଯାଉନାହିଁ ।

ଶିଳ୍ପର ବିକାଶର ମୂଳ ଲକ୍ଷ୍ୟ ଥିଲା ସର୍ବସାଧାରଣଙ୍କ ଆବଶ୍ୟକତା ସାମଗ୍ରୀ ଯୋଗାଇବା ପାଇଁ ଉତ୍ପାଦନ । କିନ୍ତୁ ବର୍ତ୍ତମାନ ଆବଶ୍ୟକତା ବାହାରେ ନୂଆ ନୂଆ ଉପଭୋଗ୍ୟ ବସ୍ତୁର ଚାହିଦା ସୃଷ୍ଟି କରିବା ପାଇଁ ଉତ୍ପାଦନ ଓ ତାପାଇଁ ବଜାର ସୃଷ୍ଟି ପାଇଁ ବିଜ୍ଞାପନ । ଏହି ପ୍ରକ୍ରିୟାରେ ସାଧାରଣ ବ୍ୟକ୍ତିଟି ବାଦ ପଡ଼ିଯାଇଛି ।

Digitized by srujanika@gmail.com

କେବଳ ଯେଉଁମାନେ ନୂଆ ନୂଆ ସାମଗ୍ରୀର ଗ୍ରାହକ ହୋଇପାରିବେ, ସେମାନଙ୍କ ଆୟ କିପରି ବଢ଼ିବ ସେମାନଙ୍କୁ ନେଇ ଶିଳ୍ପର ବିକାଶ ଓ ସାଧାରଣ ଜନତାଙ୍କ ଆର୍ଥିକ ସୁରକ୍ଷା ଏଥିରେ ସ୍ଥାନ ନାହିଁ । ଆଲୁମିନା ଉତ୍ପାଦନ ଆମ ଦେଶର ସର୍ବସାଧାରଣଙ୍କ ଆବଶ୍ୟକତା ପାଇଁ ଯଥେଷ୍ଟ ହେଉଥିବାରୁ ନାଲକୋ ପ୍ରାୟ ୫୦% ରୁ ଅଧିକ ରପ୍ତାନି କରୁଛି ବିଦେଶକୁ, କିନ୍ତୁ ପୁଣି ଦେଶୀ କିମ୍ବା ଦେଶୀ ପୁଞ୍ଜିପତି ଜରିଆରେ ବିଦେଶକୁ ରପ୍ତାନି ପାଇଁ ଆଲୁମିନା ଉତ୍ପାଦନ କାହିଁକି ଓ କାହାପାଇଁ ? ବିଶ୍ୱର ବଡ଼ ବଡ଼ ସାମରିକ ଅସ୍ତ୍ରଶସ୍ତ୍ର ଯୁଦ୍ଧଜାହାଜ ମାଲିକମାନଙ୍କ ପାଇଁ ଏହାର ଚାହିଦା ଥାଏ । ପାଶ୍ଚାତ୍ୟ ଦେଶରେ ପ୍ରତିଦିନ ମଦ ପିଇବା ପାଇଁ ବ୍ୟବହୃତ ଆଲୁମିନିୟମ୍ କେନ୍ କୋଟି କୋଟି ସଂଖ୍ୟାରେ ପ୍ରତିଦିନ ଫୋପଡ଼ା ହେଉଥାଏ । ବେପାରୀମାନେ ବର୍ଷ ବର୍ଷ ଧରି ମହଜୁଦ୍ ରଖି ନିଜର ମୁନାଫା ପାଇଁ ଆମ ଦେଶ ପରି ବିଭିନ୍ନ ଗରିବ ଦେଶମାନଙ୍କର ବକ୍ସାଇଟ୍ ଶେଷ କରିବା ପାଇଁ ବିକାଶ ନାମରେ ଆଲୁମିନା ଶିଳ୍ପ ଠିଆ କରିଥାନ୍ତି । ହେଲେ ଆମର ଯେତେବେଳେ ଏସବୁ କଞ୍ଚାମାଲ ଶେଷ ହୋଇଯିବ, ଆମର ଆବଶ୍ୟକତା ପାଇଁ ମଧ୍ୟ ଆଉ ନଥିବ । ଏସବୁକୁ ଦେଖିଲେ ଶିଳ୍ପର ସଂଜ୍ଞା ବଦଳି ଯାଇଛି । ଶିଳ୍ପ କେବଳ ମୁନାଫା ପାଇଁ ଏବଂ ଭୋଗବାଦର ଅର୍ଥ ବ୍ୟବସ୍ଥାକୁ ସୁଦୃଢ଼ କରିବା ପାଇଁ । ଅନ୍ୟ ପଟେ ଶିଳ୍ପକୁ ନେଇ ସ୍ୱପ୍ନ ଦେଖୁଥିବା ଯୁବକ ଯୁବତୀମାନେ ବାସ୍ତବତାକୁ ଏପର୍ଯ୍ୟନ୍ତ ଉପଲବ୍ଧ କରିବାକୁ ପ୍ରସ୍ତୁତ ନୁହନ୍ତି ବୋଲି ମରୀଚିକା ପଛରେ ଗୋଡ଼ାଇଛନ୍ତି ନିଯୁକ୍ତି ନିଶାରେ, କିନ୍ତୁ ନିଯୁକ୍ତି ନାହିଁ । ବରଂ ସରକାର କିମ୍ବା କଂପାନୀର କୌଣସି ନିଯୁକ୍ତିକୁ ଚାହିଁ ନଥିବା ଲୋକେ ନିଜର ଜୀବିକାର ଅଧିକାରରୁ ବଞ୍ଚିତ ହେଉଛନ୍ତି ଓ ହୋଇ ଚାଲିବେ ମଧ୍ୟ ଯେହେତୁ ଶିଳ୍ପ ପାଇଁ ଶେଷ ହୋଇ ଯାଉଥିବା ପ୍ରାକୃତିକ ସଂପଦ ନିକଟ ଭବିଷ୍ୟତରେ ପୁନଃ ସୃଷ୍ଟି ହେବା ଅସମ୍ଭବ । ଖଣିଜ ପଦାର୍ଥ କିମ୍ବା ଝରଣା ପୁନଃ ସୃଷ୍ଟି ହେବା ଅସମ୍ଭବ । ବକ୍ସାଇଟ ପୁନଃ ସୃଷ୍ଟି ହେବାକୁ ପ୍ରାୟ ୩ ଲକ୍ଷ ବର୍ଷରୁ ଅଧିକ ଲାଗୁଛି । ସେହିପରି ଲୁହାପଥର କ୍ରୋମ ହଜାର ହଜାର ବର୍ଷ ଲାଗେ । ଏସବୁ ଥିବା ପର୍ଯ୍ୟନ୍ତ ଜୀବଜଗତ ତଥା ପ୍ରାକୃତିକ ପରିବେଶରେ ସନ୍ତୁଳନ ଥାଏ । ଗୋଟିକର ଶେଷ ହେବା ପରେ ଅନେକଙ୍କ ବିଲୁପ୍ତି ଘଟିଥାଏ ।

ଏସବୁକୁ ହିସାବ କରିବା ଏକାନ୍ତ ଜରୁରୀ । ଆସନ୍ତା ୫୦ ବର୍ଷ ମଧ୍ୟରେ ଓଡ଼ିଶାର ଅତି ମୂଲ୍ୟବାନ ଅଧିକାଂଶ ଖଣିଜ ପଦାର୍ଥ ଶେଷ ହୋଇଗଲାବେଳକୁ ରାଜ୍ୟର ଭୌଗୋଳିକ ସ୍ଥିତିରେ କିପ୍ରକାର ବିକଟାଳ ଦୃଶ୍ୟ ଦେଖିବାକୁ ମିଳିବ କଳ୍ପନା କରିବା ଦରକାର । ଏହା ସତ୍ୱେ ଦାରିଦ୍ର୍ୟ ଲୋପ ହୋଇଥିବ କି ? ବରଂ ଦାରିଦ୍ର୍ୟର ରୂପ

Digitized by srujanika@gmail.com

ମଧ୍ୟ ଅତି ଭୟଙ୍କର ହୋଇଥିବ । ଯେହେତୁ ଏହି ପ୍ରାକୃତିକ ସଂବଳ ଉପରେ ନିର୍ଭରଶୀଳ ଚାଷୀ ଓ ଆଦିବାସୀ ନିଜର ସବୁକିଛି ହରାଇ କେବଳ ଉଲଗ୍ନ ଭିକାରୀ ହୋଇ ବୁଲୁଥିବେ ଓ ରାଜ୍ୟରେ ପ୍ରାକୃତିକ ବିପର୍ଯ୍ୟୟ ଅପରିହାର୍ଯ୍ୟ ହୋଇପଡ଼ିବ । ବର୍ଷାର ଅଭାବ, ଜଳର ଅଭାବ ସାଙ୍ଗକୁ ପ୍ରଦୂଷଣ ଓ ଜଙ୍ଗଲ ଧ୍ୱଂସ ହେବ । ଗରିବ ଓ ନିମ୍ନ ମଧ୍ୟବିତ୍ତ ପରିବାର ଇଥୋପିଆ ଦେଶର ବୁଭୁକ୍ଷୁ ଜନତାଙ୍କ ପରି ଚିତ୍କାର କରୁଥିବେ ।

ହଁ, ଆଉ ଏକ କ୍ଷୁଦ୍ର ଗୋଷ୍ଠୀ ଖୁବ୍ ଆଭିଜାତ୍ୟ ଓ ଅତ୍ୟାଧୁନିକ ପରିବେଶରେ ଟହଲ ମାରୁଥିବେ, କିନ୍ତୁ ସେତିକିବେଳେ ସମାଜ ଓ ଶାସନ ଭିତରେ ବିଦ୍ରୋହର ସ୍ୱର ମଧ୍ୟ ଅତି ଅସମ୍ଭାଳ ହୋଇ ପଡୁଥିବ । ଆଜି ବିଧାନସଭା କିମ୍ବା ସାଂସଦରେ ବସିଥିବା ଲୋକପ୍ରତିନିଧିମାନେ ଅନୁଶୋଚନା କରନ୍ତୁ ବିକାଶର ଚକ କୁଆଡ଼କୁ ଯାଉଛି । ବିଭିନ୍ନ ବୁଝାମଣା ହୋଇଥିବା ଓ ହେବାକୁ ଥିବା ବୁଝାମଣା ଚୁକ୍ତିପତ୍ର ଅଧ୍ୟୟନରୁ ଜଣାପଡୁଛି ଯେ - ଲୁହାପଥର ୩୦ ବର୍ଷ, ବକ୍ସାଇଟି ୪୫ ବର୍ଷ, କୋଇଲା ୧୦୦ ବର୍ଷ, କ୍ରୋମ ୩୦ ବର୍ଷ ଓ ଜଙ୍ଗଲ ୧୫ ବର୍ଷରେ ଶେଷ ହୋଇଯିବ । ତା'ପରେ ଆଉ କ'ଣ କ'ଣ ହେବ ଭାବିବାକି ?

ତେଣୁ ଏକଥା କହିଲାବେଳେ ଶିଳ୍ପକୁ ବିରୋଧ କରାଯାଉନାହିଁ । ଶିଳ୍ପ କାହାପାଇଁ ଓ ବିକାଶ ନାମରେ ବିନାଶର ହିସାବ ବିଚାର କରିବାକୁ କୁହାଯାଉଛି । ଯେଉଁଠି କୃଷି ଅଛି, ଜଙ୍ଗଲ ଅଛି, ତାର ବିକାଶ ଓ ଉତ୍ପାଦନ ସହ ମାନବିକ ସଂସାଧନର ଉପଯୋଗ କିପରି ହେବ ତାକୁ ପ୍ରାଥମିକତା ଦେଲେ ଏକ ବିକଳ୍ପ ସମ୍ଭବପର । ଅତୀତରେ ବିକଳ୍ପର ପ୍ରୟୋଗ ହୋଇଛି । ଏପରିକି ଭାରତର ସ୍ୱାଧୀନତା ଆନ୍ଦୋଳନର ଏକ ଅସ୍ତ୍ର ଥିଲା ବିଦେଶୀ ବସ୍ତ୍ର ବର୍ଜନ ଓ ଖଦୀର ଉତ୍ପାଦନ । ଚରଖା ହୋଇଗଲା ଲକ୍ଷ ଲକ୍ଷ ଲୋକଙ୍କ ଜୀବିକାର ଉତ୍ସ ଏବଂ ମାଞ୍ଚେଷ୍ଟର ଲୁଗା ମାଲିକର ଶୋଷଣକୁ ପ୍ରତିହତ କରିପାରିଥିଲା । ଆଜିବି ପୁଣି ସେହି ପୃଷ୍ଠଭୂମିରେ ବିକଳ୍ପର ପ୍ରୟୋଗ ସମ୍ଭବପର । ଓଡ଼ିଶା ସରକାରଙ୍କ ଅର୍ଥନୈତିକ ସର୍ବେକ୍ଷଣ ୨୦୦୧-୨୦୦୨ର ପରିସଂଖ୍ୟାନକୁ ଅନୁଧ୍ୟାନ କଲେ ଜଣାଯାଉଛି ଯେ ଖଣି କ୍ଷେତ୍ରରେ ୭୯% ପୁଞ୍ଜିଲଗାଣ ବେଳେ ମାତ୍ର ୩% ରୋଜଗାର ସୃଷ୍ଟି ହେଉଛି । ସେହିପରି ବଡ଼ ଓ ମଧ୍ୟମ ଶିଳ୍ପରେ ୧୧%, ପୁଞ୍ଜି ବିନିଯୋଗରେ ୨.୫%, କ୍ଷୁଦ୍ରଶିଳ୍ପରେ ୮% ପୁଞ୍ଜି ଲଗାଣରେ ୧୩%, କୁଟୀର ଶିଳ୍ପରେ ୩% ପୁଞ୍ଜି ଲଗାଣରେ ୮୧% ରୋଜଗାର ସୃଷ୍ଟି ହୋଇପାରିଛି । ଅର୍ଥାତ ଏକ କୋଟି ଟଙ୍କା ପୁଞ୍ଜି ନିବେଶରେ ଖଣିରେ ୭, ବଡ଼ ଓ ମଧ୍ୟମ ଶିଳ୍ପରେ ୪୦, କ୍ଷୁଦ୍ରଶିଳ୍ପରେ ୨୮୨ ଓ କୁଟୀର ଶିଳ୍ପରେ ୪୪୭୫ ଜଣଙ୍କ ପାଇଁ କର୍ମନିଯୁକ୍ତି

Digitized by srujanika@gmail.com

ସୃଷ୍ଟି କରିଛି । ବର୍ତ୍ତମାନର ପୁଞ୍ଜିନିବେଶରେ ୪ କୋଟି ଟଙ୍କା ଗୋଟିଏ ନିଯୁକ୍ତି ସୃଷ୍ଟି କରୁଛି । ତେଣୁ ଆମେ ଆମର ବେକାରୀ ଯୁବ ସମାଜକୁ ତଥା ଗାଁର ଜନତାଙ୍କୁ କାମ, ପୁଞ୍ଜି ଲଗାଇ ଆର୍ଥିକ ନ୍ୟାୟ ଓ ସମତା ଦେବାକୁ କେଉଁଟିକୁ ବାଛି ନେବାକୁ ହେବ ତାକୁ ଯୋଜନାକାରୀମାନେ ସ୍ପଷ୍ଟ ବୁଝିପାରୁନାହାନ୍ତି କାହିଁକି ? ପ୍ରଥମେ ଶିଳ୍ପ କାହା ସ୍ୱାର୍ଥରେ ନିଷ୍ପତ୍ତି ହେବା ଏକାନ୍ତ ଜରୁରୀ । ଯଦି ତାହା ବହୁଜନଙ୍କ ବିନାଶର କାରଣ ହେବ, ତାକୁ ପ୍ରତିରୋଧ କରିବା ମାନବିକ କର୍ତ୍ତବ୍ୟ ।



Digitized by srujanika@gmail.com

# ଶିଳ୍ପାୟନ ବନାମ୍ ଲୁଟରାୟନ୍
# ପୋସ୍କ ନେବ କେତେ ଦେବ କେତେ ?

ଦକ୍ଷିଣ କୋରିଆରୁ ଆସିଥିବା ଇସ୍‌ପାତ କଂପାନୀ ପୋସ୍କ ଆମେରିକା ସାମ୍ରାଜ୍ୟବାଦର ଏକ ଅଂଶ ବିଶେଷ । ଏଥିରେ ଯୁକ୍ତରାଷ୍ଟ୍ର ଆମେରିକାର ବ୍ୟାଙ୍କ ଅଫ୍ ନ୍ୟୁୟର୍କର ୨୨% ସମେତ ଅନ୍ୟମାନଙ୍କ ୪୪% ଓ ଅଷ୍ଟ୍ରେଲିଆର ବହୁରାଷ୍ଟ୍ରୀୟ କମ୍ପାନୀ ବିଏଚପି ବିଲଟନ୍ ଲିଃ ର ୨୦% ପୁଞ୍ଜିନିବେଶ ହୋଇଛି । ଏହାର ଟ୍ରଷ୍ଟି ବ୍ୟାଙ୍କ ଅଫ୍ ନ୍ୟୁୟର୍କ । ଖୁବ୍ ମତୁଆଲ ହୋଇ ପ୍ରଧାନମନ୍ତ୍ରୀଙ୍କଠାରୁ ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ କହୁଛନ୍ତି ୧୨ ବିଲିୟନ୍ ଡ଼ଲାର ବିଦେଶ ପୁଞ୍ଜିଆସୁଛି । ଏହାର ମୂଲ୍ୟ ୫୨ ହଜାର କୋଟି ଟଙ୍କା ଓଡ଼ିଶାକୁ ଆସୁଛି ବୋଲି କହି ରାଜ୍ୟର୍ ଅନେକ ମଧବିତ୍ତ ପାଠୁଆ ଓ ବେକାର ଯୁବକ-ଯୁବତୀଙ୍କ ମଧରେ ଏକ ସ୍ୱପ୍ନର ଐରାବତ୍ ଠିଆ କରାଯାଉଛି । କିନ୍ତୁ ଆଜି ୧୨ ବିଲିୟନ ଡ଼ଲାରର ମୂଲ୍ୟ ୫୨ ହଜାରରୁ ୪୭ ହଜାର କୋଟିଟଙ୍କାକୁ ଖସି ଆସିଲାଣି ପୋସ୍କପାଇଁ ଜମି ଅଧିଗ୍ରହଣ ସମ୍ଭବପର ହୋଇନଥିବାବେଳେ । ଏହି ପୁଞ୍ଜି ଆସୁନି ସିଧା ଲୋକଙ୍କ ପାଖକୁ କିମ୍ବା ଓଡ଼ିଶାର ସାଧାରଣ ଲୋକଙ୍କ ଆୟ ସୃଷ୍ଟିପାଇଁ । ଏହାର ୨/୩ ଭାଗ କୋରିଆ ଓ ଅନ୍ୟଦେଶରେ ରହିବ ଯେଉଁଠାରୁ ଟେକ୍‌ନୋଲୋଜି ଓ କାରଖାନା ସରଞ୍ଜାମ ଆସିବ । ଆଉ ୧/୩ ମଧରୁ କ୍ରମଶଃ ଷ୍ଟିଲ୍ ପ୍ରକ୍ରିୟାକରଣରେ ବିନିଯୋଗ ହେବ । ସେଥିମଧରୁ ପୋସ୍କ-ଇଣ୍ଡିଆ ନାମରେ ଆମ ଦେଶରୁ ପୁଞ୍ଜି ସୃଷ୍ଟି କରି ଏଠି ବିନିଯୋଗ କରିବା । ଏପରି ଅନେକ ଅନେକ କଂପାନୀ କରିଛନ୍ତି । କେବଳ ମାଟି, ବାଲି, ସିମେଣ୍ଟ, ପଥର ଓ ଆବଶ୍ୟକ ଶ୍ରମ ପାଇଁ ଆବଶ୍ୟକ ପୁଞ୍ଜି ଏଠି ବ୍ୟୟହେବ ଯାହାକି ନିର୍ମାଣକାର୍ଯ୍ୟ ପର୍ଯ୍ୟନ୍ତ । ପ୍ରଥମ ପର୍ଯ୍ୟାୟରେ ପୋସ୍କ ପୁଞ୍ଜିନିବେଶକରି ବାର୍ଷିକ ୬ ନିୟୁତ ଟନ୍ ଇସ୍ପାତ ଉତ୍ପାଦନ କରିବ । ଅର୍ଥାତ୍ ୪ ବର୍ଷ ପରେ ୨ୟ ପର୍ଯ୍ୟାୟ ଆରମ୍ଭ କରିବ । ଏହି ସମୟ ମଧରେ ଷ୍ଟିଲ ବିକ୍ରିର ଲାଭ ଭିତରେ- କେବଳ ଆଇରନ୍ ଓରରୁ ମୁନାଫା ମିଳିବ ଅତି କମ୍‌ରେ ୧୫ ହଜାର କୋଟି ଟଙ୍କା । ଦ୍ୱିତୀୟ ଫେଜ୍ ପାଇଁ ପୁଞ୍ଜିନିବେଶ ଆସିଯିବ ପ୍ରଥମ ଫେଜର ଉତ୍ପାଦନର ରପ୍ତାନୀରୁ । ତେଣୁ ସମସ୍ତ ପୁଞ୍ଜି ପୋସ୍କପାଇଁ ବଜାରରୁ ଉଠାଇବା ଆବଶ୍ୟକତା ପଡ଼ିବନାହିଁ । ମାଛର ତେଲରେ ମାଛ ଭାଜିଲାପରି । କମ୍ପାନୀସହ ରାଜ୍ୟସରକାରଙ୍କ ଯେଉଁ ବୁଝାମଣା ପତ୍ର ସ୍ୱାକ୍ଷରିତ ହୋଇଛି ସେଥିରୁ ଜାଣିହେବ ଆମେ ଦେବା କ'ଣ ଓ ପାଇବା କ'ଣ !

Digitized by srujanika@gmail.com

ବିନା ବଜାର ମୂଲ୍ୟରେ କେବଳ ରୟାଲଟି ନେଇ ଏଠାର ଇସ୍ପାତ ପ୍ରକଳ୍ପପାଇଁ ୬୦ କୋଟି ଟନ୍ ଲୁହାପଥର ଦିଆଯିବ । ମାତ୍ର ୩୦ ଟଙ୍କା କମ୍ପାନୀ ଦେବ ପ୍ରତି ଏକ ଟନ୍ ଲୁହାପଥର ପାଇଁ । ୬୦ କୋଟି ଟନ୍ ପାଇଁ ୨୫ ବର୍ଷ ମଧ୍ୟରେ ମିଳିବ ମାତ୍ର ୧୮୦୦ କୋଟି ଟଙ୍କା । ଏହାର ବଜାର ଦାମ ଆନ୍ତର୍ଯ୍ୟାତିକ ବଜାରରେ ୧୯୦ ଡ଼ଲାର ଅର୍ଥାତ ୭ ହଜାର ଟଙ୍କାରୁ ଅଧିକ । ଆମ ଦେଶରେ ୪ ହଜାରରୁ କମ୍ ନୁହଁ । ୨୦ କୋଟି ଟନ୍ ଲୁହାପଥର ଆମଦେଶରୁ ରପ୍ତାନୀକରି ଏହା ବଦଳରେ ବ୍ରାଜିଲରୁ ଲୁହାପଥର ଆଣିବ । ଏହା ଏକ ଠକେଇ କାରବାର । ଆମଠାରୁ ମାଗଣାନେଇ ବ୍ରାଜିଲ୍ ବଜାରରେ ବିକିବ ଓ ବ୍ରାଜିଲ୍‌ରୁ ସେହି ଦାମ୍‌ରେ ଅନ୍ୟ କିସମର ଲୁହାପଥର ଆଣିବ । ନିଜ ଦେଶ ଦକ୍ଷିଣକୋରିଆର ପ୍ଲାଣ୍ଟ ପାଇଁ ଆଉ ୪୦ କୋଟି ଟନ୍ ଲୁହାପଥର ରପ୍ତାନୀ କରିବାକୁ ଦିଆଯିବ । ତାହାମଧ କେଉଁ ଦରରେ କୁହାଯାଇନାହିଁ । ଅର୍ଥାତ୍ ବଜାର ଦରରେ ନୁହଁ । ଏହା ସହ ଇସ୍ପାତ୍ ଉତ୍ପାଦନପାଇଁ ଆବଶ୍ୟକ କୋଇଲାଖଣି ଦିଆଯିବ । ଇସ୍ପାତ ଉତ୍ପାଦନ ପାଇଁ ଆବଶ୍ୟକ କ୍ରୋମ, ମାଙ୍ଗାନିଜ୍ ଫାକ୍‌ସ ଗ୍ରେଡ୍ ଚୂନପଥର ଓ ଡୋଲମାଇଟ୍ ମଧ ରୟାଲ୍‌ଟି ଦରରେ ଅର୍ଥାତ୍ ମାଗଣାରେ ଦିଆଯିବ । ଏଥିସହ କୃଷି ଓ ପିଇବା ପାଇଁ ଥିବା ମହାନଦୀର ଯୋବ୍ରା ଆନିକଟରୁ ପାଣି ଦିଆଯିବ ଯାହା ଜଳସେଚନରେ ବ୍ୟବହୃତ ହେଉଛି ତାଳଦଣ୍ଡା କେନାଲ ଦ୍ୱାରା । ଏହି ପାଣି ଉପରେ କଟକ ସହରବାସୀ ନିର୍ଭରଶୀଳ । ଖଣ୍ଡାଧାର ପର୍ବତରୁ ଲୁହାପଥର ଖନନ ହେଲାପରେ ଘଞ୍ଚ ଜଙ୍ଗଲ ଧ୍ୱଂସ ହେବା ସହ ଜଳାଧାର ଗୁଡ଼ିକ ଶୁଖିଯିବ ଓ ଚିରଂଜୀବୀ ଖଣ୍ଡାଧାର ଜଳପ୍ରପାତ ଅଳ୍ପାୟୁ ହୋଇଯିବ । ଏଠି ୨୬ ଗୋଟି ଚିର ସ୍ରୋତା ଝରଣା ରହିଛି । ଏସବୁ ବ୍ରାହ୍ମଣୀ ନଦୀକୁ ଜଳ ଦିଅନ୍ତି ଓ ଚାଷ କାର୍ଯ୍ୟରେ ବ୍ୟବହୃତହୁଏ । ସୁନ୍ଦରଗଡ଼ ଓ କେଉଁଝର ଜିଲ୍ଲାର ଶତାଧିକ ଗାଁର ଆଦିବାସୀ ଓ ଚାଷୀ ଜଙ୍ଗଲ ଓ କୃଷିରୁ ପାଉଥିବା ଜୀବିକାରୁ ବଞ୍ଚିତ ହେବେ ଓ ପ୍ରଦୂଷଣର ଶିକାର ହେବେ । ଏହି ଜଙ୍ଗଲ ଓ ଚାଷରୁ ଜାତ ଲାଖ, ଝୁଣା, ମହୁଲ, ଝୁଣା, ଶିଆଳି, ଲିଚି, ସୋରିଷ, ଧାନ, ମାଣ୍ଡିଆର କ୍ଷୟ ହେବ । ଏହାର ଆର୍ଥିକ ମୂଲ୍ୟାୟନ ସରକାର କରିଛିକି ? ସୁନ୍ଦରଗଡ଼ ଓ କେଉଁଝର ଜିଲ୍ଲାକୁ କ'ଣ ଜଙ୍ଗଲ ଶୂନ୍ୟ କରିଦିଆଯିବ ? ଯଦି ହଁ, ତାପରେ କ'ଣ ? ଏହାର ଆର୍ଥିକ ମୂଲ୍ୟାୟନ ସାମାଜିକ ଓ ସାଂସ୍କୃତିକ ମୂଲ୍ୟାୟନ କାହିଁକି ହେଉନି ? ଏହି ଖଣିଖନନରେ ପ୍ରତ୍ୟକ୍ଷ ଭାବେ ୩୦ ହଜାର ଲୋକ ଜଳ, ଜମି, ଜଙ୍ଗଲରୁ ବଞ୍ଚିତ ହେବେ । ବିସ୍ଥାପନର ନିଆଁରେ ପୋଡି ମରିବେ ।

ପାରାଦୀପ ଅଞ୍ଚଳର ୩ଟି ପଞ୍ଚାୟତରୁ ୬ ହଜାର ଏକର ଉର୍ବର ଚାଷଜମି ଦିଆଯିବ ଷ୍ଟିଲ୍‌ପ୍ଲାଣ୍ଟ ଓ ସହରପାଇଁ । ଏହାଦ୍ୱାରା ଧାନ, ପାନ, ମୀନରୁ ଆୟ କରୁଥିବା ଚାଷୀ ଓ ଜୀବିକା ପାଉଥିବା କୃଷିଜୀବୀ ସବୁଦିନ ପାଇଁ ବଞ୍ଚିବାର ରାସ୍ତା ହରାଇବେ । ଏହା ସିଧା

Digitized by srujanika@gmail.com

୨୦ ହଜାର ଲୋକଙ୍କ ଭାତରେ ଧୂଳି ପକାଇବ । ପରେ ସହରୀକରଣ ଦ୍ୱାରା ଢ଼ିଙ୍କିଆ, ନୂଆଗାଁଗଡ଼ କୁଜଙ୍ଗ ଅଞ୍ଚଳ ବ୍ୟତୀତ କୁଜଙ୍ଗ ଅଞ୍ଚଳରେ ଦଶବର୍ଷ ମଧ୍ୟରେ ୨୦ ହଜାର ଏକର ଜମି କୃଷିରୁ ଅଣକୃଷିରେ ପରିଣତ ହେବ । ଜମି ମାଫିଆମାନଙ୍କ ହାତରେ ରହିବ ଇଷ୍ଟେଟ ବ୍ୟବସାୟ । ଏପରି ୩୦ ହଜାର ଏକର ଚାଷ ଜମି ସବୁଦିନ ପାଇଁ ଅଣଚାଷରେ ପରିଣତ ହେବ । ଫଳରେ ବାର୍ଷିକ ଦୁଇଲକ୍ଷ କ୍ୱିଣ୍ଟାଲ୍ ଚାଉଳ ଉତ୍ପାଦନ ସବୁଦିନ ପାଇଁ ହରାଇବା । ଏହା ଖାଦ୍ୟ ସୁରକ୍ଷାପ୍ରତି ବିପଦ । କଂପାନୀପାଇଁ ୫ଟାଧାର ବନ୍ଦର ହେଲେ ବର୍ଷାଦିନେ ଚାଷଜମି ଜଳମଗ୍ନ ହେବ । ଜଗତସିଂହପୁର ଜିଲ୍ଲାର କୃଷି ବାଧାପ୍ରାପ୍ତ ହେବ ମହାନଦୀର ଜଳକୁ ପୋସ୍କକୁ ଦିଆଗଲେ । ଏସବୁ ଦ୍ୱାରା ବି ଖାଦ୍ୟ ଉତ୍ପାଦନ ହ୍ରାସ ହେବ ଓ ଚାଷୀ ଅପୂରଣୀୟ କ୍ଷତି ସହିବ । ପାନ ବରଜରେ ଏକ ଏକରରୁ ଅନ୍ୟୂନ ଏକଲକ୍ଷ ଟଙ୍କା ଆୟକରୁଥିବା ବ୍ୟକ୍ତିଟିକୁ ଜମିର ମୂଲ୍ୟ କେତେ ଦେଇପାରିବ ? କୁହାଯାଉଛି ୩୫୦୦ ଏକର ସରକାରୀ ଜମି । ବର୍ଷ ବର୍ଷ ଧରି ଜମିକୁ ଚାଷ କରୁଥିବା ଲୋକମାନେ କାହାର ? ସରକାର ଚଳାଉଥିବା ବ୍ୟକ୍ତିମାନଙ୍କର ନିଜ ବାପ ସଂପତ୍ତି ନୁହଁ ଯେ ସେମାନେ ଠିକ୍ କରିବେ ସଂପତ୍ତିର ହସ୍ତାନ୍ତର । ଏଠି ଜମି ଲୋକଙ୍କର ନୁହଁ କିନ୍ତୁ ଏକ ବିଦେଶୀ କଂପାନୀର ହେବ । ଏହାକୁ କେବଳ ଏକ ଗୋଲାମ ସ୍ୱୀକାର କରିପାରେ, ନଚେତ୍ ବରଦାସ୍ତର ବାହାରେ । ଏବେ ହିସାବ କରିବା କଂପାନୀକୁ ଆମେ ଦେବା କେତେ । ଉତ୍ତୋଳନ ବ୍ୟୟ ପରେ ଖଣିରୁ ପାଇବ ମୁନାଫା ଟନ୍ ପିଛା ଅତି କମ୍‌ରେ ୩ ହଜାର ଟଙ୍କା ଆଜିର ଦରରେ । ପୁଣି ଦର ବୃଦ୍ଧିହେଲେ ପରବର୍ତ୍ତୀ ସମୟରେ ଅଧିକ ମୁନାଫା ମିଳିବ । ବର୍ତ୍ତମାନ ଦରରେ ଆମେ ହରାଇବା ୬୦ କୋଟି ଟନ୍‌ରେ ୧୮୦୦୦୦ କୋଟି ଟଙ୍କା । ଧାନ, ପାନ ଓ ମୀନରୁ ଲୋକେ ହରାଇବେ ବର୍ଷକୁ ପ୍ରାୟ ୫୦ କୋଟି : ୩୦ ବର୍ଷରେ ୧୫୦୦ କୋଟି । ଅନ୍ୟ ସମସ୍ତ ଖଣିଜ କଞ୍ଚାମାଲ ଲିଜ୍‌ରେ ଦିଆଯିବ । ତାର ମୁନାଫା ନେବ କମ୍ପାନୀ । ପୁଣି ପ୍ଲାଣ୍ଟ ଏବଂ ବନ୍ଦର ଅଞ୍ଚଳ ବିଶେଷ ଆର୍ଥିକ ଅଞ୍ଚଳ ରୂପେ ଅନୁମୋଦିତ ହୋଇଛି । ୧୦ ବର୍ଷ ପର୍ଯ୍ୟନ୍ତ କେନ୍ଦ୍ର ଓ ରାଜ୍ୟ ସରକାର ପଇସାଟିଏ ବି ଟିକସ ପାଇବେ ନାହିଁ । ଏହି ଆଇନ ଦ୍ୱାରା ବିଦେଶୀ କମ୍ପାନୀ ପୋସ୍କ ଆମଦେଶ ଭିତରେ ଏକ ସ୍ୱାଧୀନ ଭୂଖଣ୍ଡ ପାଇବ ଓ ଦେଶ ଭିତରେ ବିଦେଶୀ ରାଜ୍ ଚାଲିବ । ଏପରିକି କମ୍ପାନୀପାଇଁ କଟକରୁ କୌଣସି ପଦାର୍ଥ କିଣିଲେବି ସେଲଟେକ୍ସ ଦେବନାହିଁ । ଆଇନ ଅନୁଯାୟୀ ପୋସ୍କ ପାଇଁ ପ୍ରଥମ ଦଶବର୍ଷରେ କେନ୍ଦ୍ର ସରକାର ୨୫ ହଜାର ଓ ରାଜ୍ୟ ସରକାର ୧୦ ହଜାର କୋଟି ଟଙ୍କା ହରାଇବେ । ଏସବୁକୁ ମିଶାଇଲେ ପୋସ୍କ ଆମଠାରୁ ପାଇବ ୨.୫୦ ଲକ୍ଷ କୋଟି ଟଙ୍କାରୁ ଅଧିକ ମୁନାଫା। ଏହାସମେତ ସେ ଷ୍ଟିଲ୍ ରପ୍ତାନି କରି ୩୦ ବର୍ଷ ମଧ୍ୟରେ ୧୦ ଲକ୍ଷ କୋଟି ଟଙ୍କା ଲାଭ କରିବ । ଖଣିଜ ସ୍ଥାନରୁ ମୁଖ୍ୟ ରାସ୍ତା ପର୍ଯ୍ୟନ୍ତ ଦୁଇଲେନ୍

Digitized by srujanika@gmail.com

ରୋଡ଼ ନିର୍ମାଣକରିବେ ରାଜ୍ୟସରକାର । ବାଣଂପାଣି-ପାରାଦୀପ (କମ୍ପାନୀ ପାଇଁ) ଏକ ରେଲ୍‌ଲାଇନ୍ କରାଯିବା ପ୍ରସ୍ତାବ ରହିଛି । ଏବେ ପ୍ରଶ୍ନ ତା' ପାଇଁ ବନ୍ଦର କାହିଁକି ? ପାରାଦୀପ ରାଷ୍ଟ୍ରୀୟ ଉଦ୍ୟୋଗ । ଏହା ଆସନ୍ତା ଦିନରେ ତାର ମାଲ୍ ବୋହିବା ଶକ୍ତି ବୃଦ୍ଧି ହେବ । ଏହାଦୂରତ୍ୱ ୧୦ କିଲୋମିଟର ଦୂରରେ ଏକ ବିଦେଶୀ ଘରୋଇ କମ୍ପାନୀ ବନ୍ଦର କରିବାକୁ ଅନୁମତି ଓ ତାକୁ ପୁଣି ସେଜ୍‌ର ଅନ୍ତରଭୁକ୍ତ । ଏହା ଦ୍ୱାରା ବିଦେଶୀ ଆମଦାନୀ ଓ ରପ୍ତାନୀ ସଂକ୍ରାନ୍ତରେ ସମସ୍ତ ତଥ୍ୟ ଲୁକ୍‌କାୟତ ରହିବ । ଏଥିରେ ଦକ୍ଷିଣକୋରିଆର ନିଜସ୍ୱ ଷ୍ଟିଲ୍ ପ୍ଲାଣ୍ଟ ପାଇଁ ଆମ ରାଜ୍ୟରୁ କଞ୍ଚାମାଲ ଚୋରା ବି ଯିବ । ଆଜି କେନ୍ଦୁଝରରୁ ପାରାଦୀପ ବନ୍ଦରକୁ ଚୋରା ଖଣିଜମାଲ ଖୋଲାରେ ଯାଉଥିବାବେଳେ ଆଇନ କିଛି କରିପାରୁ ନାହିଁ । ସେଇ୍ ଅଞ୍ଚଳରେ କେଉଁ ପରିମାଣର ବିଦେଶ ଚାଲାଣ ହେବ ଅନୁଭବ କରିହେଉଛି । ପୁଣି ରାଷ୍ଟ୍ରର ସୁରକ୍ଷା ମଧ ପ୍ରଶ୍ନବାଚୀ ବୋଲି ଦେଶରକ୍ଷା ମନ୍ତ୍ରାଳୟ କେନ୍ଦ୍ର ସରକାରଙ୍କୁ ଲେଖିଛି । ଓଡ଼ିଶା ସରକାର ଗୋପାଳପୁର ବନ୍ଦରକୁ ଘରୋଇ କମ୍ପାନୀକୁ ଦେବାବେଳେ ଚୁକ୍ତିକରିଛନ୍ତି ୨୫ କି.ମି. ଦୂରରେ ଅନ୍ୟକାହାରିକୁ ବନ୍ଦର ପାଇଁ ଅନୁମତି ଦିଆଯିବ ନାହିଁ । ଏବେ ଧାମରାରେ ମଧ ଏକ ଘରୋଇକମ୍ପାନୀ ସହ ଏପରି ଚୁକ୍ତି କରିଛନ୍ତି । ତାହାହେଲେ ପାରାଦୀପ ବନ୍ଦରର ୧୦ କି.ମି. ଦୂରରେ ପୋସ୍କୁକୁ କିପରି ଦିଆଯାଇଛି ? ଏହା କ'ଣ ଦେଶପ୍ରେମର ନମୁନା ? ପୋସ୍କପାଇଁ ଏତେ ପ୍ରେମ କାହିଁକି ?

ବିଶ୍ୱରେ ପ୍ରତ୍ୟେକ ଦେଶର ଖଣିଜ ପଦାର୍ଥର ଅର୍ଥନୀତିର ପ୍ରଥମ ବିଧି ହେଲା ଖଣିଜ ବିଜ୍ଞତାକୁ ବ୍ୟବହାର କରିବା । ତାକୁ ଇଂରେଜୀରେ Application of Mineral Intelligence କୁହାଯାଏ । ଏହାକୁ ଉପଯୋଗ କରି ଜାଣିବା ଦରକାର ପୋସ୍କୁକୁ ଦେବାପାଇଁ ଥିବା ଏକ ହଜାର ନିୟୁତ ଟନ୍ ଲୁହାପଥରରେ ମାଙ୍ଗାନିଜର ଅଧିକ ପରିମାଣ ଅଛି କି ନାହିଁ, ଯଦି ଅଛି, ତାହାକୁ ବ୍ଲାକ ଓର୍ କୁହାଯାଏ ଯାହା ଫେରୋମାଙ୍ଗାନିଜ୍ ଏଲୟ ଉତ୍ପାଦନପାଇଁ ଆବଶ୍ୟକ । ଆମ ଦେଶରେ ଅଭାବଥିବା ଷ୍ଟ୍ରେଟଜିକ୍ ମେଟାଲ Tungsten ores ଦକ୍ଷିଣ କୋରିଆରୁ ଆମ ରାଜ୍ୟର ଓର୍ ବଦଳରେ ଆମଦାନୀ କରାଯିବାକୁ ଚୁକ୍ତିରେ ସର୍ତ୍ତରଖାଯାଇ ପାରିଥାନ୍ତା । ଏପରି ଖଣିଜ ବିଜ୍ଞତାକୁ ରାଜ୍ୟ କିମ୍ବା କେନ୍ଦ୍ର ସରକାର ପ୍ରୟୋଗ କରି ନାହାନ୍ତି କାହିଁକି ?

ପୃଥିବୀରେ ପୋସ୍କ ଶସ୍ତାରେ ଇସ୍ପାତ ଉତ୍ପାଦନକାରୀ ବୋଲି ଦାବିକରେ । ଯଦି ତା' ଦେଶରେ ଆଇରନ୍ ଓର୍ ବାହାରରୁ କିଣିଆଣି, ଶସ୍ତାରେ ଉତ୍ପାଦନ କରିପାରୁଛି ଆମ ଦେଶକୁ କାହିଁକି ଆସିଛି ସମସ୍ତ ରିହାତି ସହ ମାଗଣାରେ ଓର୍ ନେବାକୁ ? ଏଥିପାଇଁ ରାଜ୍ୟ ମୁଖ୍ୟମନ୍ତ୍ରୀ ପୋସ୍କପାଇଁ ଜିଦ୍ ଧରିବାବେଳେ ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟାଳୟ ପୋସ୍କପାଇଁ ସ୍ୱତନ୍ତ୍ର ପ୍ରକୋଷ୍ଠ ଖୋଲିଛି । ଏସବୁ ପଛରେ କ'ଣ ଥାଇପାରେ ସଚେତନ ନାଗରିକମାନେ

Digitized by srujanika@gmail.com

ଆକଳନ କରି କାର୍ଯ୍ୟକରିବା ସମୟ ଆସିଛି । ନଚେତ ସବୁ ସରିଯିବ; ଶିଳ୍ପାୟନ ନାମରେ ଲୁଟ୍‌କରଣର ବାଟ ସଫା ହୋଇଯିବ ।

ପୋସ୍କୋ ଦେବ କ'ଣ ? ଶିଳ୍ପାୟନ ନାମରେ ନିଯୁକ୍ତିର ଦିବା ସ୍ୱପ୍ନ ତିଆର କରାଯାଉଛି । କମ୍ପାନୀପାଇଁ ପ୍ରସ୍ତୁତ କରିଥିବା ଦସ୍ତୁର କମ୍ପାନୀର ପରିବେଶ ପ୍ରଭାବ ମୂଲ୍ୟାୟନ ରିପୋର୍ଟରେ ପ୍ରତ୍ୟକ୍ଷ ନିଯୁକ୍ତି ମାତ୍ର ୭୪୨୬ । ଏମାନଙ୍କ ମଧ୍ୟରୁ କୁଶଳୀ ୧୯୩୫ ଓ ମ୍ୟାନେଜର, ଅଫିସର ୨୦୬୧ ଆଉ ବଳକା ସାଧାରଣ କର୍ମଚାରୀ ଓ ସ୍ଥାୟୀ ଶ୍ରମିକ । ପ୍ଲାଣ୍ଟ ନିର୍ମାଣ ଶେଷ ହେବାପର୍ଯ୍ୟନ୍ତ ୧୭ ହଜାର ଅସ୍ଥାୟୀ ଶ୍ରମିକ କାମକରିବେ । ଉତ୍ପାଦନ କାମ ଆରମ୍ଭ ହେବାପରେ ଏମାନଙ୍କ ସ୍ଥାନ ନାହିଁ । ପରୋକ୍ଷରେ କିଏ ଗାଡ଼ି, ଘୋଡ଼ା, ହୋଟେଲରେ କାମ ପାଇପାରନ୍ତି, କିନ୍ତୁ ପ୍ରତ୍ୟକ୍ଷଭାବେ ପ୍ଲାଣ୍ଟ ଅଞ୍ଚଳର ୨୦ ହଜାର କୃଷିଜୀବୀ, ମତ୍ସ୍ୟଜୀବୀ ଓ ଖଣିଅଞ୍ଚଳର ୨୫ ହଜାର ଜଙ୍ଗଲବାସୀ ଜୀବିକାସହ ଆର୍ଥିକ ଓ ସାମାଜିକ ସୁରକ୍ଷା ସବୁଦିନପାଇଁ ହରାଇବେ । ଏସବୁ ସତ୍ତ୍ୱେ ଏହି ଷ୍ଟିଲ୍‌ପ୍ଲାଣ୍ଟ କାହିଁକି ଓ କାହାପାଇଁ ? ପ୍ରଶ୍ନ ପଚାରିଲେ ବିକାଶକୁ ବିରୋଧ ବୋଲି ଧରିନେବା କେତେ ଯଥାର୍ଥ ? ଏହାର ଇସ୍ପାତ ଉତ୍ପାଦନ ଶତ ପ୍ରତିଶତ ରପ୍ତାନିପାଇଁ ଯାହାକି ବିଶ୍ୱ ବଜାରରେ ବିକ୍ରିହେବ । ଉପଭୋକ୍ତାବାଦ ତଥା ଜଗତୀକରଣ ପ୍ରକ୍ରିୟା କରିଆରେ ଯାହାପାଖରେ ପ୍ରଚୁର ପୁଞ୍ଜି ଓ ଟେକ୍‌ନୋଲଜି ଅଛି, ତାକୁ ଅନ୍ୟର ସମ୍ବଳ ଅପହରଣ କରିନେବାକୁ ଅଧିକାର ଦେବା କ'ଣ ବିକାଶର ଅପରିହାର୍ଯ୍ୟ କାର୍ଯ୍ୟସୂଚୀ ? କାହାରି ଘର ଭିତରକୁ ପ୍ରବେଶ କରିବାକୁ ଅନୁମତି ନନେଇ ପଶିଗଲେ ଅଭଦ୍ର ବୋଲି କୁହାଯାଏ । ବଡ଼ ବଡ଼ ଅଫିସରଙ୍କ ଘର ଦୁଆରେ କୁକୁର ବନ୍ଧା ହୋଇଥାଏ । ବିନା ଅନୁମତିରେ କେହି ଦୁଆର ମାଡ଼ିଲେ କାମୁଡ଼ି ଦେବାକୁ କୁକୁରକୁ ପ୍ରଶିକ୍ଷଣ ଦିଆଯାଇଥାଏ । କିନ୍ତୁ ଅନୁମତି ନ ନେଇ ହଜାର ହଜାର ଲୋକଙ୍କ ଘର, ବାଡ଼ି, ଜମି ଉପରେ ଆଉ ଜଣେ କିଏ ଆସି ଜବରଦସ୍ତ ଇମାରତ ତୋଳିବା ଏକ ଗୁଣ୍ଡାଗର୍ଦ୍ଦି କାର୍ଯ୍ୟନୁହଁକି ? ସାଧାରଣ ସ୍ୱାର୍ଥ ପାଇଁ ବୋଲି କହି ଘରୋଇ କମ୍ପାନୀମାନଙ୍କ ପାଇଁ ଜବରଦସ୍ତ ଜମି ଅଧିଗ୍ରହଣ ଆଇନ ଗଣତନ୍ତ୍ର ଓ ସ୍ୱାଧୀନତା ପ୍ରତି ଅବମାନନା ନୁହଁ କି ? ଏହାର ପ୍ରତିରୋଧ କଲେ ଗୁଳି ବି ଖାଇବାକୁ ପଡୁଛି । ଏପରି ଏକ ବ୍ୟବସ୍ଥା ବର୍ବର ସଭ୍ୟତାର ପ୍ରତୀକ ନୁହଁକି ?

ପୋସ୍କୋ କମ୍ପାନୀ ଚାହିଁଥିଲା ବ୍ରାଜିଲ୍, ଚୀନ୍ କିମ୍ବା ଭାରତରେ ପ୍ରବେଶ କରିବାକୁ । କିନ୍ତୁ ଭାରତ ବ୍ୟତୀତ କେହି ରାଜି ହେଲେ ନାହିଁ । ବିଶ୍ୱରେ ବ୍ରାଜିଲ୍ ଦ୍ୱିତୀୟ ବୃହତ୍ତମ ଲୁହାପଥର ଗଚ୍ଛିତ ଦେଶ । ସେ ପୋସ୍କୋକୁ କହିଲା ଲୁହାପଥର ବଜାର ଦାମରେ କିଣି ଶିଳ୍ପକରିବାକୁ । ଚୀନରେ ଆମଦେଶର ୩ ଗୁଣ ଲୁହାପଥର ଅଛି ଅଥଚ ସେ ଆମ ଓଡ଼ିଶାରୁ ଲୁହାପଥର ଆମଦାନୀ କରୁଛି । କିନ୍ତୁ ଆମ ଦେଶ ଓ ରାଜ୍ୟର ଖାଣ୍ଟି ଦେଶ

Digitized by srujanika@gmail.com

ପ୍ରେମୀମାନେ ପୋସ୍କୁ ଡାକି ଆଣିଛନ୍ତି ସବୁ ମାଗଣାରେ ନେଇ ଶିଳ୍ପ କରିବାକୁ । କୁହାଯାଉଛି ସର୍ବାଧିକ ବିଦେଶୀପୁଞ୍ଜି । ଧାନ, ପାନ କରି ପଖାଳ ଖାଉଥିବା ଲୋକଙ୍କ ପାଖକୁ ପୋସ୍କ ଆସୁଛି ବିରିୟାନି ପ୍ରସ୍ତୁତ କରିବାକୁ । ବିରିଆନି ରନ୍ଧାହେବ ଆମ ଚାଉଳ, ମାଂସ, ପିଆଜ, ମସଲା, ତେଲ, ପାଣି ଏପରିକି ଜାଳ (ଲୁହାପଥର, କୋଇଲା, ଡ଼ୋଲମାଇଟ୍, ଚୂନପଥର, ମାଙ୍ଗାନିଜ, କ୍ରୋମ, ବିଦ୍ୟୁତ ଉତ୍ପାଦନପାଇଁ କୋଇଲା) ମାଗଣାରେ । ସେ ଧରି ଆସିବ ଚୁଲା, ଡ଼େକ୍‌ଚି ଓ ରନ୍ଧାଳି । ପାଣି ବୋହିବା, ମସଲାବଟା, ଚାଉଳ ଧୁଆ ଡେକ୍‌ଚି ସଫା କାମରେ ଆମ ସ୍ଥାନୀୟ ଲୋକେ ନିୟୋଜିତ ହେବେ । ବିରିଆନି ରନ୍ଧା ହେଲାପରେ ସେ ବିରିଆନି ଆମ ପଖାଳଖିଆ ବିସ୍ଥାପିତ କିମ୍ବା ଜଗତସିଂହପୁର ଜିଲ୍ଲା ତଥା ଓଡ଼ିଶାର ଲୋକଙ୍କୁ ପରସିବାର ପ୍ରଶ୍ନ ଉଠୁନାହିଁ । ଏହା ଗ୍ଲୋବାଲ୍‌ମାର୍କେଟର ଷ୍ଟାର ହୋଟେଲ୍ କିମ୍ବା ୱାଲମାର୍ଟର ବିଗ୍ ବଜାରରେ ପ୍ୟାକ ହୋଇ ବିକ୍ରିହେବ । ଏହାର ବିକ୍ରି ମଧ୍ୟ ବିକ୍ରିକରରୁ ମୁକ୍ତ । ଶେଷରେ ଆମ ଲୋକଙ୍କ ପଖାଳ କଂସା ବି ଚାଲିଯିବ । ଚୁଲାର ପାଉଁଶ ଆଉ ସମସ୍ତ ଫୋପଡ଼ା ବର୍ଜ୍ୟବସ୍ତୁ ଆମ ପାଖରେ ଛାଡିଯିବେ । ଏପରି ବିରିୟାନି ରନ୍ଧା ବାସନାରେ କୁଆଡ଼େ ଆମ ଲୋକଙ୍କ ପେଟ ପୂରିଯିବ ଓ ଦେଶର ସମୃଦ୍ଧିର ପ୍ରତୀକ ପୋସ୍କ ବିରିୟାନି ଆମଦେଶର ରପ୍ତାନୀ ସାମଗ୍ରୀ । ଏହି ସମୃଦ୍ଧିରେ ଭାଗୀଦାର କିଏ ? ଆମ ଦେଶର ମାଟିର ମଣିଷମାନଙ୍କ ସ୍ୱାଧୀନତା, ସ୍ୱାଭିମାନର କବର ଉପରେ ଯଦି ତଥାକଥିତ ବିକାଶର ଅଟ୍ଟାଳିକା ଗଢ଼ିଉଠେ ସେଇଠି ରାଷ୍ଟ୍ରୀୟତା ବଦଳରେ ବଜାରବାଦର ପୃଷ୍ଠପୋଷକମାନେ ଦେଶକୁ ଭୁଲିଯାଇ ବିଶ୍ୱୀକରଣର ମନ୍ତ୍ର ପଢୁଥିବେ । ସମୟ ଆସିବ ପୁନଃ ଗଣତନ୍ତ୍ରକୁ ଫେରାଇବାପାଇଁ ଅଟ୍ଟାଳିକାକୁ ଭାଙ୍ଗିବାକୁ ଲୋକେ କୁଦିପଡ଼ିବେ ବିଦ୍ରୋହର ଡ଼ାକରାଦେଇ । ଏବେ ସ୍ୱାଧୀନତା ବଦଳରେ ଆସୁଥିବା ବିକାଶ ନାମରେ ବିନାଶକୁ ପ୍ରତିରୋଧ କରୁଥିବା ସ୍ୱରକୁ ଚାପିଦେଇ କମ୍ପାନୀ ସାମ୍ରାଜ୍ୟକୁ ଡାକିଆଣୁଥିବା ରାଜନୀତି ଇତିହାସର ପୁନରାବୃତ୍ତି କରିବାକୁ ଯାଉଛି । ଏକଦା ଇଷ୍ଟଇଣ୍ଡିଆ କମ୍ପାନୀ ଆସିଥିଲା । ଆମ ଇତିହାସ କହୁଛି ରାଜଦରବାରର ଲୋକେ ବିଶ୍ୱଘାତକତାକରି କ୍ଲାଇବଙ୍କ ବିଜୟ ସୁନିଶ୍ଚିତ କରିଥିଲେ । ପୋସ୍କପରି ସାମ୍ରାଜ୍ୟବାଦୀ ଏଜେଣ୍ଟମାନଙ୍କ ପାଖରେ ନିଜ ନିଜ ସ୍ୱାର୍ଥ ପାଇଁ ଦେଶର ସାଧାରଣ ଲୋକଙ୍କ ସଂପତ୍ତି ଜମି, ଜଙ୍ଗଲ, ଜଳକୁ ସମର୍ପଣ କରି ବଞ୍ଚିବାର ଅଧିକାର ଉପରେ ଆକ୍ରମଣ କରାଯାଉଛି । ଏହା ରାଷ୍ଟ୍ରୀୟତାକୁ ଶେଷ କରିଦେବ ।

ପୋସ୍କକୁ ବିରୋଧ କେବଳ ୩ ପଞ୍ଚାୟତ ଭିତରେ ଆଉ ସୀମାବଦ୍ଧ ନୁହଁ । ଏହା ଏକ ଜାତୀୟ ପ୍ରତିରୋଧରେ ପରିଣତ ହେବା ଏକାନ୍ତ ଜରୁରୀ । ବିତର୍କର ଆଉ ସମୟନାହିଁ । ପ୍ରତିରୋଧ ହିଁ ଏକ ମାତ୍ର ବାଟ । ଏବେ ପୋସ୍କ ପ୍ରତିରୋଧ ସଂଗ୍ରାମକୁ ପ୍ରତିହତ କରିବାପାଇଁ ପୋସ୍କ ସପକ୍ଷବାଦୀ ନାମରେ ଆତଂକରାଜ ଆରମ୍ଭ ହୋଇଛି ଗତ ନଭେମ୍ବର ୨୯

Digitized by srujanika@gmail.com

ତାରିଖରୁ । ଗଣତାନ୍ତ୍ରିକ ନିରସ୍ତ୍ର ଜନଆନ୍ଦୋଳନ ଉପରେ କଂପାନୀ ଗୁଣ୍ଡାଙ୍କ ଆକ୍ରମଣ ଓ ଆନ୍ଦୋଳନ ସହଯୋଗୀଙ୍କ ନାଗରିକ ଅଧିକାର ଛିନ୍ନ କରିବାପରେ ଗାଁର ମାଟିକୁଡ଼ିଆର ଚାଷୀ, ଜଙ୍ଗଲର ଆଦିବାସୀ ଏବେ ପଚାରୁଛନ୍ତି ଇଣ୍ଡିଆର କର୍ତ୍ତାମାନଙ୍କୁ: ''ତୁମ ବିକାଶ ଗାଡ଼ିର ଚକରେ ଆମ ଭାରତୀୟଙ୍କ ଘର ସଂସାରକୁ ପେସିଦେବ, ଆମ ସମାଜକୁ ଭାଙ୍ଗିଦେବ, ଆମ ସାମାଜିକ ଓ ସାଂସ୍କୃତିକ ଜୀବନକୁ ଶେଷ କରିଦେବ । ତଥାପି ଆମ ଅଧିକାର ନାହିଁ ଲୁଟାୟନ୍ ପାଇଁ ଆସୁଥିବା ଶିଳ୍ପାୟନର ବାଟ ଆଗୁଳିବାକୁ ? ଆମ ପାଣି, ଖଣି, ଜମି, ଜଙ୍ଗଲ ବଦଳରେ ଇସ୍ପାତ ହେବ ଆଉ କାହାର ମୁନାଫା ପାଇଁ । ଶେଷରେ ପବନ ବି ଦୂଷିତ ହେବ । ତଥାପି କୁହାଯାଉଛି ପୋସ୍କୋ ଆସୁଛି ଆମ ବିକାଶ ପାଇଁ ।'' ଏପରି ବିକାଶ ନୂଆ ଦାରିଦ୍ର୍ୟ ସୃଷ୍ଟି କରିବ, ତେଣୁ ପ୍ରତିରୋଧ ଅନିବାର୍ଯ୍ୟ । ଯଦି ପ୍ରତିରୋଧର ମୁକାବିଲା ପାଇଁ ରାଷ୍ଟ୍ର ହିଂସା କରିବ ବିସ୍ଥାପିତ ଜନତାର ପ୍ରତିହିଂସା ଆଜି ନ ହେଲେ କାଲି ବିଦ୍ରୋହର ନିଆଁ ଜଳାଇବ ।

୧୯୯୯ ମହାବାତ୍ୟାରେ ହଜାର ହଜାର ପରିବାର ଜୀବନ ଓ ସମ୍ପତ୍ତି ହରେଇଥିଲେ । ପୁଣି ଏହି ଏରସମାର ଲୋକେ ବଞ୍ଚିପାରିଲେ ଲୁଣ ପାଣିରେ ହଜିଯାଇଥିବା ଚାଷଜମିକୁ ପୁନରୁଦ୍ଧାରକରି । ମା' ମାଟି ସର୍ବଦା ନିରନ୍ତର ଆଶ୍ରୟର ସ୍ଥଳ । ଥରେ ତାକୁ ହରାଇଲେ ଜୀବନ ଜୀବିକା ଦୁର୍ବିସହ ହୋଇପଡ଼େ । ପ୍ରକୃତି ଭିତରେ ହିଁ ମଣିଷ ବଞ୍ଚି ଆସିଛି । ପ୍ରକୃତିକୁ ହତ୍ୟାକରି ପ୍ରକୃତିଛଡ଼ା ମଣିଷ ଅମଣିଷ ହୋଇଯାଏ । ତାପରେ ପ୍ରକୃତି ପ୍ରତିଶୋଧ ନେବାକୁ ବାଧ ହୁଏ । ତେଣୁ ଯାହାର ବିକଳ୍ପ ନାହିଁ ସିଏ ହେଉଛି ମା' ମାଟି, ତାକୁ ଜୁହାର ।



Digitized by srujanika@gmail.com

# ଇସ୍ପାତ ଓ ଆଲୁମିନା ଚାଷରେ ନୋବେଲ ବିଜେତା ଫଳିବେ !

ଯେଉଁଠି ଦାରିଦ୍ର୍ୟ ଥାଏ, ସେଠି ସୁନା ଅଣ୍ଡାର ସ୍ୱପ୍ନ ତିଆରି ଯନ୍ତ୍ର ଓ ମନ୍ତ୍ରର ଅଭାବ ନଥାଏ । ଓଡ଼ିଶା ଦରିଦ୍ର କାହିଁକି ବୋଲି ପଚାରିଲେ ଆମର ଅନେକ ଶିକ୍ଷାୟତନର ଶିକ୍ଷକ, ଅଧ୍ୟାପକ, ସମାଜର ପ୍ରତିଷ୍ଠିତ ବୁଦ୍ଧିଜୀବିକାଙ୍କ୍ଷୀମାନେ ଓ ସର୍ବଜ୍ଞ ଭାବେ ବିବେଚିତ ଆମର ଅଧିକାଂଶ ପ୍ରଶାସକମାନେ କହିପକାନ୍ତି ଆମ ଓଡ଼ିଶାରେ ପରା କିଛିବି ଶିଳ୍ପ ହେଲାନି । ଏବେ ସବୁ ହେବାକୁ ଆସିଲାବେଳକୁ ଦଳେ ବିରୋଧ କରୁଛନ୍ତି, ଲୋକଙ୍କୁ ଉସକାଉଛନ୍ତି । ସେହିମାନଙ୍କୁ ଯଦି ପଚରାଯିବ ଏସବୁ ଶିଳ୍ପ ହୋଇଗଲେ ବିକାଶ ହୋଇଯିବ ? ସଙ୍ଗେ ସଙ୍ଗେ କହିପକାଇବେ ଆମର ସବୁ ଥାଇ ଆମେ ନଥିଲାବାଲା । ପ୍ରକୃତି ଦେଇଛି ତାକୁ ଯଦି କେହି ଆସି ବ୍ୟବହାର କରିବ ଆମ ପିଲାମାନେତ ଚାକିରୀ ପାଇଯିବେ, କିଛିନହେଲେ ଆମ ରାଜ୍ୟରେ ସହର ଗଢ଼ି ଉଠିବ ଓ ଗାଡି ଘୋଡା ଚାଲିବ । ଆଉ କ'ଣ ହେବ ବୋଲି ଯଦି ପଚରାଯିବ, ତାହାହେଲେ କହିବେ କିଛି ପିଲା ବିଦେଶ ଯିବେ, ଆମର ନା ରଖିବେ । କାରଣ ଆମର ଏଠି ବେଦାନ୍ତ କଂପାନୀ କରିବ ବିଶ୍ୱବିଖ୍ୟାତ ସର୍ବୋଚ୍ଚ ବିଶ୍ୱବିଦ୍ୟାଳୟ ୧୫୦୦୦ କୋଟି ଟଙ୍କା ବିନିଯୋଗରେ, ରିଲାଏନ୍ସ ମଧ କହିଲାଣି ୧୦୦୦ କୋଟି ଟଙ୍କାରେ ଆଇ.ଟି ବିଶ୍ୱବିଦ୍ୟାଳୟ କରିବ । ମିତଲ ମଧ କହିଦେଇପାରେ ଏଠି ଇସ୍ପାତ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବ। ଏସବୁ ଦେଖି ପ୍ରତିଯୋଗିତାରେ ହାରିଯିବାର ଆଶଙ୍କା କରି ପୋସ୍କ ମଧ ଘୋଷଣା କରିଦେଇପାରେ ଦେଶବାସୀଙ୍କ ସେବା ପାଇଁ ବ୍ରହ୍ମାଣ୍ଡ ବିଖ୍ୟାତ ରାଜନୀତି ପରିଚାଳନା ଗବେଷଣା ପାଇଁ ବିଶ୍ୱବିଦ୍ୟାଳୟ । ଏ ସବୁକୁ ନେଇ ଓଡ଼ିଶାର ଯୁବକ ଯୁବତୀ କେତେ ସ୍ୱପ୍ନ ନ ଦେଖିବେ ?

ଏଠି ପ୍ରଶ୍ନ ହେଉଛି ଯେ– ଆମ ସାଧାରଣ ଲୋକଙ୍କ ସ୍ଥାନ ଏସବୁ ପରିକଳ୍ପନାରେ ଅଛି କି ? ପଚାଶ ଗୋଟି ଇସ୍ପାତ ପ୍ରକଳ୍ପ ହେବ । ଏଥିରେ ଓଡ଼ିଶାର ଥିବା ଲୁହାପଥର ତ ଲିଜ୍‌ରେ ଶେଷ ହୋଇଯିବ ତାହା ସହ ଜଙ୍ଗଲ ବି ଧ୍ୱଂସ ହେବ । କିନ୍ତୁ ଗୋଟିଏ ଗୋଟିଏ ଇସ୍ପାତ ପ୍ରକଳ୍ପ ପାଇଁ ଅତିକମରେ ୫ ହଜାର ଏକର ଚାଷ ଜମି ଅଧିଗ୍ରହଣ କରାଗଲେ ପ୍ରାୟ ଅଢ଼େଇ ଲକ୍ଷ ଏକର ଚାଷ ଜମି ଚାଷୀଙ୍କ ହାତରୁ ଛଡ଼ାଇ ନିଆଯିବ । ଏସବୁ ପ୍ରକଳ୍ପ ଗୁଡ଼ିକୁ କେନ୍ଦ୍ରକରି ସହରୀକରଣ ହେବ ସେଥିରେ କେତେ ଯେ ଚାଷଜମି ଅଣଚାଷରେ

Digitized by srujanika@gmail.com

ପରିଣତ ହେବ ତାର ହିସାବ କେହି କହିବାକୁ ପ୍ରସ୍ତୁତ ନୁହଁନ୍ତି । ପୋସ୍କ ପାଇଁ ଦରକାର ପ୍ରାୟ ୬ ହଜାର ଏକର ଚାଷଜମି । ଏଠି ଇସ୍ପାତ ପ୍ରକଳ୍ପ କାର୍ଯ୍ୟକାରୀ ହେବା ବେଳକୁ କୁଜଙ୍ଗ ଓ ପାରାଦୀପ ଅଞ୍ଚଳର ପ୍ରାୟ ୫୦ ହଜାର ଏକର ଜମି ବିଲ୍ଡର ମାନଙ୍କ ହାତକୁ ଚାଲିଯିବ । ଇସ୍ପାତ ପ୍ରକଳ୍ପରୁ ଓହରି ଯିବାକୁ ବାଧ ହୋଇଥିଲେ ବି ଗୋପାଳପୁର ଅଞ୍ଚଳରେ ଟାଟା ହାତରେ ବର୍ତ୍ତମାନ ସୁଦ୍ଧା ଜବରଦସ୍ତ ଅଧିଗ୍ରହଣ କରାଯାଇଥିବା ୨୦୦୦ ଏକର ଚାଷ ଓ ୧୫ ଶହ ଏକର ସରକାରୀ ଜମି ରହିଛି ଓ ଚାଷ ନ ହୋଇ ପଡ଼ିଆ ପଡ଼ିଛି । ସେହିପରି ମିତଲ ଆସିବାପରେ ଆଉ ୧୦ ହଜାର ଏକର ନେବ ଓ ସହରୀକରଣ ପାଇଁ ୫୦ ହଜାର ଏକର ଜମି ଚାଲିଯିବ । କଳିଙ୍ଗ ନଗରରେ ଏବେ ସୁଦ୍ଧା ପ୍ରାୟ ୧୫ ହଜାର ଏକର ଜମି ଅଧିଗ୍ରହଣ କରାଯାଇଛି । ଯେଉଁ ମାଷ୍ଟର ପ୍ଲାନ ଅଛି ସେଠି ଆସନ୍ତା ୧୦ ବର୍ଷ ମଧ୍ୟରେ ଆଉ ୫୦ ହଜାର ଏକର ଜମିର ଆବଶ୍ୟକତା ରହିଛି ଶିଳ୍ପାୟନ ପାଇଁ । ଉକ୍ତ ୫୦ ହଜାର ସାଙ୍ଗକୁ ଆଉ ପଚାଶ ହଜାର ଚାଷଜମି କ୍ରମଶଃ ସହରୀକରଣ ପ୍ରକ୍ରିୟାରେ ବିଲ୍ଡରମାନଙ୍କ ପାଖକୁ ଚାଲିଯିବ । ଏପରି ଯଦି ହିସାବ କରାଯାଏ ୫୦ ଟି ଇସ୍ପାତ ପ୍ରକଳ୍ପ ବାହାରେ ୧୦ଟି ଆଲୁମିନା ପ୍ରକଳ୍ପ ପାଇଁ ମଧ ୫୦ ହଜାର ଏକର ଚାଷ ଓ ଜଙ୍ଗଲ ଜମିର ଆବଶ୍ୟକତା ରହିଛି । ଏ ସବୁର ପରିଣାମରେ ସହରୀକରଣର ପ୍ରକ୍ରିୟାରେ ଘରୋଇ କଂପାନୀ ଓ ବେପାରୀଙ୍କ ହାତରେ ଆଉ ପଚାଶ ହଜାର ଏକର ଜମି ରହିବ । ଅର୍ଥାତ୍ କେବଳ ଇସ୍ପାତ ଓ ଆଲୁମିନା ପ୍ରକଳ୍ପ ପାଇଁ ଓଡ଼ିଶାରେ ୬ ଲକ୍ଷ ଏକର ଚାଷ ଜମି କୃଷିରୁ ବାଦ ପଡ଼ିବାପରେ ସେଗୁଡ଼ିକ ଭବିଷ୍ୟତରେ ପୁଣି ଆଉ ଚାଷ ପାଇଁ ଅସମ୍ଭବ ହୋଇପଡ଼ିବ । ବିକାଶ ମନ୍ତ୍ର ଦ୍ୱାରା ଅପହୃତ ଉକ୍ତ ୬ ଲକ୍ଷ ଏକର ଚାଷ ଜମି ଉପରେ ନିର୍ଭରଶୀଳ ୪ ଲକ୍ଷ ପରିବାରଙ୍କ ଜୀବିକା ଶେଷ ହୋଇଯିବ ।

ବର୍ତ୍ତମାନ କେଉଁଝର ଓ ସୁନ୍ଦରଗଡ଼ରେ ଥିବା ଲୁହାପଥର ଖଣିକୁ ପୋସ୍କକୁ ଦେଇ ସାରିବାପରେ ଓଡ଼ିଶା ସରକାରଙ୍କ ଅର୍ଥନୈତିକ ସର୍ବେକ୍ଷଣରେ ଉଲ୍ଲେଖିତ ଆଇରନ ଓର୍ ପରିମାଣ କେବଳ ସରିଯିବ ନାହିଁ ତାହା ନିଅଣ୍ଟ ମଧ ହେବ । ସରକାରଙ୍କ କହିବା ଅନୁଯାୟୀ କେଉଁଠୁ ଅନୁସନ୍ଧାନ କରିପାଇଯିବେ ଆଉ ଏକହଜାର ନିୟୁତ ଟନ୍, ସତେ ଯେପରିକି ଅଣ୍ଡାଳିଲେ ମିଳିଯାଉଛି । ଏସବୁ ପ୍ରାକୃତିକ ସମ୍ପଦ ଶେଷ ହୋଇଗଲାବେଳକୁ ରାଜ୍ୟର ଜଙ୍ଗଲ ସମ୍ପଦ କେତେ ଧ୍ୱଂସ ହୋଇଥିବ ଏହାର ହିସାବ ରାଜ୍ୟ ସରକାର ତରଫରୁ ହୋଇ ନାହିଁକି କେନ୍ଦ୍ର ସରକାରର ପରିବେଶ ଓ ଜଙ୍ଗଲ ମନ୍ତ୍ରାଳୟ କରିବାପାଇଁ ପ୍ରସ୍ତୁତ ନୁହଁ । କାରଣ ଏସବୁର ନିୟନ୍ତ୍ରକମାନେ ଚାହାଁନ୍ତି ଦେଶର ସମୃଦ୍ଧି ନାମରେ ପୁଞ୍ଜିବିନିଯୋଗ କରି ଭୂଇଁତଳେ କଞ୍ଚାମାଲକୁ ଖୋଳି ତାଡ଼ି ଟେକ୍ନୋଲଜି ହାତରେ ତାକୁ ଅର୍ପଣ କରିଦେବାକୁ । ତେଣିକି ତା' ଉତ୍ପାଦନ କାହାପାଇଁ, ସେଥିର ମୁନାଫା କାହାକୁ ଯାଉଛି ଓ ଆମର କେତେ

Digitized by srujanika@gmail.com

ଲାଭ କେତେ କ୍ଷତି ଜାଣିବାକୁ ଇଚ୍ଛାକରିବା ନିଯୁକ୍ତି ପାଇଁ ସୁନେଲୀ ସ୍ୱପ୍ନ ଦେଖୁଥିବା ଯୁବକ ଯୁବତୀମାନଙ୍କ ଏଜେଣ୍ଡାରେ ନାହିଁ । ସ୍ୱପ୍ନ ଦେଖାଉଥିବା ବିକାଶର ପ୍ରବକ୍ତାମାନେ ଜାଣି ନ ଜାଣିଲାପରି ଅର୍ଥନୈତିକ ଅଭିବୃଦ୍ଧିର ଦୁହାଇ ଦେଇ ଦେଶର ଭାଗ୍ୟ ସବୁବେଳେ ଥିବାବାଲାଙ୍କ ହାତରେ ରଖିବାକୁ ଚାହାଁନ୍ତି । ସେମାନଙ୍କ ଅଭିଧାନରେ ଦେଶର ପ୍ରଗତି, ସଭ୍ୟତା, ବିଶ୍ୱବଜାର, ଅତ୍ୟାଧୁନିକତା ଏବଂ ସେନସେକ୍ସ ଏପରି ସବୁ ପଦ ଗୁଡ଼ିକର ଅର୍ଥ କେବଳ ଥିବା ବାଲାଙ୍କ ଚାହିଦା, ବିଚାର ଓ ଲକ୍ଷ୍ୟ ପାଇଁ ।

ଏହି ପରିପ୍ରେକ୍ଷୀରେ ଏସବୁ ଅର୍ଥ ସହ ସଂପର୍କ ନଥିବା ନଥିବା ବାଲାଙ୍କ ଜୀବିକାର ମୂଳ ଉତ୍ସ ଜମି ଓ ଜଙ୍ଗଲ କ୍ଷେତ୍ର କେବଳ ଲୁହା ଓ ଆଲୁମିନା କାରଖାନା ପାଇଁ ମୋଟ ଜମି ବ୍ୟତିରେକ ଜଙ୍ଗଲର କ୍ଷୟକୁ ହିସାବ କରାଗଲେ ବୋଧହୁଏ ଜଙ୍ଗଲ ମଧ ଆସିଯିବ ଆଉ ୨ ଲକ୍ଷ ଏକର । ବିକାଶନାମରେ ଏପରି ଜମି ଓ ଜଙ୍ଗଲର ପରିମାଣ ପ୍ରାୟ ୮ ଲକ୍ଷ ଏକର ବିନାଶମୁଖୀ ହେବ । ଏହି ଜମିରେ ଖାଦ୍ୟ ଉତ୍ପାଦନ, ଜଙ୍ଗଲଜାତ ଦ୍ରବ୍ୟ, ଖଣି ଓ ଜଙ୍ଗଲକୁ କେନ୍ଦ୍ର କରି ନଦୀ, ନାଳ ଓ ଝରଣାର ଜଳ ସ୍ରୋତ ନିଃଶେଷ ହୋଇଗଲାପରେ କୃଷି ଜଙ୍ଗଲ ଆଧାରିତ ଆର୍ଥିକ ମୂଲ୍ୟାୟନ କରିବା କ'ଣ ଅର୍ଥନୈତିକ ଗବେଷକ, ଅଧାପକ କିମ୍ବା ଯୋଜନାକାରୀଙ୍କ ଅର୍ଥନୀତିର ଶୃଙ୍ଖଳା ଗଣ୍ଡି ଭିତରକୁ ଆସୁନାହିଁ ? ବିଗତ ୫୦ ବର୍ଷ ଧରି ଆମର ଖଣି ଖୋଳା ହୋଇଛି, ଖଣିଜ ପଦାର୍ଥ ରପ୍ତାନି ମଧ ଚାଲିଛି । କିଛି ଶିଳ୍ପ ନାମରେ ଟାଟାଠାରୁ ଆରମ୍ଭକରି ଇମ୍ଫା, ଜିନ୍ଦଲ ପରି ଅନେକ କଂପାନୀମାନେ ପ୍ରାକୃତିକ ସଂବଳ ଲୁହାପଥର, କ୍ରୋମ, ମାଙ୍ଗାନିଜ୍ ପରି ଅନେକ ମୂଲ୍ୟବାନ ପଦାର୍ଥ ନେଇ ସାରିଲେଣି । ଏସବୁରୁ ଆମ ରାଜସ୍ୱକୁ ଆସିଛି କେତେ ଓ ସମ୍ବଳ ଶେଷ ହୋଇଗଲାପରେ ଖାଲି ସ୍ଥାନରେ ସୃଷ୍ଟି ହୋଇଥିବା ପ୍ରଦୂଷିତ ମରୁଭୂମି ଓ ଜନଜୀବନ ହୀନ ପରିବେଶ ଦ୍ୱାରା ଆର୍ଥିକ, ସାମାଜିକ ଓ ସଂସ୍କୃତିକ ପ୍ରଭାବର ସମୀକ୍ଷା କରିବା କ'ଣ ଅର୍ଥଶାସ୍ତ୍ରୀ ଓ ସମାଜଶାସ୍ତ୍ରୀ ମାନଙ୍କ କର୍ତ୍ତବ୍ୟ ନୁହଁକି ? ଏସବୁ କ'ଣ ଅର୍ଥନୀତିର ପରିସୀମା ଭିତରକୁ ଆସୁନାହିଁ ? ଆଜି କେବଳ ସେବା କ୍ଷେତ୍ରକୁ ଜାତୀୟ ଉତ୍ପାଦନର ମୁଖ୍ୟ ବୋଲି ଧରିନେବା ବାସ୍ତବତା ପ୍ରତି ଧୋକା । କାରଣ ଦେଶର ମୋଟ ଘରୋଇ ଉତ୍ପାଦନରେ କୃଷିର ଅବଦାନ ୨୩ ଭାଗକୁ ଖସି ଆସିବାବେଳେ କୃଷିର ପ୍ରାଧାନ୍ୟକୁ ନ୍ୟୂନ କରିବା ଅର୍ଥନୀତିର ମୂଳକୁ ଉପାଡ଼ି ଫୋପାଡ଼ିଦେବା ସଙ୍ଗେ ସମାନ । ଯିଏ ଯେତେ ଅର୍ଥ ଉପାର୍ଜନ କରି ଖାଦ୍ୟ ବାବଦରେ ଯେତେ କମ୍ ଖର୍ଚ୍ଚ କରି ଅନ୍ୟାନ୍ୟ ସୌଖୀନ ଓ ମଜାମଜଲିସରେ ଅତ୍ୟଧିକ ବ୍ୟୟ କଲେବି ଏସବୁ ବ୍ୟବହୃତ ପଦାର୍ଥ ମଧରେ ଖାଦ୍ୟ ହିଁ ଅତି ଜରୁରୀ । କାରଣ, ବିନା ଖାଦ୍ୟରେ କେହି ସୌଖୀନର ବିଳାସ ମଧରେ ବଞ୍ଚି ପାରିବ ନାହିଁ । ତେଣୁ ଦେଶରେ ଖାଦ୍ୟ ଉତ୍ପାଦନ ଓ ବଣ୍ଟନ ସହ ଜନଗଣଙ୍କ ସଂପର୍କ ଅର୍ଥନୀତିର

Digitized by srujanika@gmail.com

ଏକ ମୁଖ୍ୟଧାରା । କାରଣ ଦେଶର ୭୦ ଭାଗ ଲୋକଙ୍କ ଦୈନିକ ଆୟର ଶତ ପ୍ରତିଶତ ଖାଦ୍ୟ, ବସ୍ତ୍ର, ସ୍ୱାସ୍ଥ୍ୟ ପାଇଁ ଯାଏ । ତାପରେ ବଳକା ହେଲେ ସେ ବାସ ଓ ଶିକ୍ଷା ପାଇଁ ବ୍ୟୟ କରିବା ସମ୍ଭବପର । ଏହି ଅବସ୍ଥାରେ ଖାଦ୍ୟର ମୂଳ ଉସ ଜମି, ଜଙ୍ଗଲ ଓ ଜଳକୁ ବିକାଶ ନାମରେ ବିନାଶ କରି ଧନୀକ ଶ୍ରେଣୀର ବଜାର ଚାହିଦାକୁ ପୂରଣ କରିବା ପାଇଁ ଶିଳ୍ପାୟନ କେତେ ଦୂର ଆର୍ଥିକ ନ୍ୟାୟ ଦୃଷ୍ଟିରୁ ଓ ନୈତିକତା ଦୃଷ୍ଟିରୁ ଯଥାର୍ଥ ତାହା ଆଜି ଗରିବ ଲୋକଙ୍କ ସ୍ୱାର୍ଥରକ୍ଷାକୁ ଆଧାର କରି ବିଚାର କରିବା ଏକାନ୍ତ ଜରୁରୀ । ଏବର ଶିଳ୍ପାୟନ ଦ୍ୱାରା ମାତ୍ର କେତେକ ଓଡ଼ିଆ ଯୁବକ ଯୁବତୀଙ୍କୁ ୫୦ ହଜାର ଟଙ୍କାରୁ ଉର୍ଦ୍ଧ୍ୱ ଦରମାରେ ନିଯୁକ୍ତି ମିଳିପାରେ । ବାକି ଅନ୍ୟ ଶିକ୍ଷିତମାନେ ବେକାର ହୋଇ ସ୍ୱପ୍ନ ଦେଖୁଥିବେ, କିନ୍ତୁ ହଜାର ହଜାର ସାଧାରଣ ଚାଷୀ, କୃଷି ଶ୍ରମିକ ଓ ଜଙ୍ଗଲ ଉପରେ ନିର୍ଭରଶୀଳ ଆଦିବାସୀ ଜୀବିକା ଶୂନ୍ୟ ହୋଇଯିବେ । କେବଳ ଗାଁ ଭିଟା ମାଟିରୁ ବିସ୍ଥାପିତ ହେବେ ନାହିଁ, ଲକ୍ଷ ଲକ୍ଷ ଲୋକ ପରିବାର ପୋଷଣରୁ ନିର୍ବାସିତ ହୋଇଯିବେ । ସବୁଆଡ଼େ ଅନ୍ଧାର ହୋଇଯିବ । ସେମାନଙ୍କ ପାଇଁ ବଞ୍ଚିବାର ରାସ୍ତା ସବୁଦିନ ପାଇଁ ବନ୍ଦ ହୋଇଯିବ । ସେମାନଙ୍କ ସ୍ଥାନ ନାହିଁ ସେମାନଙ୍କ ଜମି ଜଙ୍ଗଲ ଉପରେ ଠିଆ ହେଉଥିବା ବହୁ ପ୍ରଚାରିତ ନୂଆ ନୂଆ ବିକଶିତ ଆର୍ଥିକ ଓ ସାମାଜିକ ଭୂସ୍ୱର୍ଗରେ ଯେଉଁଠି କେବଳ ପୁଞ୍ଜିପତି ଓ ପୁଞ୍ଜିବାହକମାନଙ୍କ ପାଇଁ ସ୍ଥାନ ସଂରକ୍ଷିତ ।

ତେଣୁ ଆଜି ଓଡ଼ିଶାରେ ଯଦି ବିକାଶ ନାମରେ କ'ଣ ହେବ ବୋଲି ସଠିକ୍ ହିସାବ କରାଯିବ ତାହାହେଲେ କୃଷି ବଦଳରେ ଇସ୍ପାତ ଓ ଆଲୁମିନା ଚାଷ ହେବ । ଏଥିରୁ ଉତ୍ପାଦିତ ଇସ୍ପାତ ଓ ଆଲୁମିନିୟମ ଦ୍ୱାରା ବିଶ୍ୱ ବଜାରର ପୁଞ୍ଜିବାଦୀ ଚାହିଦା ପୂରଣ କରିବାରେ ସଫଳତା ମିଳିବାବେଳେ ଓଡ଼ିଶାର ଗରିବ ଲୋକଙ୍କ ଘର ପାଇଁ ଆବଶ୍ୟକ କାଠ, ବାଉଁଶ ମଧ୍ୟ ମିଳିବ ନାହିଁ । ଲୁହା ମାଗଣା ଦେଲେବି ସିମେଣ୍ଟ, ଇଟା ଓ ମିସ୍ତ୍ରୀ ପାଇଁ ଲୋକଙ୍କ କ୍ରୟଶକ୍ତି ନାହିଁ । ଅବଶ୍ୟ ମାଗଣା କ'ଣ, ରିହାତିରେ ବି ଦେବାର ପ୍ରଶ୍ନ ଉଠୁନାହିଁ ।

ଏହି ବିକାଶ ପ୍ରକ୍ରିୟାରେ ଚାଷରୁ ଚାଷୀଙ୍କୁ ହଟାଇବାପାଇଁ ଚାଲିଥିବା ପ୍ରକ୍ରିୟା ଆହୁରି ତୀବ୍ର ହେବ । ଠିକା ଚାଷ ପାଇଁ ଆଇନ ତିଆରି ହୋଇଗଲାଣି । ଓଡ଼ିଶାରେ ସଂସ୍କାରମୂଳକ ଚାଷ କର୍ପୋରେଟ୍ ମାଲିକମାନଙ୍କ ହାତରେ ରହିବ । ଆମର ବଡ଼ ବଡ଼ ପଣ୍ଡିତ ଅର୍ଥଶାସ୍ତ୍ରୀମାନେ କହି ପକାନ୍ତି ଚାଷରେ ଲୋକ ରହିଲେ ବିକାଶ ସମ୍ଭବପରନାହିଁ । କିନ୍ତୁ ଚାଷରୁ ବଳକା ଚାଷୀ ମୂଲିଆଙ୍କ ପାଇଁ ତ ଶିଳ୍ପ ହେଉନାହିଁ କି ହବାର ନାହିଁ । ବରଂ ଚାଷୀ ଓ କୃଷି ମୂଲିଆଙ୍କ ହାତରୁ ପାରଂପରିକ ଚାଷ ଛଡ଼ାଇ ନିଆଯାଇ ଅର୍ଥକରୀ ଫସଲ ନାମରେ ରପ୍ତାନୀ କରିବାକୁ କର୍ପୋରେଟ ଚାଷ ପାଇଁ ଚାଲିଛି ପ୍ରଧାନ ମନ୍ତ୍ରୀ ଓ ଯୋଜନା

Digitized by srujanika@gmail.com

କମିସନଙ୍କ ଓକିଲାତି । ଏହାପଛରେ ବିଶ୍ୱବ୍ୟାଙ୍କର କାରସାଦି ରହିଛି । ବିଶ୍ୱବ୍ୟାଙ୍କର ପୃଷ୍ଠପୋଷକ ଆମେରିକା ଓ ୟୁରୋପର ଧନୀ ଦେଶମାନେ ଚାହାଁନ୍ତି ପୃଥିବୀର ଖାଦ୍ୟ ବଜାରକୁ ସେମାନେ ନିୟନ୍ତ୍ରଣ କରିବେ ଓ ବିକାଶଶୀଳ ଦେଶମାନଙ୍କ ଖାଦ୍ୟ ନିରାପତ୍ତାକୁ ବିଲୋପ କରି ଆର୍ଥିକ ପରାଧୀନ କରାଇ ରାଜନୈତିକ ସ୍ୱାଧୀନତାକୁ ନିୟନ୍ତ୍ରଣ କରୁଥିବେ । ଏପରି ଏକ ସମ୍ଭାବନାର ପରୀକ୍ଷା ଆମଦେଶରେ ଆରମ୍ଭ ହୋଇଗଲାଣି । ଚଳିତ ବର୍ଷ ଆମ ଚାଷୀଙ୍କୁ ଗହମର ଦାମ କିଲୋପିଛା ଆଠ ଟଙ୍କା ନଦେଇ ଅଷ୍ଟ୍ରେଲିଆରୁ ଅଣାଯାଇଥିବା ୩୫ ଲକ୍ଷଟନ୍ ଗହମର ଦାମ୍ କିଲୋ ପିଛା ୧୦ ଟଙ୍କା ବ୍ୟୟ ପଛରେ କେଉଁ ନୀତି କାମ କରୁଛି ? ବମ୍ୱେ ବିସ୍ଫୋରଣ ତଥା ଆମେରିକା ଓ ଭାରତ ଆଣବିକ ଚୁକ୍ତିକୁ କେନ୍ଦ୍ରକରି ଦେଶର ସୁରକ୍ଷା ପ୍ରଶ୍ନ ଉପରେ ସରକାର ଓ ବିରୋଧୀ ଦଳମାନଙ୍କ ଦ୍ୱାରା ସଂସଦ ବାଦାନୁବାଦରେ ପ୍ରତିଧ୍ୱନିତ ହେଉଥିବାବେଳେ ସ୍ୱଚ୍ଛ ... ଖାଦ୍ୟ ବିଲ୍ ବିନା ବିତର୍କରେ ଗୃହୀତ ହେବା ଓ ଆମେରିକା ଓ ଭାରତ ମଧ୍ୟରେ କୃଷି ଗବେଷଣା ଚୁକ୍ତି ସଂସଦର ବିତର୍କରେ ସ୍ଥାନ ନ ପାଇବା ପଛରେ କି ରାଜନୀତି ଅଛି ସ୍ୱାଧୀନତାପ୍ରେମୀ ସଚେତନଶୀଳ ନାଗରିକମାନେ ଚିନ୍ତା କରିବେ କି ? ଆମ କୃଷିର ବିକାଶ ପାଇଁ ଆମେରିକାର ସହଯୋଗରେ ଆମ ଦେଶର କୃଷି ବିଶ୍ୱବିଦ୍ୟାଳୟ ମାନଙ୍କରେ ଗବେଷଣା ଚାଲିବ । ଏହି ଗବେଷଣା ବୋର୍ଡର ଅଧା ଆମେରିକୀୟ ପ୍ରତିନିଧି ରହିବେ, ଅଧା ଆମର ରହିବେ । ଅର୍ଥାତ୍ ଆମେରିକାର କୃଷିର ବ୍ୟାବସାୟିକ ଲକ୍ଷ୍ୟ ହାସଲ ପାଇଁ ଏହି ଚୁକ୍ତି କାର୍ଯ୍ୟ କରିବ । ଆମେରିକାରେ ରିହାତି ପ୍ରାପ୍ତ ଗହମ ଓ ଧାନ ଓ ତୈଳବୀଜ ଚାଷ ବ୍ୟାହତ ହେବନାହିଁ । କିନ୍ତୁ ଆମ ଗରିବ ଲୋକଙ୍କ ବିକାଶ ପାଇଁ ଏଠାରେ ଜି.ଏମ୍ ସୋୟାବିନ, ବି.ଟି. କପା, ବି.ଟି. ବାଇଗଣ, ଫୁଲଚାଷର ବିକାଶ କରାଯିବ ଆମେରିକାର ଟେକନୋଲଜିର ପ୍ରୟୋଗରେ, ଏଥିପାଇଁ କୋଟି କୋଟି ଟଙ୍କାର ପୁଞ୍ଜି ଓ ବୈଷୟିକ ଜ୍ଞାନ କୌଶଳ ଆମେରିକାରୁ ଆସିବ । ସେଥିପାଇଁ ବିଶ୍ୱବ୍ୟାଙ୍କରୁ ଋଣ ନେବାପାଇଁ ମଧ୍ୟ ନିର୍ଦ୍ଦେଶ ଆସିବ । ଏସବୁ ରାଜ୍ୟ ସରକାରମାନଙ୍କ ପାଖରେ ପହଞ୍ଚିଗଲା ପରେ କୁହାଯିବ ଏସବୁ ଆସିଛି ବିକାଶ ପାଇଁ ଅନୁଦାନ । ଆଜି ମହାରାଷ୍ଟ୍ର, କର୍ଣ୍ଣାଟକ ଓ ଆନ୍ଧ୍ରରେ କୃଷକଙ୍କ ଆତ୍ମ ହତ୍ୟା ପଛରେ ରହିଛି ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ବିହନକୁ କେନ୍ଦ୍ରକରି ଚାଷୀଙ୍କୁ ପ୍ରଲୋଭନ କରାଇବାର ପରିଣାମ । ଚାଷୀ ଧାନ, ଗହମ, ପନିପରିବା ଚାଷ ଛାଡି ବି.ଟି.କଟନ ପଛରେ ଧାଇଁଲେ । ଉତ୍ପାଦନ ଖର୍ଚ୍ଚ ବଢ଼ିଲା, ଋଣକଲେ । ଫସଲର ଦାମ କମିଲା ଖୋଲା ବଜାରକୁ ବିକଶିତ ଦେଶମାନଙ୍କ ରିହାତି ପ୍ରାପ୍ତ କପା ଆସିବାପରେ । ଆଜି ସରକାର କହୁଛନ୍ତି ପ୍ରତିଯୋଗିତାରେ ଚାଷୀ ଆସିବାକୁ ହେବ । ୨ ଏକରରୁ ୧୦ ଏକର ପାଖରେ ରଖିଥିବା ଚାଷୀ ପ୍ରତିଯୋଗିତା କରିପାରିବତ ? ପୁଣି କାହା ସହ ? ଏହି

Digitized by srujanika@gmail.com

ପ୍ରତିଯୋଗିତା ପଛରେ ରହିଛି ପାଣି ପଞ୍ଚାୟତ ସ୍ଥାପନପରି ରାଜନୀତି । ଚାଷୀଙ୍କୁ କୁହାଯିବ ତୁମେ ଯଦି ପ୍ରତିଯୋଗିତା କରିପାରୁ ନାହଁ ଜମି ଛାଡ଼ି ଦିଅ କର୍ପୋରେଟ୍ ମାଲିକମାନଙ୍କ ହାତକୁ । ସେମାନେ ଚାହିଁ ବସିଛନ୍ତି ଠିକାରେ ନେବାକୁ । ଆଉ ସେହି ଜମିରେ ଚାଷ ହେବ ଆମେରିକା ଓ ଅନ୍ୟ ଧନୀ ଦେଶର କୃଷିର ସ୍ୱାର୍ଥରେ ଓ ସେମାନଙ୍କ ଦ୍ୱାରା ନିୟନ୍ତ୍ରିତ ବଜାର ଚାହିଦା ଅନୁଯାୟୀ । ଏଠି ଆମର ଜମିର ମାଟିର ଭବିଷ୍ୟତ କ'ଣ ହେବ ସେଥିପାଇଁ ଆମ ସରକାର ଓ ବିଦେଶୀକରଣରେ ନିଶାସକ୍ତ ରାଜନୈତିକ ଦଳମାନେ ଚିନ୍ତା କରିବା କିମ୍ବା ବିତର୍କ କରିବାକୁ ଇଚ୍ଛା ନକରିବା ହେଉଛି ବଜାରୀ ଅର୍ଥନୈତିକ ଶକ୍ତିର ଏକ ସଫଳତା । ଏହି ସଫଳତାର ଉଦାହରଣ ସ୍ୱରୂପ ଓଡ଼ିଶା ବିଧାନ ସଭାରେ କୃଷି ବିପଣନ ବିଲ୍ ବିରୋଧୀ ଦଳର ଅନୁପସ୍ଥିତିରେ ଗୃହୀତ ହୋଇସାରିଲାଣି । ନୂଆ ଆଇନ ହେବ । ଏଥିରେ ସରକାରୀ ନିୟନ୍ତ୍ରିତ ବଜାରର ସମାନ୍ତରାଳ ବଜାର ପାଇଁ ଘରୋଇ କଂପାନୀମାନଙ୍କୁ ଅନୁମତି ଦିଆଯିବା ସହ ଚାଷୀଙ୍କ ଜମିକୁ ଲିଜ୍‌ରେ ନେଇ ଠିକା ଚାଷ କରିବା ପାଇଁ ବ୍ୟବସ୍ଥା କରାଯାଇଛି । ଏହି ଆଇନ କାର୍ଯ୍ୟକାରୀ ହେବାପୂର୍ବରୁ ରିଲାଏନ୍ସ କଂପାନୀ ସମେତ ଅନ୍ୟମାନେ ପ୍ରସ୍ତୁତ ହୋଇସାରିଲେଣି ଚାଷୀଙ୍କ ଜମି ଅକ୍ତିଆର କରି ଏଠାରେ ଜେନେଟିକ୍ ମୋଡିଫାଇଡ଼ି ବିହନ ଦ୍ୱାରା ବିଭିନ୍ନ ଫସଲ ଉତ୍ପାଦନ କରିବାକୁ । ରପ୍ତାନିଭିତ୍ତିକ କୃଷି ଉତ୍ପାଦନ କରି ସରକାରଙ୍କଠାରୁ ରିହାତି ହାସଲ କରିବେ । କାରଣ କୃଷି ବ୍ୟବସାୟ ଓ ରପ୍ତାନି ନାମରେ କେନ୍ଦ୍ର ସରକାର ରିହାତି ବ୍ୟବସ୍ଥା କରିଛନ୍ତି । ଏହାଦ୍ୱାରା ଛୋଟ ଓ କ୍ଷୁଦ୍ର ଚାଷୀ ରିହାତିରୁ ବଞ୍ଚିତ ହେବେ ଓ ଖାଦ୍ୟ ଉତ୍ପାଦନ କମିବାରେ ଲାଗିବ । ଅନ୍ୟ ପକ୍ଷରେ ରାସାୟନିକ ସାର ଓ କୀଟନାଶକ ଔଷଧର ପ୍ରୟୋଗ ବୃଦ୍ଧି ହେବ କର୍ପୋରେଟ ଚାଷରେ, ଯାହା ଫଳରେ ମାଟି ପ୍ରଦୂଷିତ ହେବ । କୃଷି କ୍ଷେତ୍ର ପ୍ରଯୁକ୍ତି ବିଦ୍ୟା କେନ୍ଦ୍ରିତ ହେବ ଯାହାଦ୍ୱାରା କୃଷି କର୍ପୋରେଟ୍‌କରଣରେ ପରିଣତ ହେବ । ଏହାକୁ ବିକାଶର ଚାବିକାଠି ବୋଲି କୁହାଯିବ । ଏଥିରେ ଗାଁର ସାଧାରଣ ଚାଷୀଙ୍କ ସ୍ଥାନ କେଉଁଠି ଖୋଜିଲେ ଉତ୍ତର ମିଳିବ ଦେଶରୁ ଚାଷୀ ମୂଲିଆଙ୍କ ସଂଖ୍ୟା କମିବା ମଧ ପ୍ରଗତିର ଏକ ଶୁଭ ସୂଚକ । ଅର୍ଥାତ୍ ଚାଷୀ ଚାଷ ହରାଇବା ପରେ ସେ ଆଉ ଚାଷୀନୁହଁ, ସେ ଅନ୍ୟମାନଙ୍କ ପରି କର୍ମହୀନ ବ୍ୟକ୍ତି । ସେହିପରି କୃଷି ଶ୍ରମିକ ହେବେ ଶ୍ରମହୀନ ବେକାର ନାଗରିକ । କୃଷିରୁ ବିସ୍ଥାପିତଙ୍କ ପାଇଁ ଶିଳ୍ପର ଦୁଆର ମାଡ଼ିବା ମନା ।

ଏବେ ବିକାଶର ଲକ୍ଷ୍ୟ ଧାର୍ଯ୍ୟ କରି କୁହାଯାଉଛି, ଦେଶରେ ନୂଆ ମଧବିତ୍ତ ଶ୍ରେଣୀ ସୃଷ୍ଟିର ଆବଶ୍ୟକତା ଅଛି ଆର୍ଥିକ ଅଭିବୃଦ୍ଧିକୁ ଆହୁରି ଆଗକୁ ନେବାପାଇଁ । ଏହା ଭାରତକୁ ଏକ ଆଗୁଆ ଅର୍ଥନୈତିକ ଶକ୍ତିରୂପେ ବିଶ୍ୱସ୍ତରରେ ଠିଆ କରାଇବ । ତେଣୁ ଓଡ଼ିଶାରେ ମଧ ଆଜିର ଶିଳ୍ପାୟନ ଜରିଆରେ ଏଠି ଯେଉଁ ମଧବିତ୍ତ ଶ୍ରେଣୀ ସୃଷ୍ଟି ହେବ

Digitized by srujanika@gmail.com

ଦେଶର ଧନୀକ ଶ୍ରେଣୀ ଭିତରେ ଅନ୍ୟତମ ଅଗ୍ରଣୀ ରୂପେ ପରିଗଣିତ ହୋଇପାରିବ । ସେତେବେଳେ ଓଡ଼ିଶା ଆଉ ଦାରିଦ୍ର୍ୟ ସହ ପରିଚିତ ହେବ ନାହିଁ । ସେଇଥିପାଇଁ ଯୋଜନା ଚାଲିଛି ବର୍ତ୍ତମାନ ଓଡ଼ିଶାରେ ଜାତୀୟ ରାଜପଥର ବିସ୍ତାର, ନୂଆ ନୂଆ ବିମାନ ବନ୍ଦର, ସମୁଦ୍ର କୂଳରେ ଘରୋଇ ବନ୍ଦର, ଆମ୍ବାନିପରି କଂପାନୀମାନଙ୍କ ଦ୍ୱାରା ସର୍ବବୃହତ୍ ବିଦ୍ୟୁତ ପ୍ରକଳ୍ପ, ଟେଲିଫୋନର ବ୍ୟବହାର ପାଇଁ ଗାଁ ଗହଳରେ ମୋବାଇଲ ପ୍ରଚଳନ, ପ୍ରତିଦିନ ରୋଡ଼କୁ ଶହ ଶହ ବିଦେଶୀକାରର ପ୍ରବେଶ, ଘରୋଇ ଡ଼ାକ୍ତରୀ ଶିକ୍ଷା ଓ ବୈଷୟିକ କଲେଜମାନଙ୍କ ଆବିର୍ଭାବ ସାଙ୍ଗକୁ ୧୦ ଟଙ୍କିଆ ପାଣି ବୋତଲର ବିକ୍ରି ବୃଦ୍ଧି ହେବା ଦ୍ୱାରା ଓଡ଼ିଶାର ଭବିଷ୍ୟତ ଯେ କେତେ ସୁନୀଲ ରଙ୍ଗ ଭରା ହୋଇ ପ୍ରସ୍ଫୁଟିତ ହେବାକୁ ଯାଉଛି ତାର ଚିତ୍ର ଅଙ୍କନ ଚାଲିଛି ସ୍ୱପ୍ନ ନିର୍ମାଣ କରୁଥିବା କଳାକାର ମାନଙ୍କଦ୍ୱାରା । ଏସବୁ ରଙ୍ଗ ଠାରୁ ବହୁଦୂରରେ ରହିଥିବେ ୮୦ ଭାଗରୁ ଉର୍ଦ୍ଧ ସାଧାରଣ ଓଡ଼ିଆମାନେ ଯେଉଁମାନଙ୍କ ମଧ୍ୟରୁ ଅନେକଙ୍କ ଏବେ ବି ବି.ପି.ଏଲ୍. ଚାଉଳ କିଣିବା ସାମର୍ଥ୍ୟ ନାହିଁ । ୟୁଜରସ ଚାର୍ଜ ଦେବାକୁ ପଡ଼ିବା ପରେ ସରକାରୀ ଡାକ୍ତରଖାନାକୁ ଯିବା ଗରିବ ଓଡ଼ିଆଙ୍କ ସଂଖ୍ୟା ହ୍ରାସ ହେବାପରେ ସ୍ୱାସ୍ଥ୍ୟ ଅବସ୍ଥାରେ ବିକାଶ ବୋଲି ମଧ୍ୟ ପରିସଂଖ୍ୟାନରେ କୁହାଯାଇପାରେ । ୧୦ ଟଙ୍କିଆ ପାଣି ବୋତଲର ବଜାର ବୃଦ୍ଧି ହେବାବେଳେ କ୍ଷୀର ଲିଟର ଆଠ ଟଙ୍କାରେ ଗାଁ ଓ ସହରର ଶିଶୁଙ୍କୁ ଦେଇପାରୁନଥିବା ଆର୍ଥିକ ସ୍ଥିତି କୁଆଡ଼େ ଲୁଚି ଯାଉଛି । ଏହି ସତ୍ୟତା ଆଉ ଆଲୋଚନାରେ ଅନ୍ତର୍ଭୁକ୍ତ ହୋଇପାରୁନି ବିଶ୍ୱବିଦ୍ୟାଳୟ ଓ କଲେଜମାନଙ୍କ ସେମିନାରରେ କିମ୍ବା ବିଧାନ ସଭା ଓ ସାଂସଦର ଗୃହରେ ହେଉଥିବା ହା ହୁଲାର ଗର୍ଜନ ଅଧିବେଶନମାନଙ୍କରେ । ସମୟ ପାଖେଇ ଆସୁଛି ଗାଁ ଗହଳ, ସହରର ଗଳିକନ୍ଦିର ସାଧାରଣ ଶ୍ରମିକ ଓ ନିମ୍ନଶ୍ରେଣୀର ବାସିନ୍ଦାମାନେ ଜଳ କଷ୍ଟ ଭୋଗ କରୁଥିବାବେଳେ ଜଳବିକା କଂପାନୀମାନେ ଥିବାବାଲାଙ୍କୁ ଜଳ ଯୋଗାଇ ମୁନାଫା କମାଉଥିବେ । ଓଡ଼ିଶାରୁ ପ୍ରତିଦିନ ଲକ୍ଷ ଲକ୍ଷ ଲୋକ ଗାଁର ଯୁବକ ଯୁବତୀ ସ୍ଥାନାନ୍ତରିତ ହେଉଥିବେ ବଞ୍ଚିବାର ରାହା ପାଇଁ । ଏପରି ଦୁଃଖ ଦୈନ୍ୟର ଦୃଶ୍ୟ ଓଡ଼ିଶାକୁ ଆଜିର ସ୍ୱପ୍ନ ଦେଖାଳି ଶିକ୍ଷିତ ଯୁବ ସମାଜ ଦେଖିନପାରେ, କିନ୍ତୁ ସେମାନଙ୍କ ମଧ୍ୟରୁ ଅନେକଙ୍କ ଚେହେରା ସେହି ଦୃଶ୍ୟର ଏକ ଅଂଶ ଯାଇଥିବ, ଆସନ୍ତା ଦିନରେ । ଏପରି ହେବ ବୋଲି ଜଳ ଜଳ ଦିଶୁଛି ।

**ନୋବେଲ ବିଜେତାଙ୍କ ଏକ୍ରୁଡ଼ିଶାଳ ହେବ ବେଦାନ୍ତ ବିଶ୍ୱବିଦ୍ୟାଳୟ**

ଏହି ସ୍ୱପ୍ନ ଭଙ୍ଗ ଯେପରି ଅତି ଶୀଘ୍ର ନହୁଏ ସେଥିପାଇଁ ମଧ୍ୟ ସୁନ୍ଦର ପରିକଳ୍ପନା ତିଆରି ହେଉଛି ବଡ଼ ବଡ଼ କଂପାନୀମାନଙ୍କ ହାତରେ । ସେଥିମଧ୍ୟରୁ ଶିକ୍ଷାର ବେପାର ପାଇଁ ଯୋଜନାବଦ୍ଧ ଭାବରେ ଓଡ଼ିଶା ଏକ ଉର୍ବର ସ୍ଥାନ ବୋଲି ଆନ୍ତର୍ଜ୍ୟାତିକ ବେପାରୀମାନେ ସ୍ଥିର କରିସାରିଲେଣି । ଯେଉଁଠି ଗାଁ ଅଛି ସ୍କୁଲ ନାହିଁ, ଯେଉଁଠି ସ୍କୁଲ ଅଛି ଶିକ୍ଷକ ନାହାନ୍ତି,

Digitized by srujanika@gmail.com

ଯେଉଁଠି ଶିକ୍ଷକ ଅଛନ୍ତି ସେଠି ପିଲାଙ୍କୁ ପଢ଼ାଇବାକୁ ବାପା ମା'ଙ୍କ ଆର୍ଥିକ ସାମର୍ଥ୍ୟ ନାହିଁ, ସେହି ରାଜ୍ୟରେ ବେଦାନ୍ତ ଆନ୍ତର୍ଜ୍ୟାତିକ ବିଶ୍ୱବିଦ୍ୟାଳୟର ଆବଶ୍ୟକତା ଆଉ ତାକୁନେଇ ଗର୍ବରେ ଫାଟି ପଡୁଥିବା ବିକାଶର ପ୍ରବକ୍ତାମାନଙ୍କ ଅଙ୍କକଷା ପ୍ରଗତିର ସୂଚାଙ୍କ ଯେ କେତେ ବାସ୍ତବିକ ତାକୁ କିଏ ମୂଲ୍ୟାୟନ କରିବ ? ଏଠି ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ଆଉ ପରସ୍ପରକୁ ବିରୋଧ କରୁଥିବା ଶାସକ ଓ ବିରୋଧୀ ରାଜନୈତିକ ଦଳ ମାନଙ୍କ ପରିଚାଳକମାନଙ୍କ ସହମତରେ ସ୍ୱପ୍ନ ନିର୍ମାଣ କାରଖାନା ଚାଲିଛି । ସମୟେ ସମୟେ ୧୫୦୦ ଟଙ୍କିଆ ଠିକା ଶିକ୍ଷକମାନଙ୍କ ପ୍ରତି ସମବେଦନା ପ୍ରକାଶ କରୁଥିବା ବିରୋଧୀ ଦଳର ପ୍ରବକ୍ତାମାନେ ବେଦାନ୍ତ ପରି କଂପାନୀର ବିଶ୍ୱବିଦ୍ୟାଳୟର ପରିକଳ୍ପିତ ସୌଧ ଓ ତାରି ଭିତରେ ପରୀରାଇଜର ସ୍ୱପ୍ନିଳ ଚିତ୍ରଣରେ ମୋହିତ ହୋଇ ସନ୍ଦେହ ଗୁଡ଼ିକୁ ପ୍ରଶ୍ନ କରିବାକୁ ସାହସ କରୁନାହାନ୍ତି । କାଳେ ପ୍ରଭାବଶାଳୀ ଦଳ ମଧବିତ୍ତ ଶ୍ରେଣୀର ରୋଷର ଶିକାର ହୋଇଗଲେ ପ୍ରତିଷ୍ଠା ମିଳି ନପାରେ, ଏ ଆଶଙ୍କା ରହିଛି । ପୁରୀ କୋଣାର୍କ ସମୁଦ୍ର କୂଳରେ ୧୦ ହଜାର ଏକର ଜମିରେ ୧୫୦୦୦ କୋଟି ଟଙ୍କାର ପୁଞ୍ଜି ବିନିଯୋଗରେ ଗଢ଼ି ଉଠିବ ନୋବେଲ ବିଜେତା ମାନଙ୍କ ଏକୁଡ଼ିଶାଳର ନଭଶ୍ଚୁମ୍ବୀ ପ୍ରସୂତି ଭବନ । ପୃଥିବୀର କେତେ ମା'ଙ୍କ ପେଟରୁ ଭ୍ରୁଣ ଆଣି ଏଠି ନୋବେଲ୍ ପୁରସ୍କାର ଚାଷହେବ ବୋଲି ଯେଉଁମାନେ ବେଦାନ୍ତ ବିଜ୍ଞାପନକୁ ଦେଖି ଓଡ଼ିଶାକୁ ନିୟୁୟର୍କ ଆଉ ଲଣ୍ଡନ ମଧରେ କେଉଁଟାକୁ ତୁଳନା କରୁଥିବେ ସେମାନେ କିପରି ଅନୁମାନ କରିପାରିବ ଯେ- ୧୦ ହଜାର ଏକର ଜମିକୁ ହଡ଼ପ କରିନେଇ ଶିକ୍ଷା ବ୍ୟବସାୟ ସାଙ୍ଗକୁ ଉପଭୋଗ୍ୟ ସଂସ୍କୃତିର କେନ୍ଦ୍ର ନିର୍ମାଣ ହେବ । ବେଦାନ୍ତର ଆଲୁମିନା କଂପାନୀପାଇଁ କଞ୍ଚାମାଲ ନିୟମଗିରି, କରଲାପାଟର ବକ୍ସାଇଟ୍ ଖଣି ସରିଲାବେଳକୁ ବିଶ୍ୱ ପରିଭ୍ରମଣକାରୀଙ୍କ ବିଳାସ ବ୍ୟସନ ପାଇଁ ଏକ ରିସୋର୍ଟ କେନ୍ଦ୍ର ହୋଇସାରିଥିବ । ଅନୀଲ ଅଗ୍ରୱାଲ, ଅନୀଲ ଅମ୍ବାନିଙ୍କ ପରି ଅନେକଙ୍କ ମୁନାଫାର ବାର୍ଷିକ ଆୟ ଆମଦେଶର ଆର୍ଥିକ ଅଭିବୃଦ୍ଧି ଓ ଜି.ଡ଼ି.ପିର ହାର ବୃଦ୍ଧି ପରିସଂଖ୍ୟାନକୁ ବଢ଼ାଇବ ଓ ଓଡ଼ିଶାର ମଧ ମୁଣ୍ଡପିଛା ଆୟ ଧନୀ ଦେଶମାନଙ୍କ ସ୍ତରକୁ ଚାଲିଯିବ । କି ସୁନ୍ଦର ହିସାବ ! ଉକ୍ତ ବିକାଶ ଧାରାକୁ ଯଦି ଅଧିକ ସମାଲୋଚନା କରାଯାଏ ତାହାହେଲେ ବିକାଶର ବଡ଼ ପଣ୍ଡା ଓ ଜଗତୀକରଣର ସମର୍ଥକ ଅର୍ଥଶାସ୍ତ୍ରୀମାନେ କହିପକାଇବେ ଓଡ଼ିଶାର ଦରିଦ୍ର ଯୁବତୀ ମଧ ସୁଯୋଗ ପାଇବ ନିଜ ଦେହର ଦର ମୂଲଚାଲ କରିବାକୁ, ଆଉ ଆଜିର ଦାରିଦ୍ର୍ୟ ପ୍ରପୀଡ଼ିତ ଯୁବତୀ ଦଲାଲ ହାତରେ ଝାନସୀ କିମ୍ବା ବମ୍ବେକୁ ଚାଲାଣ ନହୋଇ ନିଜରାଜ୍ୟରେ କେତେ ସୁରକ୍ଷିତ ହୋଇ ଉପଭୋଗବାଦ ବଜାରରେ ନିଜର ଆସ୍ଥାନ ଜମାଇପାରିବ । ଏହା ମଧ ବିକଶିତ ଅର୍ଥ ବ୍ୟବସ୍ଥାର ଏକ ସୂଚାଙ୍କ, କାରଣ ଆମେରିକା, ଫ୍ରାନସ୍ ପରି ଦେଶମାନଙ୍କ ବ୍ୟତୀତ ଥାଇଲ୍ୟାଣ୍ଡ ହଂକଙ୍ଗ, ଗରିବଦେଶମାନଙ୍କର

Digitized by srujanika@gmail.com

ଅର୍ଥ ବ୍ୟବସ୍ଥାରେ ଏସବୁ ବ୍ୟବସାୟର ଉଲ୍ଲେଖନୀୟ ଭୂମିକା ରହିଛି । ଭାରତରେ ଗୋଆକୁ ପରୀକ୍ଷାଗାର କରାଯାଇଛି । ଏବେ ଓଡ଼ିଶାର ଉପକୂଳ ହେବ ଆକର୍ଷଣୀୟ ପୁଞ୍ଜିପାଇଁ । ପରେ ରମଣୀୟ ହୋଇଯିବ ବେଦାନ୍ତ ବିଶ୍ୱବିଦ୍ୟାଳୟର ପ୍ରାଙ୍ଗଣରେ ପପ୍ ସଙ୍ଗୀତର ମୂର୍ଚ୍ଛନାରେ ଯେବେ ଉନ୍ମାଦିତ ଯୁବକ ଯୁବତୀ ନାଚୁଥିବେ ।

ଗୋଟିଏ ପଟେ ଶିଳ୍ପାୟନ ଦ୍ୱାରା ଇସ୍ପାତ ଓ ଆଲୁମିନା ଚାଷର ଫଳ ଆସନ୍ତା ୨୦ ବର୍ଷ ବେଳକୁ ଫଳି ପାଚିବା ବେଳେ ବେଦାନ୍ତ ବିଶ୍ୱବିଦ୍ୟାଳୟରୁ ନୋବେଲ ପୁରସ୍କାର ବିଜେତା ବୈଜ୍ଞାନିକ, ଡାକ୍ତର, ଲେଖକ, କଳାକାରମାନଙ୍କ ଚାଷର ଫସଲ ଆଦାୟ ହେଉଥିବ । ଓଡ଼ିଶା ପୃଥିବୀର ଭୂସର୍ଗ ହୋଇଯାଇଥିବ । ଆଉ ଜମି, ଜଙ୍ଗଲ ଓ ଜଳରୁ ବଞ୍ଚିତ ନିରୀହ ନିର୍ଦ୍ଦୋଷ ପାପୀମାନେ ନର୍କରେ ଘାଣ୍ଟି ହେଉଥିବେ । ୨୦୨୫ ବେଳକୁ ଆଜିର ଶାସକ, ରାଜନେତାମାନଙ୍କ ପାଇଁ ବେଦାନ୍ତ ବିଶ୍ୱବିଦ୍ୟାଳୟରୁ ଜାତ ନୋବେଲ ବିଜେତାମାନେ ବୋଧହୁଏ ବ୍ରହ୍ମାଣ୍ଡ ବିଜେତା ପୁରସ୍କାର ସୃଷ୍ଟିକରି ପ୍ରଦାନ କରିବେ । ଅନେକଙ୍କ ପିଲାମାନେ ନିଜ ନିଜ ପିତା ମାତାଙ୍କ ମରଣୋତ୍ତର ପୁରସ୍କାର ଗ୍ରହଣ କରି ଧନ୍ୟ ହୋଇଯାଉଥିବେ । କିନ୍ତୁ ଆଉ ଏକ ନିଶ୍ଚିତ ସମ୍ଭାବନା ମଧ୍ୟ ଅତି ସ୍ପଷ୍ଟ ଭାବରେ ଦେଖି ହେଉଛି । ପ୍ରପୀଡ଼ିତ ବଞ୍ଚିତ ନର୍କବାସୀମାନଙ୍କ ବିଦ୍ରୋହର ନିଆଁରେ ରାବଣର ଲଙ୍କା ପୁରୀ ସ୍ୱର୍ଗ ଜଳୁଥିବ । ଏପରିକି ନୀରବ ରହୁଥିବା ଅନେକ ନିରପେକ୍ଷ ସୁବିଧାବାଦୀ ବୁଦ୍ଧିଜୀବୀ ଓ ରାଜନେତାମାନେ କ୍ରୋଧର ଶିକାର ହେଉଥିବେ । ଅସହାୟ ମନେକରୁଥିବେ ।

ବର୍ତ୍ତମାନ ଓଡ଼ିଶାର ବିଶ୍ୱବିଦ୍ୟାଳୟ ମାନଙ୍କର ଶିକ୍ଷାର ବିକାଶ ପ୍ରତି ସରକାରର ନଜର ନାହିଁ । ବେଦାନ୍ତ ପରି ଅନ୍ୟ ଘରୋଇ ବିଶ୍ୱ ବିଦ୍ୟାଳୟମାନଙ୍କ ଝଡ଼ରେ ସାଧାରଣ ପରିବାରର ଶିକ୍ଷାର୍ଥୀମାନେ ପଢ଼ିପାରୁଥିବା ବିଶ୍ୱବିଦ୍ୟାଳୟ ଗୁଡ଼ିକ କୁଆଡ଼େ ନିଶ୍ଚିହ୍ନ ହୋଇଯିବେ ସେଥି ପ୍ରତି କାହାର ଚିନ୍ତା ବି ନାହିଁ । ସବୁତ ଘରୋଇକରଣ, ଉଦାରୀକରଣ ହୋଇଯିବ । ଯାହା ପାଖରେ ଅର୍ଥର ଭଣ୍ଡାର ତା ପାଇଁ ସବୁ ସେବା ମିଳିବ । ସାଧାରଣ ମଣିଷମାନେ ଯିବେ କୁଆଡ଼େ ? ଆଜି ନେପାଳର ଗାଁ ଭାଙ୍ଗିଯାଇଛି କାରଣ ସେଠାରେ ଦାରିଦ୍ର୍ୟର ତାଡ଼ନାରେ ଭୋକିଲା ଯୁବକ ଯୁବତୀ ବିକ୍ରି ବସ୍ତୁ ହୋଇଗଲାପରେ ବିଦ୍ରୋହ ଅବଶ୍ୟମ୍ଭାବୀ ହେଲା ମାଓବାଦୀଙ୍କ ନେତୃତ୍ୱରେ । ଦକ୍ଷିଣ ଆଫ୍ରିକାରେ ବିପ୍ଳବହେଲା ଗୋରାମାନଙ୍କ ଶୋଷଣ ବିରୋଧରେ, କିନ୍ତୁ ବିଜୟପରେ ଅର୍ଥବ୍ୟବସ୍ଥା ସେହି ଗୋରାଙ୍କଦ୍ୱାରା ଚାଲୁଥିବା ସାମ୍ରାଜ୍ୟବାଦୀଙ୍କ ପୁଞ୍ଜିବାଦ ବ୍ୟବସ୍ଥା ଚାଲୁରହିଲା ଓ ଶାସକମାନେ ଦୁର୍ନୀତିଗ୍ରସ୍ତ ହେଲେ । ବଡ଼ ବଡ଼ ହୋଟେଲ, କୋଠା, ବିଳାସୀ ଗାଡ଼ି ଏପରି ଅନେକ ବିକାଶର ସୂଚକ ବୋଲି ଧରିନେବାପରେ ଆଜି ଦକ୍ଷିଣ ଆଫ୍ରିକାର ସାଧାରଣ ଯୁବକ ଯୁବତୀ ଦାରିଦ୍ର୍ୟର ତାଡ଼ନାରେ ବେକାର ଓ ବିନିଯୁକ୍ତ ହୋଇ ରାସ୍ତାକଡ଼ରେ ବୁଲୁଛନ୍ତି ଓ ସେମାନଙ୍କ ମଧ୍ୟରୁ ଅନେକ

Digitized by srujanika@gmail.com

ଅପରାଧୀ ହୋଇଯିବାକୁ ବାଧ ହୋଇଛନ୍ତି । ଆଜିର ବିକାଶର ଚକ ଓଡ଼ିଶାରେ ଯେପରି ଗଡୁଛି ତାହା ଅନେକଙ୍କୁ ପେଷିଦେବାପରେ ଦକ୍ଷିଣ ଆଫ୍ରିକାର ସ୍ଥିତି ଓଡ଼ିଶାରେ ହେବନାହିଁକି ? ଏହି ବିଶ୍ୱବିଦ୍ୟାଳୟକୁ ଦେଶ ବିଦେଶରୁ ଆସିବେ, ଯେଉଁମାନେ ୫୦ ଲକ୍ଷ ଟଙ୍କାରୁ ଏକକୋଟି ଟଙ୍କା ପର୍ଯ୍ୟନ୍ତ ପ୍ରବେଶିକା ଦେୟ ଦେଇ ଆସନ କିଣିପାରିବେ । ଓଡ଼ିଶାର କେଉଁ ପରିବାରର ପିଲାମାନେ ଏଥିରେ ପଢ଼ିପାରିବେ ଯଦି ତାର ଏକ ସମ୍ଭାବ୍ୟ ତାଲିକା ପ୍ରସ୍ତୁତ କରାଯାଏ ସେଥିରେ ସାଧାରଣ କର୍ମଚାରୀଠାରୁ ଆରମ୍ଭ କରି ହାଇକୋର୍ଟର ବିଚାରପତି ଓ ବିଶ୍ୱବିଦ୍ୟାଳୟର ପ୍ରଫେସର ପରିବାରର ପିଲାମାନଙ୍କ ସ୍ଥାନ ରହି ପାରିବା ସମ୍ଭବପର ନୁହଁ । ଯାହାର କଳା ଟଙ୍କା କିମ୍ବା କର୍ପୋରେଟ୍ ଏକ୍ଜିକ୍ୟୁଟିଭ୍ ଚାକିରୀ ଥିବ ସେମାନଙ୍କ ପୁଅ ଝିଅ ନିଶ୍ଚିତ ସ୍ଥାନ ପାଇବେ । କିନ୍ତୁ ବିନା ମୂଲ୍ୟରେ ଓଡ଼ିଶାର କେତକଙ୍କ ପାଇଁ ସ୍ଥାନ ସଂରକ୍ଷିତ ରହିବ, ସେମାନେ ହେଲେ ମୁଖ୍ୟ ସଚୀବ, ରାଜନେତା, ବିଶ୍ୱବ୍ୟାଙ୍କପରି ଅନ୍ତରାଷ୍ଟ୍ରୀୟ ସଂସ୍ଥାରେ ନିଯୁକ୍ତ ହାଇଟେକ୍ ଅଫିସରମାନଙ୍କ ପିଲାମାନଙ୍କ ପାଇଁ, ପ୍ରଭାବଶାଳୀ ତଥା କଂପାନୀମାନଙ୍କ ଦଲାଲି କାମରେ ନିୟୋଜିତ ହୋଇ ରହିଥିବା ଆଇ.ଏ.ଏସ୍ ଓ ଆଇ.ପି.ଏସ୍ ଅଫିସର ଓ ତତ୍‌କାଳୀନ କ୍ଷମତାସୀନ ବ୍ୟକ୍ତି ବିଶେଷଙ୍କ ପାଇଁ ।

ବିଶ୍ୱବିଦ୍ୟାଳୟ ଲାଗି ଆଠ ହଜାର ଏକର ଜମି ଦେବା ପାଇଁ ରାଜ୍ୟ ସରକାର ୨୦ ଖଣ୍ଡ ଗ୍ରାମର ଚାଷୀଙ୍କ ଜୀବିକା ଛଡ଼ାଇ ନେବାକୁ ପ୍ରସ୍ତୁତ । ଦେଶର ଶିକ୍ଷାର ଉଚ୍ଚମାନ ଥିବା ଜବାହାରଲାଲ ନେହରୁ ବିଶ୍ୱବିଦ୍ୟାଳୟର ମୋଟ ଜମି ଏକ ହଜାର ଏକର । ଆଇ.ଆଇ.ଟି. ଖଡ଼ଗପୁରର ୨୧୦୦ ଏକର, ଆଇ.ଆଇ.ଟି. ଦିଲ୍ଲୀର ୩୨୦ ଏକର, ଆଇଆଇଟି କାନପୁରର ୧୦୫୫ ଏକର, ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟର ୨୩୦୦ ଏକର । ବେଦାନ୍ତ ପାଇଁ ଆଠ ହଜାର ଏକର କାହିଁକି ? ପୁଣି ଏଥିପାଇଁ ପ୍ରତିଦିନ ଜଳର ଆବଶ୍ୟକତା ୧ ଲକ୍ଷ ୧୦ ହଜାର କ୍ୟୁବିକ ମିଟର ଅର୍ଥାତ୍ ୧୧ କୋଟି ମିଟର । ଏହା ୧୩ ଲକ୍ଷ ୫୦ ହଜାର ଲୋକଙ୍କ ଦୈନିକ ଆବଶ୍ୟକତା ସହ ସମାନ । ପୁରୀ ସହର ପାଇଁ ଆବଶ୍ୟକତା ପଡୁଛି ଦୈନିକ ୨ କୋଟି ୩୦ ଲକ୍ଷ ୫୦ ହଜାର ଲିଟର । ବେଦାନ୍ତ ବିଶ୍ୱବିଦ୍ୟାଳୟକୁ ଦିଆଯିବ ୫ ଗୁଣ । ବୁଝାମଣା ପତ୍ରରେ ଏସବୁ ସହ ୧୫୦ ରୁ ୬୦୦ ମେଗାୱାଟ ବିଦ୍ୟୁତ୍ ଯୋଗାଇ ଦିଆଯିବ । ଏଥିପାଇଁ ଓଡ଼ିଶାର ବହୁ ଜଳ ବହୁ ଜଳବିଦ୍ୟୁତ୍ ପ୍ରକଳ୍ପଗୁଡିକ କେବଳ ନିୟୋଜିତ ହେବ । ହୁଏତ ନୂତନ ଉତ୍ପାଦନ ପାଇଁ ନୂଆ ଜଳଭଣ୍ଡାର ପ୍ରକଳ୍ପ ହେବ ଯାହାପାଇଁ ହଜାର ହଜାର ଲୋକ ବିସ୍ଥାପିତ ହେବାକୁ ପଡିବ । ଏହି ବିଶ୍ୱବିଦ୍ୟାଳୟ କାହା ପାଇଁ ? ପଢ଼ିବେ କିଏ ? ଓଡ଼ିଶାର କେଉଁ ପରିବାରର ପିଲାମାନେ ପଢ଼ିପାରିବେ ? ଏଠି ଦେଶ ବିଦେଶର ଏକ ଲକ୍ଷ ଛାତ୍ରଛାତ୍ରୀ ପଢ଼ିବେ ଯେଉଁମାନେ ଲକ୍ଷ ଲକ୍ଷ ଟଙ୍କା ଦେଇ ନାମ ଲେଖାଇପାରିବେ । ଏଠି ବିଶ୍ୱବିଦ୍ୟାଳୟ ନାମରେ ଆନ୍ତର୍ଜାତିକ ବ୍ୟାବସାୟିକ କେନ୍ଦ୍ରହେବ

Digitized by srujanika@gmail.com

ଯେଉଁଠି ଅନୀଲ ଅଗ୍ରୱାଲା ସୁନ୍ଦରୀ ପ୍ରତିଯୋଗିତା ଓ ପପ୍ ଡ଼େନସର ପରି ନୂଆ ନୂଆ ପାଠ୍ୟକ୍ରମ ଖୋଲିପାରନ୍ତି । ବିଶ୍ୱବିଖ୍ୟାତ ଷ୍ଟାର ହୋଟେଲ ସହ ନଭଶ୍ଚୁମ୍ବୀ ଅଟ୍ଟାଳିକାର ସହର ମଧ କରାଯିବ । ବେଦାନ୍ତ ବିଶ୍ୱବିଦ୍ୟାଳୟ ନାମରେ ପ୍ରକାଶିତ ହେଉଥିବା ବିଜ୍ଞାପନରେ ଜଣାଇ ଦିଆଗଲାଣି ଏକ ସୁନ୍ଦର ସହରର ଆବଶ୍ୟକତା ରହିଛି । ସେହି ସହରରେ ଦେଶ ବିଦେଶର କୋଟିପତି, ପୁଞ୍ଜିପତି ରହିବେ । ଯେଉଁମାନେ ଓଡ଼ିଶାର ପ୍ରାକୃତିକ ସଂପଦକୁ ଅକ୍ତିଆର କରି କୋଟି କୋଟି ଟଙ୍କାର ମୁନାଫା ପାଉଥିବେ । ଏହାର ପ୍ରତିରୋଧ ପାଇଁ ବେଦାନ୍ତ ବିଶ୍ୱବିଦ୍ୟାଳୟ ବିରୋଧରେ ଗଣସଂଗ୍ରାମ ଏକମାତ୍ର ବାଟ ।



Digitized by srujanika@gmail.com

# ପରିବେଶ ଓ ବିକାଶ ରାଜନୀତିରେ ମଣିଷ

## ଓଡ଼ିଶାର ପ୍ରାକୃତିକ ସଂପଦ ଓ ଜୀବିକା

ଏହି ଲେଖା ଜରିଆରେ ପ୍ରଥମେ ଏକ ଭୁଲଧାରଣା ଦୂର କରିବା ପାଇଁ ଚାହେଁ । ଆମର ଅନେକ ବୁଦ୍ଧିଜୀବୀ ଓ ରାଜନୈତିକ ବ୍ୟକ୍ତି ବିଶେଷମାନେ ଅତୀତ ଓଡ଼ିଶା ବିଭବଶାଳୀ ଥିଲା ବୋଲି ଭାବବିହ୍ୱଳ ହୋଇ କହିଥାନ୍ତି ଏବଂ ବର୍ତ୍ତମାନ ଓଡ଼ିଶାର ନଗ୍ନଚିତ୍ରକୁ ଦେଖି ଭାବପ୍ରବଣତା ପ୍ରକାଶ କରି କହିଥାନ୍ତି – ''ପ୍ରାକୃତିକ ସଂପଦର ପ୍ରାଚୁର୍ଯ୍ୟ ଭିତରେ ଦାରିଦ୍ର୍ୟର ତାଡ଼ନା ଓଡ଼ିଶାବାସୀ ଭୋଗୁଛନ୍ତି ।'' ପ୍ରକୃତରେ ଏହା ୫୦ ବର୍ଷ ପୂର୍ବେ ଏପରି ବକ୍ତବ୍ୟର ଯଥାର୍ଥ ଥିଲା । ବିଗତ ୫୦ ବର୍ଷ ମଧ୍ୟରେ ଆମ ଓଡ଼ିଶାର ପ୍ରଚୁର ପ୍ରାକୃତିକ ସଂପଦ ଲୁଟ ହୋଇସାରିଲାଣି ବିଭିନ୍ନ ନାମରେ । ବିଶେଷ କରି ବିକାଶ ନାମରେ ଆମ ଖଣି ଖାଦାନର ପରିମାଣ କମି କମି ଆସିଲାଣି । ଜଙ୍ଗଲ ୪୩ ଭାଗରୁ ୧୬କୁ ଆସିଛି । ୪୮୦ କି.ମି. ସାମୁଦ୍ରିକ ଉପକୂଳରେ ଥିବା ଅମୂଲ୍ୟ ସଂପଦ ମଧ୍ୟରୁ ଅନେକ ଶେଷ ହୋଇଗଲେଣି ଆଉ ଯାହା ରହିଛି ତାକୁ ତଥାକଥିତ ବିକାଶ ନାମରେ ମୁନାଫା ପାଇଁ ଶେଷ କରିଦେବାକୁ ପ୍ରକ୍ରିୟା ଚାଲୁରହିଛି । ସେଗୁଡ଼ିକ ମଧ୍ୟରୁ ଲୁଣା ଜଙ୍ଗଲ ଓ ହେନ୍ତାଳବଣ, କିଆ ଓ ଝାଉଁ ବଣ ଶେଷ ହେବାପରେ ସମୁଦ୍ର ଜଳ ଆଦି ପ୍ରଦୂଷିତ । ଚିଲିକା ଏକଦା ଏକ ଲକ୍ଷ ପାରଂପରିକ ମତ୍ସ୍ୟଜୀବୀ ପରିବାରକୁ ରୋଜଗାର ଦେଉଥିଲା । ସେହି ମତ୍ସ୍ୟଜୀବୀଙ୍କ ଚିଲିକାରେ ମିଳୁଥିବା ଅନେକ ରକମର ମାଛ ନାହିଁକି ରମ୍ୟରଚନା କରିବା ପାଇଁ ''ସୁନ୍ଦରେ ତୃପ୍ତିର ଅବସାଦ ନାହିଁ'' କହିବାକୁ ପରିବେଶ ବି ନାହିଁ । ଆଜି ଚିଲିକା ଭିତରେ ଡ଼ଲାରପିପାସୁ ବେପାରୀଙ୍କ ପ୍ରବେଶ ଯୋଗୁଁ ଏକ ପ୍ରାଚୁର୍ଯ୍ୟ ଭରା ପ୍ରାକୃତିକ ଭଣ୍ଡାର ଶ୍ରୀହୀନ ହୋଇପଡ଼ିଛି ।

ଅବିଭକ୍ତ କୋରାପୁଟ ଜିଲ୍ଲାରେ ବିଗତ ୫୦ ବର୍ଷ ଧରି ଜଙ୍ଗଲ କାଟି ଦିଆଗଲା ବଡ଼ ଡ୍ୟାମ ଓ ଶିଳ୍ପ ନାମରେ । କଳକାରଖାନାକୁ ସ୍ୱାଗତ କରି ବିକାଶର ବାଜା ବାଜିଲା ନୂଆ ଓଡ଼ିଶାର ସ୍ୱପ୍ନ ଦେଖିବା ପାଇଁ । କାଗଜକଳ ଠାରୁ ଆରମ୍ଭ କରି ଫେରୋକ୍ରୋମର ଶିଳ୍ପପତିମାନଙ୍କୁ ଆମେ ଆମର କୃତଜ୍ଞତା ଢ଼ାଳି ଚାଲିଲୁ । କିନ୍ତୁ ଆମେ ଏବେ ମଧ୍ୟ ସମୀକ୍ଷା କରିନାହୁଁ, ହିସାବ ଦେଖିନାହୁଁ ଯେ ଆଜି ଅବିଭକ୍ତ

Digitized by srujanika@gmail.com

କୋରାପୁଟ, କେଉଁଝର, ସୁନ୍ଦରଗଡ଼ ଜିଲ୍ଲାମାନଙ୍କ ଜଙ୍ଗଲ ହଜିଲା ପରେ ଜଙ୍ଗଲବାସୀଙ୍କ ଆୟ ବଢ଼ିଛି କି କମୁଛି, ମାନବ ସଂବଳର ଅଭିବୃଦ୍ଧି ହୋଇଛି କି ସେହି ଆଦିବାସୀ ସମାଜରେ ଯେଉଁମାନେ ନିଜର ପାରଂପରିକ ଜୀବିକା ହରାଇଛନ୍ତି । ଯେଉଁ ପ୍ରାକୃତିକ ସଂପଦର କ୍ଷୟକ୍ଷତି ହେବାରେ ଲାଗିଛି ତାହାର ଲାଭ କାହା ପାଖକୁ ଯାଉଛି ? ଯେଉଁ ପ୍ରାକୃତିକ ସଂପଦକୁ ସାରିଲୁ, ତାର ପରିଣାମରେ ଆଜିର ଦିନରେ ଲକ୍ଷ ଲକ୍ଷ ଆଦିବାସୀଙ୍କ ଜୀବିକାର ସମସ୍ୟା ସହ ପ୍ରଦୂଷଣର ପ୍ରଶ୍ନ ଠିଆ ହୋଇଛି । ତାକୁ ଆମ ପ୍ରଶାସନର ବିଶେଷଜ୍ଞମାନେ କିଂବା ବିକାଶର ପରାମର୍ଶଦାତାମାନେ କେବେ ସଠିକଭାବେ ଗଭୀର ଅନୁଧ୍ୟାନ ଓ ମୂଲ୍ୟାୟନ କରିଛନ୍ତି କି ?

ସମୁଦ୍ର ଉପକୂଳରେ ଚିଙ୍ଗୁଡ଼ି ବ୍ୟବସାୟ ନାମରେ ପରିବେଶକୁ ନଷ୍ଟ କରିବା ସହ ସମୁଦ୍ର ଜଳକୁ ପ୍ରଦୂଷିତ କରି ଦିଆଗଲାଣି । ଏହାଦ୍ୱାରା ପ୍ରାକୃତିକ ପରିବେଶ ଧ୍ୱଂସମୁଖୀ ହେବାସହ ଏଥି ସହ ଜଡ଼ିତ ଲକ୍ଷାଧିକ ପରିବାରମାନଙ୍କ ଜୀବିକା ଛଡ଼ାଇ ନିଆଯାଇଛି । ଗତ ମହାବାତ୍ୟା ପରେ ବି ଆମ ଶାସକ ଓ ଯୋଜନାକାରୀଙ୍କ ଆଖି ଖୋଲିଲା ନାହିଁ । ବାତ୍ୟାର ପ୍ରକୋପର ମାତ୍ରା କମିଯାଇଥାନ୍ତା ଯଦି ହେନ୍ତାଳ ଓ ଲୁଣା ଜଙ୍ଗଲକୁ ବଞ୍ଚାଇ ରଖିଥାନ୍ତୁ । ୧୯୭୧ ବାତ୍ୟାପରେ ଏକ ବିଶେଷଜ୍ଞ କମିଟିର ରିପୋର୍ଟ ଅନୁଯାୟୀ ଯଦି ଉପକୂଳର ପ୍ରକୃତିଦତ୍ତ ପରିବେଶର ସୁରକ୍ଷା କରାଯାଇଥାନ୍ତା ୧୯୯୯ର ମହାବାତ୍ୟାର କ୍ଷୟକ୍ଷତି ଅତି ନଗଣ୍ୟ ହୋଇଥାନ୍ତା, କିନ୍ତୁ ଏତେବଡ଼ ଜାତୀୟ ବିପତ୍ତି ପରେ ବି ସମୁଦ୍ର ଉପକୂଳରେ ପୁନଃ ଜଙ୍ଗଲ ସୃଷ୍ଟି କରିବା ପରିବର୍ତ୍ତେ ଥିବା ପ୍ରାକୃତିକ ସଂବଳ ଗୁଡ଼ିକୁ ନଷ୍ଟ କରି ଉପକୂଳ ରାଜପଥ ନିର୍ମାଣ ପାଇଁ ଯୋଜନା ଚାଲିଛି । ବିଶ୍ୱବ୍ୟାଙ୍କର ନିର୍ଦ୍ଦେଶରେ ଏହି ରାଜପଥ ହେବ ଦେଶୀ ଓ ବିଦେଶୀ ବ୍ୟବସାୟୀଙ୍କ ପାଇଁ ଅର୍ଥ ଉପାର୍ଜନର କେନ୍ଦ୍ରସ୍ଥଳୀ । ଭ୍ରମଣ କେନ୍ଦ୍ର, ହୋଟେଲ ଶିଳ୍ପ, ଚିଙ୍ଗୁଡ଼ି ଚାଷ ପରି ତଥାକଥିତ ବିକାଶର ନମୁନା ଦେଖାଇ ସାମୁଦ୍ରିକ ସଂବଳକୁ ଶେଷକରି କେବଳ ଡ଼ଲାର ରୋଜଗାରକୁ ଆର୍ଥିକ ସମୃଦ୍ଧିର ମାନଦଣ୍ଡ ଭାବିଲେ ସାମାଜିକ ଓ ଆର୍ଥିକ ଅସନ୍ତୁଳନ ବଢ଼ିଚାଲିବ । କେବଳ ସାମ୍ରାଜ୍ୟବାଦୀ ଆର୍ଥିକ ବ୍ୟବସ୍ଥା ଆମର ପ୍ରାକୃତିକ ସଂବଳଗୁଡ଼ିକୁ ଶୋଷଣ କରିଚାଲିଥିବ ।

ତେଣୁ ଆଜି ଯେଉଁମାନେ ବିକାଶ କଥା କହିବାକୁ ଚାହୁଁଛନ୍ତି, ପ୍ରଥମେ ବିକାଶ କାହାପାଇଁ ସ୍ପଷ୍ଟ କରନ୍ତୁ ଏବଂ ବିକାଶନାମରେ ପ୍ରାକୃତିକ ସଂପଦର

Digitized by srujanika@gmail.com

ବ୍ୟବହାର କେଉଁ ସୀମା ପର୍ଯ୍ୟନ୍ତ ରହିବ ତାହାବି ଚିନ୍ତା କରିବାକୁ ହେବ । ଯେଉଁଦିନ ଉପକୂଳ ରାଜପଥ ନିର୍ମାଣ ହୋଇଯିବ, ୧୦ ବର୍ଷ ପରେ ଆଉ ଓଡ଼ିଶା ଉପକୂଳରେ ଥିବା ପ୍ରାକୃତିକ ପରିବେଶ ବିରଳ ହୋଇଯିବ । ଲକ୍ଷାଧିକ ମତ୍ସ୍ୟଜୀବୀ, ଚାଷୀ ପରିବାର ସବୁଦିନ ପାଇଁ ନିଜ ରୋଜଗାର ଅଧିକାରରୁ ବଞ୍ଚିତ ହେବେ । ଏହି ବଞ୍ଚିତମାନଙ୍କ ଆର୍ଥିକ ଅଧପତନ ପୁଣି ଓଡ଼ିଶାର ଦରିଦ୍ରମାନଙ୍କ ସଂଖ୍ୟା ବଢ଼ାଇବା ନିଶ୍ଚିତ । ଉପକୂଳ ରାଜପଥ ହୋଇଗଲା ପରେ ଆଉ ଏକ ବଡ଼ ବିପତ୍ତି ଆସିବ । ବାତ୍ୟାପରେ ଜଳ ନିଷ୍କାସନ ହେବନାହିଁ ଓ ବର୍ଷା ଦିନେ ହଜାର ହଜାର ଏକର ଚାଷ ଜମି ପାଣି ଭିତରେ ରହିବ । ଚାଷ ଧ୍ୱଂସ ହେବ ଓ ପ୍ରାକୃତିକ ବିପର୍ଯ୍ୟୟ ଆସିଲେ ୧୯୯୯ର କ୍ଷୟକ୍ଷତିର ପରିମାଣଠାରୁ ଅଧିକ ହେବ । ବର୍ତ୍ତମାନ ଶହ ଶହ କୋଟି ଟଙ୍କାର ଋଣ କରି ବିକାଶର ଭାବ ପ୍ରବଣତା ସୃଷ୍ଟି କରିବା ପଛରେ ବିଶ୍ୱ ବ୍ୟାଙ୍କ ଏବଂ ଧନୀ ରାଷ୍ଟ୍ରମାନଙ୍କ ମିଳିତ ଚକ୍ରାନ୍ତ ରହିଛି ସେମାନଙ୍କ ବଜାର ସଂପ୍ରସାରଣ କରିବାପାଇଁ । ଆଜି ଯେଉଁମାନେ ହୋଟେଲ ଶିଳ୍ପ, ପର୍ଯ୍ୟଟନ କେନ୍ଦ୍ର ଜରିଆରେ ଓଡ଼ିଶାର ବିକାଶ ପାଇଁ ପରିକଳ୍ପନା କରୁଛନ୍ତି ସେମାନେ ପ୍ରାକୃତିକ ସମ୍ବଳର ସଂରକ୍ଷଣ ଓ ସୁରକ୍ଷାକୁ କେନ୍ଦ୍ରକରି ବିକଳ୍ପ ପର୍ଯ୍ୟଟନ ଶିଳ୍ପର ସ୍ୱରୂପ କ'ଣ ହେବା ଆବଶ୍ୟକ ଚିନ୍ତା କରିବା ଉଚିତ ହେବ ।

ଆଜି ଅବିଭକ୍ତ କୋରାପୁଟରେ ଇମ୍ପା ଶିଳ୍ପକୁ ବିକାଶର ମାଇଲ ଖୁଣ୍ଟରେ ଗଣତି କଲାବେଳେ ଇମ୍ପାର ଫେରୋକ୍ରମ ଉତ୍ପାଦନ ପାଇଁ କାଠ ଅଙ୍ଗାର ଜାଳେଣି ରୂପେ ବ୍ୟବହାର କରିବା ଯୋଗୁଁ ବିଗତ ୪୦ ବର୍ଷ ଭିତରେ ଅମୂଲ୍ୟ ଜଙ୍ଗଲକୁ ବିନାଶ କରିଛି । ପୁଣି ସେହି ଶିଳ୍ପ ପାଇଁ ବିଦ୍ୟୁତ୍ ଛାଡ଼ । ସେହିପରି ଜେ.କେ. ଓ ଅନ୍ୟ କାଗଜ କଳ ପାଇଁ ବାଉଁଶ ବଣକୁ ଶେଷ କରି ଦିଆଗଲା । ପୁଣି ରୟାଲଟି ଛାଡ଼ । ପୁନଃ ଉତ୍ପାଦନ ପ୍ରକ୍ରିୟାରେ ବାଉଁଶ ବଣ ସୃଷ୍ଟି କରାଗଲା ନାହିଁ । ବର୍ତ୍ତମାନ ବାଉଁଶ ବଦଳରେ ଆଦିବାସୀଙ୍କ ଜମିମାନଙ୍କରେ କଂପାନୀ ତରଫରୁ ୟୁକାଲି ପଟାସ ଲଗାଇ ମାଟିକୁ ଅନୁର୍ବର କରିବା ସହ ସ୍ଥାନୀୟ ବାସିନ୍ଦାଙ୍କ ଆବଶ୍ୟକତା ଅନୁଯାୟୀ ଜଙ୍ଗଲ ଓ କୃଷିର ବିକାଶ ପ୍ରତି ଅବହେଳା କରାଯାଉଛି । ଏହି ବିନାଶ ପ୍ରକ୍ରିୟାରେ ସରକାର ଓ ବ୍ୟାଙ୍କମାନେ ଭାଗିଦାରୀ ହେଉଛନ୍ତି କଂପାନୀର ସ୍ୱାର୍ଥ ପାଇଁ । ଏପରି ଅନେକ ଉଦାହରଣ ଦିଆଯାଇପାରେ ପରିବେଶର ପ୍ରତିକୂଳରେ ପ୍ରଚଳିତ ବିକାଶର ହାନିଲାଭର ହିସାବ ପାଇଁ ।

ଟାଟାର ଇସ୍ପାତ କାରଖାନା ପାଇଁ ୬୦ ବର୍ଷ ମଧ୍ୟରେ ଲୁହାପଥର ଆମ ରାଜ୍ୟର ଏକ ବଡ଼ ଅଞ୍ଚଳରୁ ଶେଷ ହୋଇଗଲା । ବର୍ତ୍ତମାନ ସେହି ଅଞ୍ଚଳ ମରୁଭୂମି ।

Digitized by srujanika@gmail.com

ସେଠାର ଜଙ୍ଗଲ ଧ୍ୱଂସ ହେଲା । ସ୍ଥାନୀୟ ବନବାସୀମାନେ ଅଧିକ ଦରିଦ୍ର ହୋଇଛନ୍ତି । ଓଡ଼ିଶା ରାଜସ୍ୱକୁ ଆସିଲା ମାତ୍ର ଟନ ପିଛା ୨ ଅଣାରୁ ୧୧ ଟଙ୍କା ମଧରେ । ୧୯୪୮ରେ ଥିଲା ମାତ୍ର ୮ ଅଣା ରୟାଲଟି । ଏକ ଟନ ଲୁହାପଥର ପିଛା । ଯାହାର ଦାମ ବର୍ତ୍ତମାନ ମୂଲ୍ୟରେ ୨୦ ଟଙ୍କା ହେବ, କିନ୍ତୁ ଏବେ ୬୬ ବର୍ଷ ପରେ ମଧ ମାତ୍ର ୧୧ ଟଙ୍କା ଟନ ପିଛା ଟାଟାଠାରୁ ଓଡ଼ିଶା ସରକାର ରୟାଲଟି ବାବଦରେ ପାଉଛନ୍ତି ଯାହାର ବଜାର ମୂଲ୍ୟ ୧୫୦୦ ଟଙ୍କାରୁ ଉର୍ଦ୍ଧ୍ୱ । ଓଡ଼ିଶାର ବିକାଶରେ ଟାଟାର ଅବଦାନ କ'ଣ କେହି ପ୍ରଶ୍ନକରି ନାହିଁ । ପୁଣି ଗଂଜାମର ଗୋପାଳପୁରଠାରେ ଇସ୍‌ପାତ କାରଖାନା ନାମରେ ୨୦ ହଜାର ଗ୍ରାମବାସୀଙ୍କ ଜୀବିକା ଛଡ଼ାଇ ନେବା ସହ ୧୦ ହଜାର ଏକର ଚାଷଜମିକୁ ଅଣଚାଷରେ ପରିଣତ କରିବା ଉଦ୍ୟମ ଚାଲିଥିଲା ଏବଂ ପ୍ରକୃତିଦତ୍ତ କିଆ ବଣକୁ ଧ୍ୱଂସ କରାଯାଇ ସେହି ଫୁଲରୁ ଗଢ଼ି ଉଠିଥିବା ଅତର କୁଟୀରଶିଳ୍ପ ଏବଂ ଫୁଲ, ଫଳର ଉଦ୍ୟାନକୁ ଧ୍ୱଂସ କରି ଦିଆଯାଇଥାନ୍ତା । ପାଣି ପାଇଁ ପିପଳପଙ୍କା ସଂରକ୍ଷିତ ଜଙ୍ଗଲ ପ୍ରାୟ ୩ ହଜାର ଏକର, ୮ ଲକ୍ଷ ବୃକ୍ଷକୁ ନଷ୍ଟ କରି ଋଷିକୁଲ୍ୟା ନଦୀର ମୁଖ୍ୟ ଜଳସ୍ରୋତକୁ ବାନ୍ଧି ଜଳଭଣ୍ଡାର ହୋଇଥାନ୍ତା କେବଳ କଂପାନୀ ପାଇଁ । ଫଳରେ ଋଷିକୁଲ୍ୟା ନଦୀର ପ୍ରବାହିତ ଜଳଧାର ଶୁଖିଯାଇ ନିକଟ ଭବିଷ୍ୟତରେ ମୃତ ନଦୀରେ ପରିଣତ ହୋଇଥାନ୍ତା । ଏପରି ଏକ ଷଡ଼ଯନ୍ତ୍ରକୁ ଜନଆନ୍ଦୋଳନ ପ୍ରତିହତ କରିଦେଲା । ଟାଟା ଯେକୌଣସି ଆଳ ଦେଖାଉନା କାହିଁକି, ଇସ୍ପାତ କାରଖାନା ନାମରେ କେଉଁଝରରେ ଆବିଷ୍କୃତ ଲୁହାପଥର ଖଣି (୪୦୦ ନିୟୁତ ଟନ)କୁ ଲିଜ୍ ନେଇଥାନ୍ତା । ଆଜି ଇସ୍‌ପାତ କାରଖାନା ହେଲା ନାହିଁ ବୋଲି ଋଷିକୁଲ୍ୟା ନଦୀର ପାଣିର ସ୍ରୋତକୁ ବଞ୍ଚାଇ ଦିଆଯାଇଛି । ଲୁହାଖଣି ସଂରକ୍ଷିତ ହୋଇ ରହି ଯାଇଛି । ତଥାପି ଆଜିବି ହଜାର ଏକର ଚାଷ ଜମି ଟାଟା ହାତରେ ପଡ଼ିଆ ପଡ଼ିଛି ଯେହେତୁ ଜବରଦସ୍ତ ଜମି ଅଧିଗ୍ରହଣ ହୋଇଥିଲା । ଆଜିବି କେତେକ ବିକାଶର ଧ୍ୱଜାଧାରୀ ଇସ୍‌ପାତ କାରଖାନା ନହେବାରୁ ବିକାଶର ପରିପନ୍ଥୀ ବୋଲି ମନ୍ତବ୍ୟ ଦେବାରେ ଲାଗିଛନ୍ତି । କିନ୍ତୁ କିଆ, ଉର୍ବର ଜମି, ସମୁଦ୍ର ଉପକୂଳ, ଜଙ୍ଗଲ ଏବଂ ଏକ ମୁଖ୍ୟ ନଦୀ ଋଷିକୁଲ୍ୟା ପରି ପ୍ରାକୃତିକ ସଂବଳର ସଂରକ୍ଷଣ ଓ ସୁରକ୍ଷା ଦ୍ୱାରା ଲକ୍ଷ ଲକ୍ଷ ଲୋକଙ୍କ ସାମାଜିକ ଓ ଆର୍ଥିକ ନିରାପତ୍ତା ସୁରକ୍ଷିତ ରହିଛି । ତେଣୁ ଆଜି ଓଡ଼ିଶାର ବିକାଶ କଥା ଭାବିଲାବେଳେ ପୁଞ୍ଜିନିବେଶକୁ ଅଗ୍ରାଧିକାର ଦେଇ କେତେକ ମୁଷ୍ଟିମେୟ ଶ୍ରେଣୀ ଓ ବ୍ୟକ୍ତିବିଶେଷଙ୍କର ଆୟର ଆକାଶଛୁଆଁ ବୃଦ୍ଧିକୁ ବିକାଶର ମାନଦଣ୍ଡ ବୋଲି କହି ଗରିବଲୋକଙ୍କ ଉପାର୍ଜନର ମୁଖ୍ୟ ଉତ୍ସ ପ୍ରାକୃତିକ ସମ୍ବଳକୁ

Digitized by srujanika@gmail.com

ନଷ୍ଟ କରିଦେବା ଯୁକ୍ତି ମଣିଷ ବିରୋଧୀ । ଏହାକୁ ସ୍ୱୀକାର କଲେ ଯାଇ ବିକଳ୍ପ ବିକାଶର ରାସ୍ତା ଖୋଜି ବାହାର କରିହେବ ।

ସେହିପରି କାଶୀପୁର ଆଦିବାସୀ ଆନ୍ଦୋଳନ ଆଖି ଖୋଲି ଦେଇଛି ଯେ – ଆଲୁମିନା ଶିଳ୍ପ ନାମରେ କିପରି ପ୍ରାକୃତିକ ସଂପଦ ଲୁଟ ହୋଇଯିବ । ଶେଷରେ ରହିବ କେବଳ ନାଲିମାଟିର ମରୁଭୂମି ଓ ପ୍ରଦୂଷିତ ଜଳ । ସବୁଠାରୁ ବିପଦ ସୃଷ୍ଟି ହେବ ଯେତେବେଳେ ବକ୍ସାଇଟ୍ ଖଣି ଶେଷ ହୋଇଯିବ ସେଠାରେ ଥିବା ଜଳର ଉତ୍ସ ଶୁଖିଯିବ । ସେଠାର ପ୍ରାକୃତିକ ସଂପଦ ଜଳ, ଜଙ୍ଗଲ ଓ ଜମି ଉପରେ ନିର୍ଭରଶୀଳ ଆଦିବାସୀ ସମାଜର ସ୍ଥିତି ଛିନ୍ନଭିନ୍ନ ହୋଇଯିବା ସହ ସାମାଜିକ ନିରାପତ୍ତା ବି ହଜିଯିବ । ଏପରି ଅନେକ ସ୍ଥାନରେ ଆମେ ଦେଖିଲେଣି । ତଥାପି ଓଡ଼ିଶାର ବିକାଶ ପ୍ରକ୍ରିୟାରେ ଓଡ଼ିଶାର ଅବହେଳିତ ଓ ଅଣ ବିକଶିତ ଅଞ୍ଚଳର ଲୋକଙ୍କୁ କେତେ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଲାଣି ତାର ହିସାବ ନାହିଁ । ବରଂ ଆହୁରି ତ୍ୟାଗ କରିବାକୁ କୁହାଯାଉଛି ବର୍ତ୍ତମାନର ବିଶ୍ୱକରଣକୁ ସଫଳ କରିବା ପାଇଁ । ଆଜି ଓଡ଼ିଶାକୁ ବିକାଶ ନାମରେ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ଧାଡ଼ି ଚାଲିଛି । କିନ୍ତୁ ଏପରି ଏକ ସମୟ ଆସିବ – ବକ୍ସାଇଟ୍, ଲୁହାପଥର, କ୍ରୋମାଇଟ ପରି ମୂଲ୍ୟବାନ ଖଣିଜ ପଦାର୍ଥ ଶେଷ ହୋଇଗଲା ପରେ ଆମ ପାଖକୁ କେହି ଆସିବେ ନାହିଁ । କେବଳ ସବୁଜ ବଳୟ ପାଲଟିବ ମରୁଭୂମି ଓ ସାଧାରଣ ସମ୍ବଳହୀନ ଚାଷୀ, ଆଦିବାସୀ ଖାଲି ହାତରେ ଭିକ୍ଷାଥାଳି ଧରି ବୁଲୁଥିବେ । ସେତେବେଳେ ଓଡ଼ିଶାର ସ୍ୱାଭିମାନ କଥା କାହାକୁ ନେଇ କୁହାଯିବ ? ସୁକିନ୍ଦା କ୍ରୋମାଇଟ ଖଣି ଖନନକୁ ଅନୁଧ୍ୟାନ କରାଯାଇ ବିଶେଷଜ୍ଞମାନେ କହି ସାରିଲେଣି ଯେ ବେପାରୀଙ୍କ ହାତରେ ଖଣି ଦେଇ ଆମ ସରକାର ନୀରବ । ମୁନାଫା ପାଇଁ ଖଣି ମାଲିକମାନେ ଅଣବୈଜ୍ଞାନିକ ପଦ୍ଧତିରେ ଖନନ ପ୍ରକ୍ରିୟା ଦ୍ୱାରା ପରିବେଶ ପ୍ରଦୂଷିତ ଓ ଅଞ୍ଚଳବାସୀ ଅଚିହ୍ନା ରୋଗରେ ଆକ୍ରାନ୍ତ । ଖଣି ଶେଷ ହୋଇଗଲା ପରେ ସ୍ଥାନୀୟ ଲୋକେ ସର୍ବସ୍ୱାନ୍ତ । ବିଗତ ୪୦ ବର୍ଷ ମଧ୍ୟରେ ପ୍ରାୟ ୫୦୦୦ କୋଟି ଟଙ୍କାର କ୍ରୋମାଇଟ ନଷ୍ଟ ହୋଇଛି unscientific mining ଯୋଗୁଁ । ଏହା ପୁଣି ଚାଲିଲେ ଆସନ୍ତା ୩୦ ବର୍ଷ ମଧ୍ୟରେ ପ୍ରାୟ ୫୦ ହଜାର କୋଟି ଟଙ୍କା ମୂଲ୍ୟର କ୍ରୋମାଇଟ ଲୁଟ ହୋଇଯିବ । ଆଉ ୫୦ ବର୍ଷ ପରେ କ୍ରୋମାଇଟର ପରିମାଣ କେତେ ରହିବ ଆମ ବିଶେଷଜ୍ଞ ଓ ଶାସନ ପରିଚାଳକମାନେ କେବେ ଚିନ୍ତା କରିଛନ୍ତି କି ? ସେତେବେଳେ ଆଉ ପ୍ରାଚୁର୍ଯ୍ୟରେ ରହି ଦରିଦ୍ର ବୋଲି ନକହି ଆମେ ସର୍ବହରା ଓ ଆମର ସବୁ ସରିଗଲା ବୋଲି କହିବାକୁ ବାଧ୍ୟ ହେବା ।

Digitized by srujanika@gmail.com

ଓଡ଼ିଶାର କୃଷି ହେଉଛି ପ୍ରାଥମିକ ଆର୍ଥିକ କ୍ଷେତ୍ର । ତା' ସହ ଜଙ୍ଗଲ ଅର୍ଥନୀତି ଏକ ମୁଖ୍ୟ ସହଯୋଗୀ । କିନ୍ତୁ କୃଷିର ବିକାଶ ସହ ଜଙ୍ଗଲ ଓ ଜଳର ସମନ୍ୱିତ ସମୃଦ୍ଧି ଓ ତାର ଉପଯୋଗ ଉପରେ ନିର୍ଭର କରେ । କିନ୍ତୁ ଜଗତୀକରଣ ପ୍ରକ୍ରିୟାରେ ଶିଳ୍ପକୁ କେନ୍ଦ୍ରକରି ଓଡ଼ିଶାର ବିକାଶ ନାମରେ ପ୍ରାକୃତିକ ସଂପଦ ଗୁଡ଼ିକୁ କଂପାନୀମାନଙ୍କ ହାତରେ ଟେକି ଦେଇ ଦେବାକୁ ରାଜନୈତିକ ପ୍ରତିଯୋଗିତା ଚାଲିଛି । ଅବଶ୍ୟ ଏଥିରେ ହାତ ସଫେଇ କାରବାର ମଧ୍ୟ ଲୁଚି ରହିଛି । ବାଲକୋକୁ ଏକ ଘରୋଇ କଂପାନୀ ଷ୍ଟେରଲାଇଟକୁ ଶସ୍ତାରେ ବିକ୍ରି କରିବା ପୂର୍ବରୁ ଓଡ଼ିଶାର ଶାଶୁ ବୋହୁମାଳୀ ବକ୍ସାଇଟ୍ ପାହାଡ଼କୁ ଲିଜ୍ ଦେଇଦେବା ପଛରେ ଓଡ଼ିଶାର ଲାଭକ୍ଷତିର ହିସାବ ନା ଭାରତ ସରକାର କରିଛି ନା ରାଜ୍ୟ ସରକାର । ଏପରି ଗୋଟିଏ ପରେ ଗୋଟିଏ ବକ୍ସାଇଟ୍ ଖଣିକୁ ବ୍ୟାବସାୟିକ ମୁନାଫା ପାଇଁ ଟେକି ଦିଆଗଲେ ପ୍ରାକୃତିକ ପରିବେଶର ସନ୍ତୁଳନ ଖତମ ହୋଇଯିବ । ଏତବଡ଼ ସଂକଟକୁ ଡ଼ାକିଆଣିବା ପାଇଁ ବକ୍ସାଇଟ୍ ଟନ ପିଛା ଆମେ ମାତ୍ର ୪୨ ଟଙ୍କା ରୟାଲଟି ପାଇବୁ ଯଦିଚ ତାର ବଜାର ଦର ୫୦୦ ଟଙ୍କାରୁ ଅଧିକ । ନିୟମଗିରିରେ ଖଣି ଖୋଳାହେଲେ ଜଙ୍ଗଲ ସମେତ ବଂଶଧାରା ଓ ନାଗାବଳୀ ନଦୀ ଅପମୃତ୍ୟୁର ଶିକାର ହେବେ ।

କୃଷିପାଇଁ ଜଳର ସଦୁପଯୋଗ ସହ ଜଳସ୍ରୋତଗୁଡ଼ିକର ସଂରକ୍ଷଣ ଏକ ବଡ଼ ମହତ୍ୱପୂର୍ଣ୍ଣ ଆବଶ୍ୟକ, କିନ୍ତୁ ଓଡ଼ିଶାରେ ଜଳର ଅଭାବ ନଥିଲେ ବି ଅନେକ ଜିଲ୍ଲା ଜଳବିହୀନ ହୋଇ ରହିଛନ୍ତି । ପୁଣି ଯେଉଁଠି ଜଳ ଅଛି, ସେଠି ଜଳକୁ ବିଷାକ୍ତ କରି ଦିଆଗଲାଣି । ବ୍ରାହ୍ମଣୀ ନଦୀ ପରି ଅନେକ ସ୍ଥାନରେ ଶିଳ୍ପରୁ ନିର୍ଗତ ବିଷାକ୍ତ ରାସାୟନିକ ବର୍ଜ୍ୟ ଦ୍ରବ୍ୟ ଯୋଗୁଁ ଜଳ ବିଷରେ ପରିଣତ ହେଲାଣି । ପୁଣି ଚାଷୀଙ୍କୁ ବଡ଼ ଜଳଭଣ୍ଡାର ପ୍ରଲୋଭନ ଦେଖାଇ ଜଙ୍ଗଲ ଧ୍ୱଂସ କରିବା ସହ ଚାଷୀକୁ ପାଣି ଦେବା ପରିବର୍ତ୍ତେ ଶିଳ୍ପକୁ ବିଦ୍ୟୁତ ଯୋଗାଇବାକୁ ପ୍ରାଧାନ୍ୟ ଦିଆଚାଲିଛି । କିନ୍ତୁ ବଡ଼ ନଦୀ ବନ୍ଧ ପରିବର୍ତ୍ତେ ଛୋଟ ଛୋଟ କ୍ଷୁଦ୍ର ଜଳସେଚନ ଓ ସ୍ଥାନୀୟ ଲୋକଙ୍କ ଜ୍ଞାନ କୌଶଳକୁ ଆଧାର କରି ଜଳକୁ ଛୋଟ ଛୋଟ କଟାବନ୍ଧ ଓ ଜଳଛାୟା ପ୍ରକଳ୍ପ ଜରିଆରେ କୃଷି ପାଇଁ ଜଳର ଆବଶ୍ୟକତାକୁ ପୂରଣ କରାଯାଇପାରନ୍ତା । ଏହାଦ୍ୱାରା ପ୍ରାକୃତିକ ସଂବଳର ସୁରକ୍ଷା ସହ ସେଗୁଡ଼ିକର ସୀମିତ ସଦ୍ ବ୍ୟବହାର ହୋଇପାରନ୍ତା । ଏସବୁ ପ୍ରତି ସକାରାତ୍ମକ ଦୃଷ୍ଟି ଭଙ୍ଗୀରେ ବିକଳ୍ପ ବିକାଶର ବାଟ ଖୋଜାଯାଇପାରେ ।

ଉତ୍ତର ଓଡ଼ିଶାର ବାଲିଆପାଳ ପ୍ରତିରକ୍ଷା ଘାଟି ବିରୋଧୀ ଆନ୍ଦୋଳନ, ବାଲକୋ ବିରୋଧରେ ଗନ୍ଧମାର୍ଦ୍ଦନ ବଞ୍ଚାଅ ଆନ୍ଦୋଳନ, ଚିଲିକାରେ ଟାଟା ହଟାଅ

Digitized by srujanika@gmail.com

ଆନ୍ଦୋଳନ, ଗୋପାଳପୁରରେ ଟାଟା ଇସ୍ପାତ କାରଖାନା ବିରୋଧୀ ଆନ୍ଦୋଳନ, କାଶୀପୁର ଓ ଲାଞ୍ଜିଗଡ଼ ଆଲୁମିନା ବିରୋଧୀ ଆନ୍ଦୋଳନଗୁଡ଼ିକୁ ସମୀକ୍ଷା କଲେ ସମସ୍ତ ଆନ୍ଦୋଳନର ମୁଖ୍ୟ ପ୍ରସଙ୍ଗଟି ହେଲା ବହୁଜନଙ୍କର ଜୀବିକାର ସୁରକ୍ଷା । ଏହି ଜୀବିକା ସୁରକ୍ଷିତ ହେବ ଯଦି ପରିବେଶ ନଷ୍ଟ ନହୁଏ । ତେଣୁ ପ୍ରାକୃତିକ ସଂବଳ କୃଷି, ସମୁଦ୍ର, ଜଙ୍ଗଲ କିମ୍ବା ଜୈବିକ ବିବିଧତାର ସଂରକ୍ଷଣ ସହ ଜୀବିକାର ପ୍ରଶ୍ନ ସଂପୂର୍ଣ୍ଣ ଯୋଡ଼ା ହୋଇ ରହିଛି ।

## ପ୍ରକୃତିକୁ ଅପ୍ରାକୃତିକକରଣ ଭୟଙ୍କର ବିପଦ ଡ଼ାକିଆଣୁଛି

ବିଶ୍ୱ ପରିବେଶ ଦିବସର ଅନୁଚିନ୍ତା କେବଳ ପରିବେଶ ପାଇଁ ଏକ ହାଲୁକା ସ୍ଲୋଗାନରେ ସୀମାବଦ୍ଧ ହେବା ବାସ୍ତବତା ପ୍ରତି କ୍ରୁର ଉପହାସ । ପରିବେଶର ପ୍ରକୃତ ଆତ୍ମା ପ୍ରକୃତି । ତେଣୁ ପରିବେଶ ବଦଳରେ ପ୍ରକୃତିକୁ ବ୍ୟାବହାରିକ ଓ ପ୍ରୟୋଗାତ୍ମକ ଦୃଷ୍ଟିରୁ ଉପଯୁକ୍ତ ଶବ୍ଦାବଳୀ ରୂପେ ଗ୍ରହଣ କରିବା ସମୀଚିନ ହେବ । ଦୁଃଖ ହେଉଛି ପ୍ରକୃତିକୁ ଲୁଟ କରି ଭୋଗବାଦ ଓ ମୁନାଫାକେନ୍ଦ୍ରିତ ସମୃଦ୍ଧିର ପ୍ରବକ୍ତା ଓ ପୃଷ୍ଠପୋଷକମାନେ ପରିବେଶ ସୁରକ୍ଷା ପାଇଁ ଉଦ୍‌ବେଗ ପ୍ରକାଶ କରିବା ଏକ ପ୍ରବଞ୍ଚନା ହୋଇସାରିଲାଣି । ସେହି ପ୍ରବଞ୍ଚକମାନଙ୍କ ବିକାଶତତ୍ତ୍ୱର ଜାଲରୁ ପ୍ରାକୃତିକ ସଂପଦ ଗୁଡ଼ିକର ଲୁଟକରଣକୁ ଯଦି ସଂଘଟିତ ଉଦ୍ୟମ, ଚିନ୍ତା, ଚେତନା ଓ ଯୋଜନା ମାଧ୍ୟମରେ ମୁକ୍ତ କରାଯାଇପାରନ୍ତା, ତାହାହେଲେ ପରିବେଶ ସୁରକ୍ଷା ଅଭିଯାନର ସଫଳତା ଏକ ବିକଳ୍ପ ନିରନ୍ତର ଓ ଶାଶ୍ୱତ ବିକାଶର ପ୍ରକ୍ରିୟାରେ ରୂପାନ୍ତରିତ ହୋଇପାରନ୍ତା । ତେଣୁ ପରିବେଶ ତଥା ପ୍ରକୃତିର ସୁରକ୍ଷାର ମୂଳଭିତ୍ତି ହେଉଛି ପ୍ରାକୃତିକ ସମ୍ବଳ ଗୁଡ଼ିକର ସଂରକ୍ଷଣ ଓ ଆବଶ୍ୟକତା ଅନୁଯାୟୀ ସଦ୍‌ବ୍ୟବହାର ।

ପ୍ରଚଳିତ ବିକାଶ ପ୍ରକ୍ରିୟା ଓ ଖୋଲା ବଜାର ଅର୍ଥବ୍ୟବସ୍ଥାର ପରିଧି ଭିତରେ ସକଳ ଚିନ୍ତାଧାରାକୁ କେନ୍ଦ୍ରିତ ନକରି ଏକ ଖୋଲାମନରେ ପ୍ରକୃତିର କୋଳରୁ ଜାତ ମଣିଷ ଭାବରେ ଆମେ ପ୍ରତ୍ୟେକ ବ୍ୟକ୍ତି ପ୍ରଥମେ ନିଜ ମୂଳକୁ ସୂକ୍ଷ୍ମ ଦୃଷ୍ଟିରେ ଦେଖିବା କି ? ପ୍ରକୃତି କହିଲେ କେବଳ ଗଛପତ୍ର ଜଙ୍ଗଲ କି ? ନା ପ୍ରକୃତି ଭିତରେ ସମଗ୍ର ବ୍ରହ୍ମାଣ୍ଡ ଯାହାର ଅଂଶ ବିଶେଷ ଜଳ, ଜମି, ଜଙ୍ଗଲ, ଆକାଶ, ଧରିତ୍ରୀ, ଚନ୍ଦ୍ର, ସୂର୍ଯ୍ୟ ଏପରି ଅନେକ ଗ୍ରହ ନକ୍ଷତ୍ରଙ୍କ ସମେତ ତା ସହଥିବା ସମସ୍ତ ଜୀବଜଗତ ? ଯେତେବେଳେ ଆମେ କେବଳ ଆମ ବାସସ୍ଥଳୀ ପୃଥିବୀ ପାଇଁ ବିଶେଷ ଚିନ୍ତିତ ସେତେବେଳେ ମଣିଷ ପ୍ରକୃତିର ଏକ ଅନ୍ୟତମ ଅଂଶ ବିଶେଷ । କିନ୍ତୁ ଯେତେବେଳେ ମଣିଷ ନିଜ ବିଚାର ଓ ବୁଦ୍ଧି ଜରିଆରେ ଅନ୍ୟ ସମସ୍ତ ପ୍ରାକୃତିକ ସଂପଦ ଓ

Digitized by srujanika@gmail.com

ଜୀବଜନ୍ତୁମାନଙ୍କଠାରୁ ସେବାପାଏ ଓ ନିଜ ସ୍ୱାର୍ଥ ପାଇଁ ଅତ୍ୟଧିକ ଭୋଗ କରିଥାଏ, ସେତେବେଳେ ମଣିଷକୁ ହିଁ ଚିନ୍ତା କରିବାକୁ ହେବ ସେ ଅନ୍ୟ ସମସ୍ତଙ୍କୁ ଶେଷ କରିଦେବା ଅଧିକାର ତାର ନାହିଁ । ବରଂ ସମସ୍ତଙ୍କ ସଂରକ୍ଷଣ ଓ ସୁରକ୍ଷା ସହ ତାର ସ୍ଥିତି ଓ ଭବିଷ୍ୟତ ନିର୍ଭରଶୀଳ । ଯଦି ଏକଥାକୁ ସ୍ୱୀକାର ନକରେ ତାହାହେଲେ ନିଜ ବେକରେ ନିଜେ କୁରାଢ଼ି ପକାଇବା ପରି କାର୍ଯ୍ୟ ହେବ ।

ଆଉ ଏକ ପ୍ରଶ୍ନ ପ୍ରକୃତିଦତ୍ତ ସମସ୍ତ ଉପାଦାନଗୁଡ଼ିକ ଶେଷ କରିଦେଲେ ଜୀବଜଗତର ସ୍ଥାୟିତ୍ୱ କ'ଣ ସମ୍ଭବପର ? ଏହାର ଉତ୍ତର ଖୋଜିବାବେଳେ ଆଉ ଏକ ଅତିରିକ୍ତ ପ୍ରଶ୍ନ ସ୍ୱାଭାବିକ ଭାବେ ଆସେ – ଶେଷ ହୋଇଯିବ ବୋଲି ମଣିଷ ପ୍ରକୃତିର ଦାନଗୁଡ଼ିକୁ ବ୍ୟବହାର କରି ଏକ ବିଳାସ ବ୍ୟସନ ଜୀବନ ପାଇଁ ଇଚ୍ଛା କରିବା ଭୁଲ କି ? ଯଦି ନୁହଁ, ତାହାହେଲେ ପ୍ରତ୍ୟେକ ବିଶ୍ୱବାସୀ କିମ୍ୱା ଏକ ଦେଶ ବା ଏକ ରାଜ୍ୟର ସମସ୍ତଙ୍କ ପାଇଁ ସମାନ ଭାବରେ ବିଳାସୀ ଜୀବନ ସମ୍ଭବପର କି ? ସେହି ପରିମାଣର ସଂବଳ ଅଛିକି ? ଏପରି ଅନେକ ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ପ୍ରଥମେ ପ୍ରକୃତିକୁ ଠିକ୍ ଭାବରେ ବୁଝି ଆକଳନ କରି ତା ସହ ମଣିଷର ସଂପର୍କ କ'ଣ ଏକ ସମୁଚିତ ବିଚାର ରଖିବା ଏକାନ୍ତ ଜରୁରୀ । ପ୍ରକୃତି ଭିତରେ କୋଟି କୋଟି ବର୍ଷ ଧରି ଅନେକ ଜୀବ ଓ ଜୈବିକ ବସ୍ତୁ ବିବର୍ତ୍ତନ ଦ୍ୱାରା ସୃଷ୍ଟି । ସେଥିମଧ୍ୟରୁ କେତେକ କ୍ଷଣସ୍ଥାୟୀ ଓ ଆଉ କେତେକ ଦୀର୍ଘସ୍ଥାୟୀ । କେତେ ପ୍ରଜାତି, ଭୂତଳ ଓ ଭୂପୃଷ୍ଠ ପଦାର୍ଥ ହଜିଗଲା ପରେ ଆଉ ହଜାର ହଜାର ବର୍ଷ ଧରି ଦେଖା ଯାଉନାହାନ୍ତି । ସେହିପରି ଅନେକଙ୍କର ଆକାର ଓ ପରିମାଣ ହ୍ରାସ ହେଉଥିବାବେଳେ ସେଗୁଡ଼ିକର ପୁନଃ ନବୀକରଣ ସମ୍ଭବପର ହେଉନାହିଁ । ପ୍ରାକୃତିକ ବ୍ୟବସ୍ଥାର ପ୍ରକ୍ରିୟା ଭିତରେ ଯେଉଁମାନଙ୍କ ସମାପ୍ତି ଘଟୁଛି, ପୁଣି ନୂଆ ନୂଆ ସୃଷ୍ଟି ବିଦ୍ୟମାନ ହେଉଛନ୍ତି । ତାହା ମଧ୍ୟ ହଜାର ହଜାର ବର୍ଷ ପରେ । କିନ୍ତୁ କୃତ୍ରିମ ପ୍ରକ୍ରିୟାରେ ଯେଉଁମାନଙ୍କୁ ଶେଷ କରି ଦିଆଯାଉଛି, ପ୍ରକୃତିର ପ୍ରକ୍ରିୟାକରଣ ଭିତରେ ସେମାନଙ୍କ ପୁନଃ ସୃଷ୍ଟି ଅସମ୍ଭବ ହେଉଛି । ପ୍ରକୃତିର ସନ୍ତୁଳନ ବ୍ୟାହତ ହେବା ପରେ ପ୍ରକୃତି ପ୍ରତିଶୋଧ ପରାୟଣ ହେବାକୁ ବାଧ୍ୟ ହେଉଛି । ପରିଣାମ ପ୍ରାକୃତିକ ବିପର୍ଯ୍ୟୟ । ଏହି ବିପର୍ଯ୍ୟୟର ମୂଳରେ ରହିଛି ପ୍ରକୃତିରୁ ଅପ୍ରାକୃତିକକରଣ । ଉଦାହରଣ ସ୍ୱରୂପ : ଗଛଟି ପ୍ରକୃତିର ଏକ ସଜୀବ ଅଂଶ । ଗଛକୁ କାଟି ଘର, ତା ପାଇଁ ଚୌକି, ଟେବୁଲ ଏପରି ଅନେକ ବସ୍ତୁ ତିଆରି କରୁଛେ । ତେଣୁ ଭୌତିକ ବସ୍ତୁ ଚୌକିଟି ପ୍ରକୃତିରୁ ଅପ୍ରାକୃତିକକରଣର ଏକ ରୂପାନ୍ତର । ମଣିଷ ନିଜର ଆବଶ୍ୟକତାକୁ ପାରକରି ଯେତେବେଳେ ଅଧିକରୁ ଅଧିକ ପରିମାଣରେ ସୁଖ ସମୃଦ୍ଧିର ଆକାଶଛୁଆଁ ସୀମା ପହଞ୍ଚିବା ପାଇଁ ବିଭିନ୍ନ

Digitized by srujanika@gmail.com

କିସମର ଚୌକି, ସେହିପରି ସବୁପ୍ରକାର ବିଳାସବ୍ୟସନ ଓ ଆକର୍ଷଣୀୟ ସାଜସଜା ପାଇଁ କାଠର ଚାହିଦା ମୁନାଫା ପାଇଁ ବଜାର ସୃଷ୍ଟି କରିଛି । ଏହି ବ୍ୟବସ୍ଥାରେ ପ୍ରକୃତିରୁ ଅପ୍ରାକୃତିକକରଣର ବେଗ ଦ୍ରୁତ ହେବାରେ ଲାଗିଛି । ଅବଶେଷରେ ପରିଣାମ ଜଙ୍ଗଲ ଧ୍ୱଂସ ତାର ଏକ ନମୁନା । ସେହିପରି ଆମେ ଜଳକୁ ଜଳସେଚନ ଓ ପିଇବା ପାଇଁ ପ୍ରାକୃତିକ ବ୍ୟବସ୍ଥା ଭିତରେ ନିଜସ୍ୱ ଜ୍ଞାନକୌଶଳ ଆଧାରରେ ବ୍ୟବହାର କରିବା ବଦଳରେ ବଡ଼ ବଡ଼ ଜଳଭଣ୍ଡାର ନାମରେ ଶିଳ୍ପପାଇଁ ବିଦ୍ୟୁତ୍ ଉତ୍ପାଦନ ଓ ଜଳକୁ ବ୍ୟବସାୟୀକକରଣ କରି ଅପ୍ରାକୃତିକକରଣ ପ୍ରକ୍ରିୟାର ସୀମା ନିର୍ଦ୍ଧାରଣ ନକରିବା ଦ୍ୱାରା ଜଳର ଉତ୍ସ ଶେଷ ହୋଇଯିବା ସହ ଜଳ ପ୍ରଦୂଷିତ ହୋଇଛି । ଏହି ପ୍ରକ୍ରିୟାରେ ଜଙ୍ଗଲ ମଧ୍ୟ ଶେଷ ହେବା ଦ୍ୱାରା ବର୍ଷାର ଅଭାବରେ ପୁନଃ ଜଳ ସ୍ରୋତର ନବୀକରଣରେ ବାଧା ସୃଷ୍ଟି ହୋଇଛି । ତେଣୁ ଏହି ଅପ୍ରାକୃତିକକରଣର ଗତିର ବେଗକୁ ନିୟନ୍ତ୍ରଣ କରିବା କିମ୍ବା କେତେକ କ୍ଷେତ୍ରରେ ଏହି ପ୍ରକ୍ରିୟାକୁ ନିଷିଧ କରିବା ପ୍ରଶ୍ନ ଉଠାଇଲେ ବଜାରୀ ଅର୍ଥ ଶାସ୍ତ୍ରୀ ଓ ସେମାନଙ୍କ ପ୍ରବକ୍ତାମାନେ ବିକାଶ ବିରୋଧୀ ବୋଲି କହି ପ୍ରତ୍ୟାଖ୍ୟାନ କରି ଦେଉଛନ୍ତି । କିନ୍ତୁ ମଣିଷକୁ ହଜାର ଥର ଭାବିବା ପାଇଁ ବର୍ତ୍ତମାନ ସମୟ ଆହ୍ୱାନ କରୁଛି ଯେ – ପ୍ରକୃତି ପ୍ରତି ମଣିଷର ଆଭିମୁଖ୍ୟ କ'ଣ ହେବା ଦରକାର । ପ୍ରକୃତି ପ୍ରତି ସଂବେଦନଶୀଳ ହୋଇ ପ୍ରକୃତିର ସୁରକ୍ଷା ପାଇଁ ନୀତି ନିର୍ଦ୍ଧାରଣ କରିବା ପୂର୍ବରୁ ପ୍ରକୃତିକୁ ଅପ୍ରାକୃତିକକରଣ କଲାବେଳେ ଏକ ଭୌତିକ ବସ୍ତୁ ପ୍ରତି ଆମର କି ଦୃଷ୍ଟିଭଙ୍ଗୀ ହେବା ଉଚିତ ଓ ସେହି ବସ୍ତୁକରଣ ପାଇଁ କେଉଁ ନୀତି ଅବଲମ୍ବନ ହେବା ଆବଶ୍ୟକ, ଯାହା ଫଳରେ ପ୍ରାକୃତିକ ସଂପଦର ସୁରକ୍ଷା ଓ ସଂରକ୍ଷଣ ପାଇଁ ବାସ୍ତବ ନୀତି ନିୟମ ଲାଗୁ ହୋଇପାରିବ । ଏଥିପାଇଁ ଆମ ସମସ୍ତଙ୍କୁ ସ୍ୱୀକାର କରିବାକୁ ହେବଯେ ବିଶ୍ୱର କୌଣସି ପ୍ରକୃତିଦତ୍ତ ସଂବଳ ସୀମିତ, ଏକଥା ବିଜ୍ଞାନ କହୁଛି । ଆମେ ଏହାକୁ ମାନି ନେବାବେଳେ ଆମେ ଭ୍ରମରେ କହୁଛୁ ଯେ ଏସବୁ ପ୍ରାକୃତିକ ଜିନିଷର ବ୍ୟବହାର ଅସୀମ । ଏହି ବିଚାର ବିଭ୍ରାଟ ଦ୍ୱାରା ଜୀବକୁ ନିର୍ଜୀବରେ ପରିଣତ କରି ଏକ ଅସନ୍ତୁଳିତ ପ୍ରକୃତି ଠିଆ କରି ଦିଆଯାଉଛି । ଆଜିର ବିଶ୍ୱ ପରିପ୍ରେକ୍ଷୀରେ ସର୍ବସମ୍ମତ ମତ ପ୍ରକାଶ ପାଇସାରିଛି ଯେ – ପ୍ରକୃତିର ଜୀବନ ସଂକଟାପନ୍ନ । ଏହାର ନିରାକରଣ ପାଇଁ ସଂରକ୍ଷଣ ଅନିବାର୍ଯ୍ୟ ଓ ମଣିଷ ସମାଜର ସ୍ଥାୟିତ୍ୱ ପାଇଁ ପ୍ରଦୂଷିତ ବାୟୁମଣ୍ଡଳରୁ କାର୍ବନ ଡାଇଅକ୍ସାଇଡ୍ କମାଇବା ପାଇଁ ଜୀବାଂଶ ଜାଳେଣି ବ୍ୟବହାର କମାଇବାକୁ ହେବ । ଏଥିସହ ଅନ୍ୟ ସବୁଜ ଗ୍ରହ ଗ୍ୟାସର ପରିମାଣ ବାୟୁ ମଣ୍ଡଳରୁ କମାଇବାକୁ ବହୁ ରାସାୟନିକ ତଥା ଟକ୍ସିକ୍ ପଦାର୍ଥର ବ୍ୟବହାରକୁ କମାଇବାକୁ ହେବ । ଅର୍ଥାତ ପ୍ରାକୃତିକ ଜିନିଷରୁ

Digitized by srujanika@gmail.com

ଅପ୍ରାକୃତିକକରଣକୁ ହ୍ରାସ କରିବା ହେଉଛି ପ୍ରାଥମିକ ପଦକ୍ଷେପ । କିନ୍ତୁ କାର୍ଯ୍ୟକାରୀ କରିବାକୁ ବିଶ୍ୱର ପ୍ରାକୃତିକ ସଂପଦର ସର୍ବୋଚ୍ଚ ଉପଭୋକ୍ତା ଓ ସର୍ବାଧିକ ପ୍ରଦୂଷଣକାରୀ ଶିଳ୍ପ ସମୃଦ୍ଧ ରାଷ୍ଟ୍ର ଆମେରିକା ପ୍ରସ୍ତୁତ ନୁହେଁ । କାରଣ ସାମ୍ରାଜ୍ୟବାଦୀ ପୁଞ୍ଜିବାଦର ନେତୃତ୍ୱ ନେଇଥିବା ଏହି ଦେଶ ଅପ୍ରାକୃତିକକରଣକୁ ଅନ୍ୟ ଅନୁନ୍ନତ ଗରିବ ଦେଶମାନଙ୍କରେ ତ୍ୱରାନ୍ୱିତ କରି ନିଜ ବଜାରକୁ ମଜବୁତ କରୁଛି ଓ ସେହି ଦେଶମାନଙ୍କ ପ୍ରାକୃତିକ ସଂପଦ ଉପରେ ଆଧିପତ୍ୟ ଜାହିର କରୁଛି । ସେହି ପୁଞ୍ଜିବାଦର ବିକାଶ ପ୍ରକ୍ରିୟାକୁ ଅନୁକରଣ କରି ଆମ ଦେଶର ଶାସକମାନେ ଆମ ପ୍ରକୃତିଦତ୍ତ ସଂବଳଗୁଡ଼ିକୁ ଭୋଗବାଦର ଲକ୍ଷ୍ୟ ହାସଲ ନାମରେ ସୀମାହୀନ ଅପ୍ରାକୃତିକକରଣ ଦ୍ୱାରା ଜଙ୍ଗଲ, ଜମି, ଜଳ ଓ ଭୂତଳ ଖଣିଜ ସଂପଦଗୁଡ଼ିକୁ ନିଶେଷ କରିବା ପାଇଁ ପ୍ରକଳ୍ପମାନଙ୍କୁ ଡାକି ଆଣୁଛନ୍ତି ଓ ଏହାକୁ ବିକାଶର ସଫଳତା ବୋଲି ଦାବି କରୁଛନ୍ତି । କିନ୍ତୁ ଏହାଦ୍ୱାରା ବିନାଶ ଅନିବାର୍ଯ୍ୟ ହୋଇପଡୁଛି ।

ଏହି ବିନାଶ ପ୍ରକ୍ରିୟାରେ କୋଟି କୋଟି ଜନଜୀବନ ବିପର୍ଯ୍ୟସ୍ତ ହୋଇ ସାରିଲେଣି । ବିଶେଷ କରି ଓଡ଼ିଶାର ଜଙ୍ଗଲ ୪୩%ରୁ ୧୭%ରେ ପହଞ୍ଚିଛି । ଜଳ ଓ ଜଙ୍ଗଲ ଉପରେ ମୋଟ ଜନସଂଖ୍ୟାର ୨୪% ପ୍ରତିଶତ ଆଦିବାସୀଙ୍କ ଜୀବନ ଓ ଜୀବିକା ଓ ୭୦ ଭାଗ ଚାଷୀଙ୍କ ଚାଷ ଧ୍ୱଂସମୁଖୀ ହୋଇଯାଉଛି । ଓଡ଼ିଶାର ବ୍ରାହ୍ମଣୀ, ମହାନଦୀ ପରି ବହୁ ବଡ଼ ବଡ଼ ନଦୀ ଜଳ ପାନୀୟ ଜଳ ପାଇଁ ଅନୁପଯୁକ୍ତ ହୋଇସାରିଲେଣି । ଅନେକ ନଦୀ, ନାଳ, ଝରଣା ଶୁଖିଗଲାଣି । କେଉଁଝରର ଜୋଡ଼ା ଅଞ୍ଚଳରୁ ସୁକିନ୍ଦା ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳରେ ପ୍ରକୃତି ଅପ୍ରାକୃତିକକରଣ ହୋଇସାରିଲାଣି । ଇସ୍ପାତ ନାମରେ ଲୁହାପଥରର ଲୁଟକରଣ ଓ ଖଣିଖୋଦନ ଚାଷ ଓ ବାସକୁ ମାରି ସାରିଲାଣି । ପ୍ରଦୂଷଣରେ ସାଧାରଣ ମଣିଷଙ୍କ ଜୀବନ ଦୁର୍ବିସହ । ଜଙ୍ଗଲ ହଜିଗଲା ପରେ ଜୀବଜନ୍ତୁ ଶୂନ୍ୟ ହେବା ସ୍ୱାଭାବିକ । ଅନେକ ସ୍ଥାନରେ ବାସହରା ହାତୀ ଓ ବାଘ ମଣିଷକୁ ଶିକାର କରିବା ମଧ ସ୍ୱାଭାବିକ । ଜଳର ଅଭାବ ଅତି ସ୍ପଷ୍ଟ । ତଥାପି ଓଡ଼ିଶାରେ ୫୦ରୁ ଉର୍ଦ୍ଧ୍ୱ ଇସ୍ପାତ କାରଖାନା ହେବାପାଇଁ ଚୁକ୍ତି ସ୍ୱାକ୍ଷର ଚାଲିଛି । ଏକ ଶହ ସ୍ପଞ୍ଜ ଆଇରନ ପାଇଁ ବାଟ ଖୋଲିଛି । ଏସବୁପାଇଁ ଆବଶ୍ୟକ କଞ୍ଚାମାଲ ପ୍ରକୃତି ଜିନିଷ ଲୁହାପଥର ଶେଷ ହୋଇଯିବ ମାତ୍ର ୪୫ ବର୍ଷ ମଧରେ । ତାପରେ କ'ଣ ହେବ ? ବର୍ତ୍ତମାନ ଆମ ରାଜ୍ୟରେ ୩୩୬୦ ନିୟୁତ ଟନ ଲୁହାପଥର ଗଚ୍ଛିତ ମଧରୁ ଦୁଇ ତୃତୀୟାଂଶ ଲିଜ୍ ଦିଆ ଶେଷ ହୋଇଛି । ବର୍ତ୍ତମାନ ଚୁକ୍ତିପାଇଁ ଅପେକ୍ଷା କରିଥିବା ପ୍ରକଳ୍ପମାନଙ୍କୁ ୨୦୦୦ ନିୟୁତ ଟନ ଦେବାକୁ ହେବ । ତାହାହେଲେ ଗଚ୍ଛିତ ଠାରୁ ଅଧିକ । ଏ ସମସ୍ତ ପ୍ରକଳ୍ପ କାର୍ଯ୍ୟକ୍ଷମ

Digitized by srujanika@gmail.com

ହେବାର ୫୦ ବର୍ଷ ପରେ ରାଜ୍ୟର ଲୁହାପଥର ଶୂନ୍ୟ ହୋଇଯାଇଥିବ । ବାକିଥିବ କେବଳ ଧୂଆଁ, ଧୂଳି ଓ ବର୍ଜ୍ୟବସ୍ତୁର ପାହାଡ଼ ମଧରେ ଦୁର୍ବିସହ ଜନଜୀବନ ଯାହାପାଇଁ କୃଷି, ଜଙ୍ଗଲ ଓ ଜଳ ସ୍ୱପ୍ନ ହୋଇଯାଇଥିବ । ପୁଣି କୋରାପୁଟ, ରାୟଗଡ଼ା, କଳାହାଣ୍ଡି ଓ ବରଗଡ଼ର ଜଳ, ଜଙ୍ଗଲ ସହିତ ମହଜୁଦ ରହିଛି ବକ୍ସାଇଟ୍ । ଏସବୁ ପ୍ରକୃତି ଭିତରେ ଲକ୍ଷ ଲକ୍ଷ ପରିବାରଙ୍କ ଜୀବନ ଜୀବିକା ଓତଃପ୍ରୋତ ଭାବେ ସଂପୃକ୍ତ । ବକ୍ସାଇଟକୁ ଆଲୁମିନା ପାଇଁ ଶେଷ କରି ଦିଆଗଲାପରେ ସେ ଅଞ୍ଚଳର ଜଳ, ଜଙ୍ଗଲ ଓ ଚାଷର ଅପମୃତ୍ୟୁ ହେବ । ଅପରିହାର୍ଯ୍ୟ ହୋଇଥିଲେ ମଧ ରାଜନୈତିକ ନେତୃମଣ୍ଡଳୀ, ପ୍ରଶାସକ ଓ ବଜାର ଅର୍ଥନୀତି ପ୍ରବକ୍ତାମାନେ ଏସବୁର ବ୍ୟବହାର ଉପରେ ନିୟନ୍ତ୍ରଣ ପାଇଁ ନୀତି ତିଆର କରିବାକୁ ପ୍ରସ୍ତୁତ ନୁହଁନ୍ତି । ବରଂ ଏସବୁର ନିଷେଧ ପାଇଁ ଚାଲିଥିବା ଜନ ଆନ୍ଦୋଳନଗୁଡ଼ିକୁ ଚାପିଦେବାପାଇଁ ପୋଲିସର ଲାଠି, ଗୁଳି ଓ କଂପାନୀମାନଙ୍କ ଗୁଣ୍ଡାମାନଙ୍କୁ ବ୍ୟବହାର କରାଯାଉଛି । ମୋଟ ଗଚ୍ଛିତ ବକ୍ସାଇଟର ପରିମାଣ ୧୭୩୩ ନିୟୁତ ଟନ୍ । ସରକାର ବର୍ତ୍ତମାନ ବହୁରାଷ୍ଟ୍ରୀୟ କଂପାନୀ ଓ ଦେଶୀ ପୁଞ୍ଜିପତିମାନଙ୍କୁ ବକ୍ସାଇଟ ଖଣି ଲିଜ୍ ଦେଇଦେବାକୁ ଯେତିକି ଚୁକ୍ତି କରିସାରିଛନ୍ତି ଓ କରିବାକୁ ବସିଛନ୍ତି, ସେସବୁକୁ ଦେଇଦେଲେ ମାତ୍ର ୭୫ ବର୍ଷ ମଧରେ ଶେଷ ହୋଇଯିବ । ଏହାପରେ ବଂଶଧାରା, ନାଗାବଳୀ, ତେଲ ନଦୀ, କାଶୀପୁର ଓ ଲକ୍ଷ୍ମୀପୁର ଅଞ୍ଚଳର ପ୍ରାୟ ୫୦ ଗୋଟି ନଦୀ ଝରଣାର ଜଳ ସ୍ରୋତ ଶୁଖିଯିବ ଓ ପ୍ରଦୂଷିତ ହେବ । ନାଲିକାଦୁଅର ପାହାଡ଼ ରହିବ ଯାହାର ପରିଣାମ ଅସମ୍ଭାଳ ହୋଇପଡ଼ିବ । ଆଲୁମିନା ଉତ୍ପାଦନ ବିଶ୍ୱ ତାପ ବୃଦ୍ଧିରେ ସହାୟକ ହୋଇଥାଏ । ଓଡ଼ିଶାର ତାପ ଏବେ ଦିନକୁ ଦିନ ବଢ଼ିବାରେ ଲାଗିଛି । ପୁଣି ଜଙ୍ଗଲ ଶେଷ ହୋଇଯାଇଥିବ, ଝରଣା ଶୁଖି ଯାଇଥବ ଓ ତାପରେ ତାପବୃଦ୍ଧିର ତାଡ଼ନା କିପରି ହେବ ଆଜିର ଓଡ଼ିଶାବାସୀ ଆତ୍ମମୁଖୀ ହୋଇ ଅନୁଧାନ କରିବେ କି ?

ତେଣୁ ଏସବୁକୁ ସଂକଟମୟ ପରିସ୍ଥିତିରୁ ମୁକ୍ତ ରଖିବାକୁ ହେଲେ ଆମକୁ ସେହି ପ୍ରକୃତିକୁ ଅପ୍ରାକୃତିକକରଣର ଭୟଙ୍କର ବିପଦ ପ୍ରତି ସତର୍କ ହେବା ଅତି ଜରୁରୀ । ଅସଲରେ ଏସବୁର ଲାଭ କାହାକୁ ଯାଉଛି ? ମୁନାଫାର ଏକ ଛୋଟ ଅଂଶ ଭ୍ରଷ୍ଟ ରାଜନେତା, ପ୍ରଶାସକ ଓ ଅଳ୍ପସଂଖ୍ୟକ କେତେକ କର୍ମଚାରୀଙ୍କୁ ମିଳିବାବେଳେ ଅଧିକାଂଶ ଯାଉଛି ପୁଞ୍ଜିପତି ଓ ବିଦେଶୀ ବେପାରୀଙ୍କୁ । ଭୋଗବାଦର ଅତ୍ୟାଧୁନିକ ଦ୍ରବ୍ୟ ଗୁଡ଼ିକର ବଜାର ପାଇଁ ଆମ ସମ୍ବଳ ଲୁଟ ହେଉଥିବାବେଳକୁ ଆମ ରାଜ୍ୟର ପ୍ରାୟ ୨/୩ ଗରିବ ଜନତାଙ୍କ କ୍ରୟଶକ୍ତି ହ୍ରାସ ହେବାରେ ଲାଗିଛି ।

Digitized by srujanika@gmail.com

ତେଣୁ ପରିବେଶ ସୁରକ୍ଷାର ଅସଲ ଅର୍ଥ ହେଉଛି ପ୍ରାକୃତିକ ସଂପଦର ସୁରକ୍ଷା ଓ ସଂରକ୍ଷଣ । ଏଥିପାଇଁ ଏକ ନୀତି ନିର୍ଦ୍ଧାରଣ ଅନିବାର୍ଯ୍ୟ । ସେହି ଦିଗରେ ଆମେ ସଚେତନ ହେବାପାଇଁ ଆମେ ପ୍ରକୃତିକୁ ଏକ ସ୍ୱତନ୍ତ୍ର ଆଇଡ଼ୋଲଜି ବା ଆଦର୍ଶବାଦ ରୂପେ ମାନିବାକୁ ପ୍ରସ୍ତୁତ ହେବା ଦରକାର । ବିଭିନ୍ନ ଧର୍ମରେ ପ୍ରକୃତିର ପୂଜା ଘାନିତ ହୋଇଆସିଛି । ସେହିପରି ୟୁରୋପରେ ଶିଳ୍ପ ବିପ୍ଳବ ଆରମ୍ଭରୁ ପ୍ରକୃତି ପ୍ରତି ବିପଦ ପତ୍ରି ସାମ୍ୟବାଦୀ, ସମାଜବାଦୀ ଓ ମାନବବାଦୀମାନେ ବିଭିନ୍ନ ଆଦର୍ଶଗତ ପ୍ରାର୍ଥକ୍ୟ ସତ୍ତ୍ୱେ ପ୍ରକୃତିକୁ ଗୋଟିଏ ଦୃଷ୍ଟିରେ ଚିତ୍ରଣ କରି ତାର ସୁରକ୍ଷା ପାଇଁ ଭବିଷ୍ୟତବାଣୀ ଶୁଣାଇ ଆସିଛନ୍ତି । କାର୍ଲମାର୍କସଙ୍କ ଭାଷାରେ "ପ୍ରକୃତି ଭିତରୁ ମଣିଷ ଜନ୍ମ, ପ୍ରକୃତି ସହ ତାର ଶରୀର ଓ ମସ୍ତିଷ ଯୋଡ଼ା । ଯଦି ମଣିଷକୁ ବଞ୍ଚିବାକୁ ହୁଏ ତାହାହେଲେ ପ୍ରକୃତି ସହ ତାର ଅନବରତ ସଂପର୍କ ରହିବାକୁ ହେବ । ମଣିଷ ପ୍ରକୃତିର ଏକ ଅଂଶ ।" ଏକଥା ୧୮୪୮ ମାର୍କସ୍ 'ଇକନାମିକ୍ ଏଣ୍ଡ ଫିଲୋସଫିକଲ ମେନୁସ୍କ୍ରିପଟ୍‌ରେ' ଲେଖିଛନ୍ତି । Karl Marx in 1844 wrote "Man lives from nature i.e. nature is his body, and he must maintain a continuing dialogue with it if he is not to die. To say that man's physical and mental life is linked to nature simply means that nature is linked to itself, for man is a part of nature."

[Marx, Economic and philosophical Manuscripts of 1844; in Marx, Early Writings, New York, Vintage, 1975, P. 328)

୧୮୭୬ରେ ଏଙ୍ଗେଲ୍‌ସ କହିଥିଲେ "ପ୍ରକୃତି ଉପରେ ମଣିଷର ବିଜୟରେ ଆମେ ଉଲ୍ଲସିତ ହେବା ଉଚିତ ନୁହେଁ । କାରଣ ବିଜୟର ପ୍ରଥମ ସୋପାନରେ ଆଶାତୀତ ସଫଳତା ମିଳିପାରେ କିନ୍ତୁ ଦ୍ୱିତୀୟ ଓ ତୃତୀୟ ସୋପାନ ମାନଙ୍କରେ ଭିନ୍ନତା ଆଣିଦିଏ ଯାହାକି ପ୍ରଥମ ସଫଳତାଗୁଡ଼ିକୁ ଚୂରମାର କରିଦିଏ ।" ଅର୍ଥାତ ପ୍ରାକୃତିକ ବିପର୍ଯ୍ୟୟ ଅପରିହାର୍ଯ୍ୟ । (Engels had to say in his essay, "The Part played by Labour in the transition from Ape to Man" (1876). "Let us not, however, flatter ourselves overmuch on account of our human conquest of nature. For each such conquest takes its revenge on us. Each victory, it is true, in the first place brings about the results we

Digitized by srujanika@gmail.com

expected, but in the second and third places it had quite different, unforeseen effects which only too offen cancel the first.)

ସେତେବେଳର ବିଶିଷ୍ଟ ଅଣ କମ୍ୟୁନିଷ୍ଟ ପରିବେଶ ବିଜ୍ଞାନୀ ଜର୍ଜ ପେକିନ୍ସ ମାର୍ଶ ୧୮୬୪ରେ ସତର୍କ କରାଇ କହିଥିଲେ ଯେ – ''ଧରିତ୍ରୀ ଦିନକୁ ଦିନ ତାର ସୁଅଧିବାସୀଙ୍କ ବାସ ପାଇଁ ଅନୁପଯୁକ୍ତ ହୋଇପଡୁଛି ଏବଂ ଏହା ଏକ ମଣିଷର ଅପରାଧ ଯୁଗ ଯେଉଁଠି ଅନେକ ପ୍ରଜାତିମାନଙ୍କ ଅବସାନ, ଅସ୍ୱାଭାବିକ ବାୟୁମଣ୍ଡଳ ଓ ତାର ବର୍ବରତା ଦେଖା ଦେବ ।''George Perkins Marsh says : "The earth is first becoming an unfit home for its noblest inhabitants, and another era of equal human crime and productiveness of shattered surface, of climatic excess, as to threaten the depravation, barbarism, and perhaps even extinction of the species."

(Marsh, Man and Nature, Cambridge-Massachusetts, Harvard University Press, 1965, pp 42-43)

ବିଂଶ ଶତାବ୍ଦୀରେ ମହାତ୍ମାଗାନ୍ଧୀ ଅତି କଠୋର ସତ୍ୟ କହିଥିଲେ ଯେ – ''ପ୍ରତ୍ୟେକ ବ୍ୟକ୍ତିର ନିମ୍ନତମ ଆବଶ୍ୟକତା ପୂରଣ ପାଇଁ ପୃଥିବୀ ପାଖରେ ଯଥେଷ୍ଟ ସମ୍ବଳ ଅଛି କିନ୍ତୁ ଅପବ୍ୟୟ ଓ ବିଳାସ ବ୍ୟସନ ପାଇଁ ନୁହଁ ।'' ମହାତ୍ମାଗାନ୍ଧି ଦେଖିପାରୁଥିଲେ ଯେ ଶିଳ୍ପ ନାମରେ ଅତ୍ୟନ୍ତ ବିଳାସୀ ହୋଇ କେତେକ ମୁଷ୍ଟିମେୟଶ୍ରେଣୀ ବହୁଜନଙ୍କ ସାମୂହିକ ସମାଜର ପ୍ରକୃତିଦତ୍ତ ସଂପତ୍ତିକୁ ଶେଷ କରିଦେବେ । ଆଜି ପୃଥିବୀରେ ସାମ୍ରାଜ୍ୟବାଦୀ ଜଗତୀକରଣ ପ୍ରକ୍ରିୟାରେ ପରିବେଶ ଓ ଦେଶର ପଛୁଆ ଅଞ୍ଚଳର ପ୍ରାକୃତିକ ସଂପଦ ଗୁଡ଼ିକୁ ଧନୀ ଦେଶ ଓ ଧନିକ ପୁଞ୍ଜିପତି ଶ୍ରେଣୀ ଲୁଟ କରିବାରେ ବ୍ୟସ୍ତ । ପରିଣାମ ସ୍ୱରୂପ ପରିବେଶ ନଷ୍ଟ ହେବା ସହ ଗରିବୀ ବୃଦ୍ଧି ହେବାରେ ଲାଗିଛି । କାରଣ ଜୀବିକାର ମୁଖ୍ୟ ସ୍ରୋତ ପ୍ରାକୃତିକ ସଂବଳକୁ ଶୋଷଣ କରାଚାଲିଛି ।

ତେଣୁ ବଜାର ଅର୍ଥବ୍ୟବସ୍ଥା ଓ ଉପଭୋକ୍ତା ସଂସ୍କୃତି ପରିବେଶ ତଥା ପ୍ରକୃତିର ମୁଖ୍ୟ ଶତ୍ରୁ । ଏହାର ମୁକାବିଲା ପାଇଁ ମଣିଷର ଆବଶ୍ୟକତା ଗୁଡ଼ିକର ସୀମା ନିର୍ଦ୍ଧାରଣ ହେବା ବାଞ୍ଛନୀୟ । ଏଥିପାଇଁ ପ୍ରକୃତି ସହ କିପରି ଏକାଠି ସହବାସୀ ହୋଇ ଚଳିବାକୁ ହେବ ନୂଆ ଶିକ୍ଷାର ଆବଶ୍ୟକତା ରହଛି ଏବଂ ପ୍ରକୃତିରୁ ଅପ୍ରାକୃତିକ କରଣ ଦ୍ୱାରା ପ୍ରସ୍ତୁତ ବସ୍ତୁ ପ୍ରତି ଆମର କି ନୀତି ହେବା ଦରକାର ଫଇସଲା ହେବା

Digitized by srujanika@gmail.com

ଏକାନ୍ତ ଜରୁରୀ । ପ୍ରକୃତି ବିଷୟରେ ଅନୁପାତହୀନତା ଓ ଅନୁପାତରେ ଜ୍ଞାନହୀନତା ହେଉଛି ଆଧୁନିକ ସଭ୍ୟତାର ଏକ ବିଶେଷ ଦୁଃଖଦାୟକ ଲକ୍ଷଣ ବୋଲି ବିଶିଷ୍ଟ ସମାଜବାଦୀ ଚିନ୍ତକ କିଶନ ପଟ୍ଟନାୟକ କହୁଥିଲେ ।

ତେଣୁ ଆଜିର ଏକ ଭ୍ରଷ୍ଟ ରାଜନୈତିକ ବ୍ୟବସ୍ଥା ମଧ୍ୟରେ ପ୍ରକୃତିର ସୁରକ୍ଷା ଓ ସଂରକ୍ଷଣ ଏକ ଚାଲେଞ୍ଜ । ଏକଥା କେବଳ ସମ୍ଭବପର ଯଦି ଭୁକ୍ତଭୋଗୀ ଜନତା ସ୍ୱର ଉତ୍ତୋଳନ କରି କହିବେ ପ୍ରକୃତିକୁ ଧ୍ୱଂସ କରି ବିଳାସୀ ଅର୍ଥତନ୍ତ୍ରକୁ ପୋଷିବା ଏକ ମଣିଷ ବିରୋଧୀ କାର୍ଯ୍ୟ । ପ୍ରାକୃତିକ ପରିବେଶର ସୁରକ୍ଷା ପାଇଁ ପ୍ରକୃତି ଭିତରେ ମଣିଷ ଓ ମଣିଷ ଭିତରେ ପ୍ରକୃତି ଦର୍ଶନ କରି ଅଧ୍ୟୟନ କରିବା ବିଜ୍ଞତାର ପରିଚୟ ।

## ପ୍ରକୃତି ବଞ୍ଚିଲେ ମଣିଷ ବଞ୍ଚିବ

ଆଜିର ପୃଥିବୀ ଗୋଟିଏ ଦିନରେ ସୃଷ୍ଟି ହୋଇନାହିଁ । ଏହାର ବୟସ ପ୍ରାୟ ୪୫୦ କୋଟି ବର୍ଷ । ସୌରମଣ୍ଡଳର ୯ଟି ଗ୍ରହ ମଧ୍ୟରୁ ଏହା ଏହାର ବିଶେଷତ୍ୱ ହେଉଛି ଏଥିରେ ଜୀବନଧାରଣ ସମ୍ଭବପର ହୋଇଛି । ଏଠିଥିବା ଜୈବମଣ୍ଡଳର ସମସ୍ତ ଅଂଶ ପରସ୍ପର ନିର୍ଭରଶୀଳ । ଜୈବମଣ୍ଡଳର ଅର୍ଥ ପୃଥିବୀରେ ଥିବା ସମସ୍ତ ଜୀବବସ୍ତୁ । ପ୍ରତ୍ୟେକ ଜୀବର ଆବଶ୍ୟକତା ରହିଛି ବିଭିନ୍ନ ପ୍ରଜାତି ମଧ୍ୟରେ ଆଦାନପ୍ରଦାନ । ଏହି ପରିବେଶକୀ (Ecology) ବ୍ୟବସ୍ଥାର ସମ୍ପତ୍ତି ହେଉଛି ଶାଶ୍ୱତ ଜୀବନ, କିନ୍ତୁ କେବଳ କେତେକ ପ୍ରଜାତି ବା ଜୀବପଦାର୍ଥ ନୁହଁନ୍ତି । ସମୟର ଚକ୍ରରେ ଜୀବଜଗତ ଭିତରେ ଅନେକ ବିବର୍ତ୍ତନ ଦେଖାଦେଇଛି । ତେଣୁ ଶାଶ୍ୱତ ଜୀବନ ପାଇଁ ଜୈବମଣ୍ଡଳ ସୁରକ୍ଷିତ ରହିବା ଏକାନ୍ତ କାମ୍ୟ । ଏହି ଜୀବଚକ୍ର ଓ ବିବର୍ତ୍ତନ ମଧ୍ୟରେ ସାମୁଦ୍ରିକ ପ୍ରଜାତି ମଧ୍ୟରୁ ତିନି ଚତୁର୍ଥାଂଶ ୨୫ କୋଟି ବର୍ଷ ତଳେ ଶେଷ ହୋଇଯାଇଛନ୍ତି । ଏହାଦ୍ୱାରା ସ୍ଥଳଚର ଜୀବନମାନଙ୍କ ଉପରେ ଖୁବ୍ ପ୍ରଭାବ ପଡ଼ିଥିଲା । ପୁଣି ୬ କୋଟି ୫୦ ଲକ୍ଷ ବର୍ଷ ତଳେ ଡ଼ାଇନାସୋର ବଂଶ ଲୋପ ହୋଇଗଲା । ବର୍ତ୍ତମାନ ପୁଣି ମଣିଷ ସମାଜ ଓ ଜୀବ-ବିବିଧତା ଉପରେ ବିପଦ ସୃଷ୍ଟି କରୁଛି । ଅତ୍ୟଧିକ ଉପଭୋଗ, ବର୍ଜ୍ୟବସ୍ତୁ ଉତ୍ପାଦନ ଓ ପ୍ରଦୂଷଣ ଏହାର ମୁଖ୍ୟ କାରଣ ଓ ସେଥିପାଇଁ ଜୈବମଣ୍ଡଳ ପରିବର୍ତ୍ତନ ଘଟୁଛି । ଏପରି ସମୟ ଆସିପାରେ ଓ ଆଉ ଏକ ଝଡ଼ ସୃଷ୍ଟି ହୋଇପାରେ ଯେଉଁଠି ପୁଣି ଅନେକ ପ୍ରଜାତିଙ୍କ ବଂଶ ଲୋପ ହୋଇଯିବ । ଏପରି ଏକ ବିପଦ ଜଳଜଳ ଦେଖାଯାଉଥିବାବେଳେ ବ୍ୟାବସାୟିକ ଲାଭ ଓ ଅଳ୍ପ କେତେକଙ୍କ ବିଳାସମୟ ଜୀବନ ଯାପନ ପାଇଁ ପ୍ରାକୃତିକ ସଂପଦକୁ ଅପ୍ରାକୃତିକକରଣ କରି ଶେଷ କରିଦେବାକୁ କାହାରିକୁ ବି ଅଧିକାର ଦେଲା କିଏ ? ପ୍ରକୃତିର ଅବଦାନ

Digitized by srujanika@gmail.com

ଗୁଡ଼ିକ ମାତ୍ର କେତେ ବର୍ଷ ପାଇଁ ନୁହଁ ବରଂ ଶହ ଶହ କୋଟି ବର୍ଷ ପାଇଁ । ତେଣୁ ବିକାଶ ନାମରେ ବିନାଶକୁ ଡାକି ଆଣିଥିବା ପ୍ରଚଳିତ ଶିଳ୍ପୀକରଣ, ଖଣି ଖନନ ଓ ଜେନେଟିକ ଇଂଜିନିୟରିଂ ପ୍ରତି ଆମ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିବା ଦରକାର ଓ ସେଥିପାଇଁ ବିକଳ୍ପ ଦୃଷ୍ଟିରେ ପରିବେଶକୁ ବୁଝିବା ମଧ୍ୟ ବିଜ୍ଞତାର ପରିଚୟ ।

ଆମେ ଯେତେବେଳେ ବିଜ୍ଞାନର ସଫଳତାକୁ ମଣିଷ ସମାଜର ଶ୍ରେଷ୍ଠ ଅବଦାନ ବୋଲି କହୁଛୁ, ସେତେବେଳେ ବିଜ୍ଞାନ ଦେଇଥିବା ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ ଉପରେ ମଣିଷ ନିଜ ନିୟନ୍ତ୍ରଣ ହରାଉଛି । ବରଂ ଆଧୁନିକତା ନାମରେ ମଣିଷର ସମସ୍ତ ଚାଲିଚଳନ ଓ ଏପରିକି ଦୃଷ୍ଟିଭଙ୍ଗୀ ନିୟନ୍ତ୍ରିତ ହେଉଛି ପ୍ରଯୁକ୍ତି ବିଦ୍ୟାର ଠିକାଦାରମାନଙ୍କ ଦ୍ୱାରା । ଏହି ଅନିୟନ୍ତ୍ରିତ ପ୍ରଯୁକ୍ତି ବିଜ୍ଞାନ ମଣିଷକୁ ପ୍ରକୃତିଛଡ଼ା କରିଦେଉଛି । ତା' ସହ ମଣିଷ ଓ ପ୍ରକୃତିର ଆତ୍ମା ପଞ୍ଚମହାଭୂତ ମଧ୍ୟରେ ଥିବା ଅତି ମୌଳିକ ଓ ଅହେତୁକ ସଂପର୍କକୁ ବ୍ୟାହତ କରିବାରେ ଲାଗିଛି । ଆବଶ୍ୟକତାରୁ ଅଧିକ ଦୂର ଯାଇ ସୌଖୀନ ଜୀବନର ଲାଳସା ଉତ୍ପନ୍ନ କରାଉଛି । ଏଣୁ ପ୍ରକୃତିକୁ ଅପ୍ରାକୃତିକକରଣ କରିବାର ସୀମା ରହୁନାହିଁ । ପରିବେଶକୀର (Ecology) ସନ୍ତୁଳନ ପାଇଁ ପ୍ରକୃତିର ମୂଳପିଣ୍ଡ ଏହି ପଞ୍ଚ ମହାଭୂତ ଜଳ, ବାୟୁ, ଅଗ୍ନି, ଧରିତ୍ରୀ ଓ ଆକାଶ ମଣିଷ ଜୀବନ ପାଇଁ ମୁଖ୍ୟ ଆଧାର ।

କିନ୍ତୁ ପ୍ରଯୁକ୍ତି ବିଦ୍ୟାର କରାମତି ଦେଖାଇ ବିକାଶ ନାମରେ ନିଜ ଆଧାର ଗୁଡ଼ିକୁ ହତ୍ୟା କରାଯିବା କେତେ ଯଥାର୍ଥ ତାହା ଆଜିର ଦିନରେ ଚିନ୍ତା କରିବା ଏକାନ୍ତ ଜରୁରୀ । ବିଶ୍ୱର ସମୁଦାୟ ଜଳର ୯୭% ସମୁଦ୍ରର ଲୁଣି ଜଳ । ମାତ୍ର ୩% ମଧୁର ଜଳ ଅର୍ଥାତ ମାତ୍ର ୯ ନିୟୁତ ଘନ ମାଇଲ ଜଳ ଓ ଭୂତଳ ଜଳ ମାତ୍ର ୨ ନିୟୁତ ଘନ ମାଇଲ । ସଦ୍ୟ ଜଳାଶୟ ହ୍ରଦମାନଙ୍କରେ ୩୦,୦୦୦ ଘନ ମାଇଲ, ମାଟିର ଆର୍ଦ୍ରତା ଭିତରେ ୨୫,୦୦୦ ଘ.ମା. ଓ ବାୟୁମଣ୍ଡଳରେ ୩୧୦୦ ଘ.ମା ଏବଂ ନଦୀମାନଙ୍କରେ ମାତ୍ର ୩୦୦ ଘନ ମାଇଲ ଜଳ ଗଠନ ହୋଇ ରହିଛି । ମଣିଷର ସମସ୍ତ ବ୍ୟବହାର ପାଇଁ ନଦୀରୁ ହିଁ ଜଳ ଆସିଥାଏ ବିଶେଷ ଭାବେ । ଆଜି କିନ୍ତୁ ଏହି ସୀମିତ ଜଳର ସଂରକ୍ଷଣ, ସ୍ୱଚ୍ଛତା ଓ ଏହାର ସ୍ରୋତର ସୁରକ୍ଷା ପ୍ରତି ଆଧୁନିକ ବୈଷୟିକ ବିଜ୍ଞାନର ମାଲିକମାନେ ଭୁଲିଯାଇ ଏହାର ସୀମାହୀନ ବ୍ୟବହାର ଦ୍ୱାରା ଜଳକୁ ପ୍ରଦୂଷିତ କରିବା ସହ ଜଳର ଉତ୍ସକୁ ଶେଷ କରିବା ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଚାଲିଛନ୍ତି । ଏଥିପାଇଁ କେନ୍ଦ୍ର ଓ ରାଜ୍ୟ ସରକାରମାନଙ୍କ ଜଳନୀତିରେ ପରିବେଶିକୀର ସୁରକ୍ଷା ପରିବର୍ତ୍ତେ ଜଳକୁ ବଜାରୀକରଣ କରି ଅଭାବକୁ ରୋକିବା ବଦଳରେ ଏଥିରୁ ମୁନାଫାକୁ ମୁଖ୍ୟ ଲକ୍ଷ୍ୟ ରଖାଯାଇଛି ।

ପୁଣି ବାୟୁ ମଧ୍ୟ ପ୍ରଦୂଷିତ ହେଉଛି ଆଖିବୁଜା ଯନ୍ତ୍ରଚାଳନ ଶିଳ୍ପୀକରଣ ଜରିଆରେ । ଅଙ୍ଗାରକାମ୍ଳ, ମିଥେନ ପରି ଗ୍ୟାସକୁ କମାଇବା ପାଇଁ ଶିଳ୍ପାୟନରେ ଆବଶ୍ୟକ ନିୟନ୍ତ୍ରଣକୁ

Digitized by srujanika@gmail.com

ବଜାରୀ ଅର୍ଥ ବ୍ୟବସ୍ଥା ମାନିବାକୁ ପ୍ରସ୍ତୁତ ନୁହଁ । ସେହିପରି ଅଗ୍ନିର ପ୍ରତୀକ ଶକ୍ତି । ପ୍ରକୃତିଦତ୍ତ ସୂର୍ଯ୍ୟକିରଣ ଓ ବାୟୁରୁ ଶକ୍ତି ସଞ୍ଚୟ କରି ଆବଶ୍ୟକତା ମେଣ୍ଟାଇବା ବଦଳରେ ଜଙ୍ଗଲ ଓ ଭୂତଳ ସଂପଦ କୋଇଲାର ଅସୀମ ବ୍ୟବହାର ଫଳରେ ପରିବେଶ ଧ୍ୱଂସମୁଖୀ ହେବାରେ ଲାଗିଛି । ସେହିପରି ପୃଥିବୀର ପେଟ୍ରୋଲ ଶେଷ ହେବାକୁ ଯାଉଛି । ତୃତୀୟ ବିଶ୍ୱର ବିଶିଷ୍ଟ ଅର୍ଥ ବିଶାରଦ ମାର୍ଟିନ ଖରଙ୍କ ହିସାବ ଅନୁଯାୟୀ ବିଶ୍ୱର ତୈଳ ବ୍ୟବହାର ବର୍ଷକୁ ୧.୫% ରୁ ୨.୫% ବୃଦ୍ଧି ଘଟି ୨୦୩୨ ସାଲ ବେଳକୁ ଚାହିଦା ବର୍ତ୍ତମାନର ଦୁଇଗୁଣ ହୋଇଯିବ । ଏହାକୁ ବିଚାରକୁ ନେଇ ଯଦି ଭାରତବର୍ଷରେ ସମସ୍ତ ମଧ୍ୟବିତ୍ତ ପରିବାର ପାଖରେ ଗୋଟିଏ କାର ରଖିବା ପାଇଁ କ୍ଷମତା ପ୍ରଚଳିତ ଜଗତୀକରଣ ଅର୍ଥ ବ୍ୟବସ୍ଥାରେ ସମ୍ଭବପର ବୋଲି କୁହାଯିବ, ତାହାହେଲେ ପ୍ରାୟ ୧୦ କୋଟି ମୋଟର ଗାଡ଼ି ପ୍ରତ୍ୟେକ ଦିନ ରୋଡ଼ରେ ବୁଲିବା ପାଇଁ ତେଲ ମିଳିବ କି ? କାର ଚାଲିଗଲା ପରେ କାର୍ବନଡ଼ାଇଅକ୍ସାଇଡ଼ ଓ ଅନ୍ୟ ରାସାୟନିକ ଧୂଆଁରେ ବାୟୁମଣ୍ଡଳର ଅବସ୍ଥା କି ରୂପ ନେବ ? ତାକୁ ସମ୍ଭାଳି ପାରିବା କି ? ସବୁଥିରୁ ବଞ୍ଚିତ ଆଉ ୫୦ କୋଟି ଲୋକ କାହିଁକି ସେହି ପ୍ରଦୂଷଣରେ ଛଟପଟ ହେବେ ? ସେହିପରି ଆଲୁମିନା ପାଇଁ ବକ୍ସାଇଟ୍‌କୁ ଶେଷକରିଦେଲା ପରେ ଜଳର ଉତ୍ସ ଅଧିକାଂଶ ସ୍ଥାନରେ ମରିଯିବ ଓ ବକ୍ସାଇଟ୍‌ରୁ ଆଲୁମିନା ହେବାପାଇଁ ଯେଉଁ ଫ୍ଲୋରାଇଡ଼ ଗ୍ୟାସ ନିର୍ଗତ ହୁଏ ତାହା ବିଶ୍ୱତାପ ବୃଦ୍ଧିରେ ସହାୟକ ହୁଏ । ଆଲୁମିନାର ବ୍ୟବହାର ବହୁଳ ଭାବରେ ଯୁଦ୍ଧ ସାମଗ୍ରୀ ଓ ମଦ ବୋତଲର ଠିପି ଓ ଗ୍ଲାସ ପାଇଁ ବ୍ୟବହୃତ ହୁଏ । ଏହିପରି ଅନେକ ଉଦାହରଣରୁ ଜାଣିହେବ ଯେ କେତେକ ଅଳ୍ପସଂଖ୍ୟକ ଧନାଢ଼୍ୟ ବିଶ୍ୱବାସୀଙ୍କ ପାଇଁ ବହୁ ସଂଖ୍ୟକ ଗରିବ ଜନ ସମାଜ ନିଜର ପ୍ରାକୃତିକ ସଂପଦକୁ ହରାଇ ପୁଣି ତାହାର ପରିଣାମଗୁଡ଼ିକୁ ଭୋଗିବାକୁ ବାଧ୍ୟ ହେଉଥିବେ । ଯେପରି ଭାବରେ ଆଖିବୁଜା ମଣିଷ ଓ ପ୍ରକୃତି ବିରୋଧୀ ଶିଳ୍ପାୟନକୁ ସ୍ୱାଗତ କରାଯାଉଛି, ଓଡ଼ିଶାରେ କୋଇଲା ମାତ୍ର ୧୦୦ ବର୍ଷ ଓ ଆଲୁମିନା ୫୦ ବର୍ଷ ଓ ଲୁହା ୩୦ବର୍ଷ, କ୍ରୋମ ୫୦ ବର୍ଷ ମଧ୍ୟରେ ଶେଷ ହୋଇଯିବ । ତାପରେ ପ୍ରକୃତିହରା ସାଧାରଣ ମଣିଷ କରିବେ କ'ଣ ?

ଆଜି ମାଟିର ଉର୍ବରତା କମିବା ସହ ବିଷାକ୍ତ ହେଉଛି ରାସାୟନିକ ସାର ଓ କୀଟନାଶକ ଔଷଧ ବ୍ୟବହାର ଯୋଗୁଁ । ସବୁଜ ବିପ୍ଳବ ନାମରେ ଜମିକୁ ନଷ୍ଟ କରି ଦିଆଗଲାବେଳେ ବିଷଯୁକ୍ତ ଖାଦ୍ୟ ଖାଇବାକୁ ବାଧ୍ୟ କରାଯାଉଛି । ପୁଣି ଆକାଶ ବି ପ୍ରଯୁକ୍ତି ବିଦ୍ୟାର ଆକ୍ରମଣରୁ ବାଦ ପଡିନି । ଆଜି ଏହି ଯାନ୍ତ୍ରିକ ଯୁଗର ଅନ୍ଧ ବିକାଶ ପ୍ରକ୍ରିୟାର ଫଳ ସ୍ୱରୂପ ଓଜୋନ ସ୍ତରରେ ଫାଟ ଦେଖାଦେଲାଣି । ଏହାର ପରିଣାମ ସବୁଜ ଗୃହ ବାଷ୍ପ ଯୋଗୁଁ । ଏହି ପରିବେଶଗତ ସଂକଟ ତଥା ଅସନ୍ତୁଳିତ ପରିବେଶକୀ ତଥା ପ୍ରକୃତି ପ୍ରତି ଦେଖା ଦେଇଥିବା ମହା ବିପଦଗୁଡ଼ିକରୁ ମୁକ୍ତିପାଇଁ ବାଟ ଅଛିକି ବୋଲି ପ୍ରଶ୍ନକଲାବେଳେ

Digitized by srujanika@gmail.com

ନାକାରାତ୍ମକ ଉତ୍ତର ଆସୁଛି । ଯେହେତୁ ସାମ୍ରାଜ୍ୟବାଦୀ ଅର୍ଥବ୍ୟବସ୍ଥାର ପୃଷ୍ଠପୋଷକମାନେ ନିଜ ମୁନାଫା ଓ ଧନୀରାଷ୍ଟ୍ରମାନେ ନିଜର ସ୍ୱାର୍ଥାନ୍ୱେଷୀ ସୌଖୀନ ଜୀବନ ଯାପନକୁ ତିଳେ ମାତ୍ର କମାଇବାକୁ ଚାହାନ୍ତି ନାହିଁ । କେବଳ ଆମେରିକା ବିଶ୍ୱର ୩୦% ପ୍ରାକୃତିକ ସମ୍ବଳକୁ ଉପଭୋଗ କରୁଛି । ଯଦି ଆମେରିକା ପରି ସମଗ୍ର ପୃଥିବୀ କରିବେ ତାହାହେଲେ ପୃଥିବୀ ପରି ଆଉ ଆଠଟି ଗ୍ରହ ଦରକାର । ଏହା ସମ୍ଭବପର ଆଦୌ ନୁହଁ । ତେଣୁ ପ୍ରତିକାର ହେଉଛି ସମ୍ବଳର ବ୍ୟବହାରରେ ସୀମା ନିର୍ଦ୍ଧାରଣ ଓ ତାହାକୁ ମଧ କାର୍ଯ୍ୟକାରୀ କରିବା ପାଇଁ ସୀମିତ ଖାଉଟି ଚାହିଦା । ଉପଭୋକ୍ତାବାଦର ଏକ ବିକଳ୍ପ ଖୋଜିଲାବେଳେ ଦୁନିଆ ବିକଳ୍ପହୀନ ବୋଲି ନକହି ସାମ୍ରାଜ୍ୟବାଦ ଓ ଉପଭୋକ୍ତାବାଦକୁ ଚାଲେଞ୍ଜ କରି ସଫଳତା ପାଇଥିବା କ୍ୟୁବାପରି ଦେଶର ସଫଳ ପରୀକ୍ଷା ଗୁଡ଼ିକୁ ଭାରତର ବିଭିନ୍ନ ରାଜ୍ୟରେ ପରୀକ୍ଷା କରିବା ପାଇଁ ପ୍ରସ୍ତୁତହେବାକି ? ଆମେରିକାର ନିର୍ଦ୍ଦେଶରେ କ୍ୟୁବାକୁ ସମସ୍ତ ରପ୍ତାନୀ ବନ୍ଦ । ତେଣୁ କ୍ୟୁବାର ରାଷ୍ଟ୍ରପତି ଫିଡ଼ଲ କ୍ରାଷ୍ଟୋଙ୍କ ନେତୃତ୍ୱରେ ଏକ ସାବଲମ୍ବନଶୀଳ ଆର୍ଥିକ ବ୍ୟବସ୍ଥା ଲାଗୁ କରାଯାଇଛି । ପ୍ରଥମତଃ ଖାଦ୍ୟରେ ସ୍ୱାବଲମ୍ବନଶୀଳ ହୋଇପାରିଛି ଜୈବିକ ଚାଷ ଦ୍ୱାରା । ଉତ୍ପାଦନ କ୍ଷମତା ବଢ଼ିଛି ଓ ମାଟିର ଉର୍ବରତା ଅକ୍ଷୁର୍ଣ୍ଣ ରହିଛି । କ୍ୟୁବାବାସୀ ଅନେକ ରୋଗରୁ ମୁକ୍ତ । ସେହିପରି ଇରାକକୁ ଆମେରିକା ଆକ୍ରମଣ କରିବା ପରେ ପେଟ୍ରୋଲ ବନ୍ଦ କରିଦିଆଗଲା । କ୍ୟୁବା ବ୍ୟକ୍ତିଗତ ମଟର ଗାଡ଼ି ଓ ସରକାରୀ ମଟର ଗାଡ଼ି ବ୍ୟବହାର ବନ୍ଦ କରିଦେଇ ଚୀନରୁ ଏକାଥରକେ ୧୦ ଲକ୍ଷ ସାଇକେଲ ଆମଦାନୀ କରି ଅଫିସର ଓ ଲୋକଙ୍କ ହାତରେ ଧରାଇ ଦେଲା । ପରିବହନ ପାଇଁ ଓ ଯାତ୍ରୀଙ୍କ ପାଇଁ ବଳଦ, ଖଚର ଓ ବିଭିନ୍ନ ପଶୁମାନଙ୍କ ଦ୍ୱାରା ବୁହାହେବା ଯାନକୁ ବହୁଳ ଭାବେ ବ୍ୟବହାର କରାଯାଉଛି । ଏଥିପାଇଁ ସରକାରୀ ସ୍ତରରେ ଚାଷପାଇଁ ଓ ପରିବହନ ପାଇଁ ବଳଦ, ଖଚର ଓ ଘୋଡ଼ାମାନଙ୍କ ବଂଶବୃଦ୍ଧି କରିବା ଦ୍ୱାରା ପଶୁସଂପଦର ବୃଦ୍ଧି ହୋଇଛି । ରାଜଧାନୀ ହାଭାନା ସହରରେ ଦୁଇବର୍ଷ ମଧରେ ଦେଖାଦେଇଛି ଯେ – ଏହି ପଦକ୍ଷେପ ଦ୍ୱାରା ବାୟୁ ପ୍ରଦୂଷଣ ପ୍ରାୟତଃ ନାହିଁ ଓ ହସପିଟାଲରେ ରୋଗୀଙ୍କ ସଂଖ୍ୟା ବହୁସଂଖ୍ୟାରେ କମିଯାଇଛି । ଏପରି ଅନେକ ପରୀକ୍ଷା ଚାଲିଛି ସେଠି । ପ୍ରଥମ କଥା ହେଉଛି ଏହାକୁ ଗ୍ରହଣ କରିବା ପାଇଁ ରାଜନୈତିକ ଇଚ୍ଛାଶକ୍ତିର ଆବଶ୍ୟକତା ରହିଛି । ଆମ ଓଡ଼ିଶା ଓ ଭାରତରେ ଅନେକ ସ୍ଥାନରେ ଯେଉଁଠି ଦୁଇଓଳା ଖାଦ୍ୟ ନାହିଁ କି ତାପାଇଁ କାମ ନାହିଁ ବୋଲି ମା'ତାର ପିଲା ବିକ୍ରି କରୁଛି ଓ ଦାରିଦ୍ର୍ୟର କଷାଘାତରେ ଆମ୍ବ କୋଇଲି ଖାଏ । ସେହି ରାଜ୍ୟ ଓ ଦେଶରେ କୋଟି କୋଟି କାର କିମ୍ବା ଶହ ଶହ ଉଡ଼ାଜାହାଜର ଆବଶ୍ୟକତା ଅଛି କି ? ବିଦେଶୀଙ୍କ ସୌଖୀନ ପାଇଁ ଆମ ବକ୍‌ସାଇଟ୍ ଓ ଲୁହାପଥରକୁ ଲୁଟ କରିବାକୁ ନଦେଇ ଆମ ଜଙ୍ଗଲ, ଜଳ, ଜମିର ସୁରକ୍ଷା କରି ଏକ ସୁସ୍ଥ ପରିବେଶ ପାଇଁ ପ୍ରକୃତିସଂପନ୍ନ ଆବଶ୍ୟକତାକୁ କେନ୍ଦ୍ର କରି ଏକ ବିକଳ୍ପ ବିକାଶ ପ୍ରକ୍ରିୟା ପାଇଁ ଇଚ୍ଛା

Digitized by srujanika@gmail.com

କରିବା କି ? ଇଚ୍ଛାକୁ ବାହାର କରିବା ପାଇଁ ରାଜନୈତିକ ଶକ୍ତି ତିଆରି କରିପାରିଲେ ହିଁ ସାମ୍ରାଜ୍ୟବାଦୀ ଶକ୍ତିଦ୍ୱାରା ହେଉଥିବା ଆମ ପରିବେଶ ତଥା ପ୍ରକୃତିର ଅପହରଣକୁ ପ୍ରତିହତ କରିପାରିବା । ଏହି ଇଚ୍ଛାଶକ୍ତିର ମୂଳମନ୍ତ୍ର ହେଲା ପ୍ରକୃତି ଓ ମଣିଷ ଭିତରେ ଅହେତୁକ ସଂପର୍କକୁ ସମୀକ୍ଷା କରି ପଞ୍ଚମହାଭୂତଗୁଡ଼ିକ ମଧ୍ୟରେ ସମନ୍ୱୟ ଓ ସନ୍ତୁଳନ ରକ୍ଷା କରିବା । ଗୀତାରେ କୁହାଯାଇଛି ପ୍ରକୃତିଠାରୁ ଆବଶ୍ୟକତାରୁ ଅଧିକ ନେଇଯିବା ଚୋରି କାର୍ଯ୍ୟ । ବର୍ତ୍ତମାନ ଆଧୁନିକତା ଓ ଖୋଲାବଜାର ଅର୍ଥନୀତିର ଦ୍ୱାହି ଦେଇ ପ୍ରକୃତିର ନିଃଶେଷକରଣକୁ ଖୋଲା ଡ଼କାୟତି ବୋଲି କହିବାକୁ ହେବ । ଡ଼କାୟତମାନଙ୍କ ସାମନା କରିବାକୁ ପଡ଼ିବ । ପ୍ରକୃତିର ସଂରକ୍ଷଣ ମଣିଷ ସମାଜକୁ ସୁରକ୍ଷିତ ରଖିବ । ସେଥିପାଇଁ ମଣିଷ ପ୍ରକୃତି ପ୍ରତି କୃତଜ୍ଞ ରହି ଜୀବଜଗତର ଚୌକିଦାର ହେବା ଦରକାର ।



Digitized by srujanika@gmail.com

# ବିକାଶ ରାଜନୀତିର ବିକଳ୍ପ ବିଚାର

## ତଥାକଥିତ ବିକାଶକୁ କାହିଁକି ବିରୋଧ ପ୍ରଶ୍ନର ଜବାବ

କେତକ ଶିଳ୍ପାୟନ ପ୍ରବକ୍ତା ପ୍ରଶ୍ନ କରୁଛନ୍ତି : ବିକାଶକୁ ବିରୋଧ କାହା ସ୍ୱାର୍ଥରେ ? ଉତ୍ତର ଅତି ସ୍ପଷ୍ଟ – ବିକାଶ ନାମରେ ବିନାଶର ଫଳ ଭୋଗ କରୁଥିବା ବହୁଜନଙ୍କ ସ୍ୱାର୍ଥ ପାଇଁ ବିରୋଧ । ସବୁବେଳେ ମଣିଷସମାଜ ତାର ବିକାଶ ପାଇଁ ପ୍ରୟାସ କରି ଆସିଛି ଏବଂ ପ୍ରତ୍ୟେକ ସମୟ ପ୍ରତ୍ୟେକ ମଣିଷ ଉପରକୁ ଉଠିବାକୁ ଚାହେଁ । କିନ୍ତୁ ବିକାଶର ପ୍ରକ୍ରିୟା ଓ ବ୍ୟବସ୍ଥା ହିଁ ଅସଲ ବିକାଶର ପ୍ରତିବନ୍ଧକ ହୁଏ ଏବଂ କେତେକ ମୁଷ୍ଟିମେୟ ଗୋଷ୍ଠୀ ଓ ବ୍ୟକ୍ତି ବିଶେଷଙ୍କର ବିକାଶ ବହୁଜନଙ୍କ ଜୀବନ ଓ ଜୀବିକାକୁ ବିନାଶ କରାଏ । ପ୍ରଚଳିତ ବିକାଶ ନୀତିରେ ଦ୍ରୁତ ଶିଳ୍ପାୟନ, ଖଣି ଖନନ ଓ ବିଦେଶୀ ପୁଞ୍ଜି ନିବେଶକୁ ପ୍ରଗତିର ସୂଚକ ବୋଲି ବାହାବାହା କରୁଥିବା ପ୍ରବକ୍ତାମାନେ ଦେଶଟାକୁ ଉପରକୁ ଉଠିବାକୁ ହେବ ବୋଲି କହୁଥିବାବେଳେ ତଳଟାକୁ ଦେଖିବାକୁ ପ୍ରସ୍ତୁତ ନୁହଁନ୍ତି । ଦେଖୁଥିଲେ ବି ନ ଦେଖିଲା ପରି ଆଖି ବୁଜି ଦେଇ ଆଦିବାସୀ, ଦଳିତ ଚାଷୀମାନଙ୍କ ବିକାଶର ଫଳ ଭୁଞ୍ଜିବାକୁ ସ୍ୱପ୍ନ ଦେଖାଇବାରେ ମିଥ୍ୟାଗୁଡ଼ିକୁ ସତ୍ୟରେ ପ୍ରତିପାଦିତ କରିବାକୁ ନିଜର ବୌଦ୍ଧିକ କପଟତାକୁ ପ୍ରୟୋଗ କରିଥାନ୍ତି । ସେମାନଙ୍କ ମତରେ ଦେଶ ଉପରକୁ ଉଠିବା ଅର୍ଥ ବୈଦେଶିକ ମୁଦ୍ରା, ବିଦେଶୀ ପୁଞ୍ଜି ଆଗମନ, ଖଣି ଖୋଳି ତା ଉପରେ ମେସିନର ସାମ୍ରାଜ୍ୟ ପ୍ରତିଷ୍ଠା, ଆକାଶରେ ବ୍ୟୋମଯାନର ବାରଂବାର ଦୃଶ୍ୟମାନ, ବଜାରରେ ନୂଆ ନୂଆ ଅତ୍ୟାଧୁନିକ ସାମଗ୍ରୀର ଚଳଚଞ୍ଚଳ, ପଞ୍ଚ ତାରକା ହୋଟେଲ, ବଡ଼ ବଡ଼ ଆପାର୍ଟମେଣ୍ଟ ଏପରି ଅନେକ । ସେଇଥିପାଇଁ ୫୦ଟି ଇସ୍ପାତ ପ୍ରକଳ୍ପ, ୧୦ଟି ଆଲୁମିନା ପ୍ଲାଣ୍ଟ, ଶହ ଶହ ସ୍ପଞ୍ଜ ଆଇରନ, ଆଉ ଏମାନଙ୍କ ପାଇଁ ବିଦ୍ୟୁତ୍ ଯୋଗାଇବା ପାଇଁ ବଡ଼ ବଡ଼ ଜଳଭଣ୍ଡାର ଓ ତାପଜ ବିଦ୍ୟୁତ ପ୍ରକଳ୍ପ । ଏସବୁ ଓଡ଼ିଶାକୁ ଆଗକୁ ନେଇ ନିୟୁର୍କ ଓ ଲଣ୍ଡନ ସହର ସୃଷ୍ଟି କରିବ ବୋଲି ସ୍ୱପ୍ନରେ ବିହ୍ୱଳିତ ହୋଇ ଏହି ସହର ତଳେ ପୋତି ହୋଇ ବିଲୀନ ହୋଇଯିବାକୁ ଥିବା ନିଶ୍ଚିତତାକୁ ଦେଖି ପାରୁଥିବା ଲୋକଙ୍କ ବିରୋଧରେ ବିଷୋଦ୍‌ଗାର କରିବା ଜଗତୀକରଣ, ଉଦାରୀକରଣ, ଘରୋଇକରଣ ସମର୍ଥକମାନଙ୍କ ଏକ ସ୍ୱାଭାବିକ ଚରିତ୍ର ହୋଇ ଯାଇଛି । ଯେଉଁଠି ପ୍ରଚଳିତ ବିକାଶ ସୌଧର ଦ୍ୱାରକୁ ଯେଉଁମାନଙ୍କ ଭବିଷ୍ୟତରେ ପ୍ରବେଶ ବନ୍ଦ ଓ ସେହି ସୌଧ ନିର୍ମାଣ ପାଇଁ, ସେମାନଙ୍କ ବର୍ତ୍ତମାନଟିକୁ ବଳି ଦେବାକୁ ବାଧ୍ୟ କରାଯାଉଛି ଓ ଯୁକ୍ତି କରାଯାଉଛି ଯେ ତ୍ୟାଗ କରିବାକୁ ହେବ ଦେଶର ପ୍ରଗତି ପାଇଁ । ସେହି ମାଟିର ମଣିଷମାନେ

Digitized by srujanika@gmail.com

ବିକାଶର ପ୍ରତିରୋଧ କରିବା ଅନିବାର୍ଯ୍ୟ ଓ ସେହି ବିରୋଧ ସ୍ୱାଭିମାନର ସହ ବଞ୍ଚିବା ପାଇଁ ଏକ ଜନ୍ମଗତ ଅଧିକାର । ବାସ୍ତବରେ ଦେଖିଲେ ଆରମ୍ଭରେ କେବେ ବିରୋଧ ହୋଇନଥିଲା । ହୀରାକୁଦ ଜଳଭଣ୍ଡାର, ରାଉରକେଲା ଇସ୍ପାତ କାରଖାନା, ମୟୂରଭଞ୍ଜ, କେଉଁଝର, ସୁନ୍ଦରଗଡ଼ ଜିଲ୍ଲାରେ ଲୁହାଖଣି, ସୁକିନ୍ଦାର କ୍ରୋମ ପରି ଅନେକ ଏବଂ କଳିଙ୍ଗ ନଗରରେ ୧୦ଟି ପ୍ରକଳ୍ପ ହେଲାବେଳେ କେହି ବାଧା ଦେଉନଥିଲା । କାରଣ ସେଠାର ମୂଳ ଜନତାଙ୍କୁ ସ୍ୱପ୍ନ ଦେଖାଇ ଦିଆଯାଉଥିଲା ଯେ ପ୍ରଗତିର ଫଳ ସେମାନଙ୍କ ପାଇଁ ସଂରକ୍ଷିତ । କିନ୍ତୁ ଓଡ଼ିଶାର ପ୍ରଗତି କାହିଁକି ହେଲା ନାହିଁ, ଓଡ଼ିଶାବାସୀ ଆଜିବି ସବୁଠାରୁ କାହିଁକି ଦରିଦ୍ର ? ଆଜିବି ହୀରାକୁଦର ଆଠ ହଜାର ବିସ୍ଥାପିତ ପରିବାର ଥଇଥାନରୁ ବଞ୍ଚିତ । ଇସ୍ପାତ ନଗରୀ ରାଉରକେଲାର ୧୦ କିଲୋମିଟର ବାହାରକୁ ଚାଲିଗଲେ ଆଦିବାସୀ ବାସହୀନ, ଭୂମିହୀନ ଓ ଜୀବିକା ହରାଇ ବସିଛି । କାରଣ ତା ଜଙ୍ଗଲ ଆଉ ନାହିଁ । ଜଳ ପ୍ରଦୂଷିତ, ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା ତା ପାଇଁ ଦୁର୍ଲଭ । ଏବେ ଗାଁ ଗାଁରେ ସ୍ପଞ୍ଜ ଆଇରନ ଶିଳ୍ପ ତା ପାଇଁ ହୋଇଛି ମରଣଯନ୍ତା । ଏବେ ବି ମାଛକୁଣ୍ଡ, କୋରାପୁଟର ଅପରକୋଲାବ ଓ ଇନ୍ଦ୍ରାବତୀର ବିସ୍ଥାପିତମାନେ ମୌଳିକ ଅଧିକାରରୁ ବଞ୍ଚିତ । ବିଗତ ୬୦ ବର୍ଷ ମଧ୍ୟରେ ଓଡ଼ିଶାର ଧ୍ୱଂସମୁଖୀ ଜଙ୍ଗଲ ୪୩%ରୁ ୧୫%କୁ ଆସିଛି । ଓଡ଼ିଶାର ପ୍ରମୁଖ ନଦୀ ବ୍ରାହ୍ମଣୀ, ମହାନଦୀ, ବୈତରଣୀ, ନାଗାବଳୀ ପରି ଅନେକ ଜଳ ସଂପଦ ପ୍ରଦୂଷଣର ଶିକାର ହୋଇ ସାରିଲେଣି । ତା ସହ ଅନେକ ନଦୀର ଜଳ ଉତ୍ସ ଶୁଖି ଆସିଲାଣି । ଖଣି ଖୋଳା ହେବାପରେ ଶହ ଶହ ଛୋଟ଼ ବଡ଼ ଝରଣା, ନାଳ ଶୁଖିଗଲାଣି ଓ ଅସ୍ତିତ୍ୱ ହରାଇଲେଣି । କେଉଁଝର ଗନ୍ଧମାର୍ଦ୍ଦନ ପର୍ବତମାଳାର ଅନେକ ଝରଣା ଆଉ ନାହିଁ । ଜୋଡ଼ା ବଡ଼ବିଲର ହଜାର ହଜାର ଏକର ଜଙ୍ଗଲ ଓ କୃଷି ଜମି ଆଜି ଖାଲି ହୋଇ ଯାଇଛି ବାଲି ଧୂଳିର ଆବରଣରେ । କେବଳ ଯୋଡ଼ା ବ୍ଲକର ୩୨ ହଜାର ଆଦିବାସୀ ପରିବାର ଆଜି ଭିଟାମାଟି ଛାଡ଼ି କୁଆଡ଼େ ଗଲେ କାହା ପାଖରେ ଠିକଣା ନାହିଁ । କଳିଙ୍ଗନଗରରେ ଶିଳ୍ପ ନାମରେ ୧୦ ହଜାର ଏକର ଚାଷ ଜମି ଅଧିଗ୍ରହୀତ ହୋଇଛି । ସେଠାରେ ଯିଏ ଚାଷ ହରାଇଲା ବର୍ତ୍ତମାନ ତାପାଇଁ ଜଙ୍ଗଲ ମଧ୍ୟ ନାହିଁ । କାରଣ ପାଖରେ ଖଣି ଖୋଳା ଚାଲିଛି । ଏକ ହଜାର ପରିବାରକୁ ଥଇଥାନ କରାଯାଇଛି ବୋଲି ସରକାର କହିବା ବେଳେ ସେମାନଙ୍କ ମଧ୍ୟରୁ ୫୦୦ ପରିବାର କେଉଁଆଡ଼େ ଚାଲି ଯାଇଛନ୍ତି କେହି ଜାଣନ୍ତି ନାହିଁ । କାରଣ, ବଞ୍ଚିବାର ବାଟ ହରାଇଲେ । ଭୂତଳ ଜଳ ମଧ୍ୟ ତଳକୁ ତଳ ଯାଉଛି । ସେଠାର ଗାଁ ଗୁଡିକରେ ଯଦି ଚାଷ ନାହିଁ, ଜଳ ନାହିଁ, କାମ ନାହିଁ ଏବଂ ଅନ୍ଧାର ଭିତରେ ରହିଛନ୍ତି ସେମାନେ ରାଜ୍ୟକୁ ଆଗକୁ ନେବା ପାଇଁ ପୁଣି ନିଜର ଜୀବନ ଦେଇ ଜୀବିକା ହରାଇବେ ? ଆଉ ସେମାନେ ବିରୋଧ କଲେ ମିଳୁଛି ବନ୍ଧୁକରୁ ଗୁଳି । ଏକ ନାରକୀୟ ସଂଗଠିତ

Digitized by srujanika@gmail.com

ଘଟଣାକୁ ଏକ ଦୁର୍ଘଟଣା କହି ଭୁଲିଯିବାକୁ ଉଦ୍ୟମ ଚାଲିଛି ଉତ୍ତମ ଥଇଥାନ ନୀତି ନାମରେ । ଚାକିରି, କ୍ଷତିପୂରଣ , କିଏ ପାଇବ ? ଯେଉଁଠି ଜଙ୍ଗଲ ଧ୍ୱଂସ ହେବ ତା ଉପରେ ଜନ ସମୂହ ନିର୍ଭରଶୀଳ । ଯେଉଁଠି କୃଷି ଅଛି, ସେଠି କୃଷି ଶ୍ରମିକ ନିର୍ଭରଶୀଳ । ସେହି ସଂବଳକୁ ଯେତେବେଳେ ଶିଳ୍ପ ପାଇଁ ଶେଷ କରି ଦିଆଯିବ, ଯେତେବେଳେ ଜଳ ଶୁଖିଗଲେ ପ୍ରଦୂଷିତ ହୋଇଗଲା ପରେ ଲୋକେ ନିଜ ଭିଟାମାଟି ନର୍କରେ ପରିଣତ ହେବ ସେଇ ନର୍କବାସୀଙ୍କୁ କିଏ କ୍ଷତିପୂରଣ ଦେବ ? ଥଇଥାନ ନୀତିରେ ଜୀବିକାର ଅଧିକାରକୁ ମୌଳିକ ଅଧିକାର ରୂପେ ଗ୍ରହଣ କରିବାକୁ ସରକାରତ ପ୍ରସ୍ତୁତ ନୁହଁ । ତେଣୁ ଆଜି ବିରୋଧ ହେବା ଏକାନ୍ତ ଜରୁରୀ । ଏହି ବିରୋଧ ମୂଳରେ ପରିବେଶ ଏକ ବାହନା ନୁହଁ କିମ୍ବା ଆନ୍ଦୋଳନକୁ ସମର୍ଥନ ଓ ସହଯୋଗ କରୁଥିବା ଗଣ ସଂଗଠନର କର୍ମୀ ଓ ନେତାମାନେ ଗରିବଙ୍କୁ ଠୁଳାଇ ଆନ୍ଦୋଳନ କରୁ ନାହାନ୍ତି ବରଂ ଆଦିବାସୀ ନିଜ ବଞ୍ଚିବାର ଅଧିକାର ସହ ପ୍ରାକୃତିକ ସଂପଦ ସହ ଯୋଡ଼ି ହୋଇ ରହିଥିବା ତାର ଜୀବନ ଓ ଜୀବିକାର ସୁରକ୍ଷା ପାଇଁ ତା ବିନାଶ ପାଇଁ ଆସୁଥିବା ରାକ୍ଷସୀ ରୂପୀ ବିକାଶକୁ ପ୍ରତିହତ କରିବା ପାଇଁ ବାଧ ହୋଇଛି । ଇତିହାସରେ ଦେଶର ମୁକ୍ତି ଆନ୍ଦୋଳନରେ ସ୍ୱାଧୀନ ଓ ନିର୍ଭୀକ ସ୍ୱାଧୀନତା ସଂଗ୍ରାମ କରିଛି ଆଦିବାସୀ ସମାଜ । ଆଜି ବି କାଶୀପୁର, ନିୟମଗିରି ଓ କଳିଙ୍ଗନଗର ପରି ଅନେକ ସ୍ଥାନରେ ଆଦିବାସୀ ଦୁର୍ବାର ଜନ ଆନ୍ଦୋଳନ ଠିଆ କରିବ । କାନ୍ଥ ଲେଖାକୁ ବିକାଶର ପ୍ରବକ୍ତାମାନେ ପାଠ କରନ୍ତୁ ।

ବକ୍ସାଇଟ୍ ଖୋଳି ଆଲୁମିନା ଓ ଆଲୁମିନିୟମ ପ୍ଲାଣ୍ଟ ରାଷ୍ଟ୍ରୀୟ ଉଦ୍ୟୋଗ ନାଲକୋ ଦ୍ୱାରା ହେଉଛି । ତାହା ଆମ ଦେଶର ଆବଶ୍ୟକତାକୁ ପୂରଣ କରିବା ସହ ବିଦେଶକୁ ରପ୍ତାନି କରୁଛି । ସେଥିରେ ଆମ ରାଜ୍ୟର ବିଶେଷ ଉପକାର ହୋଇନଥିଲେ ମଧ ଦେଶ ପାଇଁ ଲାଭଦାୟକ । କିନ୍ତୁ ସେଠାର ଜଳସଂପଦ ଓ ଜଙ୍ଗଲ ସଂପଦ ହରାଇଥିବା ଆଦିବାସୀ ଆଜିବି ଦରିଦ୍ର । ନାଲ୍କୋର ଉତ୍ପାଦନ ବାହାରେ ଆଜି ଓଡ଼ିଶାକୁ ଯେଉଁ ଦେଶୀ ବିଦେଶୀ କଂପାନୀମାନେ ବକ୍ସାଇଟ୍ ଖଣି ଖୋଳି ଆଲୁମିନା କରିବେ ସେସବୁ ବିଦେଶୀଙ୍କ ଚାହିଦା ପାଇଁ ଓ ପୁଞ୍ଜିପତିର ମୁନାଫା ପାଇଁ । ବକ୍ସାଇଟ୍ ଏକ ଟନରୁ ମାତ୍ର ୫୪ ଟଙ୍କା ସରକାର ପାଇବେ । କିନ୍ତୁ ୬ ଟନ୍ ବକ୍ସାଇଟ୍‌ରୁ ଏକ ଟନ ଆଲୁମିନିୟମ ବଜାରରେ ବିକିବ ବେଦାନ୍ତ କଂପାନୀ ୩୨ ହଜାର ଟଙ୍କାରେ । ୨୦ ବର୍ଷ ପରେ ନିୟମଗିରିର ବକ୍ସାଇଟ୍ ଶେଷ କରି ଚାଲିଗଲାବେଳକୁ ନିୟମଗିରି କୋଳରୁ ଜାତ ଅନେକ ଚିରସ୍ରୋତା ଝରଣା ଗୁଡିକର ଅପମୃତ୍ୟୁ ସହ ପ୍ରମୁଖ ନଦୀ ବଂଶଧାରା ପ୍ରାଣହୀନ ହୋଇ ପଡିଥିବ । ତା ପାଖକୁ ଥିବା କରଲାପାଟକୁ ଆଉ ଏକ କଂପାନୀ ବକ୍ସାଇଟ୍ ଲୁଟିଲା ବେଳକୁ ନାଗାବଳୀ ନଦୀର ଜଳ ଉତ୍ସ ମଧ ଶେଷ ହୋଇଯିବ । ତା ପରେ ଦୁଇ ପ୍ରମୁଖ ନଦୀ କୂଳରେ ବିକଶିତ

Digitized by srujanika@gmail.com

କୃଷି ଅର୍ଥନୀତି ଓ ନିୟମଗିରି ଘଞ୍ଚ ଜଙ୍ଗଲକୁ କେନ୍ଦ୍ର କରି ହଜାର ହଜାର ବର୍ଷ ଧରି ବଞ୍ଚି ଆସୁଥିବା ଚାଷୀ ଆଦିବାସୀ ଯିବେ କୁଆଡ଼େ ? କ'ଣ ବେଦାନ୍ତର ଚିମିନିରୁ ନିର୍ଗତ ଧୂଆଁରୁ ସଂଜୀବନୀ ପ୍ରବାହିତ ହେବ ? ଭୂତତ୍ତ୍ୱବିତ୍, ଅର୍ଥଶାସ୍ତ୍ରୀ ଆଉ ସର୍ବଜ୍ଞ ପ୍ରଶାସକ ଓ ରାଜନେତମାନେ ହିସାବ କରି କହୁନାହାନ୍ତି କାହିଁକି, କୁହାଯାଉଥିବା ଶିଳ୍ପାୟନର ଲାଭ ଓ କ୍ଷତି କାହା ଭାଗରେ କେତେ ? ବେଦାନ୍ତ କହିଛି ତାର ଭାଗୁଆଳି ପୁଞ୍ଜି ନିବେଶକମାନଙ୍କୁ ଯେ ଗୋଟିଏ ଟଙ୍କାର ନିବେଶରେ ଲାଭ କରିବ ୧୧୩ ଟଙ୍କା । ଏଠି ସେ ୪୫୦୦ କୋଟି ଟଙ୍କା ପୁଞ୍ଜି ଖଟାଇ ୨୦ ବର୍ଷରେ ୫୦୮୫୦୦ କୋଟି ଟଙ୍କା ଅର୍ଥାତ ବର୍ଷକୁ ୨୨୧୦୦ କୋଟି ଟଙ୍କା ଲାଭ କରିବ । ସେହିପରି ଉତ୍କଳ ଆଲୁମିନା ପାଇବ କାଶୀପୁରରୁ ଯେଉଁଠି ୩୨ ଗୋଟି ଝରଣା ଓ କୃଷିକ୍ଷେତ୍ର ଧ୍ୱଂସ ହେବା ସହ ଇନ୍ଦ୍ରାବତୀ ଜଳ ଭଣ୍ଡାରରେ ପାଣି କମିବ ଓ ପୋତି ହୋଇଯିବ ବାଫିଲିମାଳିରୁ ବକ୍ସାଇଟ ଖଣି ଖନନ ପରେ । ପୁଣି ୫୦ ଗୋଟି ଇସ୍ପାତ ପ୍ରକଳ୍ପ ପାଇଁ ଆସନ୍ତା ୩୦ ବର୍ଷ ମଧ୍ୟରେ ଗଚ୍ଛିତ ଥିବା ୪୧୭୭ ନିୟୁତ ଟନ ଲୁହାପଥର ଶେଷ ହୋଇଯିବ । ତାପରେ କ'ଣ ହେବ ? ଓଡ଼ିଶାର ବିକାଶ ପାଇଁ ଲୁହାପଥର ଟନ ପିଛା ଟାଟା ଦେଉଛି ୧୨ ଟଙ୍କା ତ ଆଉକିଏ ଦେଉଛି ୨୪ ଟଙ୍କା । ମାତ୍ର ଏହି କଂପାନୀମାନେ ଲିଜ ନେଇଥିବା ଖଣିରୁ ବିକୁଛନ୍ତି ଟନ ପିଛା ୨୭୦୦ ରୁ ୩୦୦୦ ଟଙ୍କା ପର୍ଯ୍ୟନ୍ତ । ପୋସ୍କୋ ଦେବ ୪୦୦ ଟଙ୍କା ଲେଖାଏଁ ୬୦୦ ନିୟୁତ ଟନ ପାଇଁ । ଲାଭ କରିବ କେବଳ ଲୁହାପଥରରୁ ୧ ଲକ୍ଷ ୨୦ ହଜାର କୋଟି ଟଙ୍କା ବର୍ତ୍ତମାନର ବଜାର ଦରରେ । ଏହି ଦର ୩୦ ବର୍ଷ ପର୍ଯ୍ୟନ୍ତ ଅପରିବର୍ତ୍ତିତ ରହିବ । କିନ୍ତୁ ଆଉ ଦଶ ବର୍ଷ ପରେ ଯେଉଁ ଦର ବଢ଼ିବ ପୋସ୍କୋ ଏହି ଲୁହାପଥରରୁ ଲାଭ କରିବ ଅତି କମରେ ଆଉ ୧ ଲକ୍ଷ ୨୦ ହଜାର କୋଟି ଟଙ୍କା ଏପରି ୨୪୦୦୦୦ କୋଟି ଟଙ୍କା । ତା ସହ ଅର୍ଥନୈତିକ ସ୍ୱତନ୍ତ୍ର ଜୋନ୍ ଦ୍ୱାରା ସବୁକ୍ଷେତ୍ରରେ ଟିକସ ଛାଡ଼ ପାଇବ ଓ ଇସ୍ପାତ ବିକ୍ରିରେ ଲାଭ କରିବ । ଆଉ ମାଲାଙ୍ଗଟୋଲି ପର୍ବତ ଓ ଖଣ୍ଡାଧାର ପର୍ବତରୁ ପଥର ଶେଷ ହେଲାବେଳକୁ ସେଠାର ହଜାର ହଜାର ଆଦିବାସୀ ବାସଚ୍ୟୁତ, ଜୀବିକାଚ୍ୟୁତ ହୋଇଥିବେ ଓ ବୈତରଣୀ ନଦୀର ଜଳସ୍ରୋତ କମିବାରେ ଲାଗିବ ଓ ପ୍ରଦୂଷିତ ମଧ୍ୟ ହେବ । କାରଖାନା ଅଞ୍ଚଳର ପାନ, ମୀନ ଓ ଧାନ କ୍ଷେତରୁ ୨୦ ହଜାର ଗ୍ରାମବାସୀ କର୍ମଚ୍ୟୁତ ହେବା ପରେ ଯେଉଁ ବିଶେଷ କୃଷିକ୍ଷେତ୍ର ସବୁଦିନ ପାଇଁ ଧ୍ୱଂସ ହେବ ସେହି କ୍ଷତିର ପରିମାଣ ହିସାବ କରାଯାଉନାହିଁ କାହିଁକି ? ହୀରାକୁଦ ଜଳଭଣ୍ଡାରର ପାଣି କୃଷି ପାଇଁ ପ୍ରାଥମିକତା ଥିଲା । ବର୍ତ୍ତମାନ ସେଠାରୁ ଶିଳ୍ପ କାରଖାନାକୁ ଦିଆଯାଉଛି ଓ ଅଧିକ ଦିଆଯିବ । ଏହାଦ୍ୱାରା ଏକ ହିସାବରେ ୪୭୦୦୦ ଏକର ଜମି ଚାଷ ଜମିକୁ ଜଳସେଚନରୁ ବଞ୍ଚିତ କରାଯିବ । ୪୪ଟି ଇସ୍ପାତ ପ୍ରକଳ୍ପ ପାଇଁ ଦୈନିକ ଦରକାର ୫୦୦ ନିୟୁତ ଗ୍ୟାଲେନ ପାଣି । ତେଲ ନଦୀରୁ

Digitized by srujanika@gmail.com

ଦୈନିକ ୪ କୋଟି ଲିଟର ପାଣି ନେବ ବେଦାନ୍ତ । ସେହିପରି ରାଜ୍ୟର ପ୍ରମୁଖ ନଦୀମାନଙ୍କରୁ ଓ ଭୂଗର୍ଭରୁ ଜଳ ନେଇଗଲା ପରେ ଚାଷପାଇଁ ଓ ପିଇବା ପାଣିର ଗ୍ୟାରେଣ୍ଟି ପାଇଁ ଶିଳ୍ପକୁ ବିରୋଧ କରିବା ଏକାନ୍ତ କାମ୍ୟ । ଗୋପାଳପୁରରୁ ଟାଟା ହଟି ନଥିଲେ ଋଷିକୁଲ୍ୟାରେ ଟୋପେ ପାଣି ନଥାନ୍ତା ବର୍ଷା ଦିନ ପରେ ଲୋକଙ୍କ ପାଇଁ । ତେଣୁ ସଂବଳଗୁଡ଼ିକୁ ଓ ଜୈବ ବିବିଧତାକୁ ଖତମ କରି ଶିଳ୍ପ ନିର୍ମାଣ କଲେ ଖାଦ୍ୟାଭାବ ଉତ୍କଟ ହେବ ।

ଓଡ଼ିଶାରେ ପ୍ରାକୃତିକ ସଂପଦ – ଲୁହାପଥର, ବକ୍ସାଇଟ୍, କ୍ରୋମାଇଟ, ମାଙ୍ଗାନିଜ ପରି ଅନେକ ଖଣି ଖନନ ଚାଲିଛି । ଏସବୁଗୁଡ଼ିକୁ ଖୋଳି ଦେଇ ବିଦେଶକୁ ରପ୍ତାନି କରିଦେଲେ ଓ ସେହି କଞ୍ଚାମାଲରୁ ଦେଶୀ ବିଦେଶୀ କାରଖାନାରେ ପ୍ରକ୍ରିୟାକରଣ କରି ଲୁହା, ଆଲୁମିନା ଇତ୍ୟାଦି ବିଦେଶୀ ବଜାରକୁ ପଠାଇ ଦେଲେ ଓଡ଼ିଶାର ବିକାଶ ହୋଇଯିବ ବୋଲି କହିବା ବୌଦ୍ଧିକ ସ୍ଖଳନର ପରିଚୟ । ବିଶେଷଜ୍ଞମାନଙ୍କ ପରାମର୍ଶ ସବୁବେଳେ ଆବଶ୍ୟକ କିପରି ଓ କେତିକି ପ୍ରାକୃତିକ ସଂବଳ ଆମେ ସଦ୍‌ବ୍ୟବହାର କରିବା ଯାହାର ପରିଣାମ ପ୍ରଗତି ଠାରୁ ଦୁର୍ଗତି ଓ ବିପତ୍ତି ଅଧିକ ହେବ ନାହିଁ । ସମାଜ ବିଜ୍ଞାନୀ ଓ ରାଜନୈତିକ ବ୍ୟକ୍ତିମାନଙ୍କ ବିଚାର ଓ ବିଜ୍ଞତାର ଆବଶ୍ୟକତା ରହିଛି ଯେ ଏସବୁ ବ୍ୟବହାର କାହା ପାଇଁ ଓ କେଉଁ ସୀମା ପର୍ଯ୍ୟନ୍ତ । ତେଣୁ ଓଡ଼ିଶାର ଲୁହାପଥରକୁ ୫୦ ଗୋଟି ଇସ୍ପାତ କାରଖାନା କରି ଶେଷ କରିଦେବା ପରେ ଆସନ୍ତା ୩୦ ବର୍ଷ ମଧ୍ୟରେ ଓଡ଼ିଶାର ପ୍ରତ୍ୟେକ ପରିବାର ଏକ ସଂପନ୍ନ ପରିବାର ରୂପେ ବାସଗୃହ ତିଆରି ହେଉଥିବା ସମସ୍ତ ପଦାର୍ଥ ହାସଲ କରିବାକୁ ସମର୍ଥ ହୋଇପାରିଥିବ ? ଯେଉଁଠି ଛପର ଘର କରିବାକୁ କାଠ, ବାଉଁଶ କିଣିବା ସମ୍ଭବପର ନୁହଁ, ଓଡ଼ିଶାର ୫୦ ଭାଗ ପରିବାର ଲୁହା ଓ ଆଲୁମିନାର ବ୍ୟବହାର କରିବେ କିପରି ? ଇସ୍ପାତ କାରଖାନାର ଲାଭ କିଏ ନେବ ? ଏସବୁ ରାଷ୍ଟ୍ରୀୟ ଉଦ୍ୟୋଗ ନୁହଁ । ଦେଶୀ ବିଦେଶୀ ଘରୋଇ କଂପାନୀ ମାନେ ହିଁ ସମସ୍ତ ମୁନାଫାର ଅଧିକାରୀ । ତାହା ମଧ୍ୟ ଖଣିଜ ପଦାର୍ଥ ବଜାର ଦରରେ ବିକ୍ରି କରାଯାଉ ନାହିଁ । କେବଳ ଲିଜ୍ ଜରିଆରେ ଲୁଟ କରିବାକୁ ବାଟ ଖୋଲି ଦିଆଯାଉଛି । ଉତ୍ପାଦନ ଶେଷରେ ଅଧିକାଂଶ ଶିଳ୍ପ ରପ୍ତାନି ପାଇଁ ଉଦ୍ଦିଷ୍ଟ । ଆଜି ପୋସ୍କ ହେଉ କି ଜିନ୍ଦଲ ହେଉ କିମ୍ବା ଟାଟା ହେଉ, ସମସ୍ତେ ବିଦେଶକୁ ରପ୍ତାନି କରିବେ । ତାହାହେଲେ ଏସବୁର ଅଧିକାଂଶ ଉପଭୋକ୍ତା ହେଉଛନ୍ତି ଧନୀ ଦେଶର ଉପଭୋକ୍ତାମାନେ । ତେଣୁ ବିକାଶ ନାମରେ ଅତ୍ୟାଧୁନିକ ଜିନିଷର କଥା କୁହାଯାଉଛି ସେଥିମଧ୍ୟରୁ ରାଷ୍ଟ୍ରର ସ୍ୱାର୍ଥ କେତେ ଓ ରାଷ୍ଟ୍ର କହିଲେ ପ୍ରଥମେ ତାର ଜନତାଙ୍କ ସ୍ୱାର୍ଥ ପାଇଁ ଏସବୁ ଉତ୍ପାଦନ ନା କେବଳ ବିକାଶ ନାମରେ ଦେଶ ବାହାର ଧନୀକ ଶ୍ରେଣୀଙ୍କ ପାଇଁ ? ଯେଉଁ ଦେଶରେ ଖଣିଜ ସଂପଦ କମ ଅଛି ସେ ଦେଶ ଅନ୍ୟର ଖଣିଜ ସଂପଦ ଦ୍ୱାରା ବିକଶିତ । ଏହି ବିକାଶ ପ୍ରକ୍ରିୟାର ମୂଳରେ ରହିଛି ଶୋଷଣ । ଯେଉଁଠି ପ୍ରାକୃତିକ ସମ୍ବଳ

Digitized by srujanika@gmail.com

ବିଶେଷ କରି ଖଣିଜ ସଂପଦ ରହିଛି, ତାର ଉତ୍ତୋଳନ ପରେ ସେଠି ବିକାଶ ବଦଳରେ ବିନାଶ ହିଁ ଦୃଶ୍ୟମାନ ହେଉଛି । ପୃଥିବୀର ସବୁଠାରୁ ପ୍ରାକୃତିକ ସମ୍ପଦରେ ଧନୀ ଆଫ୍ରିକାର ଦେଶମାନେ । ଆଜି ସବୁଠାରୁ ଦାରିଦ୍ର୍ୟ ଓ ଶୋଷଣ ସେଠି ଭରପୂର । ଏସିଆର ଫିଲିପାଇନସ, ବର୍ମା ପରି ଦେଶମାନଙ୍କୁ ଦେଖ, ସେଠାର ଖଣି ଅଞ୍ଚଳ ମରୁଭୂମିରେ ପରିଣତ ହେଲାପରେ ସ୍ଥାନୀୟ ମୂଳ ଅଧିବାସୀ ଦାରିଦ୍ର୍ୟର ଶିକାର । ବର୍ମାରେ ଖଣିଜ ତେଲ ଗତ ୧୦୦ ବର୍ଷ ମଧ୍ୟରେ ଶେଷ ହୋଇଗଲା ପରେ ଏକ ଦରିଦ୍ର ଦେଶ ଭାବରେ ବର୍ତ୍ତମାନ ପରିଚିତ । ସେହିପରି ଅନେକ ଗରିବ ଲାଟିନ ଆମେରିକା ଦେଶରେ ତୈଳ ଖଣି ଅଛି । ତାକୁ ବଡ଼ ବଡ଼ ବହୁରାଷ୍ଟ୍ରୀୟ କଂପାନୀମାନେ ଉତ୍ତୋଳନ କରି ନେଇଗଲେ ଆମେରିକା ଓ ୟୁରୋପ ପାଇଁ । ବିକଶିତ କିଏ ହେଲା ? ଆଜି ଲାଟିନ୍ ଆମେରିକାର ଗରିବ ଦେଶ ଭେନ୍‌ଜୁଏଲା, ମେକ୍ସିକୋ, ଆର୍ଜେଣ୍ଟିନା, ବୋଲଭିଆରେ ଜନ ଆନ୍ଦୋଳନ ଦ୍ୱାରା ରାଜନୈତିକ ପରିବର୍ତ୍ତନ ଘଟୁଛି ବିକାଶର ପ୍ରଶ୍ନକୁ ନେଇ । ଆମ ଦେଶରେ ମଧ୍ୟ ବିହାର, ଝାଡ଼ଖଣ୍ଡ, ଛତିଶଗଡ଼, ଓଡ଼ିଶା ପରି ରାଜ୍ୟମାନଙ୍କରେ ଖଣିଜ ପଦାର୍ଥ ରହିଛି ଖଣି ଖନନ ଓ ବଡ଼ ବଡ଼ ଶିଳ୍ପ ମଧ୍ୟ ହୋଇଛି ସେହି ରାଜ୍ୟରେ । କିନ୍ତୁ ଦାରିଦ୍ର୍ୟ ସେହି ରାଜ୍ୟମାନଙ୍କରେ ଅନ୍ୟମାନଙ୍କ ତୁଳନାରେ ବେଶୀ । ଯେଉଁଠି ବଡ଼ ଶିଳ୍ପ ନାହିଁ କିମ୍ବା ଖଣି ବି ନାହିଁ ସେଠାରେ ବିକାଶର ଆନୁପାତିକ ଅଧିକ । ଯଥା ପଞ୍ଜାବ, ହରିଆଣା, ଗୁଜରାଟ । ଏସବୁର କାରଣ ହେଉଛି ଯେଉଁଠି ପ୍ରାକୃତିକ ସମ୍ପଦ ରହିଛି, ତାହା ସହ ଜୀବିକାର ସ୍ରୋତ ଯୋଡ଼ି ହୋଇ ରହିଛି । ତାହା ସରିଗଲେ ଲୋକେ ଦରିଦ୍ରରୁ ଦରିଦ୍ରତମ ବ୍ୟବସ୍ଥାକୁ ଚାଲି ଯାଆନ୍ତି । ଜୀବନର ମୌଳିକ ଆବଶ୍ୟକତା ଜଳ, ଅମ୍ଳଜାନ ଜଙ୍ଗଲର ସ୍ଥାୟିତ୍ୱ ତଥା ପ୍ରକୃତିର ସନ୍ତୁଳନ ଉପରେ ନିର୍ଭରଶୀଳ । ଯେଉଁଠି ଲୁହାପଥର ଖୋଳାଯାଉଛି, ଶେଷରେ ସେଠାର ଜଙ୍ଗଲ ଓ କୃଷି ପ୍ରଦୂଷଣର ଶିକାର ହୁଏ । ସେହିପରି ବକ୍‌ସାଇଟ୍ ଖୋଳା ହୋଇଗଲା ପରେ ନାଲି କାଦୁଅର ପାହାଡ଼ ପ୍ରଦୂଷିତ ବାୟୁମଣ୍ଡଳ ସହ ମରୁଭୂମି ହୋଇ ରହେ । ଯେଉଁଠି ବକ୍‌ସାଇଟ୍ ଅଛି ସେଠି ନଦୀ, ଝରଣା ରହିଛି । ସେସବୁ ନିରନ୍ତର ଭାବରେ ଜଳ ସଂରକ୍ଷକ । ବକ୍‌ସାଇଟ୍‌ରୁ ଆଲୁମିନା ଓ ଆଲୁମିନାରୁ ଆଲୁମିନିୟମ ତିଆରି ପ୍ରକ୍ରିୟାରେ ପ୍ରଚୁର ବିଦ୍ୟୁତ ଆବଶ୍ୟକ ହୋଇଥାଏ । ଏସବୁର ପ୍ରକ୍ରିୟାକରଣ ବେଳେ ଜଳ, ଜମି ଓ ଜଙ୍ଗଲ ଧ୍ୱଂସ ହୁଏ ଓ ପ୍ରଦୂଷଣ ସହ ତାପମାତ୍ରା ବୃଦ୍ଧି ମଧ୍ୟ ହୁଏ । ଇସ୍ପାତ ଓ ଆଲୁମିନା ନାମରେ କେତିକି ଜଳ, ଜଙ୍ଗଲ ଓ ଚାଷ ଜମି ନଷ୍ଟ କରାଯିବ ତାହାର ସୀମା ନିର୍ଦ୍ଧାରଣ କରାଯିବ ନାହିଁକି ? ବୈଜ୍ଞାନିକମାନେ କାହିଁକି ବାରଂବାର ପ୍ରାକୃତିକ ବିପର୍ଯ୍ୟୟର ସମ୍ଭାବନା ଗୁଡାକୁ ନେଇ ସତର୍କବାଣୀ ଶୁଣାଉଛନ୍ତି ? ବୈଷୟିକ ଜ୍ଞାନକୌଶଳ ଓ ପ୍ରଯୁକ୍ତିବିଦ୍ୟାର କରାମତି ଦେଖାଇ ସୁଖ ସମ୍ଭୋଗ ଓ ମୁନାଫା ପାଇଁ ପ୍ରାକୃତିକ ସଂପଦ ଗୁଡିକୁ ନିଃଦ୍

Digitized by srujanika@gmail.com

କରିଦେବା କ'ଣ ଯଥାର୍ଥ ? ପ୍ରକୃତି ସହ ନିବିଡ ଭାବରେ ସାମାଜିକ, ସାଂସ୍କୃତିକ ଓ ଆର୍ଥିକ ଜୀବନ ଜଡ଼ିତ ଥିବା ଆଦିବାସୀମାନେ ତ ବିଲୋପ ହୋଇଯିବେ, କିନ୍ତୁ ଯେଉଁମାନେ ଦୂରରେ ରହିଛନ୍ତି ସେମାନେ ମଧ ଜଳ, ଜଙ୍ଗଲ ଓ ସୁସ୍ଥ ପରିବେଶ ବିନା ବଞ୍ôଚି ପାରିବେ କି ? ଭବିଷ୍ୟତର ମୌଳିକ ଆବଶ୍ୟକତା ଗୁଡିକ ପାଇଁ ପ୍ରକୃତି ଠାରେ ଯଦି କିଛି ନଥିବ ସେତେବେଳେ କ'ଣ ଟେକନୋଲଜି ଅନ୍ନ, ପାଣି, ଜନ୍ମ କରିବ ସମସ୍ତ ଜୀବଙ୍କ ପାଇଁ ?

କେବଳ ପରିବେଶ, ଜଙ୍ଗଲ ଧ୍ୱଂସର ବାହନା କରି ଲୋକେ ପ୍ରଚଳିତ ଖଣି ଖନନ ଓ ଶିଳ୍ପାୟନକୁ ବିରୋଧ କରୁନାହାନ୍ତି । ବରଂ ଏହି ପ୍ରକ୍ରିୟା ଦ୍ୱାରା ସେମାନଙ୍କ ବଞ୍ôଚିବାର ଅଧିକାର ଚାଲିଯାଉଛି ଓ ନିରନ୍ତର ବିକାଶ (sustainable development) ର ଭିତ୍ତିଭୂମି ସବୁଦିନ ପାଇଁ ଧ୍ୱଂସ ହୋଇଯାଉଛି ବୋଲି ବିରୋଧ ହେଉଛି । ପୃଥିବୀରେ ସବୁଠି ତେଲ ନାହିଁ । ଯେଉଁଠି ତେଲ ଅଛି ତା ଉପରେ ସମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଲୋଲୁପ ଦୃଷ୍ଟି । ଆମେରିକା ୧୦୦ ବର୍ଷ ପାଇଁ ତାର ତେଲ ଭଣ୍ଡାରକୁ ସଂରକ୍ଷିତ ରଖି ଅନ୍ୟ ଦେଶ ଉପରେ ଆକ୍ରମଣ କିମ୍ବା ପ୍ରଭୁତ୍ୱ ବିସ୍ତାର କରି ତୈଳ ଖଣିକୁ ଅକ୍ତିଆର କରି ତେଲ ଦରକୁ ମଧ ନିୟନ୍ତ୍ରଣ କରୁଛି । ସେହିପରି ଇସ୍ପାତ ଦର ବଢ଼ିଗଲା ପରେ ପ୍ରଚୁର ଲାଭ ପାଇଁ ଇସ୍ପାତ କାରଖାନା ପାଇଁ ପୁଞ୍ଜି ନିବେଶ ପାଇଁ ପ୍ରତିଯୋଗିତା । ତାରି ମୂଳରେ ରହିଛି ଶସ୍ତାରେ ଲୁହାପଥର ଲୁଟିବା । ପ୍ରଚଳିତ ବିକାଶ ପାଇଁ ରଡ଼ି କରୁଥିବା ବିଶେଷଜ୍ଞମାନେ କାହିଁକି କହୁନାହାନ୍ତି ପ୍ରାକୃତିକ ସଂବଳର ଅଭାବବେଳେ କମ ବ୍ୟବହାର କରିବାକୁ ? ଏବଂ ଆମର ଲୁହାପଥର ବକ୍ସାଇଟ୍, କ୍ରୋମ ବଜାର ଦରରେ ବିକ୍ରି କରି ଆମ ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ଓ କ୍ଷୁଦ୍ରଶିଳ୍ପ ତଥା କୃଷିଭିତ୍ତିକ ଶିଳ୍ପ ପାଇଁ ପୁଞ୍ଜି ଯୋଗାଡ଼ କାହିଁକି କରାଯାଉନି ? କିନ୍ତୁ ଶସ୍ତାରେ ଏସବୁର ଲିଜ୍‌ରେ ଦେଇ ଶିଳ୍ପ ହେଲା ପରେ ଆମେ ସମ୍ବଳ ହରାଇଲେ ଓ ରାଜସ୍ୱ ମଧ ପାଇଲୁ ନାହିଁ । କେତେକ ଇଂଜିନିୟର ୫୦ ହଜାର ଟଙ୍କାରୁ ୨ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଦରମା ପାଇ ପାରନ୍ତି । ତାର ସଂଖ୍ୟା ଅତି ନଗଣ୍ୟ । କିନ୍ତୁ ଓଡ଼ିଶାର ଶିକ୍ଷକ ମାତ୍ର ୧୫୦୦ ଟଙ୍କା ପାଇବ ତାହା ମଧ ୫ ଜଣ ଶିକ୍ଷକ ବଦଳରେ ୨ ଜଣ ଶିକ୍ଷା ସେବକ ନାମରେ ଅସ୍ଥାୟୀ ନିଯୁକ୍ତି ପାଇବେ । ଅନ୍ୟ ଦିଗରେ ଲକ୍ଷ ଲକ୍ଷ ଆଦିବାସୀ ଦଳିତ ଓ ଚାଷୀ ନିଜ ନିଜ ଜୀବିକା ସହ ବଞ୍ôଚିବାର ଅଧିକାର ହରାଉଛନ୍ତି । ଏମାନଙ୍କୁ ବିକାଶ ପାଇଁ ତ୍ୟାଗ କରିବା କଥା କୁହାଯାଉଛି । ତ୍ୟାଗ କାହାପାଇଁ ? ଯେଉଁମାନେ ସମସ୍ତ ସୁବିଧା ନେଇ ଉଚ୍ଚ ଡିଗ୍ରୀ ପାଇ ଦେଶ ଓ ବିଦେଶରେ ଲକ୍ଷ ଲକ୍ଷ ଟଙ୍କା ଦରମା ପାଇବେ ଓ କୋଟି କୋଟି ଟଙ୍କାର ମାଲିକ ହେବେ ସେମାନଙ୍କ ପାଇଁ ସାଧାରଣ ମଣିଷମାନେ କାହିଁକି ତ୍ୟାଗ କରି ଚାଲିଥିବେ ? ପ୍ରତିଦିନ ବଜାରକୁ ନୂଆ ନୂଆ ବ୍ରାଣ୍ଡର ବିଦେଶୀ ମଟର ଗାଡ଼ି, ଉଡ଼ାଜାହାଜ ଓ ସୌଖୀନ ଘରକରଣା ଶିଳ୍ପଜାତ

Digitized by srujanika@gmail.com

ପଦାର୍ଥର ଉତ୍ପାଦନ ହେଉଛି । ତାର ବ୍ୟବହାର ପାଇଁ ପ୍ରାକୃତିକ ସଂପଦକୁ ଶେଷ କରାଯାଉଥିବାବେଳେ ତ୍ୟାଗ କରୁଥିବା ମଣିଷମାନଙ୍କ ପାଇଁ ଦୈନିକ ୫୦ ଟଙ୍କା ମଜୁରୀ ୨୦୦ ଦିନ ପାଇଁ ଗ୍ୟାରେଣ୍ଟି ନଥିବା ଅର୍ଥ ବ୍ୟବସ୍ଥାରେ ବିକାଶର ପ୍ରବକ୍ତାମାନଙ୍କୁ ଦିନେ ଲୋକେ ଲଣ୍ଡା କରି ଠିଆ କରାଇ ପ୍ରଶ୍ନ କରିବେ ଦଲାଲି ପାଇଁ କି ପୁରସ୍କାର ପାଉଛ ? ତେଣୁ ପ୍ରଚଳିତ ବିକାଶର ସଂଜ୍ଞା ଓ ପରିଭାଷା ଜନବିରୋଧୀ । ଏହି ବିକାଶକୁ ଥୋପି ଦେଲେ ପ୍ରତିରୋଧ ଅପରିହାର୍ଯ୍ୟ । ଏହି ବିରୋଧକୁ ଭଣ୍ଡୁର କରିବାକୁ କେତେକ ପ୍ରବକ୍ତା କହନ୍ତି ଯେ ଯେଉଁମାନେ ବିରୋଧ କରନ୍ତି, ସେମାନେ ବିଦେଶ ଯାଆନ୍ତି, ଅର୍ଥ ଉପାର୍ଜନ କରନ୍ତି । ସେହି ପ୍ରବକ୍ତାମାନେ ଏନ୍‌ଜିଓ ମାନଙ୍କ ଉଦ୍ଦେଶ୍ୟରେ କହୁଛନ୍ତି । ଓଡ଼ିଶାର ଶିଳ୍ପ ବିରୋଧୀ ଜନ ଆନ୍ଦୋଳନ କରିବା କୌଣସି ଏନ୍‌ଜିଓର ସାହସ ନାହିଁ । ତେଣୁ ଏକ ମିଥ୍ୟା ତଥ୍ୟ ଦେଇ ବିଭ୍ରାନ୍ତି କରିବା ମଧ ଦଲାଲଙ୍କ ଏକ ଯୋଜନାବଦ୍ଧ ଉଦ୍ୟମ । ବିକାଶର ପ୍ରବକ୍ତାମାନେ ରାଜ୍ୟ ଓ କେନ୍ଦ୍ର ସରକାରମାନଙ୍କୁ ପ୍ରଶ୍ନ କରିବେ କି ? ଚୀନରେ ଆମ ଦେଶର ଲୁହାପଥର ଖଣି ୩ ଗୁଣ ମହଜୁଦ ଅଛି । ଚୀନ କାହିଁକି ଲୁହାପଥର ଓଡ଼ିଶାରୁ ଅମଦାନୀ କରି ଖାଲି ସ୍ଥାନ ପୋତି ସମତଳ କରୁଛି ଭବିଷ୍ୟତରେ ପୁଣି ବ୍ୟବହାର କରିବା ପାଇଁ ? ଜର୍ମାନୀ ଓ କାନଡ଼ା ଆଲୁମିନା ଉତ୍ପାଦନକୁ ବନ୍ଦ କରି ସେମାନଙ୍କ ବକ୍ସାଇଟକୁ ଗଚ୍ଛିତ ରଖିବା ସହ ପ୍ରଦୂଷଣରୁ ମୁକ୍ତ ରହିବା ପାଇଁ ଗରିବ ଦେଶମାନଙ୍କୁ କାହିଁକି ଉତ୍ପାଦନ ପାଇଁ ଆସୁଛନ୍ତି ? ଓଡ଼ିଶା ଓ ଛତିଶଗଡ଼ରେ ଛତୁ ଫୁଟିବା ପରି ସ୍ପଞ୍ଜ ଆଇରନ ଶିଳ୍ପ ନିର୍ମାଣ କରି ଉତ୍ପାଦିତ ପଦାର୍ଥ ବିଦେଶକୁ ରପ୍ତାନି ଦ୍ୱାରା ଆମ ଲାଭ କେତେ ହିସାବ ମାଗିବେ କି ? ଯେଉଁଠି ଏହି ଶିଳ୍ପ, ସେହି ଅଞ୍ଚଳର ଲୋକେ ପିଇବା ପାଣି ଓ ନିଶ୍ୱାସ ନେବାପାଇଁ ମୁକ୍ତ ବାୟୁରୁ ବଞ୍ଚିତ । ଚାଷ ମଧ ବାଧାପ୍ରାପ୍ତ । ଶିଳ୍ପନାମରେ ଦୁର୍ବିସହ ଜୀବନ କଟାଉଥିବା ଗାଁ ଲୋକେ ଆଦିବାସୀ କିମ୍ବା ଚାଷୀ ହୁଅନ୍ତୁ, ସେମାନେ କ'ଣ ମଣିଷ ନୁହନ୍ତି ? ଆଉ ତ୍ୟାଗ ନାମରେ ଜଳ, ଜମି ଓ ଜଙ୍ଗଲକୁ ଶେଷ କରି ଦିଆଗଲେ ଆଉ ୫୦ ବର୍ଷ ପରେ ପ୍ରଚଳିତ ବିକାଶର ଚକ ଚାଲି ପାରିବ କି ? ଭୋଗ କରୁଥିବା ପୁଞ୍ଜିପତି, ଶିଳ୍ପପତି ଓ ତାଙ୍କଠାରୁ ପାଉଥିବା ମୋଟା ଦରମା ସ୍ଥାନ ଛାଡ଼ି, ଦେଶ ଛାଡ଼ି ଚାଲିଯିବେ, ସେମାନଙ୍କ ଚାଲାକ୍ ପଣିଆକୁ ବ୍ୟବହାର କରିବା ପାଇଁ । ଆଉ ବାକି ସବୁ କରିବେ କ'ଣ ? ବଞ୍ଚିପାରିବେ ତ ଗଦା ଗଦା ଆବର୍ଜନା ଓ ଶୁଖିଲା ମରୁଭୂମିରେ ? ଯେଉଁମାନେ ନଦୀ ଯାଉ, ଜଳ ଯାଉ, ଜଙ୍ଗଲ ଯାଉ ପଛେ ଶିଳ୍ପ ହେଉ ବୋଲି କହୁଛନ୍ତି, ସେମାନେ ଖୋଲା ବଜାର ଜଗତୀକରଣ ଓ କଂପ୍ୟୁଟର ଯୁଗର ଦ୍ୱାହି ଦେଇ ସ୍ୱପ୍ନ ଦେଖୁଛନ୍ତି । ସେମାନେ ନିଜ ବିକାଶର ପରିଧି ଭିତରେ ଆଉ ପଛକୁ ଫେରିବାର ନାହିଁ ବୋଲି କହିପାରନ୍ତି । ବ୍ୟୋମଯାନରେ ଉଡିବା ଲୋକ ତଳକୁ ଖସି ନପାରେ । ଅନ୍ତତଃ ଉଡ଼ନ୍ତା ମଣିଷ ପାଇଁ ସମସ୍ତ ଖର୍ଚ୍ଚ ବ୍ୟୟ ଓ

Digitized by srujanika@gmail.com

ବ୍ୟବହୃତ ସମ୍ବଳର ପରିଣାମରେ ଭୂଇଁରେ ଚାଲୁଥିବା ଓ ମାଟିରୁ ଦରାଣ୍ଡି ଜୀବନ ବଞ୍ଚାଉଥିବା ମଣିଷମାନଙ୍କ ଆଗକୁ ଗତି ବନ୍ଦ ହୋଇଗଲେ ସମାଜ ତିଷ୍ଠି ରହିବ ତ ? ସେହି ମାଟିର ମଣିଷମାନେ ଯଦି ଟେକା ମାରି କିମ୍ବା ଧନୁରେ ଶର ମାରି ଉଡ଼ନ୍ତା ମଣିଷର ପକ୍ଷ ଛେଦନ କରି ମାଟିତଳକୁ ଖସାଇ ଦେବେ, ସେତେବେଳେ ବିକାଶର ସଂଜ୍ଞା ବଦଳିଯିବାକୁ ବାଧ ହେବ । ତେଣୁ ବେଳ ଥାଉ ଥାଉ ବିକଳ୍ପ ବିକାଶ ପାଇଁ ବୁଦ୍ଧିବିକାଳି ପ୍ରବକ୍ତାମାନେ ଆତ୍ମ ସମୀକ୍ଷା କରନ୍ତୁ ।

ବାଲିଆପାଳ ଯୁଦ୍ଧ ଘାଟି ଓ ବିରୋଧୀ ଆନ୍ଦୋଳନ ଲକ୍ଷାଧିକ ପରିବାରଙ୍କର ଜୀବିକା ବଞ୍ଚାଇ ଦେବା ସହ ଖାଦ୍ୟ ସୁରକ୍ଷାର ସହାୟକ ହେଲା । ଗନ୍ଧମାର୍ଦ୍ଦନକୁ ବାଲୋକ୍‌ର ଆଲୁମିନା ପ୍ରକଳ୍ପରୁ ରକ୍ଷା ପାଇଯିବା ଦ୍ୱାରା ହଜାର ହଜାର ପରିବାର ଜଙ୍ଗଲ, କୃଷି ଓ ଜଳର ସୁରକ୍ଷା କରି ନିଜର ଜୀବନ ଓ ଜୀବିକା ନିର୍ବାହ କରିପାରୁଛନ୍ତି, ଗୋପାଳପୁର ଟାଟା ଇସ୍ପାତ କାରଖାନା ନହେବା ଫଳରେ ୩ ହଜାର ଏକର ଘଞ୍ଚ ଜଙ୍ଗଲ ପିପଳପଙ୍କା ଓ ଋଷିକୁଲ୍ୟା ନଦୀ ବଞ୍ଚିଗଲା, ଲକ୍ଷ ଲକ୍ଷ ସାଧାରଣ ଲୋକ ଜଳସେଚନ ଓ ପିଇବା ପାଣିର ସଂକଟରୁ ରକ୍ଷା ପାଇଗଲେ । ତାସହ ୨୦ ଖଣ୍ଡ ଗାଁର ଗ୍ରାମବାସୀ ବିସ୍ଥାପନର ଯନ୍ତ୍ରଣାରୁ ମୁକ୍ତିପାଇ କୃଷି, କିଆଫୁଲ ଓ ସମୁଦ୍ରର ମାଛ ଧରା ଜୀବିକାକୁ ସୁରକ୍ଷିତ ରଖି ପାରିଛନ୍ତି । ସେହିପରି ପୋସ୍କୋକୁ ବନ୍ଦ କରାଯାଇ ପାରିଲେ କେବଳ ଲୁହାପଥରରୁ ରାଜ୍ୟ ଏକ ଲକ୍ଷ ୨୦ ହଜାର କୋଟି ଟଙ୍କାର କ୍ଷତିକୁ ରୋକି ପାରିବ ଓ ଖଣ୍ଡାଧାର ଜଳ ପ୍ରପାତ ସମେତ ଜଙ୍ଗଲ ଧାନ, ପାନ ଓ ମୀନ ଉତ୍ପାଦନ କ୍ଷେତ୍ରରେ ଥିବା ପ୍ରାୟ ୨୦ ହଜାର ଲୋକ ନିଜର ଜୀବିକା ବଞ୍ଚାଇ ପାରିବେ । କୁଜଙ୍ଗ ଅଞ୍ଚଳରେ ୪ ହଜାର ବାହାରୁ ଆସି କୃଷି ଶ୍ରମିକଭାବେ କାମ କରୁଥିବା ବ୍ୟକ୍ତିମାନଙ୍କ ଜୀବିକା ସୁରକ୍ଷିତ ରହିପାରିବେ । ରାଷ୍ଟ୍ରର ସୁରକ୍ଷା ଦୃଷ୍ଟିରୁ ବିଦେଶୀ କଂପାନୀର ନିୟନ୍ତ୍ରଣରେ ବନ୍ଦର ରହିବା ଅତି ଗୁରୁତର ସମସ୍ୟା । ପୋସ୍କୋକୁ ହଟାଇଲେ ବିଦେଶୀ କଂପାନୀର ଲୁଟକରଣରୁ ରାଜ୍ୟବାସୀ ରକ୍ଷା ପାଇବେ । ତେଣୁ ଏସବୁ ପ୍ରକଳ୍ପ ଦ୍ୱାରା ହାତଗଣତିରେ କେତେକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ମୋଟା ଦରମା ମିଳିଗଲେ ବିକାଶର ଧ୍ୱଜା ଉଡି ପାରିବ ନାହିଁ । ଅଳ୍ପ ଶିଳ୍ପାୟନ ପରେ ସୁନ୍ଦରଗଡ଼, ମୟୂରଭଞ୍ଜ, କେଉଁଝର, କୋରାପୁଟ ଜିଲ୍ଲାର ପ୍ରାକୃତିକ ସଂପଦ ଶେଷ ହେବାରେ ଲାଗିଛି । ଏସବୁ ସରିଗଲା ପରେ ସେଠାର ଆଦିବାସୀ, ଦଳିତ ଓ ଅଣ ଚାଷୀଙ୍କ ଅବସ୍ଥା ଅତି ଶୋଚନୀୟ । ଜଳ ଓ ଜଙ୍ଗଲ ବିଲୋପ ହେବାକୁ ବସିଲାଣି । ତାପରେ ବିକାଶର ରୂପ କ'ଣ ହେବ ସବୁଜ ନା ମରୁଭୂମି !

ଓଡ଼ିଶାରେ ନଦୀ, ଝରଣା ରହିଲେ କୃଷିର ବିକାଶ ହେବ । ନଦୀ, ଝରଣାରେ ଜଳର ନିରନ୍ତର ସ୍ରୋତ ପାଇଁ ଜଙ୍ଗଲର ସ୍ଥାୟିତ୍ୱ ଜରୁରୀ । ଜଙ୍ଗଲ ଓ ଜଳକୁ ନେଇ ଜମିର

Digitized by srujanika@gmail.com

ଉର୍ବରତା ସମ୍ଭବପର । ଏହି ତିନୋଟି ପ୍ରାକୃତିକ ପୁଞ୍ଜିର ସଦ୍‌ବ୍ୟବହାର ସହ ତାର ବିକାଶରେ ଏକ ପ୍ରାକୃତ ଅର୍ଥ ବ୍ୟବସ୍ଥା ନିରନ୍ତର ଗତିଶୀଳ ହୋଇ ଚାଲିବା ସମ୍ଭବପର । ଓଡ଼ିଶାରେ ଆଖୁଚାଷର ବିକାଶ ସହ ଚିନିକଳ ହେବାରେ ଅସୁବିଧା କ'ଣ ? ଘରୋଇକରଣ ପରେ ବି ଥିବା ଚିନିକଳ ବନ୍ଦ କରି ଦିଆଗଲା କାହିଁକି ? ପୁରାତନ ଛୋଟ କଳ ଗଲା କୁଆଡ଼େ ? ଥିବା ସୂତାକଳକୁ ବନ୍ଦ କଲା କିଏ ? କଳାହାଣ୍ଡିର ମାଟି କପା ଚାଷ ପାଇଁ ଉତ୍କୃଷ୍ଟ । ବର୍ତ୍ତମାନ ସ୍ୱଚ୍ଛ କପା ବିକ୍ରି ହୋଇପାରୁନି । ଯଦି ଓଡ଼ିଶାର ସୂତା କଳର ବିକାଶ ହୋଇ କପା ଚାଷକୁ ବିକଶିତ କରାଯାଆନ୍ତା ଓଡ଼ିଶାର ଲକ୍ଷ ଲକ୍ଷ ଗାଁର କୃଷି ଶ୍ରମିକ ଓ ଶିକ୍ଷିତ ବେକାର ଏପରିକି କୁଶଳୀ ଯୁବକ ଯୁବତୀ କର୍ମନିଯୁକ୍ତ ହୋଇ ପାରନ୍ତେ । କେବଳ ଗୁଜରାଟର ସୁରାଟ ସୂତାକଳରେ ଓଡ଼ିଶାର ପ୍ରାୟ ୫ ଲକ୍ଷରୁ ଅଧିକ ଗ୍ରାମ୍ୟ ଶ୍ରମିକ କାମ କରନ୍ତି । ଓଡ଼ିଶାର କୃଷିରେ ଏବେ ବି ତୈଳବୀଜ ଉତ୍ପାଦନ କମି କମି ଶୂନ ହେବାକୁ ଯାଉଛି । ତାର ବିକାଶରେ ଛୋଟ ଛୋଟ ତେଲ କଳ ବସିପାରନ୍ତା ଓ ବଜାର ଚାହିଦା ପୂରଣ କରିପାରନ୍ତା । ସମ୍ବଲପୁରୀଠାରୁ ଆରମ୍ଭ କରି ମାଣିଆବନ୍ଧ ଓ ଅନେକ ଆଦିବାସୀ କ୍ଷେତ୍ରର ବସ୍ତ୍ରବୁଣାକୁ ସାମାନ୍ୟ ଆଧୁନିକୀକରଣ କରିଆରେ ଉତ୍ପାଦନକୁ ବୃଦ୍ଧିକରି ବଜାର ସୃଷ୍ଟି କରାଯାଇପାରନ୍ତା ଓ ରପ୍ତାନି ମଧ୍ୟ ହୋଇପାରନ୍ତା । ଏସବୁ କ'ଣ ଶିଳ୍ପାୟନ ନୁହେଁ ? ଏହା କ'ଣ ବିକାଶ ନୁହେଁ ? ଏସବୁକୁ କିଏ ବିରୋଧ କରୁଛି ? ହଁ ବିରୋଧ କରୁଛନ୍ତି ଜଗତୀକରଣ, ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାର ପୃଷ୍ଠପୋଷକମାନେ ଯେଉଁମାନେ ବିକାଶ ନୀତି ଓ ରାଜନୀତିକୁ ନିୟନ୍ତ୍ରଣ କରୁଛନ୍ତି । ତେଣୁ ବିକାଶର କଥା କହି ବିନାଶର ଶିକାର ହେଉଥିବା ମଣିଷମାନଙ୍କୁ ଆଉ ହଟହାସ୍ୟ କରିବା ବନ୍ଦ ହେଉ । କାଶୀପୁର ଠାରୁ କଳିଙ୍ଗନଗର ପର୍ଯ୍ୟନ୍ତ ଏକ ସ୍ୱର : "ତାହା ହେଉଛି ବିକାଶ ନାମରେ ବିନାଶକୁ ଆଣ ନାହିଁ ।" ରାଜ ଶକ୍ତି ପ୍ରଗତି ନାମରେ ଗଣତନ୍ତ୍ରରେ ତଣ୍ଟି ଚିପି ଗୁଳି ଚଳାଇ ବିକାଶର ଚକକୁ ଗଡ଼ାଇବା ପାଇଁ ସାମ୍ରାଜ୍ୟବାଦୀ ଶକ୍ତିର ଦଲାଲ ହୋଇ ଯାଇଛି । ତେଣୁ ବିକାଶକୁ କେନ୍ଦ୍ର କରି ଗଣ ସଂଗ୍ରାମ ଅନିବାର୍ଯ୍ୟ । କିଏ କେଉଁ ପଟେ ରହିବେ ବିଶେଷଜ୍ଞ, ବୁଦ୍ଧିଜୀବୀ, ସାମାଜିକ ଓ ରାଜନୈତିକ କର୍ମୀ ଓ ରାଜନେତାମାନେ ସ୍ଥିର କରିବା ସମୟ ଆସିଯାଇଛି । ଯେଉଁଠି ପ୍ରାକୃତିକ ସଂପଦ ଅଛି ସେଠି ଆଦିବାସୀ ଅଛନ୍ତି ଯେପରି ସତ୍ୟ, ସେପରି ସେହି ପ୍ରକୃତିଦତ୍ତ ସଂପତ୍ତିର ମାଲିକ ମଧ୍ୟ ମୂଳ ଅଧିବାସୀ ଆଦିବାସୀ । ତେଣୁ ମଣିଷ ସମାଜର ସାମୂହିକ ବିକାଶ ପାଇଁ ଓ ଆଗାମୀ ବଂଶଧରଙ୍କ ପାଇଁ ସଂରକ୍ଷଣ ପାଇଁ କେତିକି ସାରିବା ସେଥିପାଇଁ ବିକଳ୍ପ ନୀତି ସ୍ଥିର କରାଯାଉ । ନୀତିର ଉପଯୋଗିତାର ଧ୍ୟେୟ ରହିବ ବିକାଶର ଫଳର ସମବଣ୍ଟନ । ନଚେତ ବିଦ୍ରୋହ ଅବଶ୍ୟମ୍ଭାବୀ ।

Digitized by srujanika@gmail.com

## ବିକଳ୍ପ ବିକାଶ ନୀତି ପାଇଁ ବିକଳ୍ପ ରାଜନୀତି

ପ୍ରାକୃତିକ ସଂପଦର ଲୁଟକରଣକୁ ବନ୍ଦ କରିବାକୁ ହେଲେ ପ୍ରଚଳିତ ବିକାଶ ଧାରା ତଥା ଆର୍ଥିକ ନୀତି ଓ ବ୍ୟବସ୍ଥାକୁ ପରିବର୍ତ୍ତନ କରିବାକୁ ହେବ । କରିବ କିଏ ? ବର୍ତ୍ତମାନ ଶାସନରେ ଥିବା କିମ୍ବା ଶାସନକୁ ଆସିବାକୁ ଥିବା ରାଜନୈତିକ ଦଳମାନେ ଏହି ବ୍ୟବସ୍ଥାର ପୃଷ୍ଠପୋଷକ ସାଜିଛନ୍ତି । ତେଣୁ ସେହି ଦଳମାନଙ୍କରେ ସେପରି ବୈପ୍ଳବିକ ପରିବର୍ତ୍ତନ ନ ଆସିଲେ ସେମାନଙ୍କ ଠାରୁ ଆଶା କରିବା ବ୍ୟର୍ଥ । କିନ୍ତୁ ପରିବର୍ତ୍ତନ ସ୍ୱପ୍ନରେ ସୁଦ୍ଧା ସମ୍ଭବପର ନୁହେଁ । ବର୍ତ୍ତମାନ ଦେଶର ମୁଖ୍ୟ ଶାସନ ରାଜନୈତିକ ଦଳମାନଙ୍କର ନୀତି କର୍ପୋରେଟ ଶକ୍ତିମାନଙ୍କ ଦ୍ୱାରା ପ୍ରଭାବିତ ଓ ନିୟନ୍ତ୍ରିତ ମଧ୍ୟ । ବିଶ୍ୱ ବ୍ୟାଙ୍କ ଓ ବିଶ୍ୱ ବାଣିଜ୍ୟ ସଂଗଠନର ନିର୍ଦ୍ଦେଶରେ ବିକାଶ ନୀତିକୁ ଯେଉଁ ରାଜନୈତିକ ଦଳମାନଙ୍କର ସରକାର ମାନେ ନିଜର ନୀତି ରୂପେ ବିନା ଦ୍ୱିଧାରେ ଗ୍ରହଣ କରି ସାରିଲେଣି, ସେଠି ରାଜନୀତି ଜନବାଦୀ ହେବାର ଆଉ ପ୍ରଶ୍ନ ଉଠୁ ନାହିଁ । ସାମ୍ରାଜ୍ୟବାଦୀ ଶକ୍ତିର ଛାୟା ତଳେ କେବଳ ବିକାଶର ଦ୍ୱାହି ଦେଇ ଆର୍ଥିକ ଅଭିବୃଦ୍ଧିର ହିସାବ ଦିଆଯାଉଥିବ ଦେଶର ପ୍ରଗତିର ସୂଚକ ରୂପେ । ଏହି ବିକାଶ ଅଭିଧାନରେ ଦେଶ କହିଲେ ମାଟିର ମଣିଷମାନେ ଗଣତି ହେବାର ନାହିଁ । ନିମ୍ନ ମଧ୍ୟବିତ୍ତ ମଧ୍ୟ କ୍ରମଶଃ ତାଲିକାରୁ ବାଦ ପଡିବେ । କେବଳ ଏକ ଧନୀକ, ପ୍ରତିଷ୍ଠିତ ଓ ସୁବିଧା ହାସଲ କରିପାରୁଥିବା ସାମର୍ଥ୍ୟ ଶ୍ରେଣୀଭୁକ୍ତ ତଥାକଥିତ ଭଦ୍ର ସମାଜକୁ ହିଁ ବିକାଶର ରାଜନୀତିରେ ସ୍ଥାନ ମିଳିବ । ସେମାନେ ହିଁ କର୍ପୋରେଟ ସଂସ୍କୃତି, ସଭ୍ୟତା, ଆର୍ଥିକ ପରିଚାଳନା ଓ ରାଜନୈତିକ ନିଷ୍ପତ୍ତିରେ ମୁଖ୍ୟ ଭୂମିକାରେ ରହିବେ । ନାମକୁ ମାତ୍ର ସଂଖ୍ୟା ଗଣତି ପାଇଁ ବର୍ତ୍ତମାନ ବିଧାନସଭା, ଲୋକସଭାକୁ ସାଧାରଣ ବର୍ଗର କିଛି ପ୍ରତିନିଧି ଯାଇପାରନ୍ତି ଦଳୀୟ ପ୍ରାର୍ଥୀ ହେବାର ସୁଯୋଗ ପାଇ । କିନ୍ତୁ ସେମାନେ ନିଜର ବିବେକକୁ ବନ୍ଧା ପକାଇ କେବଳ ସୁଖ ସୁବିଧା ପାଇଁ ହିଁ ରାଜନୈତିକ ବ୍ୟବସ୍ଥା ଭିତରେ ରହିବେ ଏବଂ ଜୀବନ ସାରା ପେନସନ ପାଇବେ । ନିକଟ ଭବିଷ୍ୟତରେ କର୍ପୋରେଟ ସଂସ୍କୃତି ଓ ସଭ୍ୟତାର ପ୍ରତିନିଧିତ୍ୱ କରିପାରୁଥିବା ଯୋଗ୍ୟତା ଭିତ୍ତିରେ ହିଁ ପ୍ରାର୍ଥୀ ହେବେ ଶାସକ ଶ୍ରେଣୀ ରାଜନୈତିକ ଦଳମାନଙ୍କ ଦ୍ୱାରା । ରାଜନୀତିର ଗତି କୁଆଡ଼କୁ ଯାଉଛି ତାହାକୁ ଆମମାନଙ୍କୁ ଆଜି ହିଁ ବିଚାର କରିବାକୁ ହେବ । ଆମେ ଯେଉଁମାନେ ଯଦି ବାସ୍ତବରେ ଏହି ରାଜନୀତିରେ ବିକାଶର ଦିଗକୁ ଭଲଭାବେ ବୁଝି ପାରୁଛେ ଏବଂ ହୃଦୟଙ୍ଗମ କରିପାରୁଛେ ତାହାହେଲେ ମାନିବାକୁ ପଡ଼ିବ ଆଜି ଯେଉଁ ବିକାଶର ରାଜନୀତି ଚାଲିଛି ତାହା ଯେ ଆମ ପ୍ରାକୃତିକ ସଂପଦ ଓ ସେଥିରୁ ଜୀବନ ଓ ଜୀବିକା ପାଉଥିବା ସାଧାରଣ ମଣିଷମାନଙ୍କ ବଞ୍ଚିବାର ଅଧିକାରକୁ ଖତମ କରିବ ଏକଥା ନିଶ୍ଚିତ ।

---

Digitized by srujanika@gmail.com

ଆଜି ଗାଁରେ ଚାଷର ସମସ୍ୟା ଓ ତାର ସମାଧାନ, ଗାଁର ବେକାରୀଙ୍କୁ କର୍ମ ସଂସ୍ଥାନ କିମ୍ବା ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ ସେବା, ରାଜନୈତିକ ଦଳୀୟ ପ୍ରତିଯୋଗିତାରେ ମୂଳ ପ୍ରସଙ୍ଗ ହୋଇ ରହିନାହିଁ । ବର୍ତ୍ତମାନ କେବଳ ହଜାର ହଜାର କୋଟି ଟଙ୍କାର ବିଦେଶୀ ପୁଞ୍ଜିର ବିନିଯୋଗ ନାମରେ ବଡ଼ ବଡ଼ ପ୍ରକଳ୍ପର ପରିକଳ୍ପନା ଓ ତା' ଜରିଆରେ ନୂଆ ନୂଆ ବିଶ୍ୱରୂପୀ ସ୍ୱପ୍ନ ଦେଖାଇବା ବାତାବରଣ ରାଜନୈତିକ ନେତୃତ୍ୱର ସଫଳତା ରୂପେ ବିବେଚିତ । ଓଡ଼ିଶା ପରିପ୍ରେକ୍ଷୀରେ ଏହା ଆହୁରି ଅଧିକ ପ୍ରାସଙ୍ଗିକ । ନବୀନ ପଟ୍ଟନାୟକ ସରକାରର ଏକ ବିଶିଷ୍ଟ ଚରିତ୍ର ହେଲା ଏହି ସରକାର ଏକ ରାଜନୈତିକ ନେତୃତ୍ୱାଧୀନରେ ପରିଚାଳିତ ନୁହେଁ । ନବୀନ ପଟ୍ଟନାୟକ ଆରମ୍ଭରୁ ଜଣେ ଅଣରାଜନୈତିକ ଓ ଦାୟିତ୍ୱହୀନ ବ୍ୟକ୍ତି ରୂପେ ଆୟସ ଜୀବନ କଟାଉଥିଲେ । ସେପରି ଜଣେ ବ୍ୟକ୍ତି ନିମନ୍ତ୍ରିତ ହୋଇ ଆସିଲେ ରାଜନୀତିକୁ ବାପର ପୁଅ ରୂପେ ଉତ୍ତରାଧିକାରୀ ହେବାକୁ । ତାପରେ ପରେ ସେ ସଂପୂର୍ଣ୍ଣଭାବେ ପ୍ରଶାସନିକକଳର ଜଣେ ମ୍ୟାନେଜର ହୋଇ କର୍ପୋରେଟ ଶକ୍ତିମାନଙ୍କର ଦଲାଲ ରୂପେ ଶାସନ ଦାୟିତ୍ୱରେ ଅଛନ୍ତି । ଭାରତୀୟ ଜନତା ପାର୍ଟି କେବଳ କ୍ଷମତା ଉପଭୋଗରେ ନିଜ ଦଳୀୟ ଏଜେଣ୍ଡାର ସ୍ୱାର୍ଥରେ ହିଁ ଚାଲିବା ସ୍ୱାଭାବିକ । ବିଜେଡ଼ି ଏକ ରାଜନୈତିକ ଦଳ ନୁହେଁ କାରଣ ଏହି ଦଳ ଏକ ବ୍ୟକ୍ତି ଉପରେ ନିର୍ଭରଶୀଳ । ନିଜେ ମୁଖ୍ୟମନ୍ତ୍ରୀ ରାଜ୍ୟବାସୀଙ୍କ ଭାଷା ଜାଣନ୍ତି ନାହିଁ କିମ୍ବା ବୁଝିବାକୁ ସମର୍ଥ ହୋଇନାହାନ୍ତି । ସେହିପରି ବ୍ୟକ୍ତି ୭ ବର୍ଷ ଧରି ଶାସନରେ ରହିଲେଣି । ଏଥିରୁ ପ୍ରମାଣିତ ହେଉଛି ଯେ ମୁଖ୍ୟ ବିରୋଧୀଦଳ ଓ ଅତୀତର ବଡ଼ ଶାସକ ଦଳ ବୈଚାରିକ ସ୍ତରରେ ଓ ନେତୃତ୍ୱରେ ନୈତିକତା ସ୍ତରରେ କେତେ ଯେ ଦୁର୍ବଳ ତାହା ବାରି ହେଉଛି । ପୁଣି ଓଡ଼ିଶାର ରାଜନୀତି ପଛୁଆ ଏକଥା ମଧ୍ୟ ପ୍ରତିପାଦିତ ହୋଇଛି । କଂଗ୍ରେସର ଓ ବର୍ତ୍ତମାନ ରାଜ୍ୟ ବିଜେଡ଼ି ଓ ବିଜେପି ସରକାର ମଧ୍ୟରେ ବିକାଶ ନୀତିକୁ ନେଇ କୌଣସି ନୀତିଗତ ପାର୍ଥକ୍ୟ ନାହିଁ । ତେଣୁ ରାଜନୈତିକ ବିଚାରରେ ସଂଘର୍ଷ ମୋଟେ ନାହିଁ । କେବଳ କ୍ଷମତା ପାଇଁ ଲଢ଼େଇ ।

ଏତିକିବେଳେ ଆମେ ଯେତେବେଳେ ବିକାଶର ବିକଳ୍ପ ଧାରା ପାଇଁ ଜନ ଆନ୍ଦୋଳନ ଓ ଜନ ଜାଗରଣକୁ ସମର୍ଥନ ଓ ସହଯୋଗ ଦେବା, ସେତିକିବେଳେ ଆମ ଚିନ୍ତା ଓ ଚେତନାରେ ଅଣରାଜନୈତିକ ଦୃଷ୍ଟିଭଙ୍ଗୀ ଓ ବିଚାର ନରହୁ । କାରଣ ସବୁ ନିଷ୍ପତ୍ତି ରାଜନୈତିକ ସ୍ତରରେ ହେଉଥିବା ବେଳେ ଆମେ ଯେଉଁ ଜନ ବିରୋଧୀ ନିଷ୍ପତ୍ତିଗୁଡ଼ିକୁ ପ୍ରତିବାଦ କରୁଛେ ଓ ପ୍ରତିରୋଧ ସହ ବିକଳ୍ପ ବାଟ ପାଇଁ ଉଦ୍ୟମ କରୁଛେ କିମ୍ବା କୌଣସି ଜନ ଆନ୍ଦୋଳନକୁ ସେହି ଦିଗରେ ଶକ୍ତିଶାଳୀ କରିବା ପାଇଁ ସମ୍ମିଳିତ ହେଉଛେ, ସେତିକିବେଳେ ଆମକୁ ଅତି ଗଭୀର ଭାବରେ ଚିନ୍ତା କରିବାକୁ ହେବ ବିକଳ୍ପ ବିକାଶର ଧାରାକୁ କିପରି ହାସଲ କରି କାର୍ଯ୍ୟକାରୀ କରିପାରିବା । ଏଥିପାଇଁ ନୂଆ ଜନବାଦୀ ରାଜନୀତି ପାଇଁ ଇଚ୍ଛାଶକ୍ତି ସୃଷ୍ଟି

Digitized by srujanika@gmail.com

କରିବା ଓ ରାଜନୈତିକ ଜନ ଶକ୍ତି ନିର୍ମାଣ କରିବାକୁ ସଂଗଠିତ ପ୍ରୟାସ ଜାରି ରଖିବା । ନୂଆ ସଂଗଠନ ତିଆରି କରିବାକୁ ହେବ । ସଂଗଠନର ମୂଳ ଭିତ୍ତିଭୂମି ହେବ ପ୍ରତ୍ୟେକ ଆଞ୍ଚଳିକ ତଥା କ୍ଷେତ୍ରୀୟ ସ୍ତରରେ ଜୀବିକାର ଗ୍ୟାରେଣ୍ଟି ପାଇଁ ସ୍ଥାନୀୟ ପ୍ରାକୃତିକ ସଂବଳ ଗୁଡିକର ସୁରକ୍ଷା, ସଂରକ୍ଷଣ ଓ ତା' ଉପରେ ସ୍ଥାନୀୟ ଜନ ସମୂହର ଅଧିକାର ସାବ୍ୟସ୍ତ । ସେହି ସଂବଳକୁ କେନ୍ଦ୍ରକରି ଉତ୍ପାଦନ ଓ ଉତ୍ପାଦନରେ ସର୍ବାଧିକ ଶ୍ରମନିଯୁକ୍ତି ସହ ଉତ୍ପାଦିତ ଫଳର ସମବଣ୍ଟନକୁ ନେଇ ରାଜନୈତିକ ବିଚାର ଓ ଦର୍ଶନ ସ୍ଥିର ହେବା ଏକାନ୍ତ କାମ୍ୟ ।

ବିକାଶର ସ୍ୱରୂପ ଏପରି ହେବା ଆବଶ୍ୟକ, ତାହା ବହୁଜନଙ୍କ ଆୟ ଓ କ୍ରୟ ଶକ୍ତି ବୃଦ୍ଧି ଲକ୍ଷ୍ୟ ସ୍ଥିର କରିବ । ତାପରେ ସମାଜର ସାମୂହିକ ଚାହିଦା ଓ ତାକୁ ହାସଲ କରିବା ପାଇଁ ଆବଶ୍ୟକ ପୁଞ୍ଜିର ବ୍ୟବସ୍ଥା । ପୁଞ୍ଜି କହିଲେ ବିଦେଶୀ କିମ୍ବା ଦେଶୀ ପୁଞ୍ଜିପତିଙ୍କ ମୁନାଫା ପାଇଁ ବ୍ୟବହୃତ ପୁଞ୍ଜିନୁହଁ । ଶ୍ରମ ମଧ୍ୟ ଏକ ପୁଞ୍ଜି ଓ ପ୍ରାକୃତିକ ସଂପଦ ଭିତରେ ଥିବା ଅନେକ ସଦ୍ୟ କଞ୍ଚାମାଲ ମଧ୍ୟ ପୁଞ୍ଜି । ଏହି ସମ୍ବଳମାନଙ୍କୁ ମିତବ୍ୟୟିତାର ସହ ସଦୁପଯୋଗ ପାଇଁ ସାମାନ୍ୟ ପରିମାଣର ରାଷ୍ଟ୍ରୀୟ (ମୁଦ୍ରା)ପୁଞ୍ଜିର ବ୍ୟବସ୍ଥା ଅତି ଜରୁରୀ । ବିଶ୍ୱ ବଜାରରେ ଆମର କି ଭୂମିକା ତାକୁ ବର୍ତ୍ତମାନ ପାଇଁ ଭୁଲିଯିବାକୁ ହେବ । ବରଂ ବିଶ୍ୱ ବଜାରର ସଉଦାଗରମାନଙ୍କ ନିୟନ୍ତ୍ରଣରୁ ମୁକ୍ତ ରହି ଆମ ରାଜ୍ୟର କୃଷି, ଜଙ୍ଗଲ ଓ ଜଳକୁ କିପରି ସୁରକ୍ଷିତ ରଖି ବିକଶିତ କରିପାରିବା ଓ ବିକାଶ ପ୍ରକ୍ରିୟାରେ ନୂଆଁ ନୂଆଁ ଉତ୍ପାଦନ କେନ୍ଦ୍ର ସ୍ଥାପନ ସହ ତାର ଆଞ୍ଚଳିକ ବଜାର ସୃଷ୍ଟି କରିପାରିବା, ସେଥିପାଇଁ କୃଷକମାନଙ୍କୁ, ଆଦିବାସୀମାନଙ୍କ ସଚେତନ କରାଇବାକୁ ପ୍ରାଥମିକତା ଦେବାକୁ ହେବ ।

କୃଷି ଆଜି ଅବହେଳିତ ଓ ବଜାରୀ ଅର୍ଥବ୍ୟବସ୍ଥା ଦ୍ୱାରା ଲୁଣ୍ଠିତ । ଚାଷ ଅଛିତ, ସାଧାରଣ ଗାଁର ମୂଳିଆ ପାଇଁ ଅତି କମ୍‌ରେ ବି କିଛି ଦିନ ଜୀବିକାର ଗ୍ୟାରେଣ୍ଟି ଅଛି । ଏହି ଚାଷ ଯଦି ବାୟୁମଣ୍ଡଳୀୟ ସ୍ଥିତି ଅନୁଯାୟୀ ସବୁଦିନିଆରେ ପରିଣତ ହୋଇପାରନ୍ତା ମାଟି ଓ ଜଳବାୟୁକୁ ସୁରକ୍ଷିତ ରଖି, ଓ ଚାଷର ଖର୍ଚ୍ଚ କମାଇ ଦିଆଯାଇପାରନ୍ତା, ତାହାହେଲେ ଗାଁର ଯୁବକ ମାନଙ୍କ ମଧ୍ୟରେ ଚାଷ ପ୍ରତି ଆକର୍ଷଣ ବୃଦ୍ଧିପାଆନ୍ତା । ଆଜିର ଶିକ୍ଷିତ ଯୁବକ ମଧ୍ୟ ହତାଶରୁ ମୁକ୍ତ ହୋଇ ଆଶ୍ରୟ ଲୋଡ଼ନ୍ତା ସେହି କୃଷିର ସଫଳତାକୁ ନେଇ । ସେହିପରି ଜଙ୍ଗଲକୁ ଆଧାର କରି ବନବାସୀଙ୍କ ଜୀବିକାର ବିକାଶ ସମ୍ଭବପର । ଯେଉଁଠି ଜଙ୍ଗଲ ସରିଯାଇଛି, ସେଠି ଜଙ୍ଗଲ ସୃଷ୍ଟି ଓ କୃଷିର ଉପକ୍ରମ ପାଇଁ ଯୋଜନା ଆବଶ୍ୟକ । ଏଥିରେ ୨୪% ଆଦିବାସୀ, ୧୫% ଦଳିତ ଓ ୩୫% ଛୋଟ ଚାଷୀ ଓ କୃଷି ଶ୍ରମିକଙ୍କୁ ନ୍ୟୁନତମ ଆୟର ଗ୍ୟାରେଣ୍ଟି ଦିଆଯାଇପାରିବ ଓ କ୍ରୟଶକ୍ତି ବୃଦ୍ଧି ହୋଇପାରନ୍ତା ।

ଓଡ଼ିଶାରେ ବୃହତ୍‌ଶିଳ୍ପ ଲୋକଙ୍କ ବିକାଶର ବାଧକ । କାରଣ ଏଥିରୁ ନିମ୍ନସ୍ତରକୁ ଆୟ ଯିବା ବଦଳରେ ତଳେ ଥିବା ଆୟର ସ୍ରୋତ ବା ଉତ୍ସ ଶେଷ ହୋଇଯାଉଛି ।

Digitized by srujanika@gmail.com

ବିକାଶର ପ୍ରଶ୍ନକୁ ନେଇ ରାଜନୀତିରେ ପରିବର୍ତ୍ତନ ବର୍ତ୍ତମାନର ସର୍ବପ୍ରଥମ ଆବଶ୍ୟକତା । ଏହି ପରିବର୍ତ୍ତନ ପାଇଁ ଲୋକଙ୍କ ଭିତରେ ପରିବର୍ତ୍ତନକାମୀ ମାନସିକତା କିପରି ଆନ୍ଦୋଳିତ ହେବ ସେଥିପାଇଁ ଗଣ ଆନ୍ଦୋଳନ ଓ ଲୋକ ସଂଗଠନ ଜରିଆରେ ଅଭିଯାନ ଆରମ୍ଭ କରିବା ଏକ ଚାଲେଞ୍ଜ ରୂପେ ଆମେ ନେବା କି ? ଏହି ଅଭିଯାନ ଜରିଆରେ କ୍ଷେତ୍ରୀୟ ସ୍ତରରେ ଲୋକ ନେତୃତ୍ୱ ତିଆରି କରିବାକୁ ହେବ ଯେଉଁଠି ଏକ ବିକଳ୍ପ ଶକ୍ତି ପାଇଁ ଆସନ୍ତା ୧୦ ବର୍ଷ ପାଇଁ ଫଳ କାମନା ନକରି କର୍ମକରିବାକୁ ହେବ । ଏହି ସମୟ ମଧ୍ୟରେ ଲୋକଙ୍କୁ ରାଜନୀତିକରଣ କରିବା ଦରକାର । ଏହି ରାଜନୀତିରେ ଲୋକେ ନିଜର ଅଧିକାର ପ୍ରତି ସଚେତନ ହେବା ସହ ନିଜ ପ୍ରତି, ସମାଜ ପ୍ରତି ହେଉଥିବା ନ୍ୟାୟ ଓ ସମ୍ବଳ ଲୁଟ୍ ମୂଳରେ ଯେଉଁ ଶକ୍ତିଗୁଡିକ ଅଛନ୍ତି, ସେମାନଙ୍କୁ ଶତ୍ରୁ ରୂପେ ଚିହ୍ନଟ କରିବାପରି ସାମର୍ଥ୍ୟ ହାସଲ କରିବାକୁ ହେବ । ଏହା ସଙ୍ଗେ ସଙ୍ଗେ ନିଜର ସୁରକ୍ଷା ପାଇଁ ସାମାଜିକ ଓ ଆର୍ଥିକ ନ୍ୟାୟ ପାଇଁ ଏକ ବିକଳ୍ପ ଶକ୍ତି ନିର୍ମାଣ ପ୍ରକ୍ରିୟା ଜାରି ରଖି ଆତ୍ମ ପ୍ରତ୍ୟୟ ସୃଷ୍ଟି କରିବାକୁ ହେବ । ଏଥିପାଇଁ ନୂତନ ରାଜନୈତିକ ଦର୍ଶନ ଉପରେ ଏକ ସମନ୍ୱିତ ଓ ସମ୍ମିଳିତ ଲୋକ ସଂଗଠନ ସଂଘୀୟ ଢାଞ୍ଚାରେ ଗଢ଼ିବା ଉଦ୍ୟମ ହେବା ଏକାନ୍ତ ଜରୁରୀ । ଏହି ଦର୍ଶନର ଆଧାର ପାଇଁ ସମତା ଓ ସମାଜବାଦର ନୂଆ ପରିଭାଷା ଦେବାକୁ ପଡିବ । ଏଥିପାଇଁ ମହାତ୍ମାଗାନ୍ଧୀଙ୍କ ଠାରୁ ଆରମ୍ଭ କରି ମାର୍କସଙ୍କ ପର୍ଯ୍ୟନ୍ତ ଆବଶ୍ୟକ ଅନୁଶୀଳନ କରାଗଲେ ଫଳପ୍ରଦ ବିକଳ୍ପ ମିଳିବାରେ ସହଜ ହୋଇପାରିବ ବୋଲି ମୋର ବିଶ୍ୱାସ । ସେସବୁ ସମୟ ଉପଯୋଗୀ ଓ ଜନ ମନ ଗ୍ରହଣୀୟ ହେବା ଉପରେ ନିର୍ଭର କରେ । ସେଥିପାଇଁ ସଂଗଠିତ ଜନମତ ତିଆରି କରିବାକୁ ହେବ । ଆମେ ଯେତେବେଳେ ବିକଳ୍ପ କଥା କହୁଥିବା ସେତିକିବେଳେ ଆମ ସାମନାରେ ଏକ ବିକଳ୍ପ ବିକାଶର ପ୍ରତିବିମ୍ବ ଦେଖିବାକୁ ହେବ ଯାହାକି ଜଣେ ସାଧାରଣ ମଣିଷର ସର୍ବୋଦୟର କେନ୍ଦ୍ରବିନ୍ଦୁ ହୋଇଥିବ । ଆଜି ଯଦି ସବା ତଳକୁ ଦେଖିବା – ଲଙ୍ଗଳା ହୋଇ ବୁଲୁଛନ୍ତି ଅନେକ ଶିଶୁ ଯେଉଁମାନଙ୍କ ଶୈଶବ ଜୀବନ କୁଆଡ଼େ ହଜିଯାଇଛି । ସେମାନେ ରାସ୍ତାରୁ ପତର କିମ୍ବା ପଥର ସଂଗ୍ରହ କରୁଛନ୍ତି । ଗାଈ, ଛେଳି ଚରାଉଛନ୍ତି ତ କେହି କାରଖାନାର ବର୍ଜ୍ୟବସ୍ତୁର କିଛି ସଂଗ୍ରହ କରୁଛି କେଉଁଠି ତାକୁ ବିକ୍ରିକରି ଦୁଇ ପଇସା ପାଇଁ । ସେ ତ ସ୍କୁଲ ଦେଖି ନାହିଁ । ସେମାନେ ମା' ବାପଙ୍କ ସ୍ନେହରୁ ବଞ୍ଚିତ କାରଣ ନିଜେ ବଞ୍ଚିବା ପାଇଁ ସଂଗ୍ରାମରତ । ଆମେ ଆଜି ଏପରି ବିକାଶର ମୋଡ଼େଲ କରିବା ଯେଉଁଠି ପ୍ରତ୍ୟେକ ପରିବାରକୁ ଦୁଇ ଓଳା ପେଟ ପୂରା ଖାଦ୍ୟ, ଭାତ, ଡ଼ାଲି ଓ ପିନ୍ଧିବାକୁ ବସ୍ତ୍ର ମିଳିବା ସହ ପିଲାମାନେ ସ୍କୁଲକୁ ଯାଉଥିବେ । ହାଇସ୍କୁଲ ପାଠ ପଢ଼ିବାବେଳକୁ ତା ପାଖରେ ଖଣ୍ଡିଏ ସାଇକେଲ ଥିବ । ଗାଁରେ କେହି ଭୋକିଲା ରହିବେ ନାହିଁ । ଅଶିକ୍ଷିତ ନଥିବେ ଓ ଗାଁ ଅସ୍ୱାସ୍ଥ୍ୟକର ରହିବ ନାହିଁ । ଗାଁରେ ପିଇବା ପାଣି ଓ ଗାଁ ଦାଣ୍ଡ ନିର୍ମଳ

Digitized by srujanika@gmail.com

ରହିବ । ଗାଁର ଚାରିପାଖ ବୃକ୍ଷରୋପଣ ହୋଇଥିବ । ଗାଁରେ ମଦ ବିକ୍ରି ହେବ ନାହିଁ । ଗାଁ ମାନଙ୍କ କେନ୍ଦ୍ର ସ୍ଥଳରେ ଛୋଟ ବଜାରଟିଏ ଯେଉଁଠି ଶୋଷଣ ପାଇଁ ଦଲାଲ ନଥିବେ । ଏପରି ଏକ ବିକାଶରେ ପ୍ରକୃତିର ସୁରକ୍ଷା ସମ୍ଭବପର । ଏହି ବିକାଶର ଗ୍ୟାରେଣ୍ଟି ପାଇଁ ଆମକୁ ହୁଏତ ଅନେକ ଉଡ଼ାଜାହାଜ ଉଡ଼ାଣ ବନ୍ଦ କରିବାକୁ ପଡ଼ିପାରେ । ଅନେକ ଇସ୍ପାତ କାରଖାନାକୁ ପ୍ରତ୍ୟାହାର କରିବାକୁ ପଡ଼ିପାରେ । ସେନସେକ୍ସ ବଜାର ମାନ୍ଦା ହୋଇଯାଇପାରେ, କିନ୍ତୁ ପ୍ରତିଯୋଗିତାମୂଳକ ଗୋଲାମୀ ଅର୍ଥନୀତି ବଦଳରେ ସ୍ୱାବଲମ୍ବନ ଓ ସ୍ୱାଧୀନ ଅର୍ଥ ବ୍ୟବସ୍ଥା, ସାମାଜିକ ସୁରକ୍ଷା ଓ ସ୍ଥିରତାରେ ସହାୟକ ହେବ । ଏହାକୁ ହାସଲ କରିବା ପାଇଁ ରାଜନୈତିକ ଶକ୍ତିର ଆବଶ୍ୟକତା ରହିଛି । ସେହି ରାଜନୈତିକ ଶକ୍ତିପାଇଁ ସୁସ୍ଥ ରାଜନୈତିକ ବିଚାର ଦ୍ୱାରା ବିକଳ୍ପ ଲୋକ ସଂଗଠନ ସମ୍ଭବପର । ସେହି ଲୋକ ସଂଗଠନର ଚେହେରା ଓ ଚରିତ୍ର ସମାଜବାଦୀ ସବୁଜ ସଂଗଠନର ଏକ ରୂପାନ୍ତର ହୋଇପାରେ । ଏହି ସମାଜବାଦୀ ସବୁଜ ସଂଗଠନକୁ କେନ୍ଦ୍ର କରି ପ୍ରଚଳିତ ବିକାଶର ରାଜନୀତିକୁ ଓଲଟାଇ ରାଜନୀତିର ବିକାଶ ପାଇଁ ଆଜିର ଆହ୍ୱାନ । ଯେଉଁଠି ପ୍ରାକୃତିକ ସଂପଦ ରହିଛି ତାର ସୁରକ୍ଷା, ସଂରକ୍ଷଣ ଓ ନିରନ୍ତର ବିକାଶ ଓ ସଦ୍ ବ୍ୟବହାର ପାଇଁ ରାଜନୈତିକ ବିଚାରରେ ସ୍ପଷ୍ଟତା ଏକାନ୍ତ ଜରୁରୀ । ସେହି ସ୍ପଷ୍ଟତା ଆସି ପାରିଲେ ଆମେ ପ୍ରାକୃତିକ ସଂପଦର ସୁରକ୍ଷାକୁ ଆଧାର କରି ଆଦର୍ଶ ଓ ପ୍ରଗତିଶୀଳ ଜନବାଦୀ ରାଜନୈତିକ ଦଳ ଓ ବ୍ୟବସ୍ଥା ତିଆରି କରିପାରିବା । ବିଭିନ୍ନ ଗଣସଂଗଠନ ଓ କ୍ରାନ୍ତିକାରୀ ଯୁବ ସଂଗଠନର ସଂଗଠକମାନେ ତ୍ୟାଗ ସ୍ୱୀକାର କରିପାରିଲେ ଏକ ରାଜନୈତିକ ଇଚ୍ଛାଶକ୍ତି ସମ୍ପନ୍ନ ସଂଗଠନର ମୂଳଦୁଆ ପଡ଼ିପାରିବ ଓ ଗତିଶୀଳହୋଇ ଶକ୍ତିଶାଳୀ ମଧ୍ୟ ହୋଇପାରିବ । ଏହି ସଂଗଠନର ପ୍ରଥମ କାମ ଜନ ଜାଗରଣ କରିଆରେ କୃଷିର ନିରନ୍ତର ବିକାଶ ସହ କୃଷକର ଅଧିକାରର ସୁରକ୍ଷା ପାଇଁ ଚେତନା ସୃଷ୍ଟି କରିବା ।

ବେଦାନ୍ତ କଂପାନୀକୁ ବିଶ୍ୱ ବିଦ୍ୟାଳୟ ନାମରେ ୫୦୦୦ ଏକର ଜମି ଦେବା ପାଇଁ ରାଜନୈତିକ ପ୍ରତିଯୋଗିତା ଚାଲିଥିଲାବେଳେ ଆଦିବାସୀ ଓ ଦଳିତଙ୍କୁ ଖଣ୍ଡିଏ ଜମି ଦେବା ପାଇଁ ତ କାହାର ଏଜେଣ୍ଡାରେ ପ୍ରାଥମିକତା ନାହିଁ । ଆଦିବାସୀର ଜମି ପଟା ଦେବା ବଦଳରେ ତା ଜମିଛଡ଼ାଇ ନିଆଯାଉଛି କଂପାନୀମାନଙ୍କ ପାଇଁ । ପ୍ରଚଳିତ ରାଜନୀତିରେ ଗୋଲାମୀ ଅର୍ଥବ୍ୟବସ୍ଥା ଗଣତାନ୍ତ୍ରିକ ଅନୁଷ୍ଠାନମାନଙ୍କରେ କଂପାନୀରାଜକୁ ଅବସ୍ଥାପିତ କରାଇବାରେ ସହାୟକ ହେଉଛି । ଆଜି କାଶୀପୁର, କଳାହାଣ୍ଡି ଠାରୁ କଳିଙ୍ଗନଗର ଓ ପାରାଦୀପ ପର୍ଯ୍ୟନ୍ତ ଗଣତାନ୍ତ୍ରିକ ଜନ ଆନ୍ଦୋଳନମାନଙ୍କୁ ଦମନ କରିବା ପାଇଁ ରାଷ୍ଟ୍ର ଏବଂ ପୋଲିସ ଷ୍ଟେଟରେ ପରିଣତ ହୋଇଛି, ସେଥିରେ ଆସନ୍ତା କାଲିର ଗଣତନ୍ତ୍ର କେବଳ ଏକ ନାମକୁ ମାତ୍ର ଖୋଳପା ହୋଇଥିବ । ତେଣୁ ଆଜି ସାମ୍ରାଜ୍ୟବାଦୀ ଶକ୍ତି ଆମ ଦେଶର ପ୍ରତ୍ୟେକ ଗଣତାନ୍ତ୍ରିକ ବ୍ୟବସ୍ଥାଗୁଡିକରେ ପ୍ରଭୁତ୍ୱ ଜାହିର କରିବା ଆରମ୍ଭ କରିସାରିଲେଣି ।

Digitized by srujanika@gmail.com

କେଉଁଠି ବି ତାର ପ୍ରତିରୋଧ କରିବାକୁ ହେବ । ତାହା ହିଁ ଦେଶପ୍ରେମୀ କାର୍ଯ୍ୟ ଓ କର୍ତ୍ତବ୍ୟ । ଲୋକେ କହନ୍ତୁ – ଆଗ ଆମ ମୌଳିକ ଅଧିକାର ସାବ୍ୟସ୍ତ କରିବା ପାଇଁ ଆମ ଜମି, ଆମ ଜଳ, ଆମ ଜଙ୍ଗଲ ଆମ ଖଣି ଖାଦାନ ଆମ ପାଇଁ ସୁରକ୍ଷିତ ରହୁ । ତାପରେ ଯଦି ଆଉ କାହାପାଇଁ ଦରକାର, ତାହା ଆମ ହିତକୁ ଦୃଷ୍ଟିରେ ରଖି ଦିଆଯିବ । ତାହା ମଧ୍ୟ ଆମ ଅନୁମତିରେ ।

ଆମ ଗାଁର ସମସ୍ତ ଶିଶୁ ପ୍ରାଥମିକ ଠାରୁ ହାଇସ୍କୁଲ ପର୍ଯ୍ୟନ୍ତ ପାଠ ପଢ଼ି ପାରୁଥିବେ ଓ ସ୍ୱାସ୍ଥ୍ୟ ସୁରକ୍ଷା ପାଇଁ ଅନ୍ତତଃ ଜନସ୍ୱାସ୍ଥ୍ୟ ସେବା ଉପଲବ୍ଧ ହୋଇପାରୁଥିବ । ପାଞ୍ଚ କିଲୋମିଟର ଦୂର ମଧ୍ୟରେ ଅନ୍ତତଃ ଶ୍ରମ ବଦଳରେ ଜୀବିକାର ଗ୍ୟାରେଣ୍ଟି ରହିବା ପରି ଏକ ଅବସ୍ଥିତ ଆଞ୍ଚଳିକ ଗ୍ରାମ୍ୟ ଅର୍ଥ ବ୍ୟବସ୍ଥା ସହ ରାଷ୍ଟ୍ରର ସୁରକ୍ଷା ଓ ଜାତୀୟକରଣ ବ୍ୟାଙ୍କ, ଗଣତାନ୍ତ୍ରିକ ଅନୁଷ୍ଠାନ ଓ ସଂସ୍ଥାନମାନଙ୍କ ଦାୟିତ୍ୱଶୀଳ ଭାଗିଦାରୀରେ ପୁଞ୍ଜିବାଦୀ ବଜାର ବ୍ୟବସ୍ଥାର ବିକଳ୍ପକୁ ଠିଆ କରିହେବ ।

ଲାଟିନ ଆମେରିକା ଦେଶମାନଙ୍କରେ ବିଦ୍ରୋହୀ ଜନତା ବିକଳ୍ପର ପରୀକ୍ଷା କଲେଣି । ତାକୁ ମଧ୍ୟ ଆମେ ଅନୁଧାନ କରିବା ।

ନିର୍ବାଚିତ ଲୋକପ୍ରତିନିଧିମାନଙ୍କ ପ୍ରତିବଦ୍ଧତା ରହିବ, ଏହି ବ୍ୟବସ୍ଥାର ସଫଳତା ପାଇଁ । ସାମାଜିକ ନ୍ୟାୟ ଓ ଆର୍ଥିକ ନ୍ୟାୟ ପାଇଁ ଲୋକ ପ୍ରତିନିଧିମାନେ ସ୍ୱାର୍ଥରହିତ କ୍ଷମତାର ଅଧିକାରୀ ହେବେ । ଏଠି ପେନସନ୍ ହଟାଇ ସମସ୍ତ ଚାଷୀ, ଶ୍ରମିକ ଓ କର୍ମଚାରୀଙ୍କ ପାଇଁ ସାମାଜିକ ସୁରକ୍ଷା ବ୍ୟବସ୍ଥା ଓ ସମାଜ, ନିରାପତ୍ତା ପାଣ୍ଠି ସୃଷ୍ଟି କରିବାକୁ ରାଜନୈତିକ ଶକ୍ତି ନିର୍ମାଣ କରିବାକୁ ହେବ ।

ଆମ ବିକଳ୍ପ ରାଜନୈତିକ ବିଚାରଧାରାରେ ଅତ୍ୟାବଶ୍ୟକ ସାମଗ୍ରୀର ସୁଲଭ ଉପଲବ୍ଧି ସହ ଅତିରିକ୍ତ ଓ ଅନାବଶ୍ୟକ ଚାହିଦାଗୁଡିକ ଉପରେ କଟକଣା ଜାହିର କରିବାକୁ ହେବ । ପ୍ରାକୃତିକ ସଂବଳଗୁଡିକର ମନଇଚ୍ଛା ବ୍ୟବହାର ଉପରେ ନିଷିଦ୍ଧ ଘୋଷଣା କରିବା ଆମ ଅଭିଯାନର ଏକ ପ୍ରମୁଖ ଲକ୍ଷ୍ୟ ହେବାକୁ ପଡ଼ିବ । ବଜାରବାଦକୁ ପ୍ରତିହତ କରିବାପାଇଁ ଏହା ଏକ ବାଟ ।

ସେଗୁଡିକୁ ହାସଲ କରିବା ପାଇଁ ଜନ ଆନ୍ଦୋଳନ ଅଧିକ ଭାବରେ ସଂଗଠିତ ଓ ପ୍ରସାରିତ ହେବାର ଯେତିକି ଆବଶ୍ୟକତା ରହିଛି ସେହି ସଂଗଠନ ପାଇଁ ଜନବାଦୀ ରାଜନୈତିକ ବିଚାର ଓ ଆଦର୍ଶକୁ ପ୍ରତିପାଦିତ କରିବା ପାଇଁ ମଧ୍ୟ ସେତିକି ଆନ୍ତରିକ ଉଦ୍ୟମର ଗୁରୁତ୍ୱ ରହିଛି । ନଚେତ ଗଣ ଆନ୍ଦୋଳନଗୁଡିକ କ୍ରମଶଃ ନିଷ୍ପ୍ରଭ ହୋଇପଡିବ ଓ ବଜାରବାଦରେ ସାଧାରଣ ମଣିଷ ଅସ୍ତିତ୍ୱହୀନ ହୋଇପଡ଼ିବ । ଆସ, ଆମେ ସ୍ୱାଭିମାନ, ସ୍ୱାବଲମ୍ବନ ଓ ସମତା ପାଇଁ ସଂଗଠିତ ସଂଗ୍ରାମ କରିବା ଓ ବ୍ୟବସ୍ଥାର ପରିବର୍ତ୍ତନ କରିବାକୁ ସମର୍ଥ ହେବା ।



Digitized by srujanika@gmail.com

# ମାଟିର ମଣିଷଙ୍କ ସ୍ୱାର୍ଥରେ ଆଲୁମିନା କଂପାନୀକୁ ବିରୋଧ

୨୦୦୬, ୧୭ ଅକ୍ଟୋବର 'ସମାଜ'ରେ "ଆଲୁମିନିୟମ ଶିଳ୍ପ ବିକାଶରେ ପ୍ରତିବନ୍ଧକ" ଲେଖାରେ ଗୋଲକ ବିହାରୀ ମିଶ୍ର ଜଣେ ଖଣି ବିଶେଷଜ୍ଞ ରୂପେ ପରିଚୟ ଦେଇ ଜଙ୍ଗଲ ପାଣି, ଅର୍ଥନୀତି ଉପରେ ମଧ ମତଦେଇ ସମାଲୋଚନା ଓ ସେଥିରେ ରାଜନୀତି ଭାଷା ମଧ ପ୍ରୟୋଗ କରିଛନ୍ତି । ସଂପ୍ରତି ପ୍ରଥମେ ଦୃଢ଼ ଶିଳ୍ପାୟନକୁ ବିରୋଧ କରୁଥିବା ଆନ୍ଦୋଳନ ଓ ବ୍ୟକ୍ତିବୃନ୍ଦଙ୍କୁ ବିଦେଶୀ ପ୍ରରୋଚିତ ସ୍ୱାର୍ଥାନ୍ଧ ଏନ୍.ଜି.ଓ ବୋଲି କହିଛନ୍ତି । ବିକାଶ ନାମରେ ଚାଲିଥିବା ବିନାଶକାରୀ ଶିଳ୍ପାୟନକୁ ମୁଁ ଜଣେ ଦେଶପ୍ରେମୀ ନାଗରିକ ରୂପେ ବିରୋଧ କରୁଛି ଓ ଜନ ଆନ୍ଦୋଳନମାନଙ୍କ ସହଯୋଗୀ ରୂପେ କଂପାନୀ ଗୁଣ୍ଡାମି ଓ ସରକାରୀ ସଂନ୍ତ୍ରାସବାଦର ଶିକାର ହୋଇଛି । ମୁଁ ଲୋକରାଜନୀତି କରୁଛି ଓ ଜନ ଆନ୍ଦୋଳନମାନଙ୍କ ସହଯୋଗୀ। କାଶୀପୁରଠାରୁ ଆରମ୍ଭକରି କଳିଙ୍ଗନଗର ପର୍ଯ୍ୟନ୍ତ ଚାଲିଥିବା ଜନଆନ୍ଦୋଳନ ମାଟିର ମଣିଷମାନଙ୍କ ପ୍ରାଣବଳିରେ ଚାଲିଛି । ବିଦେଶୀ କମ୍ପାନୀ ମାନଙ୍କ ସମେତ ଦେଶୀ କମ୍ପାନୀମାନଙ୍କ ବକ୍ସାଇଟ୍‌ପରି ପ୍ରାକୃତିକ ସଂପଦର ଲୁଟକରଣକୁ ପ୍ରତିରୋଧ କରାଯାଉଛି । ଓଡ଼ିଶାର ସଂବଳ ଗୁଡ଼ିକର ସୁରକ୍ଷା ସହ ଭବିଷ୍ୟତ ବଂଶଧରଙ୍କ ଜୀବନ ଓ ଜୀବିକାର ଗ୍ୟାରେଣ୍ଟି ପାଇଁ ଗନ୍ଧମାର୍ଦ୍ଦନରେ ବକ୍ସାଇଟ୍ ଖୋଳାକୁ ନିଷେଧକରି ତତ୍‌କାଳୀନ ଭାରତ ସରକାରଙ୍କ ଦ୍ୱାରା ପ୍ରେରିତ ନାଗ ଚୌଧୁରୀ ବିଶେଷଜ୍ଞ କମିଟି ଅମୂଲ୍ୟ ରତ୍ନ ଜୈବ ବିବିଧତା ସହ ଜଳସଂପଦ ସଂରକ୍ଷଣ ପାଇଁ ମତ ଦେଇଥିଲେ । କାଶୀପୁର ବାଫିଲିମାଳିରେ ବକ୍ସାଇଟ୍ ଖଣି ଖନନ ହେଲେ ୩୨ଟି ନଦୀ-ଝରଣା ଶୁଖିଯିବାରୁ ଇନ୍ଦ୍ରାବତୀ ଜଳଭଣ୍ଡାର ଜଳାଭାବସହ ପୋତି ହୋଇଯିବ ବୋଲି ଜଣେ ବିଶିଷ୍ଟ ଇଞ୍ଜିନିୟର ଗୋପନୀୟ ପତ୍ର ଲେଖିଥିଲେ ସରକାରଙ୍କୁ । କଳାହାଣ୍ଡିର ପୂର୍ବତନ ମହାରାଜା ତଥା ପୂର୍ବତନ ଏମ୍. ପି. ୰ପ୍ରତାପ କେଶରୀ ଦେଓ କଳାହାଣ୍ଡିର ଜଳ ଓ ଜଙ୍ଗଲ ସଂପଦର ସୁରକ୍ଷା ପାଇଁ ବକ୍ସାଇଟ୍ ପାହାଡ଼ମାନଙ୍କ ସୁରକ୍ଷା ପାଇଁ ସର୍ବଦା ପରାମର୍ଶ ଦେଇ ଆସୁଥିଲେ । ନିୟମଗିରିରେ ମଧ ବକ୍ସାଇଟ ଖନନକୁ ନିଷିଦ୍ଧ କରିବାକୁ ସୁପ୍ରିମ କୋର୍ଟ ଦ୍ୱାରା ଗଠିତ ସି.ଇ.ସି. (Central Enpowered Committee) ବିଶେଷଜ୍ଞ କମିଟି ସୁପାରିଶ କରି କହିଛି ଯେ ବେଦାନ୍ତ ଆଲୁମିନା ପ୍ଲାଣ୍ଟ ନିର୍ମାଣ କାର୍ଯ୍ୟ ମଧ ବେଆଇନ,

Digitized by srujanika@gmail.com

କାରଣ ଏଥିପାଇଁ ପରିବେଶ ମଂଜୁରୀ ବେଆଇନ ଭାବେ ଦିଆଯାଇଛି । ନିୟମଗିରିରୁ ଜନ୍ମ ନେଇଥିବା ଦୁଇ ପ୍ରମୁଖ ନଦୀ ବଂଶଧାରା, ନାଗାବଳୀ ଓ ୩୬ ଗୋଟି ଝରଣାଗୁଡ଼ିକର ଜଳ ସ୍ରୋତ ଶୁଖିଯିବା ସହ ବଂଶଧାରା ପ୍ରଦୂଷିତ ହେବ । କମ୍ପାନୀର ନିବେଦନକୁ ଗ୍ରହଣ କରି ସୁପ୍ରିମକୋର୍ଟ ପୁଣି ଜଙ୍ଗଲ ବିଶେଷଜ୍ଞମାନଙ୍କ ଦ୍ୱାରା ନିୟମଗିରି ଅଧ୍ୟୟନ ରିପୋର୍ଟ ଦେବାକୁ କେନ୍ଦ୍ର ଜଙ୍ଗଲ ଓ ପରିବେଶ ମନ୍ତ୍ରାଳୟକୁ ନିର୍ଦ୍ଦେଶ ଦେବା ପରେ ଡ଼େରାଡୁନର Indian Institute of Wild Life ର ବିଶେଷଜ୍ଞମାନେ ରିପୋର୍ଟରେ କହିଛନ୍ତି ଯେ - ନିୟମଗିରିରେ ଖଣିଖନନ ହେଲେ ଓଡ଼ିଶାର କୋରାପୁଟଠାରୁ କନ୍ଧମାଳ ପର୍ଯ୍ୟନ୍ତ ଜଙ୍ଗଲ ତଥା ପର୍ବତମାଳା ଉପରେ ବିପଦ ରହିଛି । ନିୟମଗିରିର ସଂରକ୍ଷିତ ଜଙ୍ଗଲ ବିଭିନ୍ନ ବୃକ୍ଷ ଲତାର ପ୍ରଜାତିପାଇଁ ପ୍ରଜନନ କେନ୍ଦ୍ରସ୍ଥଳୀ । କିନ୍ତୁ କଂପାନୀର ସ୍ୱାର୍ଥ ପାଇଁ ମନ୍ତ୍ରାଳୟ ଏହି ରିପୋଟିକୁ ସୁପ୍ରିମ କୋର୍ଟପାଖରେ ଉପସ୍ଥାପନା କରିବାକୁ ଜାଣିଶୁଣି ବିଳମ୍ବ କରୁଛି । ମୁଁ ନିଜେ ସୁପ୍ରିମ କୋର୍ଟଙ୍କ ସି.ଇ.ସି କୁ କରିଥିବା ଜଣେ ପିଟିସନର । ଏହି ବିଶେଷଜ୍ଞମାନଙ୍କ ସୁପାରିଶଗୁଡ଼ିକୁ ଖଣି ବିଶେଷଜ୍ଞମାନେ ଅଧ୍ୟୟନ କରି ନିଜ ଜ୍ଞାନ ପରିସୀମା ବୃଦ୍ଧି କରିପାରିଲେ ସାଧାରଣ ଜନତାଙ୍କ ସ୍ୱାର୍ଥରେ ଉପଯୋଗ ହୋଇପାରନ୍ତା ।

ବେଦାନ୍ତ କମ୍ପାନୀ ପ୍ରଥମେ ବଂଶଧାରାରୁ ଜଳ ବ୍ୟବହାର କରିବାକୁ ସ୍ଥିର କରିଥିଲା । କିନ୍ତୁ ଖଣି ଖନନପରେ ବଂଶଧାରାରେ ଜଳ ମିଳିବ ନାହିଁ ବୋଲି ପ୍ରାୟ ୬୦ କି.ମି. ଦୂର କେସିଙ୍ଗାସ୍ଥିତ ତେଲନଦୀରୁ ଦୈନିକ ୪ କୋଟି ଲିଟର ଜଳ ବ୍ୟବହାର କରିବ । ଜଣେ ବ୍ୟକ୍ତି ପାଇଁ ୫୦ ଲିଟର ଆବଶ୍ୟକ ହେଲେ ଆଠଲକ୍ଷ ଲୋକଙ୍କ ବ୍ୟବହୃତ ଜଳକୁ କମ୍ପାନୀ ନେଇଯିବ ଯାହାଫଳରେ ବର୍ଷାଋତୁପରେ ଆଉ ବାକି ଆଠମାସ ନଦୀର ତଳଭାଗର ଲୋକଙ୍କୁ ଟୋପାଏ ପାଣି ମିଳିବ ନାହିଁ । ଏହି ନଦୀର ପାଣି ମଧ୍ୟ ନିଅଣ୍ଟ ହେବବୋଲି କଂପାନୀ ଗଭୀର ନଳକୂପ ଜରିଆରେ ଜଳ ବ୍ୟବହାର କରିବାପରେ ସ୍ଥାନୀୟ କୂଅ, ପୋଖରୀ ଶୁଖିଯିବ । ବେଦାନ୍ତ କମ୍ପାନୀ ଆଇନକୁ ଗୋଇଠାମାରି ରାଜ୍ୟସରକାରଙ୍କ ସାନିଧ୍ୟରେ ପ୍ଲାଣ୍ଟ ନିର୍ମାଣ କାର୍ଯ୍ୟ କରିବାପରେ ନିୟମଗିରିର ଚାରିପଟୁ ରାସ୍ତା ଖୋଲିଯାଇଛି । ଗଛକଟା ଚାଲିଛି । ଯେ କେହି କହିବ ନିୟମଗିରି ଲଣ୍ଡା ହୋଇଯିବ । ନିୟମଗିରି ଓଡ଼ିଶା ତଥା ଆମ ଦେଶର ଏକ ଅମୂଲ୍ୟ ପ୍ରାକୃତିକ ସଂପଦ । ଏହା କେବଳ ପରିବେଶ ଦୃଷ୍ଟିରୁ ନୁହଁ ବରଂ ହଜାର ହଜାର ଆଦିବାସୀ ଓ ଲକ୍ଷ ଲକ୍ଷ ଚାଷୀଙ୍କ ଜୀବନ ଓ ଜୀବିକାର ଉତ୍ସ । କେବଳ ଆଲୁମିନିୟମ ପାଇଁ ବକ୍‌ସାଇଟ୍ ନୁହଁ । ପ୍ରକୃତିର ସନ୍ତୁଳନ ପାଇଁ ଏହାର ଅବସ୍ଥିତି ଅନିବାର୍ଯ୍ୟ । ଜଳ ଓ ଜଙ୍ଗଲ ଶେଷ ହୋଇଗଲେ କୃଷି ଖତମ୍ ହୋଇଯିବ । ଓଡ଼ିଶାର ଜଙ୍ଗଲ ଶେଷ ହେବା ମୂଳରେ ଖଣିଖନନ ଓ ଏହି କାର୍ଯ୍ୟ ଜରିଆରେ କାଠ ମାଫିଆଙ୍କ ଦୌରାତ୍ମ୍ୟ ଦାୟୀ । ଜଙ୍ଗଲ ସୁରକ୍ଷା ନାମ୍‌ରେ ଆଦିବାସୀଙ୍କୁ ବିସ୍ଥାପିତ କରିବାପାଇଁ

Digitized by srujanika@gmail.com

ଯେତେବେଳେ ସରକାର ଓ ସୁପ୍ରିମ କୋର୍ଟ କହୁଥିଲେ ସେତେବେଳେ କୁହାଯାଉଥିଲା ଖଣି ଖନନ ଓ ସେଥି ପାଇଁ ଯାନ୍ତିକ କାର୍ଯ୍ୟକଳାପ ଜଙ୍ଗଲର କ୍ଷତି କରିବନି ବୋଲି । ଏପରି ଯୁକ୍ତି କେବଳ ଅନ୍ଧ ଶିଳ୍ପାୟନର ସମର୍ଥନରେ ।

କୋରାପୁଟର ଦାମନଯୋଡ଼ିରେ ନାଲକୋ ଦ୍ୱାରା ପଞ୍ଚପଟମାଳିରେ ଖଣି ଖୋଳା ଚାଲିଛି । ଏହାଫଳରେ ଅନେକ ଚିରସ୍ରୋତା ଝରଣା ମଧ୍ୟ ଶେଷ ହୋଇଗଲଣି । ଓଡ଼ିଶାରେ ଯେଉଁଠି ଖଣି ଖୋଳା ଶେଷ ହୋଇଗଲାଣି ସେଠି ମରୁଭୂମି । ନିୟମକାନୁନ ଓ ସର୍ତ୍ତ ଥାଇ ସୁଦ୍ଧା ନୂଆ ଜଙ୍ଗଲ କାହିଁକି ସୃଷ୍ଟି ହେଲାନାହିଁ ? ଏ ଦିଗରେ ଗୋରୁ ମହିଷାଣି ଠାରୁ ଆରମ୍ଭ କରି କେଉଁଝର, ସୁନ୍ଦର ଗଡ଼ ଜିଲ୍ଲାର ଚିତ୍ର ସ୍ପଷ୍ଟ । ନିଜେ ସରକାର ବିଧାନ ସଭାରେ କହିଛନ୍ତି ୨୦୦୪ ମାର୍ଚ୍ଚ ପର୍ଯ୍ୟନ୍ତ ଖଣିଲିଜ୍ ଦିଆଯାଇଛି ୬୦୭ ଗୋଟି । ଏହାଦ୍ୱାରା ଏକଲକ୍ଷ ୪ ହଜାର ୯୪୭ ହେକ୍ଟର ଜମି ଧ୍ୱଂସହେବ ସେଥିମଧ୍ୟରୁ ଜଙ୍ଗଲ ଜମି ଦୁଇ ତୃତୀୟାଂଶ । ବର୍ତ୍ତମାନ ସୁଦ୍ଧା ଯେତିକି ବୁଝାମଣା ପତ୍ର ଦସ୍ତଖତ ହେଲାଣି ତାହାଦ୍ୱାରା ଆଉ ୫ ଗୁଣ ଜମି ଓ ଜଙ୍ଗଲ ସରିଯିବ ।

ଆଲୁମିନା ଓ ଆଲୁମିନିୟମ ଉତ୍ପାଦନ ପାଇଁ ସର୍ବାଧିକ ବିଦ୍ୟୁତ୍ ଆବଶ୍ୟକ । ତେଣୁ ଏହି ଶିଳ୍ପ ଦ୍ୱାରା ରେଡ଼ମଡ଼ ଓ ଫ୍ଲୋରାଇଡ଼ ଗ୍ୟାସ୍ ଦ୍ୱାରା ଜମି, ଜଳ ଓ ବାୟୁ ପ୍ରଦୂଷିତ ହେବ । ପୁଣି ଏଥିପାଇଁ ଆବଶ୍ୟକ ବିଦ୍ୟୁତ୍ ଉତ୍ପାଦନ ଦ୍ୱାରା ଆମ ପ୍ରାକୃତିକ ସଂପଦ ଶେଷ ହେବାରେ ଲାଗିବ ଓ ପ୍ରଦୂଷଣ ବୃଦ୍ଧି କରିବ । ଏସବୁ ପରେ ଆମେ ପାଇବା କ'ଣ ? ଖଣି ଲିଜ୍ ପ୍ରକ୍ରିୟା ପ୍ରାକୃତିକ ସଂପଦ ଲୁଟକରଣର ମାଧ୍ୟମ । ଏବେ ବି ବକ୍ସାଇଟର ଟନ୍ ପିଛା ରୟାଲଟି ମାତ୍ର ୫୪ ଟଙ୍କା । ଆମେରିକାରେ ଏହାର ବଜାର ଦର ୩୩ ଡ଼ଲାର । ଲୁହାପଥର ଟନ୍ ପିଛା ରୟାଲଟି ୨.୪ ଟଙ୍କା । ଓଡ଼ିଶାରେ ଏବେ ବି ଟାଟା ଜାମସେଦପୁର ଇସ୍ପାତ ପାଇଁ ନେଉଥିବା ଖଣିରୁ ଦେଉଛି ରାଜ୍ୟ ସରକାରଙ୍କୁ ମାତ୍ର ୧୧ଟଙ୍କା । ନିମ୍ନମାନ ଓ ଉଚ୍ଚମାନ ଲୁହାପଥରର ବଜାରଦର ୧୬୦୦ ଟଙ୍କାରୁ ୨୮୦୦ ଟଙ୍କା ପର୍ଯ୍ୟନ୍ତ । ଆମ ରାଜ୍ୟକୁ ଆସୁଥିବା ଇସ୍ପାତ ଓ ଆଲୁମିନା ଶିଳ୍ପ ଆମପାଇଁ ନୁହଁ, ସେମାନଙ୍କ ପ୍ରଚୁର ମୁନାଫା ପାଇଁ । ବେଦାନ୍ତ କମ୍ପାନୀ ଲାଞ୍ଜିଗଡ଼ରୁ ଆଲୁମିନା ତିଆରି କରି ନେଇ ଝାରସୁଗୁଡ଼ାରେ ଆଲୁମିନିୟମ ତିଆରି କରିବ । ସେହି ପ୍ଲାଣ୍ଟ ସ୍ୱତନ୍ତ୍ର ଅର୍ଥନୈତିକ କ୍ଷେତ୍ରର ମାନ୍ୟତା ପାଇଗଲାଣି । ଏଠି ସବୁ ଛାଡ଼ କଂପାନୀ ପାଇଁ । ଏହାଫଳରେ ସରକାର ଆଉ ଟିକସ ପାଇପାରିବେନାହିଁ । ଜଳ ଯିବ, ଜଙ୍ଗଲ ଯିବ, କୃଷି ଯିବ, ରାଜସ୍ୱ ମଧ୍ୟ ଯିବ । ଶେଷରେ ଆଲୁମିନିୟମ ବିଶ୍ୱବଜାରରେ ବିକ୍ରିହେବ ଧନୀକ ଦେଶର ଆବଶ୍ୟକତାକୁ ପୂରଣ କରିବା ସହ ବିଶ୍ୱର ସାମରିକ ଶିଳ୍ପର କଞ୍ଚାମାଲ ରୂପେ ବ୍ୟବହୃତ ହେବା ପାଇଁ ।

Digitized by srujanika@gmail.com

ପୋସ୍କର ଲୁଟ୍‌କରଣକୁ ସୁରକ୍ଷା ଦେବାପାଇଁ ଘରୋଇ ବନ୍ଦର ଓ ସ୍ୱତନ୍ତ୍ର ଅର୍ଥନୈତିକ କ୍ଷେତ୍ର ପାଇଁ ଅନୁମୋଦନ । ବେଦାନ୍ତର ଲୁଟାୟନର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ବେଦାନ୍ତ ବିଶ୍ୱବିଦ୍ୟାଳୟ ନାମରେ ୧୦ ହଜାର ଏକର ଜମି ସହ ଦୈନିକ ୧୧ କୋଟି ଲିଟର ଜଳ ଯୋଗାଣ ପାଇଁ ବୁଝାବଣା ପତ୍ରକୁ ଖଣି ଶିଳ୍ପର ବିଶେଷଜ୍ଞମାନେ ଅଧ୍ୟୟନ କରି କହିବେ କି ଏହି ଲୁଟାୟନ ପାଇଁ ଆସୁଥିବା ଶିଳ୍ପାୟନକୁ ଜନ ଆନ୍ଦୋଳନ ଦ୍ୱାରା ପ୍ରତିରୋଧ କରିବା ଦେଶପ୍ରେମୀ କାର୍ଯ୍ୟ ନୁହେଁ ବୋଲି ? ଯେଉଁମାନେ ନିଜ ଜମି, ଜଳ ଓ ଜମି ତଥା ମା'ମାଟିର ସୁରକ୍ଷା ପାଇଁ ଜୀବନ ଦେଇ ସଂଗ୍ରାମ କରୁଛନ୍ତି, ସେମାନଙ୍କ ପଛରେ ବିରୋଧରେ ଅଛନ୍ତି ସରକାର, ଶାସକଶ୍ରେଣୀ, ବିଶ୍ୱବ୍ୟାଙ୍କର ପୃଷ୍ଠପୋଷକତାରେ ଥିବା ଏନ୍.ଜି.ଓ ଓ ଘରୋଇକରଣ ସମର୍ଥକ ବୁଦ୍ଧିଜୀବୀମାନେ । ତେଣୁ ଜନ ବିରୋଧୀ ଶିଳ୍ପାୟନକୁ ବିରୋଧର ବାସ୍ତବତା ପ୍ରତି ବିଶେଷଜ୍ଞମାନେ ଦୃଷ୍ଟି ଦେବା ଉଚିତ ।

ବର୍ତ୍ତମାନ କୃଷିକୁ ମାରି ଶିଳ୍ପ ପ୍ରସାର ଚାଲିଛି । ୪୫ଟି ଇସ୍ପାତ ଶିଳ୍ପ ଓ ୧୦ଟି ଆଲୁମିନା ପାଇଁ ଆବଶ୍ୟକ ଜଳ କୃଷି ପାଇଁ ଉଦ୍ଦିଷ୍ଟ ଜଳରୁ ଦିଆଯିବା ଆରମ୍ଭ ହେଲାଣି । ବର୍ତ୍ତମାନ ସୁଦ୍ଧା ହୀରାକୁଦ ଜଳଭଣ୍ଡାରରୁ ଶିଳ୍ପପାଇଁ ଯେତିକି ପାଣି ଦେବାପାଇଁ ଚୁକ୍ତି ହେଲାଣି, ତାହା ୫୦ ହଜାର ଏକର ଚାଷ ଜମି ଜଳସେଚନରୁ ବଞ୍ଚିତ ହେବ । ସେହିପରି ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ନଦୀର ଜଳ ବ୍ୟବହୃତରେ ଉନ୍ନତ ହେବ କଳିଙ୍ଗ ନଗରଠାରୁ ଆରମ୍ଭ କରି ପୋସ୍କ ପର୍ଯ୍ୟନ୍ତ । ଟେନାଏ ଜମିରୁ ଗଣ୍ଡାଏ ଧାନ ଉତ୍ପାଦନର ଯୁଗ ଗଲାଣି ବୋଲି କହିବା ବ୍ୟକ୍ତିମାନେ ନିଜ ମାତୃଭୂମିର ଅଗଣିତ ଭୋକିଲା ତଥା ସାଧାରଣ ଲୋକଙ୍କ ବଞ୍ଚିବାର ଅଧିକାର ପ୍ରତି ବିଶ୍ୱାସଘାତକତା କରୁଛନ୍ତି । ଆମ ଦେଶର କୋଟି କୋଟି କ୍ଷୁଦ୍ର ଚାଷୀ ଏବେ ବି ସେମାନେ ନିଜ ଖାଦ୍ୟ ନିଜେ ଉତ୍ପାଦନକରି ବଞ୍ଚନ୍ତି । ପୁଣି ଯନ୍ତ୍ରାୟନ ଯେଉଁ ଚାଷରେ ନାହିଁ ସେଠାରେ କୋଟି କୋଟି କୃଷି ଶ୍ରମିକ ସେଥିରୁ ଜୀବିକା ପାଆନ୍ତି । ସେହି ଜମି ଯଦି ଠିକା ଚାଷ ତଥା କର୍ପୋରେଟ ଚାଷକୁ ଦେଇ ଅର୍ଥକରୀ ଫସଲ କରାଯାଏ ଲକ୍ଷ ଲକ୍ଷ ଚାଷୀ ଜୀବିକା ହରାଇବା ସହ ରାଜ୍ୟରେ ଖାଦ୍ୟ ଅଭାବ ଅନିବାର୍ଯ୍ୟ ହୋଇ ପଡ଼ିବ । କାର୍ଗିଲ, ମନସେଣ୍ଟୋ ପରି ବିଦେଶୀ କମ୍ପାନୀମାନେ ଆମଦେଶରେ ବସିଛନ୍ତି ଖାଦ୍ୟ ଓ ବିହନର ବେପାର ପାଇଁ । ଏବେ ବି ଓଡ଼ିଶାର ଆଦିବାସୀ ଓ ବଞ୍ଚିତଶ୍ରେଣୀ ଭାତ ମୁଠାଏ ଖାଇପାରନ୍ତି ନାହିଁ ସବୁଦିନେ । ସମସ୍ତେ ଯଦି ଆବଶ୍ୟକ କେଲୋରୀ ଖାଇବେ ଓଡ଼ିଶାରେ ହେଉଥିବା ଉତ୍ପାଦିତ ଚାଉଳ ନିଅଣ୍ଟ ହେବ । ସେହିପରି ଆମ ଦେଶରେ କୃଷିକୁ କୃଷକ ହାତରୁ ଛଡ଼ାଇନେଇ ବିକାଶ କରିବା କଥା କହୁଥିବା ବୁଦ୍ଧିଜୀବୀମାନେ ହିଁ ବିଦେଶୀ ତଥା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଅସଲ ଏଜେଣ୍ଟ । ଆମ୍ଭ ସମୀକ୍ଷା କରି ଆମେରିକା ଓ ୟୁରୋପୀୟ ସଂଘର ଆର୍ଥିକ ସାମ୍ରାଜ୍ୟବାଦ ପ୍ରତି ସତର୍କ ହେବା ଏକାନ୍ତ କାମ୍ୟ ।

Digitized by srujanika@gmail.com

କିଛି ସମୟ ପାଇଁ ନିର୍ବାଚିତ ହୋଇଥିବା ରାଜନୈତିକ ଦଳମାନଙ୍କର ସରକାର ଗୁଡ଼ିକର କି ଅଧିକାର ଅଛି ପୁଞ୍ଜି ଓ ପ୍ରଯୁକ୍ତି ବିଦ୍ୟାକୁ ଅସ୍ତ୍ରରୂପେ ପ୍ରୟୋଗକରି ବିକାଶ ନାମରେ ପ୍ରାକୃତିକ ସଂପଦର ବିନାଶ କରି ସବୁଦିନ ପାଇଁ ଅନେକ ସୀମିତ ସଂବଳକୁ ସାରିଦେବାକୁ ? ପୁଣି ବହୁଜନଙ୍କୁ ଜୀବନ ଓ ଜୀବିକାରୁ ଓ ଭବିଷ୍ୟତ ବଂଶଧରଙ୍କୁ ବଞ୍ଚିତ କରିବା ଅଧିକାର ସରକାରକୁ ଦେଲା କିଏ ? ଜନତାଙ୍କୁ ବାଦ ଦେଇ ସମାଜ, ସଭ୍ୟତା, ବିକାଶ, ଅଭିବୃଦ୍ଧିର ଅର୍ଥ କ'ଣ ହୋଇପାରେ ? ଅତ୍ୟାଧୁନିକତା ନାମରେ ବର୍ବରତା ନବ୍ୟ ସଭ୍ୟତାର ଆବାହନ କରୁଛନ୍ତି ଅବିଚାର ଶିଳ୍ପାୟନର ଅନ୍ଧ ସମର୍ଥକ ତଥା ପ୍ରବକ୍ତାମାନେ । ଆମେ ଭ୍ରାନ୍ତ ନୁହଁ ବରଂ ଭ୍ରାନ୍ତ ବିକାଶଧାରାର ସମର୍ଥକମାନେ ମିଥ୍ୟା ସ୍ୱପ୍ନ ଦେଖାଇ ଶିଳ୍ପାୟନର ମିଥ୍ ତିଆରିକରି ଦେଶର ସ୍ୱାବଲମ୍ବନଶୀଳତା, ସ୍ୱାଧୀନତା ଓ ସ୍ୱାର୍ବଭୌମତ୍ୱକୁ ବଳି ପକାଇବା କାମରେ ସହଯୋଗ କରୁଛନ୍ତି । ମିଥ୍ୟା ବିକାଶ ବିରୋଧରେ ମାଟିର ମଣିଷମାନେ ବିଦ୍ରୋହ କରି ଚାଲିବେ । ଏହାକୁ କେହି ଅଟକାଇ ପାରିବନି ।



Digitized by srujanika@gmail.com

# ମାଳି ପର୍ବତ କଂପାନୀ ପାଇଁ ଟାଙ୍ଗରା ଭୂଇଁ କିନ୍ତୁ ଗାଁଲୋକଙ୍କ ଆତ୍ମା

ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ପରିଷଦର ବିଜ୍ଞପ୍ତି ପ୍ରକାଶ ପାଇଲା ପରେ ଜଣାଗଲା ଯେ କୋରାପୁଟ ଜିଲ୍ଲାର ସିମିଳିଗୁଡ଼ା ବ୍ଲକର ମାଳି ପର୍ବତର ବକ୍‌ସାଇଟ ଖଣି ଆଦିତ୍ୟ ବିରଳା କଂପାନୀ ହାତରେ ରାଜ୍ୟ ସରକାର ଟେକିଦେବାକୁ ନିଷ୍ପତ୍ତି ନେଇଛନ୍ତି । ଏଥିପାଇଁ କଂପାନୀ ତରଫରୁ ଏକ ପରିବେଶୀୟ ପ୍ରଭାବିତ ମୂଲ୍ୟାୟନ ରିପୋର୍ଟ ପ୍ରସ୍ତୁତ କରାଯାଇଛି । ସେଥିରେ କୁହାଯାଇଛି, ମାଳି ପର୍ବତ ଏକ ଟାଙ୍ଗରା ଅବ୍ୟବହୃତ ଅର୍ଥାତ ପତିତ ପାହାଡ଼ ଜମି । ପୁଣି ଲେଖାଯାଇଛି ଏଠି ଖଣି ଖନନ ହେଲେ ଜଳ ଉପରେ ବିଶେଷ କରି କୋଲାବ ନଦୀର ଜଳ ପ୍ରତି କୌଣସି କ୍ଷତିକାରକ ପ୍ରଭାବ ନାହିଁ । ଏହି ପାହାଡ଼ରେ ସେପରି କିଛି ଜୀବଜନ୍ତୁ ଓ ପ୍ରଜାତୀୟ ବୃକ୍ଷଲତା ନାହିଁ । ଅଞ୍ଚଳବାସୀଙ୍କ ସାମାଜିକ ଓ ଆର୍ଥିକ କ୍ଷତିର ପ୍ରଶ୍ନ ଉଠୁନାହିଁ । ଧାର୍ମିକ ଓ ସାଂସ୍କୃତିକ ଭାବନା ଥିବା ପରି କୌଣସି ଐତିହାସିକ ସ୍ଥାନ ନାହିଁ । ଏହି ରିପୋର୍ଟ ପଢ଼ିବା ପରେ ମାଳିପର୍ବତରେ ପହଞ୍ଚିଲି ୨୦୦୫ ଅଗଷ୍ଟ ୧୯ ତାରିଖରେ । ପାକଝୋଲା ଗ୍ରାମ ଦେଇ କେତେକ ଅଚିହ୍ନା ଗ୍ରାମବାସୀଙ୍କ ସାଥିରେ ପର୍ବତ ଚଢ଼ିଲି । ପାହାଡ଼ ସବୁଜ ରଙ୍ଗରେ ଭରପୂର । ଘଞ୍ଚ ଜଙ୍ଗଲ ନାହିଁ, କିନ୍ତୁ ବିଭିନ୍ନ ଗ୍ରାମର ଲୋକେ ୧୫ ବର୍ଷ ଧରି ଏକ ନୂଆ ଜଙ୍ଗଲ ସୃଷ୍ଟି କରିଛନ୍ତି । ପର୍ବତ ଉପରି ଭାଗରେ ବିଭିନ୍ନ ଔଷଧୀୟ ବୃକ୍ଷଲତା ରହିଛି । ପ୍ରଥମେ ଏକ ଡ଼ାଳ ମୋ' ହାତରେ ଛିଣ୍ଡାଇ ବଢ଼ାଇ ଦେଲେ ଜଣେ ବୃଦ୍ଧ ଆଦିବାସୀ । ତାର ନାମ ମୁତୁଲି ମାଲ । ଏହାଦ୍ୱାରା ମୂତ୍ରରେ ରକ୍ତ ପଡ଼ିଲେ ଔଷଧ ରୂପେ ବ୍ୟବହୃତ ହୁଏ । ପର୍ବତ ଚଢ଼ୁ ଚଢ଼ୁ ପୋତରି ପଖାଣ, ଚାପା ଝୋଲା, ଜିରି ଜିରା ଝୋଲା, ମୁଣ୍ଡା ଝୋଲା ଓ ଡକୁରିପାର ଝୋଲା ଏପରି ନାମରେ ୫ଟି ଝରଣା ପାର ହୋଇ ଗଲା ପରେ ଜଣାଗଲା ଯେ ଏପରି ପ୍ରାୟ ୧୫ ଗୋଟି ଝରଣା ଏହି ପର୍ବତରୁ ନିର୍ଗତ ହୋଇ କୁଡି ନାଳ, ତାମେଇଗାଡ଼ା, କୁକୁଡ଼ା ଗୋଡ଼ ଓ କଟାନଦୀରେ ଯାଇ ମିଶିଛନ୍ତି । କୁଡିନାଳରୁ ଜଳ ଯାଇ ତିଆଡିପୁଟଠାରେ କୋଲାବନଦୀରେ ତାମେଇଗାଡ଼ାରୁ ଜଳ କେରାଣ୍ଡି ନଦୀରେ, କୁକୁଡ଼ା ଗାଡ଼ ନାଳରୁ ଦଳେଇଗୁଡ଼ାଠାରେ କୋଲାବନଦୀରେ ଜଳ ପଡୁଛି । କେରାଣ୍ଡି ନଦୀ ଯାଇ କୋଲାବରେ ମିଶିଛି । କଟା ନଦୀ କୋଲାବର ଏକ ମୂଳ ସ୍ରୋତ । ଏହି ପ୍ରାକୃତିକ ସ୍ଥିତିରୁ ପ୍ରମାଣିତ ହେଉଛି ଯେ କୋଲାବ

Digitized by srujanika@gmail.com

ନଦୀର ଏକ ପ୍ରମୁଖ ଜଳ ଉତ୍ସ ମାଳି ପର୍ବତରୁ ଜନ୍ମ ନେଇଛି । ଦେଓମାଳିର ପ୍ରମୁଖ ଅଂଶ ମାଳି ପର୍ବତ । ଏଠି ବକ୍ସାଇଟ୍ ଖଣି ଖୋଳା ୧୫ ବର୍ଷରେ ଶେଷ ହୋଇଗଲା ବେଳକୁ ଏହି ଜଙ୍ଗଲର ଉତ୍ସ ଶୁଖିଯାଇଥିବ । କୋଲାବନଦୀର ଜଳ ଯଥେଷ୍ଟ କମିବା ସହ ଅପର କୋଲାବ ଜଳଭଣ୍ଡାର ପ୍ରତି ମଧ୍ୟ ଜଳର ଅଭାବ ବିପଦ ଆସନ୍ନ ହେବ । ଏହି ଝରଣାଗୁଡ଼ିକ ଦେଖି ଦେଖି ଚାଲୁଥିବାବେଳେ ସାମିଲିଗଛମାନଙ୍କରେ ବିରାଟ ବିରାଟ ମହୁଫେଣା ଝୁଲୁଛି । ଏଥିରୁ ଲୋକେ ଦେଶୀ ମହୁ ସଂଗ୍ରହ କରନ୍ତି । ସିମିଳି ଗଛ ଦେଖୁ ଦେଖୁ ହାଡ଼ ସାକଡ଼, ପାତାଳ ଗରୁଡ଼, ଭୂଇଁପେଙ୍ଗ, ହଳଦୀକନ୍ଦା, କଳଜକନ୍ଦା, ଦେଓଷଣ୍ଢ, କାଳକୂଟ ସପଟପଟିରିଆ, ଟାଇଫଳ, କିଟିଡ଼ାଲ, ଅଁଳା, ବାହାଡ଼ା, ହରିଡ଼ା ସମେତ ଅନେକ ଔଷଧୀୟ ଗଛ ଦେଖାଇ ଦେଲେ ଗାଁ ଲୋକେ । ଏସବୁ ଲୋକଙ୍କ ନାମିତ ବୃକ୍ଷଲତା । ପ୍ରକୃତ ଉଦ୍ଭିଦ ବିଜ୍ଞାନୀମାନେ ବୋଟାନିକଲ ନାମ କହିପାରିବେ । ଶତାଧିକ ଔଷଧ ଗଛ ଅଛି ବୋଲି ଲୋକଙ୍କ କଥାକୁ ଅବିଶ୍ୱାସ କରିବା ପ୍ରଶ୍ନ ଉଠୁନାହିଁ । ଏହା ସହ ଗାଁର ମହିଳାମାନେ କହିଲେ ପିଟ୍ କନ୍ଦା, ତରକା କନ୍ଦା, ସରେଲା, ପିତା କନ୍ଦା, ଖଜୁରୀ କନ୍ଦା, କୋକୁଡ଼ି ଶାଗ, ମୁଟୁମୁଡ଼ିଶାଗ ପରି ଅନେକ ଖାଦ୍ୟ ପଦାର୍ଥ ସଂଗ୍ରହ କରାଯାଏ । ଜଣେ ବୃଦ୍ଧ ଗାଁରେ ଆଲୋଚନା କଲାବେଳେ କହିଲେ ଏହି ମାଳି ପର୍ବତ ''ଆମର ଆତ୍ମା ।''

ପାହାଡ଼ର ଶିଖରରେ ଏକ ପୂଜାପୀଠ ଗୁମ୍ଫା ଅଛି । ଶହ ଶହ ବର୍ଷ ଧରି ଏଠି ମାଳି ପୂଜାରୀ ଦ୍ୱାରା ପୂଜା କରାଯାଏ । ଅଞ୍ଚଳର ଏହା ଇଷ୍ଟ ଦେବତାଙ୍କ ପୀଠରେ ଚୈତି ପର୍ବ ହୁଏ । ତେଣୁ ଲୋକଙ୍କ ଧାର୍ମିକ ଓ ସାଂସ୍କୃତିକ ଭାବନା ସହ ମାଳି ପର୍ବତ ଯୋଡ଼ା । ଆଦିବାସୀ, ଦଳିତ, ଚାଷୀ, ମାଳି, କମାର ମାନଙ୍କ ଜୀବିକାର ସୁରକ୍ଷା ଏଠି ରହିଛି । ଏହି ଝରଣାମାନଙ୍କରୁ ଜଳ ଯାଇ କୃଷିରେ ଲାଗୁଛି । ଜାଳେଣି ପାଇଁ କାଠ ମିଳିବା ସହ ଗୋରୁଗାଈମାନଙ୍କ ଚରା ଭୂଇଁ । ଏସବୁକୁ ମଣିଷର ଆର୍ଥିକ ଜୀବନ ସହ ଯୋଡ଼ିବା କ'ଣ ଭୁଲ ନା ଏହି ପର୍ବତ ଏକ ଟାଙ୍ଗରା ଜମି କହି ଲୋକଙ୍କ ଆର୍ଥିକ କ୍ଷତି ନାହିଁ ବୋଲି ଏକ ରିପୋର୍ଟ ତିଆରି କରି ମିଥ୍ୟାକୁ ସତ ବୋଲି କହିବା ଠିକ୍ ? ଏହି ପର୍ବତରେ ଭାଲୁ, ସମ୍ବର, କୁଟୁରା ଓ ମୟୂରମାନଙ୍କ ଆଶ୍ରୟସ୍ଥଳୀ । ଏସବୁକୁ ପ୍ରତ୍ୟକ୍ଷଭାବେ ଅନୁଧ୍ୟାନ ଓ ଅଧ୍ୟୟନ କଲାପରେ ମନରେ ପ୍ରଶ୍ନ ଆସୁଛି, ଆମ ସରକାରମାନେ ନିଜକୁ ନିକମା ଓ ନିର୍ଲଜ କରିସାରିଲେଣି । ଯିଏ ଲୁଟ କରିବ ତାରି ହାତରେ ଆମ ସଂପଦର ମୂଲ୍ୟାୟନ ଦାୟିତ୍ୱ ଦେଇ ଦେଖୁଥିବା ଆଖିକୁ ଅନ୍ଧକରି ଦେଉଛନ୍ତି ।

କୋରାପୁଟ ଜିଲ୍ଲାରେ ଲକ୍ଷ୍ମୀପୁର ବ୍ଲକର କୋଡ଼ିଙ୍ଗାମାଳି ଓ ସିମିଳିଗୁଡ଼ା ବ୍ଲକର ମାଳି ପର୍ବତ (ଦେଓମାଳି)ରେ ବକ୍ସାଇଟ୍ ଖଣି ଆଦିତ୍ୟ ବିରଳାଙ୍କ ହିଣ୍ଡାଲକକୁ ରାଜ୍ୟ

Digitized by srujanika@gmail.com

ସରକାର ଲିଜ୍ ଦେବା ପରେ କୋରାପୁଟ ଜିଲ୍ଲା ବକ୍ସାଇଟ୍ ଶୂନ୍ୟ ହୋଇଯିବ । ବର୍ତ୍ତମାନ ନାଲକୋ ଦ୍ୱାରା ଆମ ଦେଶର ତଥା ରାଜ୍ୟର ସର୍ବବୃହତ୍ ବକ୍ସାଇଟ୍ ଖଣିଥିବା ପଞ୍ଚପଟମାଳିରୁ ବକ୍ସାଇଟ୍ ଉତ୍ତୋଳନ କରାଯାଉଛି । ଏହି ଖଣି ଆମଦେଶର ଆବଶ୍ୟକତାକୁ ପୂରଣ କରିବା ପାଇଁ ପ୍ରାୟ ୮୦ ବର୍ଷ ପର୍ଯ୍ୟନ୍ତ କଞ୍ଚାମାଲ୍ ଯୋଗାଇବ । ଏହି ଖଣିରୁ ବକ୍ସାଇଟ୍ ଶେଷ ହେବାବେଳେ ଜଳ ସ୍ରୋତ କମିବା ସହ ପ୍ରଦୂଷଣ ବିପଦ ରହିଛି । ତେଣୁ ପଞ୍ଚପଟମାଳି ଶେଷହେବା ପର୍ଯ୍ୟନ୍ତ ଓଡ଼ିଶାର କୌଣସି ସ୍ଥାନରେ ବକ୍ସାଇଟ୍ ଖଣି ଖନନ ନିଷେଧ ଜାରି କରିବା ଦ୍ୱାରା ଓଡ଼ିଶାର ଲୋକେ ଭବିଷ୍ୟତରେ ଉପକୃତ ହେବେ । ପ୍ରାକୃତିକ ସଂପଦ ମହଜୁଦ୍ ରହିବ ଓ ଭବିଷ୍ୟତରେ ଅଭାବନୀୟ ପରିସ୍ଥିତିରେ ବଜାର ଦର ବୃଦ୍ଧିହେଲା ପରେ କମ ପରିମାଣ ବିକ୍ରି କରି ପ୍ରଚୁର ଅର୍ଥ ମିଳିବ । ବକ୍ସାଇଟ୍‌ର ସଂରକ୍ଷଣ ଦ୍ୱାରା ଜଳ ସ୍ରୋତ ଜୀବନ୍ତ ରହିବ ଓ ଜଙ୍ଗଲ ଓ କୃଷିର ସମୃଦ୍ଧି ହେବ । ଏହି ପରିପ୍ରେକ୍ଷୀରେ କୋଡ଼ିଙ୍ଗାମାଳି ଓ ଦେଓମାଳିର ବକ୍ସାଇଟ୍ ବିରଳା କଂପାନୀକୁ ଦିଆଗଲେ ଓଡ଼ିଶାର ଅପୂରଣୀୟ କ୍ଷତି ହେବ । ଏହା ଓଡ଼ିଶାର ସ୍ୱାର୍ଥ ବିରୋଧୀ ଯେହେତୁ ମାତ୍ର ୫୪ ଟଙ୍କା ଟନ୍ ପିଛା ଲିଜ୍‌ରେ ଦିଆଯିବାବେଳେ ଏହାର ବଜାର ଦର ଅତିକମ୍‌ରେ ୧୦୦୦ ଟଙ୍କା ହେବ । କାରଣ ନିମ୍ନମାନର ବକ୍ସାଇଟ୍ ଗୁଜରାଟ୍‌ରେ ବିକ୍ରି କରନ୍ତି ୭୦୦ ଟଙ୍କାରେ । ମାଳି ପାହାଡ଼ରୁ ବର୍ଷକୁ ବିରଳା କଂପାନୀ ୪୦ କୋଟି ଟଙ୍କା କରି ୧୫ ବର୍ଷରେ ୬୦୦ କୋଟି ଟଙ୍କା କେବଳ କଞ୍ଚାମାଲରୁ ଲାଭ ପାଇବା ବେଳେ ସରକାରଙ୍କୁ ବାର୍ଷିକ ରୟାଲଟି ମାତ୍ର ୨ କୋଟି ୪୦ ଲକ୍ଷ ଟଙ୍କା ମିଳିବ । ଜନଶୁଣାଣି କରିଥିବା ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ପରିଷଦ ଓ କେନ୍ଦ୍ର ପରିବେଶ ମନ୍ତ୍ରାଳୟ କଂପାନୀର ସେବା ପାଇଁ ରାଜ୍ୟ ସରକାର ଓ କଂପାନୀର ମିଥ୍ୟା ରିପୋର୍ଟକୁ ମାନି ନେଲେ । କହିଦେଲେ ଏଠାରେ ଝରଣା ନାହିଁ । ଏହାଠାରୁ ମିଥ୍ୟା ଆଉ କ'ଣ ହୋଇପାରେ ? ବିକାଶର ରାଜନୀତିକୁ ବୁଝିବା ସମୟ ଆସିଛି ।

ଏସବୁ ଘଟୁଥିବାବେଳେ ଆମ ସଂପଦର ସୁରକ୍ଷା ରହିଲା କେଉଁଠି ? ସବୁତକ ଶେଷକରି ଦିଆଯିବ ? ବିକାଶ ନାମରେ ଏସବୁ ସର୍ବନାଶ ଚାଲିଥିବ । ସାଧାରଣ ମଣିଷର ବଞ୍ଚିବାର ଅଧିକାରତକ ପ୍ରଗତି ନାମରେ ବଜାରୀଙ୍କ ହାତରେ ଚୁରମାର୍ ହୋଇଯିବ । ଆଉ ଯେତେବେଳେ ଆଇନ ନାମରେ ଜନ ଶୁଣାଣୀ ପରି ଫାର୍ସ ମଧ ଚାଲିଥିବ । ଶେଷରେ ବିନାଶ ହିଁ ଅପରିହାର୍ଯ୍ୟ । ଓଡ଼ିଶାର କିଛି ପାଉନଥିବା ଯୁବକ ଯୁବତୀ ଓ ଅଭିଭାବକମାନେ ତଳେଇ କରି ଟିକିଏ ଦେଖିବେ କି ? କିନ୍ତୁ ସ୍ଥାନୀୟ ମାଟିର ମଣିଷମାନେ ବିଦ୍ରୋହ ଆରମ୍ଭ କରିଦେଇଛନ୍ତି ।



Digitized by srujanika@gmail.com

# ଛୋଟ କାର୍ ବନାମ କୃଷି

## ଟାଟା ପାଇଁ ସିଙ୍ଗୁର ଜମି ଅଧିଗ୍ରହଣ ବିରୁଦ୍ଧରେ ଜନ ବିଦ୍ରୋହ

ଆଜି ପଶ୍ଚିମବଙ୍ଗର ସିଙ୍ଗୁରରେ ଚାଷୀ ଆନ୍ଦୋଳନକୁ ସି.ପି.ଆଇ.ଏମ୍. ଯେପରି ଆଚରଣ କରୁଛି ତାହା ଗଣତାନ୍ତ୍ରିକ ବିଚାର ପ୍ରତି କୁଠାରାଘାତ । ଜବରଦସ୍ତ ଜମି ଅଧିଗ୍ରହଣ କରି ଟାଟା ପ୍ରକଳ୍ପକୁ ନିମନ୍ତ୍ରଣ କରିଥିବା ଓଡ଼ିଶା ସରକାର ବିରୋଧରେ ଗୋପାଳପୁରଠାରେ ଜନ ଆନ୍ଦୋଳନ ହୋଇଥିଲା । ସେଥିରେ ସ୍ଥାନୀୟ ସି.ପି.ଆଇର କର୍ମୀ ଓ ନେତାମାନେ ଅଗ୍ରଭାଗରେ ଥିଲେ । ସେଠାରେ ମଧ୍ୟ ପୋଲିସ ଦମନଲୀଳାକୁ ରାଜ୍ୟର ସି.ପି.ଆଇ. ଓ ସି.ପି.ଆଇ.ଏମ୍. ପ୍ରତିବାଦ କରୁଥିଲେ । ଗୋପାଳପୁରରୁ ଟାଟା ପ୍ରକଳ୍ପ ହଟିଥିଲା । ସେହିପରି କଳିଙ୍ଗନଗରରେ ଟାଟା ପାଇଁ ଜମି ନ ଛାଡ଼ିବାକୁ ଆନ୍ଦୋଳନ କରି ୧୩ ଜଣ ଆଦିବାସୀ ଭାଇ ଓ ଭଉଣୀ ପ୍ରାଣବଳି ଦେଲେ । ନବୀନ ସରକାରକୁ ଉକ୍ତ ବାମପନ୍ଥୀ ଦଳମାନେ ବିରୋଧ କରିଛନ୍ତି । ଯଦିଚ ଓଡ଼ିଶାରେ ବକ୍ସାଇଟ ଖନନକୁ କେନ୍ଦ୍ରକରି ଜନ ଆନ୍ଦୋଳନରେ ଉକ୍ତ ଦଳମାନେ ସାମିଲ ନହେଲେ ବି ଆନ୍ଧ୍ରରେ ବକ୍ସାଇଟ ଖନନ ତଥା ଆଲୁମିନା ପ୍ଲାଣ୍ଟକୁ ପୋଲିସର ଲାଠି ମାଡ଼ ଖାଇବି ସେଠାରେ ସି.ପି.ଆଇ.ଏମ୍. ଓ ସି.ପି.ଆଇ. କର୍ମୀ ଓ ନେତୃମଣ୍ଡଳୀ ବିରୋଧ କରି ଜନ ଆନ୍ଦୋଳନ ସହ ସାମିଲ ହୋଇଛନ୍ତି । ସ୍ୱତନ୍ତ୍ର ଆର୍ଥିକ କ୍ଷେତ୍ର ପାଇଁ ଦିଆଯାଉଥିବା ଜମି ହରିଆନା, ମହାରାଷ୍ଟ୍ରରେ ଏହି ଦଳମାନେ ବିରୋଧ କରୁଥିବାବେଳେ ନିଜର ଶାସନାଧୀନ ରାଜ୍ୟ ପଶ୍ଚିମବଙ୍ଗରେ ଦେଶୀ-ବିଦେଶୀ କଂପାନୀମାନଙ୍କୁ ଚାଷ ଜମି ଦେଇ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ପାଇଁ କାର ଉତ୍ପାଦନ ଓ ବଡ଼ ବଡ଼ କୋଠାଘର ନିର୍ମାଣ ପାଇଁ ଅତି ଆଗ୍ରହ କାହିଁକି ? ଏହାର ଉତ୍ତରରେ ବଜାରୀ ସମାଜବାଦ ନାମରେ ଶାସକ ବାମପନ୍ଥୀ ଦଳମାନେ ନୂଆ ଦର୍ଶନ ରଖି ପାରନ୍ତି, କହିପାରନ୍ତି ଜଗତୀକରଣରୁ ମୁକ୍ତି ନାହିଁ । କିନ୍ତୁ ଲାଟିନ୍ ଆମେରିକା ଦେଶମାନଙ୍କରେ ପରିବର୍ତ୍ତନ ଘଟିଲାବେଳେ ଭାରତୀୟ ଶାସକ କମ୍ୟୁନିଷ୍ଟ ପାର୍ଟିମାନଙ୍କ ପଛଘୁଞ୍ଚା କାହିଁକି ? ପଶ୍ଚିମବଙ୍ଗରେ ବୁଦ୍ଧଦେବ ଭଟ୍ଟାଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ହେଲାପରେ ବିଶ୍ୱବ୍ୟାଙ୍କର ପ୍ରତିନିଧିଭାବେ ପରିଚିତ ପ୍ରଧାନମନ୍ତ୍ରୀ ମନମୋହନ ସିଂହ ଉଦାରୀକରଣର ସଫଳତାର ପ୍ରତୀକ ବୁଦ୍ଧଦେବ ସରକାରକୁ ଚିହ୍ନିତ କରାଉଛନ୍ତି । ଏହାଦ୍ୱାରା ପ୍ରମାଣିତ ହେଉଛି ଯେ କେନ୍ଦ୍ର ସରକାରର ଦେଶ ବିରୋଧୀ ଓ ଜନବିରୋଧୀ ଆର୍ଥିକ ନୀତି ଚାଲୁ ରହିଥିବ ବାମପନ୍ଥୀଙ୍କ ସମର୍ଥନରେ । ଶେଷରେ ଜନ ଅସନ୍ତୋଷର ଫାଇଦା ନେବ ଭାରତୀୟ ଜନତା ପାର୍ଟି ଯାହାର ଆର୍ଥିକ ନୀତି କଂଗ୍ରେସ ଠାରୁ ଭିନ୍ନ ନୁହେଁ । ବର୍ତ୍ତମାନର ଘରୋଇକରଣ, ରାଷ୍ଟ୍ରୀୟ ଉଦ୍ୟୋଗରୁ ପୁଞ୍ଜି ପ୍ରତ୍ୟାହାର

Digitized by srujanika@gmail.com

ଓ ବିଶେଷ ଆର୍ଥିକ କ୍ଷେତ୍ର ପରି ନୀତି ପ୍ରତି ବିଜେପିର ସମର୍ଥନ ରହିଛି । ତେଣୁ ବାମପନ୍ଥୀମାନେ କେବଳ ଉଚ୍ଚାରଣରେ କେନ୍ଦ୍ର ସରକାରକୁ ସମାଲୋଚନା କରିବା କିମ୍ବା ଜାତୀୟ ସ୍ତରରେ ହରତାଳ କରିବା ଏକ ଔପଚାରିକ ହୋଇ ସାରିଲାଣି । ଆଚରଣରେ କିନ୍ତୁ ଭିନ୍ନତା ନାହିଁ । ଯେଉଁଦିନ ବୁଦ୍ଧଦେବ ଭଟ୍ଟାଚାର୍ଯ୍ୟ କହିଦେଲେ ଡ଼ଲାରର କୌଣସି ରଙ୍ଗ ନାହିଁ ଏବଂ ବହୁରାଷ୍ଟ୍ରୀୟ କଂପାନୀ ସାଲିମ୍ ପାଇଁ ୨୫ ହଜାର ଏକର ସିଙ୍ଗୁରରେ ଟାଟା ପ୍ରକଳ୍ପକୁ ଏକ ହଜାର ଚାଷ ଜମି ଦେବାକୁ ସି.ପି.ଆଇ.ଏମ୍‌ର ପଲିଟିବ୍ୟୁରୋ ଅନୁମୋଦନ କରିଦେଲାପରେ କଂଗ୍ରେସ, ବିଜେପି ଦୁଇ ମୁଖ୍ୟ ପ୍ରତିଯୋଗୀ ଦଳମାନଙ୍କ ଆର୍ଥିକ ସହମତିଠାରୁ ବାମପନ୍ଥୀ ସରକାର ଦୂରରେ ନାହିଁ ।

ପଶ୍ଚିମବଙ୍ଗରେ ସି.ପି.ଆଇ.ଏମ୍ ନେତୃତ୍ୱାଧୀନ ବାମପନ୍ଥୀ ସରକାର ୧୯୭୭ ରୁ ଶାସନ କରି ଆସୁଛି । ଏହି ସରକାର ଅମଳରେ ପୋଲିସ, ଅମଲାତନ୍ତ୍ରର ଚରିତ୍ର ବାମପନ୍ଥୀ ଢ଼ାଞ୍ଚାର ବଦଳିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ଆଦିବାସୀ, ଦଳିତ କିମ୍ବା ପଛୁଆ ଶ୍ରେଣୀ ମଧ୍ୟରେ ନୀତିଗତ ଭାବେ ସାମାଜିକ ପରିବର୍ତ୍ତନ ପାଇଁ ନୂଆ ବ୍ୟବସ୍ଥା କରାଯାଇନାହିଁ । କିନ୍ତୁ ବିଗତ ୩୦ ବର୍ଷ ମଧ୍ୟରେ ବିଭିନ୍ନ ରାଜ୍ୟରେ ଭିନ୍ନ ଭିନ୍ନ ଅଣ କମ୍ୟୁନିଷ୍ଟ ସରକାରମାନଙ୍କ ତୁଳନାରେ ପଶ୍ଚିମବଙ୍ଗ ସରକାର ଏକ ପ୍ରଗତିଶୀଳ ସରକାର ରୂପେ ପରିଚିତ । ଏହାର ମୂଳରେ ଥିଲା ଭୂସଂସ୍କାର ଜରିଆରେ ଜମିହୀନ ଓ ଭାଗଚାଷୀଙ୍କୁ ଜମି ସ୍ୱତ୍ୱାଧିକାର ପ୍ରଦାନ ଓ ଏହାର ପରିଣାମରେ ପଶ୍ଚିମବଙ୍ଗରେ ଖାଦ୍ୟ ଉତ୍ପାଦନ ବୃଦ୍ଧି ଘଟିପାରିଲା । ଆଉ ଏକ ବିଶେଷତ୍ୱ ହେଉଛି ଶାସନରେ ରହିବି ବିଧାୟକ, ମନ୍ତ୍ରୀମାନେ ବ୍ୟକ୍ତିଗତଭାବେ ସଂପତ୍ତି ବୃଦ୍ଧି କରିପାରି ନାହାନ୍ତି ବାମପନ୍ଥୀଦଳମାନଙ୍କ ନିଜ ନିଜ ନିର୍ବାଚିତ ପ୍ରତିନିଧିମାନଙ୍କ ଉପରେ ଶୃଙ୍ଖଳାଗତ ନିୟନ୍ତ୍ରଣ ଜାହିର ରହିଥିବା ଯୋଗୁଁ, କିନ୍ତୁ ଏହାର ଅର୍ଥ ନୁହେଁ ଯେ ଦୁର୍ନୀତିମୁକ୍ତ ଶାସନ ଦିଆଯାଇଛି । ବିଗତ ୨୦ ବର୍ଷ ମଧ୍ୟରେ ଦେଶର ରାଜନୀତି ଯେପରି ମୂଲ୍ୟବୋଧଶୂନ୍ୟ ହୋଇଯାଉଛି ଓ ସାଂପ୍ରଦାୟିକ ଶକ୍ତିର ଉତ୍‌ଥାନ ସହ ସାମ୍ରାଜ୍ୟବାଦୀ ଶକ୍ତି ଆମ ଦେଶର ଅର୍ଥନୀତି ଓ ରାଜନୀତିକୁ ନିୟନ୍ତ୍ରଣ କରିବା ଆରମ୍ଭ କରି ସାରିଲାଣି, ଏତିକିବେଳେ ଦେଶର କୋଟି କୋଟି ଜନତାଙ୍କ ଜୀବନ ଜୀବିକା ଛଡ଼ାଇ ନେବା ପ୍ରକ୍ରିୟା ଦ୍ରୁତଗତିରେ ଚାଲିଛି ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ ଜରିଆରେ । ଏହାକୁ ନୀତିଗତ ଭାବେ ସି.ପି.ଆଇ.ଏମ୍. ଓ ସି.ପି.ଆଇ. ବିରୋଧ କରୁ କରୁ ଶାସନର ଅଂଶୀଦାର ହେବା ଓ ସେଥିରୁ ମୁକ୍ତ ନହୋଇପାରିବା ମାନସିକତାର ବଶବର୍ତ୍ତୀ ହୋଇ ଜଗତୀକରଣ ଓ ଉଦାରୀକରଣକୁ ଗ୍ରହଣ କରିଯିବା ସ୍ଥିତିରେ ପହଞ୍ଚଗଲେଣି । କଂଗ୍ରେସ ନେତୃତ୍ୱାଧୀନ କେନ୍ଦ୍ର ସରକାରକୁ ସମର୍ଥନ ଦେଉଥିବା ବାମପନ୍ଥୀଦଳମାନେ ପ୍ରଥମରୁ ଅନ୍ତତଃ ଆର୍ଥିକ ସାମ୍ରାଜ୍ୟବାଦୀକୁ ପ୍ରତିରୋଧ କରିବାକୁ ପ୍ରଥମରୁ କାହିଁକି ସର୍ତ୍ତ ରଖିଲେ ନାହିଁ ? କେବଳ ସାଂପ୍ରଦାୟିକ ଶକ୍ତିର ବିରୋଧରେ କଂଗ୍ରେସର ଆର୍ଥିକ ନୀତିକୁ କାର୍ଯ୍ୟକାରୀ କରାଇବାରେ କୌଣସି ବାଧା ନଦେବା ଓ ବାମପନ୍ଥୀଙ୍କ ଶକ୍ତି ଆଗରେ

Digitized by srujanika@gmail.com

କୌଣସି ବୁଝାମଣା ନକରିବା ମୂଳରେ ସରକାରର ସମର୍ଥନକାରୀ ବାମପନ୍ଥୀ ଦଳମାନଙ୍କର ମୂଳଦୋଷ ରହିଛି । ସେହିଦଳମାନେ ଆଉ ସମାଜ ପରିବର୍ତ୍ତନ ଓ ଶ୍ରେଣୀ ସଂଘର୍ଷରେ ବିଶ୍ୱାସ କରନ୍ତି ନାହିଁ । ଏକ ପ୍ରଗତିଶୀଳ ମୁଖା ପିନ୍ଧି ସ୍ଥିତାବସ୍ଥାର ଭାଗିଦାରୀ ହୋଇ ଶାସନ ବ୍ୟବସ୍ଥାର ଏକ ଅଙ୍ଗ ହୋଇ ରହିବା ମାନସିକତା ଉକ୍ତ ଦଳମାନଙ୍କର ତଳେ କାମ କରୁଥିବା କମ୍ରେଡ୍ ମାନଙ୍କୁ ନିଶ୍ଚିତଭାବେ ହତୋତ୍ସାହ କରୁଛି । ସିଙ୍ଗୁରରେ ପ୍ରତିବାଦର ସ୍ୱରକୁ ଚାପିଦେବା ପାଇଁ ମୁକାବିଲା ପାଇଁ ସି.ପି.ଆଇ.ଏମ୍‌ର ସରକାରୀ କଳ ଓ ଦଳୀୟ ବାହିନୀ ନଗ୍ନରୂପ କେବଳ ଯେ ବାମପନ୍ଥୀ ସମର୍ଥକମାନଙ୍କୁ ଦୂରେଇ ଦେଇ ନାହିଁ ବରଂ ନିଜ ଦଳର ବିବେକୀ କର୍ମୀମାନଙ୍କୁ ଆନ୍ଦୋଳିତ କରୁଛି । ସେମାନେ ଅନ୍ୟ ରାଜ୍ୟମାନଙ୍କରେ କଂଗ୍ରେସ ଓ ବିଜେପି ପରି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଦଲାଲି ରାଜନୀତି ଓ ବିକାଶ ନାମରେ ଚାଲିଥିବା ବିନାଶକୁ କିପରି ସାମନା କରିବେ ?

ଯିଏ ଚାଷୀଙ୍କ ହାତରେ କିଛି ଜମି ଦେଇଥିଲା, ସେହି ଦଳର ସରକାର ହିଁ ତାକୁ ଛିନ୍ନ କରିନେବା ଓ ପୁଞ୍ଜିପତିଙ୍କ ସେବାରେ ତାକୁ ଉତ୍ସର୍ଗ କରିବା ପରେ ସି.ପି.ଆଇ.ଏମ୍. ଓ ତାର ସହଯୋଗୀମାନେ ଦେଶକୁ ବରବାଦରୁ ବଞ୍ଚାଇବା ପାଇଁ ବିକଳ୍ପ ବାଟ ଆଉ କ'ଣ ଦେଖାଇବେ ?

ଏକଥା ସତ୍ୟ ଯେ – ଆଜି ବି ଦେଶରେ କୋଟି କୋଟି ଜମିହୀନ କୃଷି ଶ୍ରମିକଙ୍କ ହାତକୁ ଜମି ଦେବା ଏକାନ୍ତ ଜରୁରୀ । ଆଜି ବି ଚାଷୀ ଆଦିବାସୀଙ୍କ ଜୀବନ ଓ ଜୀବିକା ଜମି, ଜଙ୍ଗଲ ଓ ଜଳ ସହ ବାନ୍ଧି ହୋଇ ରହିଛି । ଏହାର ସୁରକ୍ଷା ସହ ତାରି ଉପରେ ସମାଜ ଅଧିକାରକୁ ସାବ୍ୟସ୍ତ କରି ବିକଳ୍ପ ରୂପେ ନିରନ୍ତର ବିକାଶ ଯୋଜନା ପାଇଁ ନୂଆ ରାଜନୀତି ଅପରିହାର୍ଯ୍ୟ । ଆଜି କଳିଙ୍ଗନଗର, କାଶୀପୁର, ନିୟମଗିରି ଠାରୁ ଆରମ୍ଭ କରି ସିଙ୍ଗୁର, ଉତ୍ତରପ୍ରଦେଶର ଦାଦ୍ରି, ହରିଆନା ଓ ମହାରାଷ୍ଟ୍ର ପର୍ଯ୍ୟନ୍ତ ସର୍ବତ୍ର ପ୍ରାକୃତିକ ସଂପଦ ଉପରେ ଜନତାଙ୍କ ଅଧିକାର ସାବ୍ୟସ୍ତ ଓ ବିକାଶ ନାମରେ ବିନାଶକୁ ବିରୋଧ ପାଇଁ ଜନ ଆନ୍ଦୋଳନମାନଙ୍କରୁ ବିଦ୍ରୋହର ନିଆଁ ଜଳୁଛି । ଏହାକୁ ରାଜଶକ୍ତି ନିର୍ବାପିତ କରିପାରିବ ନାହିଁ । ଜନଶକ୍ତିକୁ ଆଧାର କରି ଶାସକ ଶ୍ରେଣୀରୁ ବାହାରେ ଥିବା ସାମ୍ୟବାଦୀ, ସମାଜବାଦୀ ତଥା ସମତାଭିତ୍ତିକ ଜନବାଦୀ ଶକ୍ତିମାନେ ମୌଳିକ ବିଚାର ଉପରେ ସହମତ ନେଇ ଏକ ମିଳିତ ଶକ୍ତି ନିର୍ମାଣ କରିବା ଏକମାତ୍ର ବାଟ । ନଚେତ ପୁଞ୍ଜିବାଦୀ ସାମ୍ରାଜ୍ୟବାଦର ପ୍ରଳୟଙ୍କରୀ ବନ୍ୟାରେ ସମାଜ ଧ୍ୱସ୍ତବିଧ୍ୱସ୍ତ ହୋଇଯିବ ଓ ତାରି ଉପରେ ଏକ ବଜାରୀ ସଭ୍ୟତା ଠିଆ ହେବ ଯେଉଁଠି ଗଣତନ୍ତ୍ର ନାମରେ କେବଳ ଭୋଗବାଦୀ ବିକାଶର ସ୍ୱପ୍ନ ବଣ୍ଟା ଯାଉଥିବ । ଭୋକିଲାମାନେ ଚିତ୍କାର କରୁଥିବାବେଳେ ଶାସକମାନେ ଗୁଳି ଫୁଟାଉଥିବେ । ବିତର୍କର ସ୍ଥାନ ନଥିବ କାରଣ ସ୍ୱାଧୀନତା, ସାର୍ବଭୌମତ୍ୱ ସବୁକିଛି ବଜାରୀ ବ୍ୟବସ୍ଥାରେ ପ୍ରଗତି ପାଇଁ ବିକ୍ରି ହେଉଥିବ । ସାର୍ବଭୌମତ୍ୱ ଏକ ଅନାବଶ୍ୟକ ଶବ୍ଦ ହୋଇଯିବ କାରଣ ଜଗତୀକରଣ ସୀମାହୀନ । ଏହି ଜଗତୀକରଣରେ ଡ଼ଲାରର ସ୍ୱାଧୀନତା ଓ ପ୍ରଭୁତ୍ୱ ଅଖଣ୍ଡ ।

Digitized by srujanika@gmail.com

କିନ୍ତୁ ଶ୍ରମ ପାଇଁ ସଂପୂର୍ଣ୍ଣ ନିଷେଧ । ଗୋଟିଏ ପକ୍ଷରେ ଶାସକ ଶ୍ରେଣୀଭୁକ୍ତ ସମସ୍ତ ରାଜନୈତିକ ଦଳ କର୍ପୋରେଟ ଜଗତ ତଥା ଖୋଲାବଜାରୀ ଅର୍ଥବ୍ୟବସ୍ଥାକୁ ଗ୍ରହଣ କରି ନେଇଥିଲେ ବି ସେମାନଙ୍କ ମଧ୍ୟରୁ କେତେକ ମାଟିର ମଣିଷମାନଙ୍କ ବିଦ୍ରୋହୀ ସ୍ୱରକୁ ରାଜନୈତିକ ବାଧ୍ୟତା ଦୃଷ୍ଟିରୁ ଆପଣାଇ ବିରୋଧୀ ଦଳର ଭୂମିକାକୁ ଜୀବନ୍ତ କରିଥାନ୍ତି । ଆଜି ପଶ୍ଚିମବଙ୍ଗରେ ତୃଣମୂଳ କଂଗ୍ରେସ ମୁଖ୍ୟ ବିରୋଧୀ ଦଳରୂପେ ବାମପନ୍ଥୀଙ୍କ ବିରୋଧରେ କୌଣସି ରାଜନୈତିକ ପ୍ରସଙ୍ଗ ଉତ୍‌ଥାପନ କରିବାକୁ ବିଫଳ ହୋଇ ଚାଷୀଙ୍କ ଜମି ସୁରକ୍ଷା ଆନ୍ଦୋଳନରେ ସାମିଲ ହେବାକୁ ବାଧ୍ୟ ହୋଇଛି । ଏହା ଆନ୍ଦୋଳନର ଏକ ବାସ୍ତବତା । କାରଣ ଲୋକେ ନିଜ ହକ୍ ଜୀବିକାର ଅଧିକାର ପାଇଁ ସଂଗ୍ରାମରତ । ବିଜେପି ନିଜର ରାଜନୈତିକ ସ୍ଥିତି ଓ ସହଯୋଗୀଦଳର ସାହାଯ୍ୟ ପାଇଁ ଟାଟାକୁ ଚାଷ ଜମିଦେବା ବିରୋଧକୁ ସମର୍ଥନ କରିବାକୁ ରାଜନାଥ ସିଂହ ପହଞ୍ଚିଥିଲେ ମମତା ପାଖରେ, କିନ୍ତୁ କଳିଙ୍ଗନଗର ଠାରେ ଟାଟା ପ୍ରକଳ୍ପକୁ ଓଡ଼ିଶା ବିଜେପି ସମର୍ଥନ ଦେଉଛି । ଓଡ଼ିଶାରେ ମଧ୍ୟ କଂଗ୍ରେସ ପାର୍ଟି ବେଦାନ୍ତ କଂପାନୀ ଦ୍ୱାରା ନିୟମଗିରିରେ ଖଣି ଖନନକୁ ବିରୋଧ କରିବା ସହ ସମସ୍ତ ଖଣି ଲିଜ୍ ବାତିଲ ପାଇଁ ଦାବି କରୁଛି ଯଦିଚ କେନ୍ଦ୍ରର ପ୍ରଧାନମନ୍ତ୍ରୀ କାର୍ଯ୍ୟାଳୟ, ଚିଦାମ୍ବରମ ଓ କମଳନାଥ ପରି କଂଗ୍ରେସର ମନ୍ତ୍ରୀମାନେ ବେଦାନ୍ତ ପକ୍ଷରେ ରହିଛନ୍ତି । ଏହା କେବଳ ରାଜନୈତିକ ବାଧ୍ୟତା । ଲୋକେ କଂପାନୀକରଣକୁ ଗ୍ରହଣ କରିପାରୁନାହାନ୍ତି ବୋଲି ଭୋଟ ଲୋଭରେ ଓଡ଼ିଶାର କଂଗ୍ରେସ ନେତାମାନେ ସମୟେ ସମୟେ ପୋସ୍କୋ, ବେଦାନ୍ତ ପରି କଂପାନୀମାନଙ୍କୁ ଦିଆଯାଉଥିବା ଖଣି ଲିଜ କିମ୍ବା ପ୍ରକଳ୍ପ ବିରୋଧରେ ଦାବି କରୁଛନ୍ତି । ଏହି ବିରୋଧକୁ ବିଫଳ କରିବା ପାଇଁ କର୍ପୋରେଟ ସମର୍ଥକମାନେ ସିଙ୍ଗୁରକୁ ନେଇ ପ୍ରଶ୍ନ ଉଠାଉଛନ୍ତି ।

ଦି ହିନ୍ଦୁ ପତ୍ରିକାରେ ସି.ପି.ଆଇ.ଏମ୍. ପଲ୍ୟୁଟବ୍ୟୁରୋ ସଭ୍ୟା ବିରନ୍ଦା କରାଟ ସିଙ୍ଗୁର ଜମି ଅଧିଗ୍ରହଣ ସଂକ୍ରାନ୍ତରେ ପଶ୍ଚିମବଙ୍ଗ ସରକାର ସପକ୍ଷରେ ଯୁକ୍ତି କରିବାକୁ ଯାଇ ଲେଖିଛନ୍ତି, ଚାଷୀ ସହମତି ପ୍ରକାଶ କରିଛନ୍ତି ଏବଂ ଏହା ଏକ ଫସଲକାରୀ ଜମି । ଏ ଦୁଇଟି ତଥ୍ୟ ସତ୍ୟ ନୁହଁ । ତଥାପି ସତ୍ୟ ବୋଲି ଧରାନିଆଗଲେ ବି କେତେକ ମୌଳିକ ପ୍ରଶ୍ନ ଉଠାଇବା ଜରୁରୀ ହୋଇପଡୁଛି । ଶ୍ରୀମତୀ କାରାଟ ନିଜେ ଖାଦ୍ୟ ସୁରକ୍ଷା ପାଇଁ ଜଗତୀକରଣ ଓ କେନ୍ଦ୍ର ସରକାରଙ୍କ ନୀତିକୁ ସମାଲୋଚନା କରି ଆସୁଛନ୍ତି । ଯଦି ଶିଳ୍ପନାମରେ ଏକ ଫସଲିଜମିକୁ କଂପାନୀମାନଙ୍କୁ ଦିଆଯିବା ଯଥାର୍ଥ, ତାହାହେଲେ ଆମ ଦେଶରେ ଏକ ଫସଲ ଜମି ପ୍ରାୟ ୮୦ ପ୍ରତିଶତ । ଏସବୁ ଜମି ଚାଲିଗଲା ପରେ ଦେଶରେ ଉତ୍କଟ ଖାଦ୍ୟ ସମସ୍ୟା ଏବଂ ଚାଷୀଙ୍କ ଜୀବିକା ସଂକଟ ଆସନ୍ନ ହୋଇପଡିବ । ପୁଣି ଯଥେଷ୍ଟ କ୍ଷତିପୂରଣଟିକୁ ଯଦି ଆମେ ଗ୍ରହଣ କରିବା ଚାଷୀଠାରୁ ସବୁ ଜମି ଚାଲିଯିବା ପ୍ରକ୍ରିୟାକୁ ସି.ପି.ଆଇ.ଏମ୍. ସମର୍ଥନ କରିବ କି ? ପରିଣାମରେ ଦେଶରେ ଆମେରିକା ପରି କୃଷିର ମାଲିକ ହେବେ କର୍ପୋରେଟ ପୁଞ୍ଜିପତିମାନେ ଏବଂ କୋଟି କୋଟି କୃଷକ କୁଆଡ଼େ ଯିବେ ?

Digitized by srujanika@gmail.com

କେତେକ ପ୍ରଶ୍ନ କରନ୍ତି ଯେ ଶିଳ୍ପ କ'ଣ ମୋଟେ ହେବ ନାହିଁ ? ଏହାର ଉତ୍ତରରେ ଆଉ ଏକ ପ୍ରଶ୍ନ ଶିଳ୍ପ କାହାପାଇଁ ଓ କେଉଁ ଶିଳ୍ପକୁ ପ୍ରାଥମିକତା ଦିଆଯିବ ବହୁଜନଙ୍କ ହିତ ଦୃଷ୍ଟିରୁ ? ସିଙ୍ଗୁରରେ ଟାଟାର ମଟର କାରଖାନା କ'ଣ ସାଧାରଣ ପରିବାରର ଆବଶ୍ୟକତାକୁ ପୂରଣ କରିବ ? ଓଡ଼ିଶାରେ ୪୦ଟି ଷ୍ଟିଲ ପ୍ଲାଣ୍ଟ କ'ଣ ଆମ ଦେଶର ଚାହିଦା ପାଇଁ ନା ବିଶ୍ୱ ବଜାରର ଧନୀକ ଶ୍ରେଣୀର ଆବଶ୍ୟକତାକୁ ମେଣ୍ଟାଇବା ସହ ପ୍ରଚୁର ମୁନାଫା ପାଇଁ ? ଏଥିପାଇଁ କ'ଣ ଅଣବିକଶିତ ଅଞ୍ଚଳର ପ୍ରମୁଖ ଜୀବିକାର ସ୍ରୋତ ଜମି, ଜଙ୍ଗଲକୁ ଶେଷ କରିଦେବାକୁ ସମର୍ଥନ କରାଯିବ ? ତାହାହେଲେ ପୁଞ୍ଜିବାଦର ପ୍ରତିରୋଧ କିପରି ହେବ ଯଦି ସାମ୍ରାଜ୍ୟବାଦୀ ପୁଞ୍ଜିବାଦକୁ ଅବାଧରେ ଗ୍ରହଣ କରାଯାଏ ? ଚାଷକୁ ଅଣଚାଷରେ ପରିଣତ କରାଗଲେ ଚାଷୀ ଯିବେ କୁଆଡ଼େ ?

ଆସନ୍ତାକାଲି ଯେତେବେଳେ ଗଣ ଆନ୍ଦୋଳନମାନଙ୍କ ଭିତରୁ ରାଜନୈତିକ ଶକ୍ତିର ଆଧାର ଅନୁଭୂତ ହେବ, ସେତିକିବେଳେ ରାଜନୈତିକ ଦଳମାନଙ୍କ ମଧ୍ୟରେ ଆତଙ୍କ ଖେଳିପାରେ । କିନ୍ତୁ ବର୍ତ୍ତମାନ ପାଇଁ ରାଜନୈତିକ ଦଳମାନେ ପ୍ରଚଳିତ ବିକାଶକୁ ବିରୋଧ କରିବାକୁ ସାହସ କରୁନାହାନ୍ତି । ଲୋକେ ଜାଗ୍ରତ ହେବା ସହ ରାଜନୈତିକ ଦଳମାନଙ୍କରେ ବିତର୍କ ନହେବା ଯାଏ ଛଳନାପୂର୍ଣ୍ଣ ରାଜନୀତି ହିଁ ଚାଲିଥିବ । ଏକଦା ଛଳ, କପଟର ମୃତ୍ୟୁ ନିଶ୍ଚିତ ଆସିବ । ସିଙ୍ଗୁରରେ ପଶ୍ଚିମବଙ୍ଗ ବାମପନ୍ଥୀ ସରକାର ଏକ ଘରୋଇ କଂପାନୀ କାରଖାନା ପାଇଁ ନିଜ ସରକାରର ଭୂସଂସ୍କାରରେ ଉପକୃତ ହୋଇଥିବା ଚାଷୀଙ୍କ ହାତରୁ ଜମି ଛଡ଼ାଇ ନେବା ନିଷ୍ପତ୍ତି ଦେଶରେ ଜଗତୀକରଣ ବିରୋଧୀ ଆନ୍ଦୋଳନମାନଙ୍କ ପ୍ରତି ଏକ ବାଧକ । କାରଣ ପୁଞ୍ଜିବାଦ ଓ ଅନ୍ଧ ଶିଳ୍ପୀକରଣର ପ୍ରବକ୍ତାମାନେ ଓ ତାର ପୃଷ୍ଠପୋଷକ ଅଣ କମ୍ୟୁନିଷ୍ଟ ସରକାରମାନେ ଜନ ଆନ୍ଦୋଳନଗୁଡିକୁ ବିଫଳ କରାଇବା ପାଇଁ ସିଙ୍ଗୁର ଓ ନନ୍ଦିଗ୍ରାମ ଆଡ଼କୁ ଅଙ୍ଗୁଳି ଦେଖାଉଛନ୍ତି । ଏହାର ରାଜନୈତିକ ପ୍ରଭାବ ଉପରେ ସି.ପି.ଆଇ.ଏମ୍. ଦଳର ନେତୃତ୍ୱ ଆତ୍ମସମୀକ୍ଷା କରିବା ଏକାନ୍ତ ଜରୁରୀ । କେବଳ ପଶ୍ଚମବଙ୍ଗ ମୁଖ୍ୟମନ୍ତ୍ରୀଙ୍କୁ କେନ୍ଦ୍ରୀୟ ପଲ୍ୟୁଟବ୍ୟୁରୋ ସମର୍ଥନ ଦେଇ ବିଭିନ୍ନ ରାଜ୍ୟରେ ବିରୋଧୀ ଦଳ ଓ ଜନ ଆନ୍ଦୋଳନ ଭୂମିକାରେ ଥିବା ସି.ପି.ଆଇ.ଏମ୍. ପାର୍ଟିର କମ୍ରେଡ଼ମାନଙ୍କ ନୈତିକ ଶକ୍ତିକୁ ଖର୍ବ କରାଯାଉଛି । ସେଥିପାଇଁ ବାମପନ୍ଥୀ ଶାସକଦଳମାନେ ଆତ୍ମସମୀକ୍ଷା କରି କେରଳଠାରୁ ଆରମ୍ଭ କରି ପଶ୍ଚିମବଙ୍ଗ ପର୍ଯ୍ୟନ୍ତ ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣର ପ୍ରତିହତ ପାଇଁ ନୂଆ ରାଜନୀତି ପାଇଁ ପୁଞ୍ଜିବାଦ ଅର୍ଥନୀତିସର୍ବସ୍ୱ ରାଜନୀତିରୁ ମୁକ୍ତ ରହିବା ଶ୍ରେୟସ୍କର ।



Digitized by srujanika@gmail.com

# ବିକାଶର ବିଷମତା ପ୍ରତି ଅସହିଷ୍ଣୁତା

## ଗଣ ବିଦ୍ରୋହର ପ୍ରାକ୍ ସୂଚନା

ପ୍ରଗତି ପଥରେ ଦୁନିଆ ଚାଲିଛି ବୋଲି କୁହାଯାଉଛି । ଦେଶ ମଧ୍ୟ ସେଥିରୁ ବାଦଯିବନି । ହେଲେ ବୈଷୟିକ ଜ୍ଞାନକୌଶଳର କରାମତିରେ ଯେଉଁ ବିକାଶ ଚାଲିଛି ତାହା କେଉଁ ଜନ ସମୂହଙ୍କ ? ବିଶ୍ୱ ଉତ୍ତର ଓ ଦକ୍ଷିଣରେ ବିଭାଜିତ । ଉତ୍ତରର ମାତ୍ର ଏକ ଚତୁର୍ଥାଂଶ ଧନୀକ ଶ୍ରେଣୀ ପୃଥିବୀର ୭୫ ପ୍ରତିଶତ ପ୍ରାକୃତିକ ସଂବଳକୁ ବ୍ୟବହାର କରି ଉପଭୋଗ କରୁଛନ୍ତି । ପୁଣି ଆମ ଦେଶରେ ଆମ୍ବାନୀ, ଟାଟା ସମେତ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ବାର୍ଷିକ ଆୟ ହଜାର ହଜାର କୋଟି ଟଙ୍କା ହେଲାବେଳେ ସେମାନଙ୍କ ଦ୍ୱାରା ହାତ ଗଣତିରେ ଦିଆଯାଉଥିବା ନିଯୁକ୍ତି ମଧ୍ୟ ମାସିକ ୫୦ ହଜାର ଟଙ୍କାରୁ ୧୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଆୟ ଦେଉଛି । ଆଉ ବାକି ସମସ୍ତେ ସ୍ୱପ୍ନ ଦେଖୁଛନ୍ତି ଓ ଦେଖୁଥିବେ । ଏହି ବିକାଶ ନାମରେ ଚାଲିଥିବା ବିନାଶର ଶିକାର ହେଉଛି କୃଷି, ଜଙ୍ଗଲ ଓ ଜଳସଂପଦ ଯେଉଁ ସମ୍ବଳରୁ ଚାଷୀ, ଆଦିବାସୀ ଓ ଦଳିତ ୭୦ ପ୍ରତିଶତ ଜୀବିକା ପାଆନ୍ତି । ସେହି ସମ୍ବଳତକ ଓ ସେଥିରେ ଥିବା କୋଟି କୋଟି ମାଟିର ମଣିଷଙ୍କ ବଞ୍ଚିବାର ଅଧିକାରତକ ଛଡ଼ାଇ ନେବାର ପ୍ରକ୍ରିୟାକୁ ବିରୋଧ ହେବା ଅନିବାର୍ଯ୍ୟ । ଏଥିପାଇଁ ଯଦି ୪୫ଟି ଇସ୍ପାତ ଶିଳ୍ପ ଓ ଦଶ କୋଡ଼ିଏଟି ଆଲୁମିନା ପ୍ରକଳ୍ପ ଏବଂ ଆଉ କେତେକ ଖଣି ବନ୍ଦ ହୋଇଯିବ, ହେଲେ ହୋଇଯାଉ, ଏସବୁ ଆମ ଓଡ଼ିଶାର କିମ୍ବା ଦେଶର ଗରିବ ଓ ନିମ୍ନ ମଧ୍ୟବିତ୍ତଙ୍କ ପାଇଁ ନୁହେଁ । ସେ ସବୁ ବିଶ୍ୱବଜାରର ଧନୀକ ଉପଭୋକ୍ତାଙ୍କ ପାଇଁ । ଏପରି ବିକାଶ ବିଷମତା ସୃଷ୍ଟି କରିଚାଲିଛି ଆମେରିକା ତଥା ଧନୀ ଦେଶର ମୁଣ୍ଡ ପିଛା ଇସ୍ପାତ ଖର୍ଚ୍ଚ ୪୦୦ କେ.ଜି. ଥିଲାବେଳେ ଆମ ଦେଶରେ ଅଛି ୩୦ କେ.ଜି. । ସେହିପରି କାନାଡ଼ା, ଆମେରିକାରେ ମୁଣ୍ଡ ପିଛା ଆଲୁମିନିୟମ ବ୍ୟବହାର ୪୦ କେ.ଜି. ଥିବାବେଳେ ଆମ ଦେଶରେ ଅଛି ମାତ୍ର ୭୦୦ ଗ୍ରାମ୍ । ଓଡ଼ିଶାରେ ତାହା ୨୦୦ ଗ୍ରାମ ମଧ୍ୟ ହେବ ନାହିଁ । ତେଣୁ ଆମ ରାଜ୍ୟରେ ଇସ୍ପାତ ଓ ଆଲୁମିନା ଚାଷ ହୋଇଗଲେ ମଧ୍ୟ ଓଡ଼ିଶାର ପ୍ରତ୍ୟେକ ଘରେ ଲୁହା ଓ ଆଲୁମିନିୟମ ପହଞ୍ଚିଯିବ ଓ ବିଶ୍ୱ ପ୍ରଗତିର ଅଂଶୀଦାର ହୋଇଯିବ ଏପରି ମିଥ୍ୟା ସ୍ୱପ୍ନ ତିଆରି କରିବା ସମ୍ବେଦନଶୀଳହୀନ ବିକାଶର ପ୍ରବକ୍ତା କିମ୍ବା କଂପାନୀମାନଙ୍କ ପୋଷା ଦଲାଲ ଭୂମିକାରେ ଥିବା ପ୍ରତିନିଧିମାନେ କହିପାରନ୍ତି । ପ୍ରଶ୍ନ ଉଠୁଛି ଶିଳ୍ପର

Digitized by srujanika@gmail.com

ଆବଶ୍ୟକତା କ'ଣ ନାହିଁ ? ଅଛି । ତାହା କାହାର ଆବଶ୍ୟକତାକୁ ନେଇ ? ଓଡ଼ିଶାରେ କାହିଁକି ଘରୋଇକରଣ ହେଲାପରେ ବି ଚିନିକଳଗୁଡିକ ବନ୍ଦ ହୋଇଯାଇଛି ? ଓଡ଼ିଶାର ୫ ଲକ୍ଷ ଶ୍ରମିକ ସୁରାଟ ସୂତାକଳମାନଙ୍କରେ କାମ କରୁଥିବାବେଳେ ଓଡ଼ିଶାର ସୂତାକଳଗୁଡିକ କିଏ ବନ୍ଦ କଲା ? ଚୌଦ୍ଵାର ଲୁଗାକଳ, ଝାରସୁଗୁଡ଼ା ଭାସ୍କର ଟେକ୍ସଟାଇଲ, ଧାମନଗର ଝୋଟକଳ ଏପରି ଅନେକ ଶିଳ୍ପ ଓଡ଼ିଶାରେ କାହିଁକି ବନ୍ଦ ହୋଇଗଲା ? ଏସବୁକୁ ତ କେହି ବିରୋଧ କରିନାହିଁ । ଅଥଚ ଓଡ଼ିଶାର ଚାଷୀ ଆଖୁ, କପା ଚାଷ କରି ତାର ବିକ୍ରି ହେଉନଥିବାରୁ ଉଚିତ ଦାମ ପାଉନାହିଁ । ଓଡ଼ିଶାରେ କୃଷି ଓ ଜଙ୍ଗଲର ବିକାଶ କରି ସେଥିରୁ ଉତ୍ପାଦିତ ତୈଳବୀଜ ଠାରୁ ଆରମ୍ଭ କରି ଅନେକ କୃଷିଜାତ କଞ୍ଚାମାଲ ରୂପେ ବ୍ୟବହାର କରି ପଦାର୍ଥରୁ ଛୋଟ ଛୋଟ ପ୍ରକଳ୍ପ ଗଢ଼ି ଉଠି ପାରିଥାନ୍ତା । ଏଥିରେ ଗାଁ ଗହଳ ତଥା ସହରର ଗରିବ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ବେକାର ଯୁବକ ଯୁବତୀ ନିଯୁକ୍ତି ସୁଯୋଗ ପାଇଥାନ୍ତେ ଓ କୃଷକର ମଧ୍ୟ ଆୟ ବୃଦ୍ଧି ହୋଇପାରନ୍ତା ।

କିନ୍ତୁ ବିକାଶ କହିଲେ ପ୍ରକୃତିଦତ୍ତ ସଂପଦଗୁଡିକୁ ଦେଶୀ ବିଦେଶୀଙ୍କ ହାତରେ ଟେକିଦେଇ ଲକ୍ଷ ଲକ୍ଷ କୋଟି ଟଙ୍କା ବିନିଯୋଗର ଡିଣ୍ଡିମ ପିଟିଲେ ଭୋକିଲାର ପେଟ ପୂରିଯାଉନାହିଁ ବରଂ ଖାଦ୍ୟ ସଂଗ୍ରହରୁ ଭୋକିଲା ବଞ୍ଚିତ ହେଉଛି । ଖଣି ଶିଳ୍ପ ଦ୍ଵାରା ଜଙ୍ଗଲ, କୃଷି ଧ୍ଵଂସ ହେଉ ପଛକେ ବିକାଶ ଆମର ଦରକାର ବୋଲି ଯେଉଁମାନେ କହୁଛନ୍ତି ସେମାନେ କଳିଙ୍ଗନଗର ଯାଇ ଆନ୍ଦୋଳନରତ ଜନତାଙ୍କୁ ସାମନା କରିବା ଦରକାର । ୧୦ଟି ଶିଳ୍ପ ହେବାପରେ ସେଠାରେ ମାଟିର ମଣିଷମାନେ କାହିଁକି ସର୍ବହରା ହୋଇ ଯାଇଛନ୍ତି ? ଖଣି ଖୋଳି ନେଲେ ସରକାରଙ୍କୁ ଟଙ୍କା ଦିଆଯାଉଛି, ଜଙ୍ଗଲ ତିଆରି ପାଇଁ ଏହି ଯୁକ୍ତିଟି ଗାଲୁଆଙ୍କ ବାରବାଟୀ ଚାଷ ପରି । ବିଗତ ୬୦ ବର୍ଷରେ ଓଡ଼ିଶାର ଜଙ୍ଗଲ ବହୁତ କ୍ଷୟ ହୋଇଛି ଓ ମରୁଭୂମି ମଧ୍ୟ ହୋଇଛି ଖଣି ଶେଷ ହେବାପରେ । କାହିଁକି ଜଙ୍ଗଲ ସୃଷ୍ଟି ହେଲାନାହିଁ ସେ କଥା ବିକାଶର ପ୍ରବକ୍ତାମାନେ ସରକାରକୁ ପଚାରୁ ନାହାନ୍ତି କାହିଁକି ? ଯେକୌଣସି ନଦୀ, ଝରଣାର ମୂଳ ସ୍ରୋତ ଶୁଖିଗଲେ କିମ୍ବା ପ୍ରଦୂଷିତ ହେଲେ ତାହା ଅକାଳ ମୃତ୍ୟୁର ଶିକାର ହୁଏ । ଏପରି ଅନେକ ଜଳ ଉତ୍ସ ଶେଷ ହୋଇଗଲାଣି । କୃଷି ଦାୟିତ୍ଵରେ, ଜଙ୍ଗଲ ଦାୟିତ୍ଵରେ, ନଦୀ ଦାୟିତ୍ଵରେ ଥିବା ବିଭାଗୀୟ ଅଧିକାରୀମାନେ ଯଦି ଲେଖିବେ କହିବେ ଯେ କୃଷି, ଜଙ୍ଗଲ, ଜଳ, ବାୟୁମଣ୍ଡଳ ପଛେ ବୁଲିକି ଯାଉ, ଆମର ଖଣି ଖୋଳା ଓ ଶିଳ୍ପ ହୋଇ ବିଦେଶକୁ ରପ୍ତାନୀ ହେବାହିଁ ବିକାଶ, ତାହାହେଲେ ଅନ୍ତତଃ ସେମାନେ ନିଜ ଦାୟିତ୍ଵରୁ ଓହରି ଯାଇ କଂପାନୀମାନଙ୍କ ସେବାରେ ନିୟୋଜିତ ହେବା ଉଚିତ । ଆମ ରାଜ୍ୟରେ କୃଷି ଉତ୍ପାଦନ କମିବାରେ ଲାଗିଛି । କୃଷି ପ୍ରତି ଅବହେଳା ଯୋଗୁଁ କୃଷକ ଚାଷ ପ୍ରତି ବିତସ୍ପୃହ । କୃଷକର ଆତ୍ମହତ୍ୟା ଆରମ୍ଭ ହେଲାଣି । ଏପଟେ

Digitized by srujanika@gmail.com

ବିକାଶ ନାମରେ ଚାଷକୁ ଠିକା ଚାଷ ଓ କର୍ପୋରେଟ ଚାଷରେ ପରିଣତ କରିବାକୁ ରାଜ୍ୟ ଓ କେନ୍ଦ୍ର ସରକାର ମିଳିତ ଭାବେ ଷଡ଼ଯନ୍ତ୍ର କରୁଛନ୍ତି ଚାଷକୁ ଚାଷୀ ହାତରୁ କାଢ଼ି ନେବାକୁ । ତାପରେ କ'ଣ ହେବ ? ଧାନ, ଗହମ, ବାଜରା ପ୍ରଭୃତି ଖାଦ୍ୟ ଉତ୍ପାଦନ ବଦଳରେ ଲାଭକାରୀ ଫସଲ ହେବ । ଲାଭ ନେବେ ପୁଞ୍ଜିପତିମାନେ, ଚାଷୀ ବେକାର ହେବେ ଓ ଜମିର ଉର୍ବରତା ନଷ୍ଟ ହେବ । ୨୦ ବର୍ଷ ପରେ ଓଡ଼ିଶାର ଚିତ୍ରରେ ଚାଷୀ ନଥିବ, ଜଙ୍ଗଲ ନଥିବ, ସ୍ୱଚ୍ଛ ଜଳ ନଥିବ, ବାୟୁମଣ୍ଡଳ ପ୍ରଦୂଷିତ ହୋଇଥିବ । ମାଜ ମାଳ କଂପାନୀମାନେ ଥିବେ ଓ ଅନେକ କାମ ଶେଷ କରି ଚାଲି ଯାଉଥିବେ । ଆଜି ସ୍ୱପ୍ନ ଦେଖୁଥିବା ଯୁବକ ଯୁବତୀ ସେତିକିବେଳେ କେଉଁଠି ଥିବେ ? ଖଣି ଖୋଳିଲେ ଜଙ୍ଗଲ କ୍ଷୟ ହେବନି ଯୁକ୍ତି କରିବା ଅବାନ୍ତର । ନିୟମଗିରିରେ ଜଙ୍ଗଲ ବିଭାଗ ଯେଉଁ ରିପୋର୍ଟ ଦେଇଛି ତାହା ବିବାଦୀୟ । କାରଣ ଡ଼େରାଡ୍ରୁନସ୍ଥିତ ସଂସ୍ଥା ପ୍ରଥମେ ଯେଉଁ ରିପୋର୍ଟ ତିଆରି କରିଥିଲା ସେଥିରେ ପରିବର୍ତ୍ତନ କରିବାକୁ ଚାପ ଦିଆଯାଇଛି । ଏବେ ବି ନିୟମଗିରିକୁ ଖଣି ଖନନରୁ ବଞ୍ଚାଇବା ପାଇଁ ସୁପ୍ରିମକୋର୍ଟଦ୍ୱାରା ଗଠିତ ସି.ଆଇ.ସି. ବିଶେଷଜ୍ଞ କମିଟି ଉଦ୍ୟମରତ । ବିଜ୍ଞାନର ସତ୍ୟତାକୁ ମାନିବାକୁ ଯେଉଁମାନେ ପ୍ରସ୍ତୁତ ନୁହନ୍ତି, ସେମାନଙ୍କ ପାଗଳାମି ଆଗରେ ଯୁକ୍ତି କରିବା ନିରର୍ଥକ । ସତ୍ୟଟି ହେଲା, ଯେଉଁଠି ବକ୍‌ସାଇଟ୍ ଅଛି ସେଠି ପ୍ରଚୁର ଜଳଧାର ନିରନ୍ତର ବହିଥାଏ । ବକ୍‌ସାଇଟ୍ ଶେଷ ହୋଇଗଲେ ଜଳ ସ୍ରୋତର ମୃତ୍ୟୁ ହୁଏ । ପୁଣି କେତେକ କହନ୍ତି ଯେ - ଲୁହାପଥର ରୟାଲଟି ୨୪ ଟଙ୍କା ହେଲେ ବି ଦେଶର ଲାଭ ହେବ । ବ୍ରିଟିଶରାଜବେଳେ ବି ଆମ ଦେଶର ଅନେକ ବୁଦ୍ଧିଜୀବୀ ରାୟ ବାହାଦୁର ପଦପାଇ କହୁଥିଲେ, ଇଂରେଜ ଆସିବା ଦ୍ୱାରା ଦେଶ ଶିକ୍ଷିତ ହେଲା । ଆମ କଞ୍ଚାମାଲର ବଜାର ଦର ଅଛି । ତାକୁ ବଜାର ମୂଲ୍ୟରେ କମ ପରିମାଣରେ ବିକ୍ରି କଲେ ପ୍ରଚୁର ରାଜସ୍ୱ ଆସିବ । ଆବଶ୍ୟକତା ପୂରଣ ପାଇଁ ସେହି କଞ୍ଚାମାଲରୁ ଫିନିସ୍‌ଡ଼ ପ୍ରୋଡାକ୍ଟ ପ୍ରସ୍ତୁତ ହେଉ । ସେହି ଅନୁଯାୟୀ ଶିଳ୍ପ କାହିଁକି ହେଉ ନାହିଁ ? ସବୁଠାରୁ ପ୍ରାଥମିକତା ହେଉଛି ଶିଳ୍ପ, ଖଣି କିମ୍ବା ବିକାଶ ନାମରେ ଯେଉଁ ମୂଳବାସୀ ବିସ୍ଥାପିତ ହେବେ, ସେମାନଙ୍କ ଅଧିକାରକୁ ପ୍ରଥମେ ସ୍ୱୀକାର କରାଯାଉ । ସେମାନଙ୍କ ନା ଓ ହଁ ସହ ଯୋଜନା ନିଷ୍ପତ୍ତି ନହେଲେ ବିକାଶ ଅସମ୍ଭବ । ବିକାଶ ପ୍ରତି ଅସହିଷ୍ଣୁତାର ଅଭିଯୋଗ କରି କେତେକ ଓଡ଼ିଶାର ଜଳ, ଜମି, ଜଙ୍ଗଲ ହରାଇ ଖଣିଭିତ୍ତିକ ଶିଳ୍ପ ପାଇଁ କଳ୍ପନାବିଳାସୀ ହୋଇ ଓଡ଼ିଶାକୁ ନ୍ୟୁୟର୍କ ସହ ଯୋଡ଼ିବାକୁ ସ୍ୱପ୍ନ ଦେଖୁଛନ୍ତି । ରାଜ୍ୟ କହିଲେ କେବଳ ରାଜ୍ୟକୁ ଚଳାଉଥିବା ମୁଷ୍ଟିମେୟ ଶାସକଶ୍ରେଣୀ ନୁହଁନ୍ତି, ଯେଉଁମାନଙ୍କୁ ବିକଶିତ ଆର୍ଥିକ ଅଭିବୃଦ୍ଧିରେ ନିଶ୍ଚିତ ଭାଗ ମିଳିବ । ଆଉ ଗାଁର ଚାଷୀ, ମୂଲିଆ, ଜଙ୍ଗଲର ଆଦିବାସୀ ଓ ସହର ଗଳିର ଗରିବ ଲୋକଙ୍କୁ କ'ଣ ମିଳିଲାଣି ବିଗତ ୧୫ ବର୍ଷର ଶିଳ୍ପୀକରଣ ଓ ଜଗତୀକରଣରୁ ? ତାର

Digitized by srujanika@gmail.com

ହିସାବ ଦିଆଯାଉ । କାହାକୁ ନିଯୁକ୍ତି ମିଳିବ ? ଓଡ଼ିଶାର ଶ୍ରମ ବଜାରରେ ଅଲୋଡ଼ା ହୋଇ ଶ୍ରମିକ ଦିନ ୧୨ଟାରେ ଫେରିଯାଉଛି ଘରକୁ ବିନା କାମରେ । ଏବେ ବି ୫୦ ଭାଗ ପରିବାର ପୂରା ଦିନଟିଏର ଖାଦ୍ୟ ପାଉନାହାନ୍ତି । ୬୫ ପ୍ରତିଶତଙ୍କ ପାଖରେ ବଜାରରୁ ଡାଲି, ପରିବା କିଣିବା ସାମର୍ଥ୍ୟ ନାହିଁ କ୍ରୟଶକ୍ତିର ଅଭାବରୁ । ଯାହାର ପାଖରେ ସାଇକେଲଟିଏ ନାହିଁ ତା ମାଟିତଳୁ ଆଲୁମିନା, ଲୁହା, କ୍ରୋମ ଲୁଟ ହୋଇଯିବ ।

ଯୁଦ୍ଧ ଜାହାଜ, ଜେଟ୍ ବିମାନ ଆଉ ୫୦ ଲକ୍ଷ ଟଙ୍କିଆ କାର ଉତ୍ପାଦନ ହେବାପାଇଁ ଓ ଖାଉଟି ଜିନିଷ ରୂପେ କଂପ୍ୟୁଟର, ରଙ୍ଗିନ ଟି.ଭି., ପରିଗଣିତ ହେବ । ଯେଉଁଠି ଶାସନ ସଚିବମାନଙ୍କ ପାଇଁ ସରକାରୀ ତହବିଲରୁ ମାସିକ ୫୦ ହଜାରରୁ ଅଧିକ ବ୍ୟୟ କର୍ପୋରେଟ ଅଫିସର ଦରମା ଏକ ଲକ୍ଷ ଟଙ୍କାରୁ ଅଧିକ ସେଇଠି ଠିକା ଶିକ୍ଷକଙ୍କ ଦରମା ୧୫୦୦ ଟଙ୍କା ଓ ଗରିବ ଆଦିବାସୀ ଏକାଥରକେ ୮୦ ଟଙ୍କାରେ ୧୬ କେ.ଜି. ବି.ପି.ଏଲ୍. ଚାଉଳ କିଣିବାକୁ ସମର୍ଥ । ଏଠି ତଥାକଥିତ ବିକାଶର ବିଷମତା ପ୍ରତି ଅସହିଷ୍ଣୁ ହେବା ଭୁଲ ରହିଲା କେଉଁଠି ? ଏପ୍ରକାର ଅସହିଷ୍ଣୁତା ବିଦ୍ରୋହର ସୂଚନା । ଏହା ସ୍ୱାଭାବିକ ମଧ୍ୟ । ଅସହିଷ୍ଣୁତାର ବହ୍ନି ଜଳିବ । ଯେଉଁମାନେ ବିକାଶ ନାମରେ ଓକିଲାତି କରୁଛନ୍ତି କଳିଙ୍ଗନଗର ବିଦ୍ରୋହୀମାନଙ୍କୁ ଯାଇ ବୁଝାଇ ଦେଉନାହାନ୍ତି କାହିଁକି ? ସେମାନେ ଯିବେ ନାହିଁ କାରଣ ଏସବୁ ଲୋକ ସେମାନଙ୍କ ହିସାବରେ ମଣିଷ ନୁହନ୍ତି । ତେଣୁ ବିକାଶର ଦର୍ଶନ ଆଉ ସଜ୍ଞା ପଢ଼ାଇବା ବନ୍ଦ କରନ୍ତୁ । କ୍ଲାସରେ ଆଉ କ୍ଲାସିକାଲ ଇକନାମିକ୍ସ କିମ୍ବା ମୌଳିକ ବିଜ୍ଞାନ ପଢ଼ାକୁ ଅପ୍ରାସଙ୍ଗିକ କରି ଦିଆଗଲାଣି ଆଇ.ଟି. ଓ ଏମ୍.ବି.ଏ.ର ପ୍ରବାହରେ । ଲୋକେ ଠିକ୍ କରିବେ ତାଙ୍କରି ବିକାଶ ଓ ଜୀବନ ଦର୍ଶନ କେଉଁ ବାଟରେ ଚାଲିବ । ଆଜି ନହେଲେ କାଲିପାଇଁ ପ୍ରସ୍ତୁତ ହୋଇଯିବା ଏକାନ୍ତ ଜରୁରୀ । ବିକାଶକୁ କେନ୍ଦ୍ରକରି ସାମାଜିକ ଓ ଆର୍ଥିକ ନ୍ୟାୟ ପାଇଁ ସଂଘର୍ଷ ଅନିବାର୍ଯ୍ୟ । ବହୁରାଷ୍ଟ୍ରୀୟ କଂପାନୀ ଓ ଦେଶୀୟ ପୁଞ୍ଜିପତିମାନଙ୍କ ଅର୍ଥ ବଳରେ ରାଷ୍ଟ୍ର ଶକ୍ତିକୁ ବ୍ୟବହାର କରି ରାଜନୈତିକ ନେତୃତ୍ୱ ଦମନ କରିଚାଲିବ ଜୀବନ ଓ ଜୀବିକାର ଅଧିକାର ମାଗୁଥିବା ଜନତା ଉପରେ । କିନ୍ତୁ କାନ୍ଥ ଲେଖା ଅତି ସ୍ପଷ୍ଟ : ଶୋଷଣକାରୀ ସାମ୍ରାଜ୍ୟ ଭାଙ୍ଗିଯିବ ମାଟିର ମଣିଷମାନଙ୍କ ପ୍ରତିରୋଧର ବିଜୟରେ ।



Digitized by srujanika@gmail.com

# ଦେଓମାଳିକୁ ମାରିଲେ କୋରାପୁଟ ମରିବ

କୋରାପୁଟ ଜିଲ୍ଲା ଥିଲା ଅପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର ଯେଉଁଠି ତାର ଅମୂଲ୍ୟ ରତ୍ନଭରା ଭୂଷଣ ସବୁଜ ଘଞ୍ଚ ଜଙ୍ଗଲ, ନିରନ୍ତର ଓ ନିରବଚ୍ଛିନ୍ନ ଝରଣାମାନଙ୍କ ଜଳସ୍ରୋତର ଅବିରାମ କୁଳୁ କୁଳୁ ନିନାଦ, ଅନେକ ନଦୀମାନଙ୍କର ମଣ୍ଡଣି ସହ ସମତଳ ଜମିରେ କୃଷିର ଭବିଷ୍ୟତ ଅସରନ୍ତି ସଂବଳ ରୂପେ ଗର୍ବ ଆଣି ଦେଉଥିଲା । କିନ୍ତୁ ବିଗତ ୬୦ ବର୍ଷର ବିକାଶର ପ୍ରକ୍ରିୟାରେ କୋରାପୁଟର ଆଦିବାସୀକୁ ଆଉ ଲଙ୍ଗଳା ରହିବାକୁ ଦେବାନାହିଁ, ପ୍ରାଚୁର୍ଯ୍ୟ ଭିତରେ ଦାରିଦ୍ର୍ୟ ଅସହ୍ୟ ବୋଲି ଏପରି ଅନେକ ଦରଦୀ ଭାଷାର ପ୍ରତିଧ୍ୱନୀରେ କାଶୀପୁରଠାରୁ ଆରମ୍ଭକରି ମାଲକାନାଗିରି ପର୍ଯ୍ୟନ୍ତ ଅବିଭକ୍ତ କୋରାପୁଟକୁ ଶ୍ରୀହୀନ କରିବାକୁ ସମସ୍ତ ଷଡ଼ଯନ୍ତ୍ର କରାଯାଇଛି । ସେଥିରେ ସଫଳତା ମଧ୍ୟ ମିଳିଛି ସେମାନଙ୍କୁ ଯେଉଁମାନେ ଯୁବତୀର ସୌନ୍ଦର୍ଯ୍ୟରେ ଆକର୍ଷିତ ହୋଇ ତାକୁ ଧର୍ଷଣ କରିବାକୁ ପୌରୁଷତ୍ୱ ବୋଲି ମନେକରନ୍ତି । ଆଜି ଅନେକ ଜଙ୍ଗଲ ଶେଷ ହୋଇଯାଇଛି ମାତ୍ର କେତୋଟି ପୁଞ୍ଜିପତିଙ୍କ ମୁନାଫାପାଇଁ, ଝରଣାର ପାଣି ଶୁଖିଯାଇଛି, ନାଗାବଳୀ ପରି ନଦୀମାନଙ୍କର ଜଳସ୍ରୋତ ବିଷାକ୍ତ ହୋଇଯାଇଛି । ଅନେକ ନଦୀ ମଧ୍ୟ ଅପମୃତ୍ୟୁର ଶିକାର ହେବାକୁ ଯାଉଛନ୍ତି ବାଫିଲିମାଳି, ସିଜିମାଳି, କୋଡିଙ୍ଗା ମାଳି ମାନଙ୍କୁ ଧର୍ଷଣ କରିବାପାଇଁ ପ୍ରସ୍ତୁତ ହେଉଥିବା ଯନ୍ତ୍ରାୟନଦ୍ୱାରା । ଖଣିଜ ପଦାର୍ଥର ଉତ୍ତୋଳନର ସୀମା ନାହିଁ । ଭୂଇଁତଳ ସଂପତ୍ତିକୁ କେବଳ ଟେକ୍‌ନୋଲିଜିର ପାରିବାର ପଣିଆ ଆଗରେ ସମର୍ପିଦେଇ ପ୍ରକୃତିକୁ ପ୍ରାଣଶୂନ୍ୟ କରି ବିକାଶର ପ୍ରକ୍ରିୟା ଅବିଚାରିତ ଢ଼ଙ୍ଗରେ ଚାଲିଛି । ଅବଶ୍ୟ ଏହାକୁ ଯୋଜନାବଦ୍ଧ ରୂପେ କାର୍ଯ୍ୟକାରୀ କରାଯାଉଛି ପୁଞ୍ଜି ଓ ମୁନାଫା ସର୍ବସ୍ୱ ଆର୍ଥିକ ସମୃଦ୍ଧିପାଇଁ, କେବଳ ଅତ୍ୟାଧୁନିକ ଉପଭୋକ୍ତାବାଦକୁ ଆକାଶଛୁଆଁ କରିବାକୁ । ଏଠି ସାଧାରଣ ମଣିଷମାନଙ୍କ ଜୀବନ-ଜୀବିକାର କବର ଉପରେ ବଡ଼ଲୋକଙ୍କ ବିକାଶର ସୌଧ ନିର୍ମାଣ ଚାଲିଛି, ଅନେକ ଜିଅଁନ୍ତା ମଣିଷଙ୍କ ଶବ ଉପରେ ଶିଳ୍ପାୟନ ନାମରେ ବିକାଶର ଚକ ମାଡ଼ିଚାଲିଛି ବିଶ୍ୱବଜାରର ଚାହିଦା ପୂରଣର ଅନ୍ତିମ ଲକ୍ଷ୍ୟନେଇ । ଏଠି ପ୍ରକୃତିଯେ ବଳିପଡୁ, ଜଙ୍ଗଲ ସରିଯାଉ, ଜଳ ଶୁଖିଯାଉ, କିନ୍ତୁ ପାଣିର ବେପାର ତ ବଢ଼ିବ, ଫ୍ରି ଅକ୍‌ସିଜେନ ନାମରେ ନୂଆ ନୂଆ ଯାନ୍ତିକ ସୌଖୀନ ସାମଗ୍ରୀ ଘରମାନଙ୍କର ଆବଶ୍ୟକତା ରୂପେ ବଜାରରେ ଠିଆହେବ । ସେଥିପାଇଁ କାହିଁକି ପ୍ରକୃତିର ଶ୍ରୀକୁ ସୁରକ୍ଷିତ ରଖିବାକୁ

Digitized by srujanika@gmail.com

ବିକାଶର ଠିକାଦାରମାନେ, ଏମାନଙ୍କ ପୃଷ୍ଠପୋଷକ ସରକାର ତଥା ଶାସକ ଶ୍ରେଣୀ ଚିନ୍ତା କରିବେ ? ଅନେକ ଭୂପୃଷ୍ଠ ଓ ଭୂତଳ ପ୍ରାକୃତିକ ସଂପଦ ହରାଇଥିଲେ ବି ଅବିଭକ୍ତ କୋରାପୁଟ ଏବେବି କେତେକ ଅମୂଲ୍ୟ ରତ୍ନ ଭଣ୍ଡାରର ଗନ୍ତାଘର ହୋଇ ରହିଛି । ତା ଭିତରୁ ଦେଓମାଳି ପର୍ବତ ଅନ୍ୟତମ । ଏଠି ଅନେକ ଝରଣାର ଜନ୍ମସ୍ଥଳୀ । ଏମାନଙ୍କ ପାଖରେ ଛୋଟିଆ ମାଳିପର୍ବତଟିଏ ଯେଉଁଠି ପନ୍ଦରଟି ଝରଣାର ଜନ୍ମଦାତ୍ରୀ । ତଥାପି ରାଜ୍ୟ ସରକାର, କେନ୍ଦ୍ର ପରିବେଶ ମନ୍ତ୍ରାଳୟ ଓ ଜନଶୁଣାଣୀକୁ ଅପବ୍ୟବହାର କରି ତଥ୍ୟକୁ ଲୁଚାଇ ସତ୍ୟର ଅପଳାପ କରୁଥିବା ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ପରିଷଦ କମ୍ପାନୀର ସେବାପାଇଁ କହିଦେଲେ ସେଠି ଜଳ ନାହିଁ କି ଜମି ନାହିଁ । ଲୋକଙ୍କଦ୍ୱାରା ସୃଷ୍ଟି ହୋଇଥିବା ଜଙ୍ଗଲକୁ ସ୍ୱୀକାର କରୁଛି କିଏ ? ମାଳିପର୍ବତରେ ବକ୍‌ସାଇଟ୍ ମାଇନିଂ ହେବ । ଅବଶ୍ୟ ସ୍ଥାନୀୟ ଆଦିବାସୀ ନିଜ ପେଟପାଟଣାର ସୁରକ୍ଷା ଓ ଅଧିକାର ପାଇଁ କମ୍ପାନୀର ପ୍ରବେଶକୁ ପ୍ରତିରୋଧ କରି ଚାଲିଛନ୍ତି ।

ଏବେ ପୁଣି ଦେଓମାଳି ପର୍ବତ ଉପରେ କମ୍ପାନୀମାନଙ୍କର ଲୋଲୁପ ଦୃଷ୍ଟି । ଖବର ପାଇ ମୁଁ ଗଲି ସେହି ଭିତରକୁ । ଆଶାପୁର ମାଇନିଂ କେମଲିଃ ନାମରେ ଗୋଟାଏ କମ୍ପାନୀ ପ୍ରବେଶ କରିବାକୁ ସମସ୍ତ ଚକ୍ରାନ୍ତ କରିସାରିଛି । ପଟାଙ୍ଗି ତହସିଲ ଅନ୍ତର୍ଗତ ପର୍ବତର ଦ୍ୱାରଦେଶ ପୁଟିସିଲରେ ପହଞ୍ଚିବା ବାଟରେ ଖୁବ୍ ସୁନ୍ଦର ଝରଣାର ପାଣି ବହିଚାଲିଛି ମେ ମାସରେ । ପାହାଡ଼ର ତଳିଆ ଅଞ୍ଚଳରେ ବେଶ୍ ଧାନ ଚାଷ ଓ ପରିବା ଚାଷ । ପାହାଡ଼ର ଉପରି ଭାଗରେ ଅନେକ ଫସଲ । ପୋଡୁଚାଷ ହେଲେବି ଏଠି ଜଙ୍ଗଲରେ ନିଆଁ ଲାଗେନି । କେବଳ ଚାଷର ଉର୍ବରତା ପାଇଁ ପୋଡୁଚାଷ ଯାହାକି ଜୀବିକାର ଏକ ମୂଳ ଉତ୍ସ । ଏଠି ବୁଝିଲାବେଳକୁ ଗାଁ ମାନଙ୍କରେ ୨୦୦୬ ଅକ୍ଟୋବର ମାସରୁ ରାଜସ୍ୱ ନିରୀକ୍ଷକଙ୍କ ଦ୍ୱାରା ନୋଟିସ୍ ଜାରି ହୋଇଯାଇଛି ଦେଓମାଳି ପର୍ବତମାଳାରେ ଥିବା କେତେକ ମାଳି ମାନଙ୍କ ଜମି ଅଧିଗ୍ରହଣ ପାଇଁ । ଏସବୁ ଜନବସତି ଥିବା ପର୍ବତର ଅଂଶ । ଏଠି ବକ୍‌ସାଇଟ୍ ଖୋଳି ନେଇଯିବା ପାଇଁ କମ୍ପାନୀ ଆସୁଛି ରାଜ୍ୟ ସରକାରଙ୍କ ସହଯୋଗରେ । କିନ୍ତୁ ଲୋକେ ଏହାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁନ୍ତି । ପ୍ରାୟ ୩ ହଜାର ହେକ୍ଟର ଖଣି ପାଇଁ ଲିଜ୍ ଦିଆଯିବାକୁ ପ୍ରକ୍ରିୟା ଆରମ୍ଭ ହୋଇଛି । ପଟାଙ୍ଗି, ସିମିଳିଗୁଡ଼ା, କୋରାପୁଟ ଓ ନାରାୟଣପାଟଣା ବ୍ଲକର ପ୍ରାୟ ୪୦ ଖଣ୍ଡ ଗାଁର ଲୋକଙ୍କ ପାଖକୁ ନୋଟିସ୍ ଗଲାଣି । ଏସବୁ ଅଞ୍ଚଳ ପାହାଡ଼ର ଗର୍ଭଭିତରେ । ଏଠି ଭିନ୍ନ ଭିନ୍ନ ନାମରେ ପର୍ବତ ଅଛି । ଯାହାର ନାମ ସାକୁକୋଡ଼ି, ଲାଣ୍ଡିହୋରୁ, ଘୋଡ଼ାଗନ୍ଦି, ଗିଲିମାଡି, ଦୋହଲାପୋବେଇ, ଗଳାମେଟା, ମୁଣ୍ଡଳପାର, କ୍ରାନିପାଉ, କାଜାଅରୁ, ଦାମତିପାରା । ଏହି ପାହାଡ଼ମାନଙ୍କ ମଧ୍ୟରୁ ମୁଣ୍ଡଳିପାର, କୁଠିଗରା, ବଡ଼ଗି, ଗୁନାପାର, ପୁକି ଆମ୍ବ, ଏୟୁତବୋଣି, ଡାଣିମାଣି, ଲାଣ୍ଡି, ଘୋଡ଼ାଗନ୍ଧ,

Digitized by srujanika@gmail.com

ସାଗଲତାମ୍ବ, ହାନ୍ଦିଆମ୍ବ, କୋଡୁରୁ ଆମ୍ବ, ବିଡ଼ିନି ମାହାଗ୍ର ପାଉକୋଟା ନାମରେ ଅନେକ ଝରଣାର ଜନ୍ମ । ଏହି ସବୁ ଝରଣାର ଜଳ ଆସି ପାଟକି କାଡ଼ା ନାଳରେ ପଡୁଛି । କାଣ୍ଡି ଅଞ୍ଚଳରେ ଡ଼ାଙ୍ଗେରି ମାଡ଼ି, ବିଡ଼ିକାମୁଣ୍ଡି, ଲାଣ୍ଡିପାହାଡ଼, କଳାପାୟୁ, ବନ୍ଧାମାଳି, ପାଟିଆ ପାହାଡ଼, ପେଙ୍ଗୁଝୋଲା, ଭାଲୁଗୁମ୍ଫା, ହାନ୍ଦିୱାରା, କୁଟିଂୱାଲି, ଗଡ଼ା ଗନ୍ଦି ପର୍ବତରୁ ବିଡ଼ିକା ମୁଣ୍ଡି, ହାନ୍ଦିୱାରା, ସପାଂଅ ଝୋଲା, ଡ଼ାଙ୍ଗୋରି ମାଡ଼ି, ଗଡ଼ା ଗନ୍ଦି, ସାରିକନ, କାମ୍ବଇ ପାୟୁ, ପାୟାର ମାଡ଼ା, କୁଟିଂ ୱାରି ଓ କ୍ରାଲିକଟା ନାମରେ ଝରଣାର ସ୍ରୋତ ବହୁଛି । ସେହିପରି ଡୁମୁରିପଦର ଗ୍ରାମପଞ୍ଚାୟତ ଅଞ୍ଚଳରେ ଶେଂୟାମାଲି, ପିଣ୍ଡାମାଲି, ତାଡ଼ାମାଲି, ୱାଡ଼ାସ୍ୱାରା, କ୍ରୋଲୁମୁଣ୍ଡା ପାହାଡ଼ରୁ କେନ୍ଦୁମୁଣ୍ଡି, ଭିତରଗଳି, ଏୟୁ ତିନିଝୋଲା, ପାତାଡ଼ାସଫୀ, କାରଡିପାୟୁ ଝରଣା ପ୍ରବାହିତ । ଏସବୁର ପାଣି କେରାଣ୍ଡି ନଦୀକୁ ଯାଏ ଯାହାକି କୋଲାବ ନଦୀର ମୁଖ୍ୟ ଜଳାଧାର । ସେହିପରି ଖଜୁରୀପଦର ଅଞ୍ଚଳରେ ଝାଟିପାରା, ଟାଙ୍ଗରାଗାଣ୍ଡା, ମାନେଇନାଡ଼ି, ଏୟୁକଟା, ପେଞ୍ଜାୱାଲି, ସଟିଙ୍ଗ ଡ଼ିକା ପାହାଡ଼ରୁ ନିର୍ଗତ ହାତୀକାଇ, ଝାଟିପାରା, ବିଲାମାଡ଼ା, ହରିଝରଣା, ଦାରାମା ଗାଡ଼ୟୁ, କିରିଡ଼ାଓଷା, ବେଲଆମ୍ବ, ଡକୱାଲି, ତାକିନି ଝଲା, ମୁଷାମାରି, ବାରିବେଟା, ରଗମାଣ୍ଡା, ଲୁଲୁମାୟା ପିଲିକାମୁଣ୍ଡି, କୁଣୁକା ଝଲା ନାମରେ ଝରଣା ଗୁଡ଼ିକ ସେଠାର ଲୋକଙ୍କ ଜୀବନ ରେଖା ହୋଇ ରହିଛନ୍ତି ।

ଏସବୁ ନାମ ସହ ଆଦିବାସୀ ସଂପ୍ରଦାୟର ସଂସ୍କୃତି, ସାମାଜିକ ଚଳଣି ଓ ଭାଷାଗତଭାବ ସଂପୃକ୍ତ । ଏଠି ଅଧିକାଂଶ କୁବି ବା କୁଇ ସଂପ୍ରଦାୟର ଆଦିବାସୀ ବାସ କରନ୍ତି । ପରଜା ମଧ ଅଛନ୍ତି । ନିଜସ୍ୱ କଥିତ ଭାଷା କୁଇ । ଗୋଟିଏ ପାହାଡ଼ର ନାମ କ୍ରୋନିପାଉ । କ୍ରୋନିର ଅର୍ଥ ବାଘ । ଏଠି ବାଘରହେ । ସେହିପରି କ୍ରାଲିକଟା, ଅର୍ଥାତ୍ ମୁନିଆପଥର । ଏହି ପାହାଡ଼ର ପଥର ମୁନିଆ । ସେହିପରି ଗୋଟିଏ ଝରଣାର ନାମ ଏୟୁ ତିନି ଝୋଲ । ଏୟୁର ଅର୍ଥ ପାନୀୟ । ଅର୍ଥାତ୍ ଏଠି ପିଇବା ପାଣିମିଳେ । ସେହିପରି ଡ଼ାକିନି ଟଟା । ତାକିନିର ଅର୍ଥ ମିଠା । ଏହାର ପାଣି ମିଠା । ସେହିପରି ସାଜୁକୋଡ଼ିକୁ ଦେଖିଲେ ସାଜୁର ଅର୍ଥ 'ସଜ' ବା ଅଳଙ୍କାର । କୋଡ଼ିର ଅର୍ଥ ପାହାଡ଼ । ଏହା ପାହାଡ଼ର ରୂପ ଅଳଂକାରରେ ସଜା ସୁନ୍ଦର ପାହାଡ଼ । ଏସବୁ ନାମକରଣ ଏଠାର ଅଧିବାସୀଙ୍କ ଭାଷା, ସଂସ୍କୃତି ଓ ସାମାଜିକ ପ୍ରଚଳନ ସହ ଜଡ଼ିତ । ଏଠିର ଜଳ ଓ ଜଙ୍ଗଲ ଭିତରେ ଏଠାର ସଙ୍ଗୀତ, ଇତିହାସର କିମ୍ବଦନ୍ତୀ ଆଉ ମଣିଷ ସମାଜର ମନର କଥା ଭରି ରହିଛି ।

ସରକାର କମ୍ପାନୀକୁ ଡ଼ାକି ଆଣିଛି ବୋଲି ଯେତେବେଳେ ଶୁଣିଛି, ପାହାଡ଼ର ଅଧିବାସୀ, ଚିତ୍କାର କରି କହୁଛି : "ଆମ ଜାତି ହିଁ ପାହାଡ଼, ଆମ ଧର୍ମ ପ୍ରକୃତିର ପୂଜା । ଆମ ଜୀବନ ଏଠାର ପାଣି–ପବନ ଦେଉଥିବା ଝରଣା ଓ ଜଙ୍ଗଲ । ଆମ ଖାଦ୍ୟ କନ୍ଦାଠାରୁ ଆରମ୍ଭକରି ଚାରକୋଳି, ମାଲିଂ ଫଳ ବେଲ, ତେନ୍ତୁଳି, ମହୁଲ, ଆମ୍ବ, ପଣସ, ବଣ

Digitized by srujanika@gmail.com

କଦଳୀ, କାଂକ, ବଣ କଲରା ସହ ପାହାଡ଼ ତଳ ଚାଷ ଫସଲ । ପାହାଡ଼ ଉପରେ ମାଣ୍ଡିଆ, ସୁଆଁ, କାଂଗୁ, ଝୁଡଙ୍ଗ, ବାଜରା, ବୋଇତାଳୁ, କଖାରୁ, ରାଇ, ବାଇଲରୁ ପାଉ । ଏହା ସହିତ ଫୁଲଝାଡୁ, କରଞ୍ଜ, ଶିଆଳି ପତ୍ର ଓ ଦଉଡ଼ି, ମହୁ, ଝୁଣା, ଚାପେଡ଼ା ସଂଗ୍ରହ କରୁ । ଏହି ପର୍ବତ ଅଛି ବୋଲି ଏଠି ଅଛି ପିଟକନ୍ଦା, କାରିଗିକନ୍ଦା, ଚେରନ୍ଦା, ପିତାକନ୍ଦା, ପାଡେଇ କନ୍ଦା, ହେମି କନ୍ଦା, ବଣ ହଳଦୀ, ବାତ୍ରିକନ୍ଦା, ବଣ କାଂକଡ଼, ଜାମକୋଳି, ଜାମ୍ବ, କଣ୍ଟାକୋଳି, ଅଁଳା, ବାହାଡ଼ା, ହରିଡ଼ା ପରି ଅନେକ ଜଙ୍ଗଲ ଜାତ ଦ୍ରବ୍ୟ ଯାହାଦ୍ୱାରା ଆମେ ଓ ଆମ ପିଲାମାନେ ବଞ୍ଚି ଆସିଛୁ । ଏବେ ପାହାଡ଼ର ମାଟି ଖୋଳି ନେଇଯିବ କମ୍ପାନୀ । ମାଟି ଗଲେ ସବୁ ଚାଲିଯିବ । ଆମେ କୁଆଡ଼େ ଯିବୁ ?''

ଦେଓମାଳିର ସାଂସ୍କୃତିକ ଐତିହ୍ୟ ସହ ଆଦିବାସୀ ସମାଜର ଆଧ୍ୟାତ୍ମିକ ତଥା ଧାର୍ମିକ ଚେତନା ଖୁବ୍ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ । ଦେଓର ଅର୍ଥ ଦେବତା । ଏହା ଦେବତାର ପର୍ବତ । ଏହା ୩ ଦେବତାର ପୀଠ ସ୍ଥଳି । ଯଥା ଦେଓମାଳି, ମେୟାଁ ମାଳି, ଓ ଜିଙ୍ଗ ହୋରୁ । ଏଠି ଚୈତପର୍ବ ମୁଖ୍ୟ ପର୍ବ । ବର୍ଷାର ଅଭାବ ହେଲେ ଏବେବି ଆଦିବାସୀମାନେ ଏଠାରେ ଅବସ୍ଥିତ ବଡ଼ ଗୁମ୍ଫା 'କୁକୁଡ଼ାପାଉଁ' କୁ ଯାଇ ମନାସିବେ । ନାଲି ସାଢ଼ି ଟାଙ୍ଗିବେ ଏବଂ ବର୍ଷାକୁ ଡ଼ାକିବେ । ନୂଆଖିଆ, ପୁଷପର୍ବ, ଦେଆଳିପର୍ବ, ବନ୍ଦାପଣା ପର୍ବ ଓ ଟାକୁପର୍ବ ପାଳନ କରନ୍ତି । ଟାକୁର ଅର୍ଥ ଆମ୍ବ । ଆମ୍ବଦିନେ ଟାକୁ ପର୍ବ ହୁଏ । ଏଠି ସରକାରୀ ଯୋଜନାର ୬୦ ବର୍ଷର ହିସାବକଲେ ଲୋକଙ୍କ ପାଖକୁ କିଛି ପହଞ୍ଚି ନାହିଁ । ଦେଓମାଳିର ପଡ଼ିଶା ପଞ୍ଚପଟ ମାଳିରେ ବିଗତ ୨୦ ବର୍ଷ ଧରି ବକ୍ସାଇଟ୍ ଖଣି ଖୋଳା ଚାଲିଛି । ସେଥିପାଇଁ ଅନେକ ଝରଣାର ସ୍ରୋତ ଶୁଖିଗଲାଣି, ଅନେକ ଗାଁର ଆଦିବାସୀ ଜଙ୍ଗଲ ହରାଇ ଜୀବିକା ହରାଇ ସାରିଲେଣି । ନାଲକୋ ପ୍ରଚୁର ଲାଭ କରିଥିଲେବି ଲୋକେ ପାଇଛନ୍ତି କ'ଣ ? କୋରାପୁଟର ଜନ ଜାତି ପାଇଛି କ'ଣ ? ତଥାପି ଏହା ଏକ ରାଷ୍ଟ୍ରାୟତ ଉଦ୍ୟୋଗ ହୋଇଥିବାରୁ ଏହାକୁ ଘରୋଇକରଣ ନକରି ଏହି ଉଦ୍ୟୋଗ ଦ୍ୱାରା ଦେଶର ଆଲୁମିନିୟମ ଆବଶ୍ୟକତାକୁ ପୂରଣ କରାଯାଉ ଓ ବିସ୍ଥାପିତଙ୍କୁ ନ୍ୟାୟ ଦିଆଯାଉ। କିନ୍ତୁ ଆସନ୍ତା ୮୦ ବର୍ଷ ପର୍ଯ୍ୟନ୍ତ ଏଠାରୁ ବକ୍ସାଇଟ ମିଳିବ । ତେଣୁ ଓଡ଼ିଶାର ଅନ୍ୟତ୍ର ବକ୍ସାଇଟ୍ ଖନନକୁ ନିଷିଧ କରାଯିବା ଏକାନ୍ତ ଜରୁରୀ । ଏହାଦ୍ୱାରା ପ୍ରକୃତିର ସୁରକ୍ଷାସହ ଆଦିବାସୀଙ୍କ ଜୀବିକା ଓ ଭବିଷ୍ୟତ ପାଇଁ ପ୍ରାକୃତିକ ସଂପଦର ସଂରକ୍ଷଣ ସମ୍ଭବପର ଏବଂ ମାଁ ମାଟିର ସୁରକ୍ଷାରେ ହିଁ ମଣିଷ ସମାଜ ସୁରକ୍ଷିତ ରହିବ ।

ଆଜି ଦେଓମାଳି ପର୍ବତମାଳାରେ ଗୋଟେପଟେ ଖଣିଖନନ ଆରମ୍ଭ ହୋଇଗଲେ ତାର ଅନ୍ତ ହେବ ନାହିଁ । କାରଣ ନିୟମଗିରିଠାରୁ ଆରମ୍ଭକରି ଦେଓମାଳି ପର୍ଯ୍ୟନ୍ତ ଏମାନଙ୍କୁ ଗିଳିଦେବାକୁ ଦେଶୀ-ବିଦେଶୀ ଅସୁରମାନେ ଅପେକ୍ଷା କରି ବସିଛନ୍ତି । ଏମାନଙ୍କୁ ସମ୍ପ୍ରେ

ସଙ୍କେତ ଦେଇ ସାରିଲେଣି ରାଷ୍ଟ୍ରର ଦୂତମାନେ, ପରିଚାଳକମାନେ ଆଉ ପ୍ରଶାସକ ଓ ବିଚାରାଳୟର ମଉଡ଼ମଣିମାନେ । କେବଳ ଏସବୁ ସଂପଦର ଅସଲ ମାଲିକ ଜନତା ଏହାକୁ ପ୍ରତିରୋଧ କରିପାରେ ବୋଲି ଭୟ ଡ଼ାକି ରହିଛି । ଏହି ଭୟକୁ ନିପାତ କରିବାକୁ ମିଲଟାରୀ ଶକ୍ତିକୁ ରାଷ୍ଟ୍ର ବ୍ୟବହାର କରୁଛି । ତଥାପି ଆଶା ରହିଛି ଏହାଠାରୁ ବଳୀୟାନ ପାହାଡ଼ କୋଳରୁ ଛନ୍ଦିତ ଝରଣାର ଦାୟାଦମାନେ ନିଜ ସମାଜର ସଂପତ୍ତିକୁ ରକ୍ଷା କରିବାକୁ ଜୀବନ ଦେଇପାରନ୍ତି । ଆଜି ଦେଓମାଳିର ସେହି ମହାନ୍ ସନ୍ତାନମାନଙ୍କ ଦରକାର ନାହିଁ ସହରୀ ଓ ଆଧୁନିକ ସମୃଦ୍ଧ ମଣିଷର ଘରେ ଥିବା ବ୍ୟକ୍ତିଗତ ସଂପତ୍ତି ମଟର, ଫ୍ରିଜ୍, ଏପରି ଅନେକ ସମେତ ବ୍ୟାଙ୍କ ଜମା । କିନ୍ତୁ ସେମାନଙ୍କ ସଂପଦ ହେଉଛି ସମାଜର ଯାହାକୁ ନିଜର ବୋଲି ଭଲପାଆନ୍ତି । ସେ ସବୁହେଲା ଝରଣା, ପାହାଡ଼ ଓ ତା ମଧ୍ୟରେ ଥିବା ଅସରନ୍ତି ପ୍ରକୃତିଦତ୍ତ ସଂବଳ । ଉପର ଲିଖିତ ଝରଣା, ପାହାଡ଼ରୁ ଆହୁରି ଅଧିକ ସଂଖ୍ୟାରେ ମିଳିବ ଦେଓମାଳିର ବିଭିନ୍ନ ସ୍ଥାନରେ । ଦେଓମାଳି ଅଛି ବୋଲି କୋରାପୁଟ ପରି ଓଡ଼ିଶାର ଏକ ମୁଖ୍ୟ ଅଞ୍ଚଳରେ ନିୟମିତ ପବନ, ବର୍ଷା ଓ ମୌସୁମୀର ସ୍ୱାଦ ଏବେ ବି ମିଳୁଛି । ଏହା ଯଦି ଯନ୍ତ୍ରାୟନର ସଂଘାତରେ କ୍ଷତବିକ୍ଷତ ହୁଏ କେବଳ ଦେଓମାଳିର ପ୍ରାକୃତିକ ଗନ୍ତାଘରର ଅପମୃତ୍ୟୁ ହେବନି ତାହା ସମଗ୍ର କୋରାପୁଟକୁ ମଧ୍ୟ ମାରିଦେବ । ଯିଏ ବକ୍‌ସାଇଟ୍ ଖୋଳିନେବ ତାଠାରୁ ଆମ ପାହାଡ଼, ପର୍ବତ, ନଦୀ, ଝରଣାର ମାଲିକ ବୋଲାଉଥିବା ସରକାର ପାଇବ ଟନ୍ ପିଛା ମାତ୍ର ୫୪ ଟଙ୍କା । ଯେଉଁ କମ୍ପାନୀ ନେବ ସେ ମୁନାଫା ପାଇବ ଟନ୍ ପିଛା ଏକହଜାର ଟଙ୍କା । ପୁଣି ବକ୍‌ସାଇଟ୍‌ରୁ ଆଲୁମିନା ହୋଇଗଲାପରେ ଏହାର ପରିବର୍ତ୍ତିତ ମୂଲ୍ୟ ହଜାର ହଜାର ଟଙ୍କାର ହୋଇଯିବ । ଆଉ ଏହି କମ୍ପାନୀର ଲାଭରୁ କୁକୁରକୁ ରୋଟି ଫୋପାଡ଼ିଲାପରି କେତେକ ରାଜନେତା ଓ ପ୍ରଶାସକମାନଙ୍କ ପକେଟରେ ଭରିଦେବେ କେତେ କୋଟି ଟଙ୍କା । ତାପରେ ୨୦ ବର୍ଷପରେ ଦେଓମାଳିର ରୂପ ହୋଇଯାଇଥିବ ମରୁଭୂମି । ଏକଥାକୁ ସ୍ୱୀକାର କରନ୍ତି ନାହିଁ ତଥାକଥିତ ଖଣି ବିଶେଷଜ୍ଞମାନେ । କାରଣ ସେମାନଙ୍କ ପାଠହେଲା ଯାହା ଅଛି ତାକୁ ସାରିଦିଅ ବୈଷୟିକ ଜ୍ଞାନ କୌଶଳରେ ପରାକ୍ରମକୁ ବ୍ୟବହାରକରି । ଦଳେ ପାଆନ୍ତୁ ଅନେକ ସମୃଦ୍ଧିର ସ୍ୱାଦ, ଆଉ ଅନେକ ଶେଷ ହୋଇଗଲେ ସେମାନଙ୍କ ଯାଏ ଆସେ କ'ଣ ? କିନ୍ତୁ ସାବଧାନ ! ଯେଉଁମାନେ ଆଜି ବି ନିମ୍ନ ମଧ୍ୟବିତ୍ତ ଶ୍ରେଣୀରୁ ଉପରକୁ ଉଠିବା ସମ୍ଭବପର ନୁହଁ, ସେମାନେ ବିନା ଜଙ୍ଗଲ, ବିନାପାଣି, ବିନା ଚାଷରେ ବଞ୍ଚିପାରିବେ ନାହିଁ । ତେଣୁ ସେହି ଜୀବନ ଜୀବିକାର ସ୍ରୋତ ଜମି, ଜଳ, ଜଙ୍ଗଲ ପାଖରେ ରହିବାକୁ ହେଲେ କିମ୍ୱା ସେହି ପ୍ରକୃତି ପାଖରୁ ଆଶାର ସନ୍ଦେଶ ପାଇବାକୁ ହେଲେ ତାକୁ ବଞ୍ଚାଇବାକୁ ହେବ । "ଦେଓମାଳିକୁ ମାରିଲେ କୋରାପୁଟ ମରିବ" ।



Digitized by srujanika@gmail.com

# ବିନାଶର ଯାତ୍ରା :
# କାଶୀପୁରରୁ ନନ୍ଦିଗ୍ରାମ ଭାୟା କଳିଙ୍ଗନଗର

## (ମଣିଷ ସଭ୍ୟତା ଉପରେ ଏକ ପ୍ରଶ୍ନ ଚିହ୍ନ)

୧୬ ଡିସେମ୍ବର ୨୦୦୦ ଦିନ ଉତ୍କଳ ଆଲୁମିନା କମ୍ପାନୀକୁ ପ୍ରତିରୋଧ କରୁଥିବା ସଂଗ୍ରାମରତ କାଶୀପୁର ଆଦିବାସୀଙ୍କ ଉପରେ ପୋଲିସ ଗୁଳି ଚଳାଇଥିଲା ମାଇକଞ୍ଚ ଗାଁରେ । ତିନିଜଣ ଯୁବକ ଶହୀଦ ହେଲେ ଓ ଅନେକ ଆହାତ ହେଲେ । ଶାସକଦଳ ଏହି ହତ୍ୟାକୁ ବିକାଶ ବିରୋଧୀ ଯଥାର୍ଥ ଜବାବ ବୋଲି ଧରି ନେବାବେଳେ ବିରୋଧୀ କଂଗ୍ରେସ କମ୍ପାନୀକୁ ସମର୍ଥନ ଦେଇ କେବଳ ଗୁଳିକାଣ୍ଡକୁ ନିନ୍ଦାକରିଥିଲା । କିନ୍ତୁ ରାୟଗଡ଼ା ସ୍ଥାନୀୟ କଂଗ୍ରେସ, ବିଜେଡି, ବିଜେପି ମିଳିତ ସର୍ବଦଳୀୟ କମିଟିନାମରେ କମ୍ପାନୀର ସହଯୋଗୀ । ଗୋପାଳପୁରଠାରେ ଟାଟାକମ୍ପାନୀ ଇସ୍ପାତ କାରଖାନା ହଟାଇ ନେଇଛି । ଏଠି ଆନ୍ଦୋଳନର ମୂଳ ପ୍ରସଙ୍ଗଥିଲା କୃଷକ ଓ ଜମିହୀନଙ୍କୁ ଜୀବିକାର ସ୍ରୋତ କୃଷି ଓ କିଆଫୁଲ ଓ ଋଷିକୁଲ୍ୟା ନଦୀର ଜଳର ସୁରକ୍ଷା । କାଶୀପୁରରେ ବକ୍ସାଇଟ୍ ଖୋଳିଲେ ୩୨ ଟି ଝରଣା ଶୁଖିଯିବ । ନଦୀ ଜଳ ପ୍ରଦୂଷିତ ହେବ ଏବଂ ଇନ୍ଦ୍ରାବତୀ ଜଳଭଣ୍ଡାର ସିଲଟିଂ ହୋଇଯିବ । କିନ୍ତୁ ରାଜ୍ୟରେ ବିତର୍କ ଚାଲିଲା ଆଦିବାସୀ ଅଞ୍ଚଳରେ ଶିଳ୍ପ ନ ହେଲେ ବିକାଶ କିପରି ହେବ ? ଉତ୍ତର ଦିଆଗଲା ଏହି ବିକାଶରେ ଆଦିବାସୀଙ୍କ ବିନାଶ ହେବ । ଜମି, ଜଳ ଓ ଜଙ୍ଗଲକୁ ଧ୍ୱଂସକରି ଆଲୁମିନା ଉତ୍ପାଦନ ଦେଶୀ-ବିଦେଶୀ ପୁଞ୍ଜିପତିଙ୍କ ମୁନାଫାପାଇଁ ଏବଂ ବିଶ୍ୱବଜାରରେ ସୌଖୀନ୍ ଓ ଯୁଦ୍ଧ ସାମଗ୍ରୀର ଚାହିଦା ପୂରଣ ପାଇଁ ଉଦ୍ଦିଷ୍ଟ । କିନ୍ତୁ ବିକାଶର କର୍ତ୍ତା ଓ ପ୍ରବକ୍ତାମାନେ ଶୁଣିଲେ ନାହିଁ । ପୁଣି ଯେତେବେଳେ ନିୟମଗିରିରେ ବେଦାନ୍ତ କମ୍ପାନୀ ପାଇଁ ଖଣି ଦେବାପାଇଁ ସରକାର ସମସ୍ତ ଆଇନ କାନୁନ ଉଲଙ୍ଘନ କରି ବଂଶଧାରା ଓ ନାଗାବଳୀ ଦୁଇନଦୀକୁ ଅପମୃତ୍ୟୁ ମୁଖକୁ ଠେଲି ଦେବାସହ ତେଲନଦୀର ଜଳ ବି କମ୍ପାନୀପାଇଁ ଦେବାକୁ ବସିଲେ, ସୁପ୍ରିମକୋର୍ଟ ଦ୍ୱାରା ଗଠିତ ବିଶେଷଜ୍ଞ କମିଟି ଖଣିଖନନକୁ ନିଷିଧ କରିବାକୁ ସୁପାରିଶ କରିବାପରେ ଓଡ଼ିଶାର ବିରୋଧୀ ଦଳମାନେ ଶିଳ୍ପ ନାମରେ ଲୁଟକରଣକୁ କିଛି ମାତ୍ରାରେ ସ୍ୱୀକାରକରି ବେଦାନ୍ତ ବିରୋଧରେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଶ୍ନକଲେ । ଯେତେବେଳେ ଦକ୍ଷିଣ କୋରିଆର ପୋସ୍କୋ ଆସିଲା ସେତେବେଳେ ଲୁହାପଥର କିପରି ଲୁଟ୍ ହେବ ତାହା ଲୋକଲୋଚନକୁ ଆସିଲା । ଗୋପାଳପୁର ପରି ଏକ କୃଷିଧାନ ଓ କୃଷି

Digitized by srujanika@gmail.com

ଆର୍ଥିକ କ୍ଷେତ୍ରକୁ କିପରି ଧ୍ୱଂସ କରାଯିବ ଏକ ବଡ଼ ଇସ୍ପାତ ଶିଳ୍ପ ନାମରେ ତାହା ଓଡ଼ିଶାରେ ବିକାଶ ଉପରେ ପ୍ରଶ୍ନକରି ଶିଳ୍ପାୟନକୁ ପ୍ରଶ୍ନହେବା ଆରମ୍ଭହେଲା । ଏଠି ସିପିଆଇର ସ୍ଥାନୀୟ କର୍ମୀମାନେ ତୀବ୍ର ବିରୋଧ କରୁଥିବାବେଳେ ସିପିଆଇର କେନ୍ଦ୍ର ନେତୃତ୍ୱ ପୋସ୍କୋ ବିରୋଧୀ ସଂଗ୍ରାମକୁ ନିଜ ଆନ୍ଦୋଳନ କାର୍ଯ୍ୟକ୍ରମ ରୂପେ ଗ୍ରହଣ କରିଛି ଓ ପୋସ୍କ ହଟିଯିବା ପାଇଁ ଦାବି କରୁଛି । କିନ୍ତୁ ରାଜ୍ୟ ସି.ପି.ଆଇ. ଏମ୍ ପୋସ୍କକୁ ବିରୋଧ ନକରି କେବଳ ଲୁହାପଥର ବିଦେଶୀକୁ ରପ୍ତାନି ବିରୋଧରେ କହୁଛି । ଆଲୁମିନା କାରଖାନା ବିରୋଧରେ ଚାଲିଥିବା ଜନଆନ୍ଦୋଳନକୁ ରାଜ୍ୟ କିମ୍ବା କେନ୍ଦ୍ରୀୟ ଦୁଇ ସି.ପି.ଆଇ ଓ ସି.ପି.ଆଇ.ଏମ୍ ସମର୍ଥନ ଦେଉନଥିବାବେଳେ ଆନ୍ଧ୍ରରେ ବକ୍ସାଇଟ୍ ଖନନକୁ ସଂପୂର୍ଣ୍ଣ ବିରୋଧ କରି ଆଲୁମିନା କମ୍ପାନୀକୁ ହଟାଅ ଆନ୍ଦୋଳନର ଅଗ୍ରଭାଗରେ ଅଛନ୍ତି ସେହି ରାଜ୍ୟର ଉକ୍ତ ଦୁଇ କମ୍ୟୁନିଷ୍ଟ ପାର୍ଟି । ରାଜ୍ୟ କଂଗ୍ରେସ୍ ପୋସ୍କକୁ ଦିଆଯାଉଥିବା ଲୁହାପଥରର ବିଦେଶ ରପ୍ତାନୀ ବିରୋଧରେ କହୁଥିବାବେଳେ ପୋସ୍କର ସୁରକ୍ଷା କର୍ତ୍ତା କେନ୍ଦ୍ରର କଂଗ୍ରେସ୍ ସରକାର ଓ ଖୋଦ୍ ପ୍ରଧାନମନ୍ତ୍ରୀ କାର୍ଯ୍ୟାଳୟ । ସେହିପରି ବେଦାନ୍ତ ପଛରେ ଅଛନ୍ତି ଖୋଦ୍ କେନ୍ଦ୍ର ଅର୍ଥମନ୍ତ୍ରୀ ଚିଦାମ୍ବରମ୍ ଓ କମଳନାଥ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆମ ରାଜ୍ୟର ଖଣି, ଜମି, ଜଙ୍ଗଲ କଂପାନୀମାନଙ୍କ ହାତରେ ସମର୍ପଣ କରିବା ମୂଳରେ ରହିଛି ଦଳମତ ନିର୍ବିଶେଷରେ ଯେକୌଣସି କେନ୍ଦ୍ର ସରକାରର ନୀତିଗତ ସମର୍ଥନ ଓ ସହଯୋଗ । ଏସବୁ ବିକାଶ ନାମରେ ଚାଲିଥିବା ସଂପଦ ଲୁଟକରଣ ପାଇଁ ରାସ୍ତା ତିଆରି ଚାଲିଛି ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ ଜରିଆରେ । ମାର୍କସିଷ୍ଟ ଅର୍ଥଶାସ୍ତ୍ରୀ ତଥା ଜବାହାର ଲାଲ ନେହ୍ରୁ ବିଶ୍ୱବିଦ୍ୟାଳୟର ପ୍ରଫେସର ପ୍ରଭାତ ପଟ୍ଟନାୟକ ଭୁବନେଶ୍ୱର ଏକ ଆଲୋଚନା ଚକ୍ରରେ ଦୁଇ କମ୍ୟୁନିଷ୍ଟ ପାର୍ଟିର ମହାସଚିବଙ୍କ ସମ୍ମୁଖରେ କହିଲେ ଓଡ଼ିଶାରେ ଖଣି ଓ ଶିଳ୍ପ ନାମରେ ବର୍ତ୍ତମାନ ଯେଉଁ ପୁଞ୍ଜିବିନିଯୋଗ ହେଉଛି ତାହା ଦାରିଦ୍ର୍ୟ ସୃଷ୍ଟି କରିବ । ଏହି ମତକୁ କେନ୍ଦ୍ରକରି ବିକଳ୍ପ ଶିଳ୍ପାୟନ ଏକାନ୍ତ ଜରୁରୀ ।

୧୯୯୪ରୁ ଆରମ୍ଭ ହୋଇଥିବା କାଶୀପୁର ଆନ୍ଦୋଳନ ଏବେ ବି ଚାଲିଛି ଏକ ଐତିହାସିକ ଭୂମିକାରେ ଅବତୀର୍ଣ୍ଣ ହୋଇ ଯଦିଚ ଗୁଳି, ଲାଠି, ଜେଲ, ଗୁଣ୍ଡାବାହିନୀ ଦ୍ୱାରା କଂପାନିରାଜ ବି ଦିନକୁ ଦିନ ପାଦ ବଢ଼ାଇବାରେ ଲାଗିଛି । ୧୯୯୫ ରୁ ୨୦୦୦ ଗୋପାଳପୁର ଇସ୍‌ପାତ କାରଖାନା ବିରୋଧୀ ଗଣ ସଂଗ୍ରାମ । ୨୦୦୧ ରୁ ନିୟମଗିରି ସୁରକ୍ଷା ଆନ୍ଦୋଳନ ଓ ୨୦୦୪ରୁ ପୋସ୍କୋ ହଟାଅ ସଂଘର୍ଷ ଗୁଡ଼ିକରୁ ସରକାରତ କିଛି ଶିଖିଲେ ନାହିଁ ବରଂ ଏସବୁ ଜନଆନ୍ଦୋଳନ ମୂଳରେ ଥିବା ଜମି, ଜଙ୍ଗଲ ଓ ଜଳ ସଂପଦସହ ମାଟିର ମଣିଷମାନଙ୍କ ଜୀବନ, ଜୀବିକା ଓ ନିଜ ସାମାଜିକ ଅସ୍ମିତାର ସଂପର୍କକୁ ପଦାଘାତ କରି ସେମାନଙ୍କ ବିଛିନ୍ନତା ହେୟମନେକଲେ । କୁହାଗଲା ବିକାଶକୁ ବିରୋଧ କରୁଥିବା ଆନ୍ଦୋଳନକାରୀ ଓ ଉସୁକାଉଥିବା ବ୍ୟକ୍ତି ଓ ସଂଗଠନମାନଙ୍କୁ ଉଚିତ ଜବାବ ଦିଆଯିବ ।

Digitized by srujanika@gmail.com

ଠିକ୍ ୨୦୦୬ ସାଲର ଦ୍ୱିତୀୟ ଦିନରେ କଳିଙ୍ଗ ନଗରରେ ସରକାର ଜବାବଙ୍କ ଅର୍ଥ ସାବିତ୍ କରିଦେଲେ ୧୪ ଟି ଜୀବନକୁ ବନ୍ଧୁକ ଗୁଳିରେ ନେଇଯାଇ । ଏପରି ବର୍ବରତା ପ୍ରଚଳିତ ବିକାଶ ପ୍ରକ୍ରିୟାର ପରିଣାମ ବୋଲି ସମଗ୍ର ଦେଶରେ ଚର୍ଚ୍ଚିତ ହେଲା । ପ୍ରଥମେ ବିକାଶ ଉପରେ ପ୍ରଶ୍ନ ଠିଆକରିଥିଲା ନର୍ମଦା ବଞ୍ଚାଅ ଆନ୍ଦୋଳନ ବଡ଼ ଡ୍ୟାମକୁ ବିରୋଧକରି । ବିସ୍ଥାପନର ଦୁର୍ଦ୍ଦଶା ପ୍ରତି ସମ୍ବେଦନ ସୃଷ୍ଟି ହେଉଥିବାବେଳେ ପ୍ରଚଳିତ ବିକାଶ ଧାରାକୁ ବିରୋଧ କରିବାକୁ ସଂସଦ ଓ ବିଭିନ୍ନ ରାଜ୍ୟରେ ଥିବା ଅଧିକାଂଶ ରାଜନୈତିକ ଦଳମାନେ ଆଦୌ ପ୍ରସ୍ତୁତ ନୁହନ୍ତି । ବରଂ ଏହାକୁ ଆପଣାଇବାର ପ୍ରତିଯୋଗିତାରେ ନିଜକୁ ସାମିଲ କରୁଛନ୍ତି । କଳିଙ୍ଗନଗର ଗଣ ହତ୍ୟାପରେ ବିସ୍ଥାପନବିରୋଧୀ ଆନ୍ଦୋଳନମାନଙ୍କ ମୌଳିକ ବିଚାର ଓ ଦାବି ଖୋଲାଭାବରେ ଆଲୋଚିତ ହୋଇପାରିଲା । ଯଦିଚ କେତେକ ରାଜନୈତିକ ଦଳମାନେ ପ୍ରଚଳିତ ବିକାଶଧାରାର ବିକଳ୍ପ ଖୋଜିବାକୁ ପ୍ରସ୍ତୁତ ନୁହନ୍ତି କିନ୍ତୁ ମଣିଷକୁ ମାରି ବିକାଶ ସମ୍ଭବପର ନୁହଁ ବୋଲି ମତବ୍ୟକ୍ତ କରିବା ସହ ବିସ୍ଥାପିତଙ୍କପାଇଁ ନ୍ୟାୟୋଚିତ ଥଇଥାନ ନୀତି ପାଇଁ ଯୁକ୍ତିକରିଛନ୍ତି । କିନ୍ତୁ କଳିଙ୍ଗନଗର ସଂଗ୍ରାମର ମୂଳ ପ୍ରସଙ୍ଗ ଆଉ ବିସ୍ଥାପନକୁ ବରଦାସ୍ତ କରିବେ ନାହିଁ । ୨୦୦୫ ସ୍ୱତନ୍ତ୍ର ଆର୍ଥିକ ଅଞ୍ଚଳ ଆଇନ ଲାଗୁହେଲାପରେ ଦେଶରେ ଓଡ଼ିଶାଠାରୁ ଆରମ୍ଭକରି ହରିଆନା, ଉତ୍ତର ପ୍ରଦେଶ, ମହାରାଷ୍ଟ୍ର, ଗୁଜ୍‌ରାଟ, ପଶ୍ଚିମବଙ୍ଗଳା ସମେତ ବିଭିନ୍ନ ରାଜ୍ୟରେ ସେଇ୍ ବାତ୍ୟା ବହିବାରେ ଲାଗିଛି । ଏହିବାତ୍ୟାରେ କେନ୍ଦ୍ର ସରକାରଙ୍କ ଅନୁମୋଦନକ୍ରମେ ରାଜ୍ୟସରକାରମାନେ ଦେଶୀ–ବିଦେଶୀଙ୍କ କଂପାନୀମାନଙ୍କ ପାଇଁ ହଜାର ହଜାର ଏକର ଚାଷଜମି ଜବରଦସ୍ତ ଅଧିଗ୍ରହଣ କରିବାରେ ଲାଗିଛନ୍ତି । ଚାରିଆଡ଼େ ଭୟଙ୍କର ପରିବେଶ ସୃଷ୍ଟି ହେବାରେ ଲାଗିଛି । ଜମି ଚାଲିଯିବ । ଜୀବିକା ଚାଲିଯିବ । ଶିଳ୍ପାୟନହେବ, ଦେଶ ଧନୀ ହେବ, ଜାତୀୟ ସମୃଦ୍ଧିହାର ବଢ଼ିବ କିନ୍ତୁ ଗାଁର ଚାଷୀ, କୃଷି ଶ୍ରମିକ, ଜଙ୍ଗଲର ଆଦିବାସୀ ସର୍ବହରା ହେବେ ସବୁଦିନପାଇଁ । ଦେଶର ବିକାଶ ପାଇଁ ବହୁଜନ ତ୍ୟାଗ ସ୍ୱୀକାର କରିବେ ମାତ୍ର କେତେକଙ୍କୁ ଯୋଜନାବଦ୍ଧ ଭାବେ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀଭୁକ୍ତ କରିବାପାଇଁ । ସର୍ବୋଚ୍ଚ ଧନୀମାନଙ୍କ ଆୟ ବୃଦ୍ଧିରେ ବିଶ୍ୱ ତାଲିକାରେ ମାନ୍ୟତା ପ୍ରାପ୍ତ ସ୍ଥାନ ପାଇବାରେ ଭାରତୀୟ କୋଟିପତିଙ୍କ ସଂଖ୍ୟା ବୃଦ୍ଧି ହେବ । ବର୍ତ୍ତମାନ ବିଶ୍ୱର ସର୍ବୋଚ୍ଚ ୧୦୦ କୋଟିପତିଙ୍କ ମଧ୍ୟରେ ଭାରତୀୟ କୋଟିପତିଙ୍କ ସଂଖ୍ୟା ୩୬ । ଦେଶର ଏମାନେ ଗର୍ବ ଗୌରବ ବୋଲି କୁହାଯାଉଛି ଯେଉଁଠି ଦାରିଦ୍ର୍ୟ ଭିତରେ ଥିବା ପ୍ରାୟ ୫୦ କୋଟି ଲୋକ ଦୁଇଓଳା ପୁଷ୍ଟିକର ଖାଦ୍ୟ ଖାଇପାରନ୍ତି ନାହିଁ ଏବଂ ପ୍ରାୟ ୨୫ କୋଟି ଲୋକଙ୍କ ଛପରଘର ମଧ୍ୟ ନାହିଁ । ସୁପୋଷଣ, ପରିଧାନ, ପ୍ରାଥମିକ ଶିକ୍ଷା, ପ୍ରାଥମିକ ସ୍ୱାସ୍ଥ୍ୟପରି ମୌଳିକ ସେବାରୁ ବଞ୍ଚିତ ପରିବାରରେ ଶିଶୁ ମୃତ୍ୟୁ ହାର ପ୍ରତି ଏକହଜାରରେ ୮୦

Digitized by srujanika@gmail.com

ଥିବାବେଳେ ଏବଂ ୯୦ ଟଙ୍କା ଦେଇ ୧୬ କେ.ଜି. ବିପିଏଲ୍ ଚାଉଳ ଏକାଥରକେ କିଣିପାରୁ ନଥିବା ଦରିଦ୍ର କ୍ରୟଶକ୍ତି ହରାଉଥିବାବେଳେ ଆମ ଦେଶରେ ମାତ୍ର କେତେଜଣଙ୍କୁ କର୍ପୋରେଟ୍ ନିଯୁକ୍ତି ଦିଆଯାଇ ୫୦ ହଜାରରୁ ୩ ଲକ୍ଷ ପର୍ଯ୍ୟନ୍ତ ମାସିକ ଦରମା ଦିଆଯାଇ କୁହାଯାଉଛି ଦେଶର ଆୟ ବଢ଼ିବାସହ ବ୍ୟକ୍ତିଗତ ଆୟ ସେବାକ୍ଷେତ୍ରରେ ଅଶାତୀତ ବୃଦ୍ଧି ଘଟୁଛି । ତେଣୁ କ୍ଷତିରେ ଚାଲୁଥିବା କୃଷିକୁ ବନ୍ଦ କରି କୃଷିକ୍ଷେତ୍ର ଉପରେ ପୁଞ୍ଜିପତିଙ୍କ ଦ୍ୱାରା ଶହେ ମହଲା ଅଟ୍ଟାଳିକା ଠିଆହେଉ, ମଟର ଗାଡ଼ି, ଉଡ଼ାଜାହାଜ, ଷ୍ଟିଲ୍, ଆଲୁମିନା ଉତ୍ପାଦନ ହୋଇ ବିଦେଶକୁ ରପ୍ତାନି ହେଉ । ଆଉ ଆମ ଚାଷୀ, ନିମ୍ନମଧ୍ୟବିତ୍ତ ବେକାରୀ ଯୁବକ ଯୁବତୀ ଟି.ଭି. ପରଦାରୁ ସ୍ୱପ୍ନ ଦେଖୁଥାନ୍ତୁ, ସେମାନଙ୍କ ପାଳି କେବେ ଆସିବ ମଟରଗାଡ଼ି ଚଢ଼ି ୱାଲମାର୍ଟ ଦୋକାନକୁ ବଜାରକରି ଯାଉଥିବେ, କର୍ପୋରେଟ୍ ଚାକିରୀ ପାଇ ମାସିକ ଦରମା ଏଟି ଏମ୍ କାର୍ଡ଼ରେ ଧରି ବୁଲୁଥିବେ । ସେମାନଙ୍କ ସ୍ୱପ୍ନ ଭଂଗ ହେବା ପୂର୍ବରୁ ଯେଉଁମାନଙ୍କ ବଞ୍ଚିବାର ରାସ୍ତା ବନ୍ଦ ହୋଇଯାଉଛି, ସେମାନଙ୍କ ଜୀବନ ଦୁର୍ବିସହ ହେବାରେ ଲାଗିଛି ଯେହେତୁ ଘରବାଡ଼ି, ଜମି, ଜଙ୍ଗଲ ତଥା ଜୀବିକାର ସମ୍ବଳ ଉଜୁଡ଼ି ଯାଉଛି । ଏବେ ସିଙ୍ଗୁରରେ ଛୋଟକାର ପାଇଁ ଏକହଜାର ଏକର ତିନି ଫସଲି ଚାଷ ଜମି ଦିଆଗଲାଣି ରକ୍ତର ସ୍ରୋତ ଛୁଟାଇ । ନନ୍ଦିଗ୍ରାମରେ ବିନା ପୋଲିସରେ ମାରିଲେ ୪ ଚାଷୀଙ୍କୁ, ଏବେ ପୋଲିସ ଲଗାଇ ମାରିଲେ ୧୪ ଚାଷୀଙ୍କୁ । ମାରିଲା କିଏ ? ପୁଞ୍ଜିବାଦର ବିନାଶକାରୀ ଅସ୍ତ୍ର ଜଗତୀକରଣକୁ ବିରୋଧ କରୁଥିବା ସି.ପି.ଆଇ.ଏମ ସରକାର ବିନା ଦ୍ୱିଧାରେ କହିପାରୁଛି ବିକାଶକୁ କେହି ଅଟକାଇ ପାରିବନି । ତେଣୁ ରକ୍ତନଦୀ । ଗୁଜରାଟରେ ନରେନ୍ଦ୍ର ମୋଦି, ଉତ୍ତର ପ୍ରଦେଶରେ ମୁଲାୟାମ୍ ଯାଦବ୍, ହରିଆନାରେ ହୁଡା, ମହାରାଷ୍ଟ୍ରରେ ଦେଶମୁଖ ଓଡ଼ିଶାରେ ନବୀନ ପଟ୍ଟନାୟକ ସରକାରମାନଙ୍କ ଗୋଟିଏ ସ୍ୱର, ଗୋଟିଏ ନୀତି, ଗୋଟିଏ ବାଟ । ମୁଲାୟମଙ୍କ ପରେ ମାୟାବତୀ ସରକାର ମଧ୍ୟ ସେହି ବାଟରେ । ଦେଶର ପ୍ରଧାନ ମନ୍ତ୍ରୀ କହିଲେଣି ବିକାଶରେ ମାନବିକ ମୁଖ ଦେବାକୁ ଏହାର ଅର୍ଥ ଏ ବିକାଶ ବିନାଶ ପାଇଁ । ବିନାଶ ସାମୂହିକ ମାଲିକାନାରେ ଥିବା ପ୍ରାକୃତିକ ସଂପଦର, ବିନାଶ ବହୁଜନଙ୍କ ଜୀବନ ଓ ଜୀବିକାର, ବିନାଶ ମଣିଷ ସମାଜର । ବିନାଶ ଉପରେ ଏକ ମାନବିକ ମୁଖାର ଲେପ ଦିଆଗଲେ ବିନାଶକୁ ବିକାଶ ରୂପେ ସ୍ୱୀକୃତି ମିଳିଯିବ ବୋଲି ଯେଉଁଠି ଦେଶର ପ୍ରଧାନ ମନ୍ତ୍ରୀଙ୍କ ବିଚାରରେ ସ୍ଥାନପାଉଛି, ସେଠାରେ ବିକାଶ କେବଳ ଧନୀକ ପାଇଁ । ତେଣୁ କାଶୀପୁର, କଳିଙ୍ଗ ନଗର, ନନ୍ଦିଗ୍ରାମ ତଥା ବଞ୍ଚିତ ଶ୍ରେଣୀର ଲଢ଼େଇ ନିଜର ଅଧିକାରକୁ ସାବ୍ୟସ୍ତ କରିବାପାଇଁ କୃଷି ଓ କୃଷକ କିମ୍ବା ଜଙ୍ଗଲ ଓ ଆଦିବାସୀଙ୍କ ବିକାଶକୁ ପ୍ରତିରୋଧ କରିବାହିଁ ଏକମାତ୍ର ବାଟ । ପୁଞ୍ଜିବାଦର ରାସ୍ତାରେ ଯେଉଁ ସାମ୍ୟବାଦୀମାନେ ଟାଟା, ସାଲିମ ରିଲାଏନ୍ସ, ବେଦାନ୍ତ କିମ୍ବା ପୋସ୍କ ଜରିଆରେ ବହୁଜାତି ସମାଜବାଦର

Digitized by srujanika@gmail.com

ସ୍ୱପ୍ନ ଦେଖୁଛନ୍ତି, ସେମାନେ ଦେଶବିକା ଦଳ କଂଗ୍ରେସ୍ ଓ ବିଜେପି ପରି ଦଳୀୟ ସରକାରଠାରୁ ଜନ ଆନ୍ଦୋଳନପ୍ରତି ଅଧିକ ବିପଦ । କାରଣ ନନ୍ଦିଗ୍ରାମ, ସିଙ୍ଗୁରକୁ ଢ଼ାଲ କରି କାଶୀପୁର, କଳିଙ୍ଗନଗର ଗୁଳିକାଣ୍ଡକୁ ଯଥାର୍ଥ ପ୍ରତିପାଦନ କରିବାକୁ ବିକାଶର ପ୍ରବକ୍ତାମାନେ ନିର୍ଲ୍ଲଜ୍ଜବୋଧ କରିବେ ନାହିଁ । ଏହା ସତ୍ତ୍ୱେ କାଶୀପୁରରୁ ଭାୟା କଳିଙ୍ଗନଗର ଦେଇ ନନ୍ଦିଗ୍ରାମ ପର୍ଯ୍ୟନ୍ତ ବିଦ୍ରୋହର ଗତିପଥ ଅଟକି ନାହିଁ । ଏପରି ବିଦ୍ରୋହପାଇଁ ଦେଶର ସର୍ବତ୍ର ସୂଚନା ମିଳିଲାଣି । ସତ୍ୟତା ହେଉଛି ଯେଉଁଠି ବିକାଶର କିରଣ ବି ନାହିଁ ସେ ଅଞ୍ଚଳରେ ଆଦିବାସୀ ଅନ୍ୟ କାହାରି ସ୍ୱାର୍ଥ ସାଧନ କରୁଥିବା ଓ ପ୍ରାକୃତିକ ସଂପଦ ଶୋଷଣ ପାଇଁ ଆସୁଥିବା ବିକାଶ ମୋଡ଼େଲକୁ ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନୁହନ୍ତି ବୋଲି କାଶୀପୁର ଓ ନିୟମଗିରିରେ ବିଦ୍ରୋହ । ରାଜଧାନୀ ପାଖରେ ଥିବା କଳିଙ୍ଗନଗରର ଆଦିବାସୀଙ୍କୁ ସ୍ୱପ୍ନ ଦେଖାଇ ଦିଆଯାଇଥିଲା ବୋଲି ପ୍ରଥମେ ଶିଳ୍ପାୟନକୁ ବିରୋଧ କରିନଥିଲେ । କିନ୍ତୁ ଦଶଟି ବୃହତ ଶିଳ୍ପ କାର୍ଯ୍ୟକ୍ଷମ ହେଲାପରେ ବି ସେମାନଙ୍କ ଦାରିଦ୍ର୍ୟ ବଢ଼ିଲା ଓ ନିଜ ଜମି ଓ ଜଙ୍ଗଲ ଚାଲିଯିବାରୁ ଜୀବିକା ହରାଇଲେ । ତାପରେ ବିଦ୍ରୋହ ଅନିବାର୍ଯ୍ୟ ହେଲା ବିସ୍ଥାପନ ବିରୋଧରେ । ସିଙ୍ଗୁର ଓ ନନ୍ଦିଗ୍ରାମରେ ବିଗତ ୩୦ ବର୍ଷ ମଧ୍ୟରେ ଚାଷୀ ଜମି ପାଇଛି ଓ ଚାଷର ବିକାଶ ହୋଇଛି । ଏକ ଏକର ଉର୍ବର ଜମିରେ ବି ଏକ ପରିବାର ସ୍ୱାବଲମ୍ବନଶୀଳ ହୋଇ ସ୍ୱାଭିମାନ ସହ ଚଳି ପାରୁଛି । ତାକୁ ଅନିଶ୍ଚିତତା ଭିତରକୁ ଠେଲି ଦିଆଯାଇ ତାରି ଜୀବନ ଓ ଜୀବିକାର କବର ଉପରେ ଉପଭୋକ୍ତାବାଦର ପୃଷ୍ଠପୋଷକତା କରୁଥିବା ମଟରଗାଡ଼ି କାରଖାନା, ଧନୀଙ୍କ ଅଟ୍ଟାଳିକାମୟ ଆଧୁନିକ ନଗର ଠିଆହେବ, ଏହାକୁ ବିକାଶର ସଜ୍ଞାବୋଲି ସେ କିପରି ସ୍ୱୀକାର କରିପାରିବ ? ତେଣୁ ପ୍ରାଣବଳି ଦେଇ ବିଦ୍ରୋହ ପଥର ସେ ଯାତ୍ରୀ । ଏ ସତ୍ୟତା ଗୋପାଳପୁରରେ ପ୍ରମାଣିତ ହୋଇଥିଲା ଚାଷୀ ଜମି ଆଉ ଜଳକୁ ହରାଇ କ୍ଷତିପୂରଣ ନାମରେ କିଛି ଟଙ୍କା ନେଇ ନିଜ ପରିବାରର ବିନାଶ କରିପାରେନା । ପାରାଦୀପ ଅଞ୍ଚଳରେ ପୋସ୍କ ବିରୋଧୀ ଆନ୍ଦୋଳନର ମୂଳ କଥାଟି ମଧ୍ୟ ଏହି ସତ୍ୟତା ପ୍ରତିପାଦନ କରୁଛି ।

ଆଉ ଏକ ସତ୍ୟତା ହେଉଛି – ପ୍ରଚଳିତ ବିକାଶ ପ୍ରକ୍ରିୟା ଦେଶର ଦୁଇ ତୃତୀୟାଂଶ ଲୋକଙ୍କ ପାଇଁ ନୁହଁ କିମ୍ବା ଏଥିପାଇଁ ଲୋକଙ୍କ ସମ୍ମତି ନାହିଁ । ତେଣୁ ବିକଳ୍ପ ବିକାଶ ଏକାନ୍ତ ଅପରିହାର୍ଯ୍ୟ । ପ୍ରଚଳିତ ବିକାଶଧାରାକୁ ସଂସଦୀୟ ବ୍ୟବସ୍ଥାରେ ଶାସକ ଶ୍ରେଣୀର ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ରାଜନୈତିକ ଦଳମାନେ ନିଜ କ୍ଷମତା ରାଜନୀତିପାଇଁ କଂପାନିକରଣ ଅର୍ଥବ୍ୟବସ୍ଥାକୁ ଗ୍ରହଣକରି ନେଇଛନ୍ତି । ରାଜନୀତିରେ ଉଚ୍ଚ ମଧ୍ୟବିତ୍ତଙ୍କ ନେତୃତ୍ୱକୁ ଜାହିର କରିବା ସହ ଏକ ଉଚ୍ଚ ଆୟକାରୀ ଶ୍ରେଣୀକୁ କେନ୍ଦ୍ରୀଭୂତକରି ବ୍ୟବସାୟ, ଶିକ୍ଷା, ବିଜ୍ଞାନ ଓ ବୈଷୟିକ କ୍ଷେତ୍ରର ବିକାଶ ଚାହାଁନ୍ତି ଓ ସେମାନେ ଜନମତକୁ ନିୟନ୍ତ୍ରଣ

Digitized by srujanika@gmail.com

କରିବାକୁ ଗଣ ମାଧ୍ୟମକୁ ଆୟୁଧ କରିଛନ୍ତି । ସେମାନଙ୍କ ସହ ରହି ରାଜନୀତି କରିବାକୁ ଦକ୍ଷିଣ ଓ ବାମ ଶାସକଶ୍ରେଣୀ ଏକାକାର । ତେଣୁ ଏକ ବିକଳ୍ପ ରାଜନୀତିର ଆବଶ୍ୟକତାକୁ କଳିଙ୍ଗନଗରରୁ ନନ୍ଦିଗ୍ରାମ ପର୍ଯ୍ୟନ୍ତ ଜନ ଆନ୍ଦୋଳନ ଅତି ସ୍ପଷ୍ଟ ଭାବରେ ନିର୍ଦ୍ଦେଶ କରୁଛି । ଏହି ଜନ ଆନ୍ଦୋଳନଗୁଡିକ କୌଣସି ରାଜନୈତିକ ଦଳର ଗର୍ଭରୁ ଜନ୍ମନେଇ ନାହାନ୍ତି ବରଂ ପ୍ରଚଳିତ ରାଜନୈତିକ ଦଳୀୟ ବ୍ୟବସ୍ଥାର ବିରୋଧରେ ନିଜ ଅଧିକାର ପାଇଁ ସଂଗ୍ରାମରତ । ଯେତେବେଳେ ବିରୋଧୀ ଭୂମିକାରେ ରହନ୍ତି ରାଜନୈତିକ ଦଳମାନେ ନିଜ ଫାଇଦା ପାଇଁ ଜନମତର ପ୍ରଭାବରେ ବାଧ୍ୟ ହୁଅନ୍ତି ଏକ ଘଟଣା କେନ୍ଦ୍ରିତ ଆନ୍ଦୋଳନକୁ ସମର୍ଥନ ଦେବାକୁ । ପ୍ରଚଳିତ ବିକାଶ, ସେଜ୍ ଆଇନ, ଜମିଅଧିଗ୍ରହଣ ଆଇନକୁ ତୃଣମୂଳ କଂଗ୍ରେସ, ବିଜେପି ବରଂ ସମର୍ଥନ କରି ନିଜର ନୀତିରୂପେ ଗ୍ରହଣ କରିଛନ୍ତି । ଓଡ଼ିଶାରେ କଳିଙ୍ଗନଗର ଗୁଳିକାଣ୍ଡପରେ କଂଗ୍ରେସ ଓ ସି.ପି.ଆଇ.ଏମ୍. ପ୍ରତିବାଦର ସ୍ୱର ଉଠାଇଥିଲେ । କିନ୍ତୁ ପ୍ରଚଳିତ ଶିଳ୍ପାୟନକୁ ବିରୋଧ କରିନାହାନ୍ତି । ଏଥିରୁ ପ୍ରମାଣିତ ହୋଇ ସାରିଲାଣି ଯେ ଦେଶର ସମସ୍ତ ଶାସକଦଳ ପ୍ରଚଳିତ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦୀ ଅର୍ଥ ବ୍ୟବସ୍ଥାକୁ ଗ୍ରହଣ କରି ନେଇଛନ୍ତି । ଏପରି ଏକ ସ୍ଥିତି ସୂଚାଇ ଦିଏଯେ- ଦେଶରେ ଲୋକେ ଏକ ରାଜନୈତିକ ବିକଳ୍ପ ଶକ୍ତିର ଆବିର୍ଭାବ ଚାହାନ୍ତି । ତାହା ମଧ୍ୟ ଏକ ଐତିହାସିକ ଆବଶ୍ୟକତା । ଏହା ସମ୍ଭବପର କେବଳ ନୂଆ ଜନବାଦୀ ରାଜନୀତି ଦ୍ୱାରା, ତାହା ସାଧାରଣ ଲୋକଙ୍କ ଭିତରୁ ହିଁ ଜନ୍ମନେବ ଯଦି କଳିଙ୍ଗ ନଗରରୁ ନନ୍ଦିଗ୍ରାମ ପର୍ଯ୍ୟନ୍ତ ଦେଶର ସମସ୍ତ ଜନ ଆନ୍ଦୋଳନକୁ ବୁଝିପାରୁଥିବା, ହୃଦୟଙ୍ଗମ କରିପାରୁଥିବା, ସହଯୋଗ କରୁଥିବା ରାଜନୈତିକ ଦଳ, ଲୋକସଂଗଠନ, ବୁଦ୍ଧିଜୀବୀ ଓ ଆନ୍ଦୋଳନମାନଙ୍କ ନେତୃମଣ୍ଡଳୀ ଆଜିଠାରୁ ଏକ ମିଳିତ ଉଦ୍ୟମ ଆରମ୍ଭ କରିପାରିବେ । ନଚେତ୍ ସାମ୍ରାଜ୍ୟବାଦର ବାଇଦ ବାଜିଲେ ଦେଶର ରାଜନୈତିକ ଦଳମାନେ ନାଚୁଥିବେ, କିଏ ରାମ ବେଶରେ ତ, କିଏ ରାବଣ ବେଶରେ । ପୁଣି ଷ୍ଟେଜ୍ ବଦଳାଉଥିବେ । ରାଜ୍ୟ କିନ୍ତୁ ଲଙ୍କା ହୋଇ ଧ୍ୱଂସ ହେଉ ଚାଲିଥିବ ।

## ସଭ୍ୟତାର କବର ଉପରେ ବିକାଶର ସୌଧ

ଆମ ରାଷ୍ଟ୍ର ଏକ ସାର୍ବଭୌମ, ଗଣତାନ୍ତ୍ରିକ, ସମାଜବାଦୀ, ଧର୍ମନିରପେକ୍ଷ ସାଧାରଣତନ୍ତ୍ର ରୂପେ ସଂବିଧାନର ମୁଖବନ୍ଧରେ ଏବେ ବି ଅପରିବର୍ତ୍ତିତ । ଏହି ଆଧାରରେ ସଂବିଧାନରେ ନାଗରିକଙ୍କ ବିଭିନ୍ନ ଅଧିକାର ଓ ରାଷ୍ଟ୍ରର ଦାୟିତ୍ୱ ଉଲ୍ଲେଖିତ ରହିଛି । କିନ୍ତୁ ସାଂବିଧାନିକ ବ୍ୟବସ୍ଥାକୁ ଗୋଇଠା ମାରିଲାପରି ନୂଆ ନୂଆ ଆଇନ ମଧ୍ୟ ସାଂବିଧାନିକ ବ୍ୟବସ୍ଥାଭୁକ୍ତ ସଂସଦ ଓ ବିଧାନ ସଭା ମାନଙ୍କରେ ଗୃହୀତ କରାଇ ନିଆଯାଉଛି ।

ଗୋଟିଏ ଗାଁର ଲୋକଙ୍କୁ ବିଗତ ୬୦ ବର୍ଷର ସ୍ୱାଧୀନତାପରେ ବି ତା ପାଇଁ ଶିକ୍ଷା, ସ୍ୱାସ୍ଥ୍ୟ ଓ ଜୀବିକାର ଗ୍ୟାରେଣ୍ଟି କରାଇ ପାରିନଥିବା ଏକ ରାଷ୍ଟ୍ର ବ୍ୟବସ୍ଥା ପୁଣି ଆଉ

Digitized by srujanika@gmail.com

କାହାର ସୌଖୀନ୍-ବିଳାସ ଜୀବନ ଯାପନ ପାଇଁ କିମ୍ବା ଅତ୍ୟଧିକ ସୁଖମୟ ବିକାଶ କେନ୍ଦ୍ରିତ ଆର୍ଥିକ ସମୃଦ୍ଧି ପାଇଁ ତାର ନିଜର ବିକାଶପାଇଁ କହିବାର ଅଧିକାର, ନିଜ ବଞ୍ଚିବାର ଅଧିକାର, ତାର ପ୍ରକୃତିଦତ୍ତ ସଂବଳରେ ଭାଗିଦାରୀର ଅଧିକାର ଜବରଦସ୍ତ ଛଡ଼ାଇ ନେବାକୁ ପୋଲିସ୍ ବଳପ୍ରୟୋଗ କରିବାବେଳେ ପୁଞ୍ଜିନିବେଶ ପାଇଁ ଏହା ଅପରିହାର୍ଯ୍ୟ କହିବା ଗଣତନ୍ତ୍ରକୁ ହତ୍ୟାକରିବା ସଙ୍ଗେ ସମାନ । ତେଣୁ ଗଣତନ୍ତ୍ରରେ ଲୋକଙ୍କ ଓ ଜୀବନ-ଜୀବିକାର ସୁରକ୍ଷା ପାଇଁ ସ୍ୱାଧିକାରର ସ୍ଥାନ ସର୍ବୋଚ୍ଚ । ତାକୁ କେନ୍ଦ୍ରକରି ବିକାଶର ପ୍ରକ୍ରିୟା ଆରମ୍ଭ ହେବା ଓ ସମାଜର ତଳେ ଥିବା ଶ୍ରେଣୀକୁ ଆର୍ଥିକ ଓ ସାମାଜିକ ନ୍ୟାୟଦେବା ପାଇଁ ବିକାଶର ପ୍ରାଥମିକ ଲକ୍ଷ୍ୟ ନହେଲେ ସମାଜ ଭୁଷୁଡିଯିବ । ସମାଜର ଏକତା ସମ୍ଭବପର ଯଦି ସାମାଜିକ ବୈଷମ୍ୟ ଦୂର ହେବ । ସାମାଜିକ ବୈଷମ୍ୟକୁ ଦୂର କରାଯାଇପାରିବ ଆର୍ଥିକ ଶୋଷଣରୁ ମୁକ୍ତ ରହିଲେ । ଆର୍ଥିକ ବିକାଶରେ ସମତା ପ୍ରତ୍ୟେକ ବଞ୍ଚିତକୁ ଶିକ୍ଷିତ ଓ ସ୍ୱାସ୍ଥ୍ୟକର କରିପାରିବ । ଶିକ୍ଷିତ ଓ ସୁସ୍ଥ ମଣିଷ ଯେକୌଣସି ବୈଷମ୍ୟ, ଶୋଷଣ ଓ କୁ ସଂସ୍କାର ବିରୋଧରେ ପରିବର୍ତ୍ତନକାମୀ ହେବାପାଇଁ ନିଜକୁ ପ୍ରସ୍ତୁତ କରିପାରିବ ଓ ସଭ୍ୟ ସମାଜ ଗଢ଼ିପାରିବ । ନୂଆ ସଭ୍ୟତା ପରିପୁଷ୍ଟ ହେବ । ନଚେତ୍ ବୈଷମ୍ୟ, ଶୋଷଣ ଓ ବାଞ୍ଛନା ସମାଜକୁ ଭାଙ୍ଗିଦେବ । ସମାଜ ଏକ ରାଷ୍ଟ୍ରର ପରିକଳ୍ପନାକୁ ଜନ୍ମ ଦେଇଛି । ଯଦି ସମାଜ ରୁଗ୍‌ଣ ହେବ, ରାଷ୍ଟ୍ର ମଧ ରୋଗଗ୍ରସ୍ତ ହୋଇ ପଙ୍ଗୁ ହୋଇଯିବ । ରାଷ୍ଟ୍ରର ମିଲଟାରୀ ଶକ୍ତି ଯେତେ ବଢ଼ିବ ସେ ସେତିକି ଦୁଷ୍ଟହେବ । ତାର ପ୍ରାଣ ହେଉଛି ଜନତା ଯିଏକି ସମାଜ ତିଆରି କରିଛି । ଯଦି ଜନତା ହତାଶ ହୁଏ, ବଞ୍ଚିତ ହୋଇ ରାଷ୍ଟ୍ରଶକ୍ତିର ବର୍ବରତାର ଶିକାର ହୁଏ, ସମାଜ ଭାଙ୍ଗିଯିବ । ସମାଜ ଭାଙ୍ଗିଗଲାପରେ ରାଷ୍ଟ୍ର ମଧ ଖଣ୍ଡ ବିଖଣ୍ଡିତ ହୋଇଯିବ ଅରାଜକତାର ନର୍କରେ ଘାଣ୍ଟି ହୋଇ । ତେଣୁ ପ୍ରଥମେ ସମାଜ, ତାପରେ ରାଷ୍ଟ୍ର । ସମାଜ ରାଷ୍ଟ୍ରକୁ ଜନ୍ମ ଦେଉଛି । ସମାଜ ଭାଙ୍ଗିଗଲେ ରାଷ୍ଟ୍ରର ସତ୍ତା ଲୋପ ହୋଇଯିବ। ଆମ ଦେଶ ଏକ ସାର୍ବଭୌମ, ଗଣତାନ୍ତ୍ରିକ ଓ ସାଧାରଣତନ୍ତ୍ର ହୋଇ ରହିପାରିବ ଯଦି ତାର ବ୍ୟକ୍ତିର ସ୍ୱାଧୀନତା ସୁରକ୍ଷିତ । ସାମୂହିକ ଜନ ଜୀବନ ତଥା ସାମାଜିକ ଜୀବନ ସମତା, ସ୍ୱାଭିମାନ ଓ ସ୍ୱାବଲମ୍ବନଶୀଳ ଅର୍ଥ ବ୍ୟବସ୍ଥା ଉପରେ ଆଧାରିତ ହେବ । ଅସଲ ଅର୍ଥରେ ରାଷ୍ଟ୍ରର ସମୃଦ୍ଧି ସମାଜର ଆତ୍ମବିଶ୍ୱାସ ଓ ରାଷ୍ଟ୍ରପ୍ରତି ନିଷ୍ଠା ଉପରେ ନିର୍ଭରଶୀଳ । ରାଷ୍ଟ୍ର କହିଲେ, ତାର ଜନତା ଆତ୍ମବିଶ୍ୱାସ ସମ୍ଭବପର ଯେତେବେଳେ ମଣିଷ ସଂପୂର୍ଣ୍ଣ ସ୍ୱାଧୀନ ଓ ଶୋଷଣରୁ ମୁକ୍ତ । କେତେଜଣ ପୁଞ୍ଜିପତି କିମ୍ବା କେତୋଟି ବ୍ୟାବସାୟିକ ପ୍ରତିଷ୍ଠାନର ଅଭିବୃଦ୍ଧିରେ ରାଷ୍ଟ୍ର ବିକଶିତ ହୁଏ ନାହିଁ । ବହୁଜନଙ୍କ ସମ୍ବଳର ଶୋଷଣରେ ପୁଞ୍ଜିପତିଙ୍କ ଧନ ବୃଦ୍ଧି ଦ୍ୱାରା ତଳେଥିବା ବହୁଜନଙ୍କ ଆୟ କ୍ଷୟ ହୋଇଥାଏ ଏବଂ ଦାରିଦ୍ର୍ୟ ମଧ ସୃଷ୍ଟି ହୋଇଥାଏ । ଯେହେତୁ ସାଧାରଣ ଜନତା ସମ୍ବଳହୀନ

Digitized by srujanika@gmail.com

ହୋଇଗଲାପରେ ସମାଜ ଦୁର୍ବଳ ହୋଇଯାଏ ଓ ରାଷ୍ଟ୍ର ମଧ୍ୟ ଶକ୍ତିହୀନ ହୋଇଯାଏ । ଏହାର ମୂଳରେ ଥିବା ଶୋଷଣ ଓ ବୈଷମ୍ୟର ଶିକାର ହେଉଥିବା ସାଧାରଣ ଜନତାଙ୍କ ଏକ ସୁସ୍ଥ ଜୀବନଶୈଳୀ ଗଢ଼ି ତୋଳିବାକୁ ଯେଉଁ ବ୍ୟବସ୍ଥାଟିଏ ଦରକାର, ତାକୁ ହାସଲ କରିବାପାଇଁ ଏକ ପ୍ରତିବଦ୍ଧ ରାଜନୈତିକ ଶକ୍ତି ଅପରିହାର୍ଯ୍ୟ । ସେଥିପାଇଁ ଏକ ନୂଆ ରାଜନୈତିକ ଦଳ କିମ୍ବା କେତେକ ସମଦୃଷ୍ଟିସଂପନ୍ନ ସଂଗଠନ ମାନଙ୍କ ମିଳିତ ନେତୃତ୍ୱରେ ଏକ ମହାସଂଘର ନିର୍ମାଣ ଅତି ଜରୁରୀ । ଏ ସବୁର ମୂଳରେ ସାଧାରଣ ଜନତାଙ୍କ ସ୍ଥାନ, ସେମାନଙ୍କ ଆବଶ୍ୟକତା ଓ ସେମାନଙ୍କ ଭାଗିଦାରୀ ରହୁଥିବ । ଏହା ସମ୍ଭବପର ଯଦି ଅହଂକାରଶୂନ୍ୟ ସଂଗଠକ, ନେତୃମଣ୍ଡଳୀ ଏକ ସମନ୍ୱିତ କାର୍ଯ୍ୟକ୍ଷମ ରାଜନୈତିକ ବିଚାରକୁ ଲୋକଙ୍କ ସାମନାରେ ରଖିପାରିବେ ଓ ସେଥିପାଇଁ ନିଜ ଜୀବନକୁ ଲଗାଇ କାର୍ଯ୍ୟ କରିଚାଲିବେ ।

କାଶୀପୁର ଆଦିବାସୀଙ୍କୁ ପୋଲିସ ଗୁଳିକରିବା ପରେ ତତ୍‌କାଳୀନ ରାଷ୍ଟ୍ରପତି କେ. ଆର୍. ନାରାୟଣନ୍ ୨୦୦୧ ଜାନୁଆରୀ ୨୬ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ପ୍ରଦତ୍ତ ଭାଷଣରେ କହିଥିଲେ ଯେ "ଦେଶର ବିକାଶ ପ୍ରକ୍ରିୟାର ସମୀକ୍ଷା ଦରକାର । ଭବିଷ୍ୟତ ନ କହୁଯେ ଆଦିବାସୀଙ୍କ ଶବ ଉପରେ ଗଣତାନ୍ତ୍ରିକ ଦେଶର ବିକାଶ ଠିଆହୋଇଛି ।" ନନ୍ଦିଗ୍ରାମରେ ଗଣହତ୍ୟା ପରେ କେବଳ ଶିଳ୍ପାୟନ ଓ ଯନ୍ତ୍ରକରଣ ପାଇଁ ଉଦ୍‌ଗୀରଣ କରୁଥିବା ରାଷ୍ଟ୍ରପତି ଡ: ଅବଦୁଲ୍ କଲାମ୍ କହିଲେ ଯେ ଚାଷଜମି ସେଜ୍‌ପାଇଁ ଅଧିଗ୍ରହଣ କରାନଯାଉ ଏବଂ ଜମି ଅଧିଗ୍ରହଣ ଜବରଦସ୍ତ କରାନଯାଉ । ଯଦି ପରିସ୍ଥିତି ବାଧ୍ୟ କରିପାରୁଛି, ରାଷ୍ଟ୍ରପତିମାନଙ୍କୁ ଜନତାପାଇଁ କହିବାକୁ ତାହାହେଲେ କାର୍ଯ୍ୟପାଳିକା ଓ ଶାସନରେଥିବା ରାଜନୈତିକ ନେତୃତ୍ୱ ରାଷ୍ଟ୍ରପତିଙ୍କ ପରାମର୍ଶକୁ କାହିଁକି କାର୍ଯ୍ୟକରୁ ନାହାନ୍ତି ? ପ୍ରଚଳିତ ଶିଳ୍ପାୟନର ମୂଲ୍ୟାୟନ କାହିଁକି କରାଯାଉନି ? ଶିଳ୍ପ କାହାପାଇଁ ଓ କେଉଁ ଶିଳ୍ପ ଲୋକଙ୍କ ଆବଶ୍ୟକତା ପୂରଣ କରିବାରେ ଜୀବିକା ଯୋଗାଇ ପାରିବ ସେ ଶିଳ୍ପପାଇଁ ଆବଶ୍ୟକ ଭିତ୍ତିଭୂମି ଯୋଜନା କମିସନର ତାଲିକାରେ ଅଛିକି ? ସିଙ୍ଗୁରରେ କାହିଁକି ଚାଷୀର ହାଡ଼ମାଂସର ଦେହ ଓ ତାର ଜୀବିକାର କବର ଉପରେ ଛୋଟ କାର ନିର୍ମାଣ ହେବ ? ଛୋଟ କାର କ'ଣ ଏକ ସାଧାରଣ ଲୋକଙ୍କ ଆବଶ୍ୟକତାର ତାଲିକାଭୁକ୍ତ ? ଯଦି ସମସ୍ତ ମଧ୍ୟବିତ୍ତ ପରିବାର ଛୋଟ କାର କିଣିବେ, ସେଥିପାଇଁ ଆବଶ୍ୟକ ତେଲ କେଉଁଠୁ ଆସିବ ? ସେହି ତେଲର ଆମଦାନୀ ହେବ ବିଦେଶରୁ, ପୁଣି ତାହା ଧନୀକ ଶ୍ରେଣୀପାଇଁ । ସେହିପରି ନନ୍ଦିଗ୍ରାମରେ ୧୪୦୦୦ ଏକର ଚାଷଜମି ଉପରେ ଇଣ୍ଡୋନେସିଆର ସଲିମ କଂପାନୀର ଇଷ୍ଟେଟ୍ ବିଲଡିଂ ନିର୍ମାଣ ହେବ । ସେହି ସଲିମ୍ ଗ୍ରୁପ୍ ଆମେରିକା ସାମ୍ରାଜ୍ୟବାଦର ଏଜେଣ୍ଟ ହୋଇ ଇଣ୍ଡୋନେସିଆରେ ସାମ୍ୟବାଦୀମାନଙ୍କୁ ନିଖୋଜ କରିଦେଇଛି । ସେହି ସଲିମ୍

Digitized by srujanika@gmail.com

ପାଇଁ ଏକ ବାମପନ୍ଥୀ ଦଳର ସରକାର କୃଷକମାନଙ୍କ ଉପରେ ଆଖିବୁଜା ଗୁଳି ଚଳାଇ ପାରିଲା ତାହାହିଁ ଦେଶରେ ବାମପନ୍ଥୀ ବିଚାରରେ ବିଶ୍ୱାସ କରୁଥିବା ନାଗରିକ ଓ ସଂଗଠକମାନଙ୍କୁ ଆଘାତ ଦେଇଛି । ତେଣୁ ପ୍ରଚଳିତ ବିକାଶ ଓ ରାଜନୀତିର ଏକ ବିକଳ୍ପ ଅହେତୁକ ହୋଇପଡ଼ିଛି । ମଣିଷକୁ ମାରିବାକୁ ହେବନାହିଁ, ସରକାର ଭାଙ୍ଗିଯାଉ ପଛକେ ଏପରି ପ୍ରତିବଦ୍ଧତା ଆଧାରିତ ଆଦର୍ଶବାଦୀ ରାଜନୀତି ହିଁ ଅମାନୁଷିକତା ଆଡ଼କୁ ନେଇ ଚାଲିଥିବା ବ୍ୟବସ୍ଥାକୁ ପରିବର୍ତ୍ତନ କରିପାରିବ । ସଭ୍ୟତାକୁ ଅନ୍ଧ ଦିଗନ୍ତରୁ ମୁକ୍ତି କରି ନୂଆ ଆଶାର ଆଲୋକ ବିଚ୍ଛୁରିତ କରିବ ।

ବିଶ୍ୱରେ ଯେଉଁଠି ଦ୍ରୁତ ବିକାଶ ମୂଳରୁ ଦେଖାଦେଇଛି କିମ୍ବା ଆଜି ବିକଶିତ ଦେଶ ରୂପେ ଯେଉଁମାନଙ୍କୁ ଅନୁକରଣ କରିବା ବୃଥା ପ୍ରୟାସ ଚାଲିଛି, ସେହି ବିକାଶ ମୂଳରେ ବର୍ବରତା, ଶୋଷଣ, ଓ ଅମାନୁଷିକତାକୁ ଏକ ବିଶେଷ ପୁଞ୍ଜିରୂପେ ବ୍ୟବହାର କରାଯାଇଛି । ତାହାହିଁ ଅସଭ୍ୟତାର ପ୍ରତୀକ । ଯେତେବେଳେ ମୁଦ୍ରାର ପ୍ରଚଳନ ଆନ୍ତର୍ଜ୍ୟାତିକ ହୋଇନଥିଲା, ସେତେବେଳେ ଇଂଲଣ୍ଡର ସାମ୍ରାଜ୍ୟବାଦର ପ୍ରଭୁତ୍ୱକୁ ବିସ୍ତାର କରାଯାଉଥିଲା । ଆଫ୍ରିକାର କଳା ଲୋକଙ୍କୁ କ୍ରୀତଦାସ କରି ଶ୍ରମକୁ ଶୋଷଣ କରାଯାଉଥିଲା ବିଭିନ୍ନ ଦେଶରେ, ତାପରେ ପରେ ଶିଳ୍ପ ବିପ୍ଳବ ଜରିଆରେ ବିଭିନ୍ନ ଦେଶର କଞ୍ଚାମାଲ ଶୋଷଣକରି ୟୁରୋପର ଶିଳ୍ପାୟନକୁ ଏକ ନବଜାଗରଣ ରୂପେ ଚିତ୍ରଣ କରାଗଲା । ନବ ସଭ୍ୟତା ତଥା ଆଧୁନିକତା ପାଇଁ ଶିଳ୍ପ ବିପ୍ଳବର ଅବଦାନକୁ ସ୍ୱୀକାର କରାଗଲା ଯଦିଚ ଏହା ପୁଞ୍ଜିବାଦ ବ୍ୟବସ୍ଥାର ଏକ ପର୍ଯ୍ୟାୟ । ତାକୁ ସାମ୍ୟବାଦୀ ଚିନ୍ତକମାନେ ବି ଗ୍ରହଣ କରିନେଲେ । ଶୋଷଣ ଓ ଲୁଟକରଣ ଶିଳ୍ପକରଣକୁ ମଜବୁତ୍ କରିଆସିଛି । ଏକଥା ଆଜି ବି ଅତି ମାତ୍ରାରେ ଘଟୁଛି । ଦାସତ୍ୱ ପ୍ରଥା ନଥିଲେ ବି ଶୋଷିତ ନିଗ୍ରୋ ସମାଜ ଆଜି ବି ଅବହେଳିତ, ବଞ୍ଚିତ । ଏପରିକି ସ୍ୱାଧୀନ ନିଗ୍ରୋବାସୀମାନେ ଆଜିର ଆମେରିକା ଓ ୟୁରୋପୀୟ ସାମ୍ରାଜ୍ୟବାଦୀ ଅର୍ଥବ୍ୟବସ୍ଥାର ଶିକାର ହେଉଛନ୍ତି । ଗରିବ ଓ ବିକାଶଶୀଳ ଦେଶମାନଙ୍କରେ ଥିବା ପ୍ରାକୃତିକ ସଂପଦର ଲୁଟକରଣ ରାସ୍ତାକୁ ସଫା କରିବାପାଇଁ ଜଗତୀକରଣ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ବିଶ୍ୱବାଣିଜ୍ୟ ସଂଗଠନ ସୃଷ୍ଟି ହୋଇଛି ଯାହାର ଭିତ୍ତିଭୂମି ତିଆର କରିଛନ୍ତି ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜ୍ୟାତିକ ମୁଦ୍ରାପାଣ୍ଠି । ବର୍ତ୍ତମାନ ଶୋଷଣର ଜାଲ ବିଛାଯାଇଛି ଡି.ଏଫ୍.ଆଇ.ଡ଼ି, ଏସିଆନ ଉନ୍ନୟନ ବ୍ୟାଙ୍କ ପରି ଅନେକ ଦଲାଲ୍ ସଂସ୍ଥା ଜରିଆରେ । ଇକନାମିକ୍ ହିଟ୍‌ମ୍ୟାନ ପୁସ୍ତକରେ ରାଜସାକ୍ଷୀ ପରି ପାର୍କିନ୍ସ ପ୍ରକାଶ କରିଛନ୍ତି ଯେ ବିଭିନ୍ନ ଗରିବ ଦେଶମାନଙ୍କୁ ଋଣ ଦେଇ କିପରି ସେଠାର ଅର୍ଥବ୍ୟବସ୍ଥାକୁ ବିପର୍ଯ୍ୟସ୍ତ କରାଯାଉଛି ଆମେରିକା ଅର୍ଥ ବ୍ୟବସ୍ଥାର ସ୍ୱାର୍ଥରେ । ଇଂଲଣ୍ଡ ବିକଶିତ ଯେହେତୁ, ଶହ ଶହ ବର୍ଷ ଔପନିବେଶିକ ଶାସନ ଜାହିର କରି ଏସିଆ, ଦକ୍ଷିଣ ଆଫ୍ରିକା ଦେଶମାନଙ୍କୁ

Digitized by srujanika@gmail.com

ଶୋଷଣ କରିଥିଲା । ଆଜି ଆମେରିକା ଓ ଅନ୍ୟ ଧନୀ ଦେଶମାନେ ଆର୍ଥିକ ସାମ୍ରାଜ୍ୟବାଦ ଛରିଆରେ ଭାରତ ପରି ଅନେକ ଦେଶର ବଜାରକୁ ନିୟନ୍ତ୍ରଣ କରିବାକୁ ଯାଇ ସେଠାର କୃଷି, ଛୋଟ ଶିଳ୍ପ ଓ ଜଙ୍ଗଲକୁ ଧ୍ୱଂସ କରି ପ୍ରାକୃତିକ ସଂପଦକୁ ଶେଷ କରିଦେବାକୁ ସମସ୍ତ ଚେଷ୍ଟା ଚଳାଇଛନ୍ତି । ତେଣୁ ସେହି ସାମ୍ରାଜ୍ୟବାଦୀ ଅର୍ଥବ୍ୟବସ୍ଥାର ଏଜେଣ୍ଟ ହୋଇ ଯାଇଥିବା ଆମଦେଶର ଶାସକ ରାଜନୈତିକ ଦଳମାନେ ଦଳମତ ନିର୍ବିଶେଷରେ ସେହି ସାମ୍ରାଜ୍ୟବାଦୀ ବିକାଶ ଧାରାକୁ ଗ୍ରହଣ କରି କାର୍ଯ୍ୟକାରୀ କରାଇବାପାଇଁ ପ୍ରତିଯୋଗିତା କରୁଛନ୍ତି । ତେଣୁ ସରକାର ଯିଏ ଆସିଥିଲେ ବି ଏହି ଜନବିରୋଧୀ, ଦେଶବିରୋଧୀ ବିକାଶ ପ୍ରତିରୋଧ କଲାବେଳେ ସାଧାରଣ ଚାଷୀ, ଶ୍ରମିକ ଓ ଆଦିବାସୀଙ୍କୁ ଦମନ କରାଯାଉଛି । ମାତ୍ର କେତେଜଣଙ୍କ ମୁନାଫା ଓ ଭୋଗବାଦୀ ଖାଉଟିଙ୍କ ସୌଖୀନ ଚାହିଦା ପୂରଣ ପାଇଁ ଉତ୍ପାଦନ କରୁଥିବା କାରଖାନା ବସିବ ବହୁଜନଙ୍କ ଶବ ଉପରେ, ସେହି ସମ୍ପ୍ରଦାୟକୁ ଜୀବନ-ଜୀବିକାର ଜନନୀ ମାଟିରୁ ଉଦବାସ୍ତୁ କରି । କାରଖାନା ବସିଲାପରେ ଦଳେ ନବ ସମୃଦ୍ଧ କୋଟିପତି ଏକ ପରରରାଇଜର ପରିବେଶ ତିଆରି କରିପାରୁଥିବାବେଳେ ଜମି ଜଙ୍ଗଲହରା ସର୍ବହରା ପୁଣି ସେହି ବର୍ବର ସଭ୍ୟତାର ଶିକାର ହୋଇ ଅନ୍ଧାର ଭିତରେ ପେଟପୂରା ଖାଇବାକୁ ପାଉନଥିବା ଚିତ୍ର କଳିଙ୍ଗନଗରଠାରୁ ସର୍ଦ୍ଦାର ସରୋବର ପର୍ଯ୍ୟନ୍ତ ଦେଖିବାକୁ ମିଳୁଛି । ବର୍ତ୍ତମାନ କଳିଙ୍ଗନଗର ପରେ ସିଙ୍ଗୁର ଓ ନନ୍ଦିଗ୍ରାମ ଏପରି ଏକ ଅନ୍ଧାର ଭବିଷ୍ୟତକୁ ପ୍ରତିହତ କରିବାପାଇଁ ସଂଘର୍ଷରତ ଜନତା ବର୍ବର ଆକ୍ରମଣକୁ ସାମନାକରି ଶହୀଦ ହେଲେଣି । ମଣିଷକୁ ହତ୍ୟାକରୁଥିବା ପ୍ରଶାସନ କିମ୍ବା ରାଜନୈତିକ ବ୍ୟବସ୍ଥା କେଉଁ ସଭ୍ୟତାର ପ୍ରତିନିଧିତ୍ୱ କରୁଛି ? ମଣିଷକୁ ମାରିବାପାଇଁ କେଉଁ ସଭ୍ୟସମାଜ ସ୍ୱୀକୃତି ଦେଉଛି ? ଯଦି କୌଣସି ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ରାଜଶକ୍ତି ଦ୍ୱାରା ଲୋକଶକ୍ତିକୁ ଅମାନୁଷିକଭାବେ ଦମନ କରାଯାଏ, ସେଠାରେ ସମାଜ ଭାଙ୍ଗିଯାଏ । ଯେଉଁ ଲକ୍ଷ୍ୟପାଇଁ ବର୍ବର ଆକ୍ରମଣ କରାଯାଉଛି, ସେହି ଲକ୍ଷ୍ୟର ସମର୍ଥକମାନେ ନିଜକୁ ସଭ୍ୟ ସମାଜର ପ୍ରତିନିଧିତ୍ୱ କରୁଥିବା ଦାବିଦାର ହୋଇଥାଆନ୍ତି । ସେମାନଙ୍କ ସଭ୍ୟତାର ଲକ୍ଷଣ ହେଉଛି ବଡ଼ ବଡ଼ ଅଟ୍ଟାଳିକା, ଯାବତୀୟ ଚଳନୀପାଇଁ ବୈଷୟିକ ଜ୍ଞାନକୌଶଳ ଓ ଯାନ୍ତ୍ରିକ ସାମଗ୍ରୀର ଉପଭୋଗ । ଆଉ ବାକି ସମସ୍ତେ ଅତ୍ୟାବଶ୍ୟକ ସେବା ଓ ଦୁଇଓଳା ଖାଦ୍ୟ ଓ ପରିଧାନପାଇଁ ଜୀବିକାରୁ ବଞ୍ଚିତ ଓ ତଥାକଥିତ ସଭ୍ୟସମାଜରୁ ବାଛନ୍ଦ । ବାସ୍ତବରେ ଏପରି ସ୍ଥିତାବସ୍ଥା ସମାଜ ଅସଭ୍ୟତାର ପ୍ରତୀକ । କାରଣ ଯେଉଁଠି ଅନେକଙ୍କ ଦୁଃଖରେ ଜଣେ ସୁଖପାଏ, ସେଠି ଶୋଷଣର ବର୍ବରତା ପରିପୂର୍ଣ୍ଣ । ସେହି ସମାଜ ନିଶ୍ଚିତଭାବେ ଅସଭ୍ୟ । ଯେତେବେଳେ ଔଦ୍ୟୋଗିକ ବିକାଶ ନାମରେ ଅନେକ ମାଟି ମଟାଳର ବାସଘର ଓ ଅନ୍ନକ୍ଷେତ୍ରର ଧ୍ୱଂସର ସ୍ତୁପ ଉପରେ ଆଉ କାହାପାଇଁ କାରଖାନାର ଐରାବତ ନିର୍ମାଣ ହେଉଛି, ସେଠି ଯେଉଁ ରକ୍ତନଦୀ ବୋହୁଛି

Digitized by srujanika@gmail.com

ତାହା ଏକ ସଭ୍ୟ ସମାଜର ବିଘଟନ ଘଟାଉଛି । ପୁଣି ଏକ ନୂଆ ସଭ୍ୟତାର ଆଶା ବି ଦେଖିହେଉଛି ଯେତେବେଳେ ଆତ୍ମବଳି ଦେଇ ନିଜ ସଂଗ୍ରାମକୁ ଜୀବନ୍ତ ରଖିପାରୁଛନ୍ତି କଳିଙ୍ଗନଗର, ନନ୍ଦିଗ୍ରାମ ଓ ଆହୁରି ଅନେକ ବୀରଭୂମିରେ । ସଭ୍ୟତାର କବର ଉପରେ ବିକାଶର ଅଟ୍ଟାଳିକା ଠିଆ ହେଲେ ଅଳ୍ପ ଦିନରେ ତାର ବି ଅପମୃତ୍ୟୁ ଅପରିହାର୍ଯ୍ୟ ହୋଇପଡ଼ିବ । ସଭ୍ୟତା ନାମରେ ଅସଭ୍ୟ ଓ ଅମାନୁଷିକ ବିକାଶ ପ୍ରକ୍ରିୟାର ପ୍ରତିରୋଧ ନୂଆ ସଭ୍ୟତା ବାଟ ଦେଖାଇବ ।



Digitized by srujanika@gmail.com

# ପରିବର୍ତ୍ତିତ ପେଟେଣ୍ଟ୍ ଆଇନ ଗରିବ ପାଇଁ ମହଙ୍ଗା

ବିଶ୍ୱ ବାଣିଜ୍ୟ ସଂଗଠନର ନିର୍ଦ୍ଦେଶରେ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ଏକଚାଟିଆ ବ୍ୟବସାୟରେ ପ୍ରଚୁର ମୁନାଫା ପାଇଁ କେନ୍ଦ୍ର ସରକାର ଆମ ଦେଶର ୧୯୭୦ ପେଟେଣ୍ଟ ଆଇନକୁ ତୃତୀୟ ଥର ପାଇଁ ସଂଶୋଧନ କରିବାକୁ ଡିସେମ୍ବର ୨୦୦୪ରେ ଅଧ୍ୟାଦେଶ ଜାରି କରିଛନ୍ତି । ସଂସଦରେ ଅଧିବେଶନ ଶେଷ ହେବାପରେ ଏପରି ଅଧ୍ୟାଦେଶ ଜାରି ଅଗଣତାନ୍ତ୍ରିକ । ଆଇନର ପରିବର୍ତ୍ତନ କରିବାକୁ ଯେଉଁ ପଦକ୍ଷେପ ନିଆଯାଇଛି, ତାହା କୋଟି କୋଟି ଗରିବ ଓ ନିମ୍ନ ମଧ୍ୟବିତ୍ତ ଜନତାଙ୍କ ସ୍ୱାସ୍ଥ୍ୟରକ୍ଷା ପ୍ରତି ଅନ୍ୟାୟ ହେବ । ପୂର୍ବତନ ଏନଡିଏ ସରକାର ଡିସେମ୍ବର ୨୦୦୨ରେ ୨ୟଥର ପାଇଁ ସଂଶୋଧନ କରି ପ୍ରକ୍ରିୟା ସ୍ୱତ୍ୱାଧିକାରରେ ସଂଶୋଧନ କରିଥିଲେ । ଏହାଦ୍ୱାରା ଗୋଟିଏ ନୂଆ ଔଷଧର ପ୍ରକ୍ରିୟାକରଣ ୭ ବର୍ଷ ବଦଳରେ ୧୪ ବର୍ଷ ରୁ ୨୦ ବର୍ଷ ଯାଏ ଗୋଟିଏ କଂପାନୀ କିମ୍ବା ପେଟେଣ୍ଟ କରିଥିବା ଗବେଷଣାଗାରଠାରେ ସ୍ୱତ୍ୱାଧିକାର ରହିଲା । ଆମ ଦେଶର ୧୯୭୦ ପେଟେଣ୍ଟ ଆଇନ ଅନୁଯାୟୀ କେବଳ ୫ ବର୍ଷରୁ ୭ ବର୍ଷ ପାଇଁ ସ୍ୱତ୍ୱାଧିକାର ଅବଧି ଥିବା ଯୋଗୁଁ କମ୍ ସମୟ ମଧ୍ୟରେ ଭାରତୀୟ କଂପାନୀମାନଙ୍କ ଦ୍ୱାରା ସେହି ଔଷଧଗୁଡ଼ିକ ଉତ୍ପାଦିତ ହୋଇ ବଜାରକୁ ଶସ୍ତାରେ ଆସିପାରୁଥିଲା । ଏହି ପ୍ରକ୍ରିୟା ସ୍ୱତ୍ୱାଧିକାରରେ ଯଦି କୌଣସି ଔଷଧ ପ୍ରସ୍ତୁତିର ପ୍ରକ୍ରିୟା ପେଟେଣ୍ଟ ହୋଇଗଲା ପରେ ବି ଆଉ ଏକ ବିକଳ୍ପଭାବେ ଅନ୍ୟତ୍ର ନୂଆ ପ୍ରକ୍ରିୟାର ଉଦ୍ଭାବନ ଦ୍ୱାରା ସେହି ଔଷଧକୁ ପ୍ରସ୍ତୁତ କରାଯାଇ ପାରୁଥିଲା । ଏହାଦ୍ୱାରା ପ୍ରତିଯୋଗିତାମୂଳକ ବ୍ୟବସାୟରେ ଔଷଧର ଦାମ ମଧ୍ୟ ନିୟନ୍ତ୍ରିତ ହେଉଥିଲା । ବିଶେଷ କରି ଔଷଧର ଉତ୍ପାଦନ ଖର୍ଚ୍ଚ କମ୍ ହେଉଥିବା ଯୋଗୁଁ, ଅନ୍ୟ ଦେଶ ମଧ୍ୟ ଆମ ଔଷଧକୁ ବ୍ୟବହାର କରିପାରୁଥିଲେ । କିନ୍ତୁ ବିଶ୍ୱବାଣିଜ୍ୟ ସଂଗଠନ ଜରିଆରେ ବୌଦ୍ଧିକ ସଂପଦ ଅଧିକାରକୁ ବାଣିଜ୍ୟ ସମ୍ବନ୍ଧୀୟ ବିଷୟରେ ଅନ୍ତର୍ଭୁକ୍ତ କରି ଶିଳ୍ପୋନ୍ନତ ଧନୀ ଦେଶମାନେ ବିକାଶିତ ଓ ଅଣବିକଶିତ ଦେଶମାନଙ୍କ ଉପରେ ସମସ୍ତ ପ୍ରକାର ଗବେଷଣାଜନିତ ଜ୍ଞାନ କୌଶଳ, ଔଷଧ ପ୍ରସ୍ତୁତି ଓ ଏପରିକି କୃଷି ରାସାୟନିକ ଉତ୍ପାଦନ ଓ ବିହନ ପ୍ରସ୍ତୁତିକରଣରେ ପେଟେଣ୍ଟ ଲାଗୁ କରିବା ନିଷ୍ପତ୍ତିକୁ ଥୋପି ଦେଇଛନ୍ତି । ପେଟେଣ୍ଟ ନାମରେ କଟକଣା ଏକ ଅନ୍ଧାରୀ ଶାସନର ପ୍ରତୀକ । ସ୍ୱାଧୀନ ଦେଶମାନଙ୍କର ସାର୍ବଭୌମତ୍ୱ

Digitized by srujanika@gmail.com

ଉପରେ ଏପରି ଥୋପ ଏକ ଖୋଲା ସାମ୍ରାଜ୍ୟବାଦୀ ଆକ୍ରମଣ । ଆମ ଦେଶର ସରକାରରେ ଥିବା କ୍ଷମତାସୀନ ରାଜନେତାମାନେ ବାରଂବାର କହୁଛନ୍ତି "ଆମେ ଚୁକ୍ତିକୁ ମାନି କାର୍ଯ୍ୟକାରୀ କରୁଛୁ" । ଚୁକ୍ତି କରିବାକୁ ଅଧିକାର ଦେଲା କିଏ ? ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ଲୋକଙ୍କୁ ପଚରାଯାଇନି । କୋଟି କୋଟି ଦରିଦ୍ର ଅସହାୟ ତଥା ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଜୀବନର ମାନଦଣ୍ଡ ଅତି ନିମ୍ନଧରଣର । ସେଥିରେ ଔଷଧର ଦାମ ବୃଦ୍ଧିହେଲେ ଚିକିତ୍ସା ଅସମ୍ଭବ । ମହାମାରୀର ଶିକାର ହେବେ ।

ବ୍ରିଟିଶ ଶାସନ ଅମଳରୁ ୧୯୧୧ର ପେଟେଣ୍ଟ ଆଇନ ଆମ ଦେଶରେ ୧୯୭୦ ପର୍ଯ୍ୟନ୍ତ ଲାଗୁ ହୋଇ ଆସୁଥିଲା । ୧୯୫୮ର ଜଷ୍ଟିସ ରାଜଗୋପାଲ ଆୟଙ୍ଗାର କମିଟିର ସୁପାରିଶକୁ ଆଧାର କରି ୧୯୭୦ରେ ଏକ ଆଦର୍ଶ ପେଟେଣ୍ଟ ଆଇନ ଗୃହୀତ ହେଲାପରେ ଆମ ଦେଶରେ ଔଷଧର ଉତ୍ପାଦନ କ୍ଷମତା ବଢ଼ିଗଲା ଓ ଆମ ଦେଶରେ ପ୍ରସ୍ତୁତ ଔଷଧର ମୂଲ୍ୟ ପୃଥିବୀର ବିଭିନ୍ନ ଦେଶ ତୁଳନାରେ କମ୍ ହେଲା । ୧୯୭୦ ପୂର୍ବରୁ ଆମ ଦେଶର ପ୍ରାୟ ୮୫% ଔଷଧ ବହୁରାଷ୍ଟ୍ରୀୟ କଂପାନୀ ଦ୍ୱାରା ତିଆରି ହେଉଥିଲା । ୧୯୭୦ ପେଟେଣ୍ଟ ଆଇନ ଫଳରେ ସାଇପ୍ରୋ ଫ୍ଲୋକ୍ସାସିନ ୫୦୦ ମି.ଗ୍ରା.ର ୧୦ଟି ବଟିକାକୁ ଭାରତରେ ୨୯ ଟଙ୍କାରେ ମିଳିବାବେଳେ ତାହା ଆମେରିକାରେ ୨୩୫୨ ଟଙ୍କା ୩୫ ପଇସା । ପାକିସ୍ଥାନରେ ଟ. ୪୨୩.୮୬ । ସେହିପରି ରାଣ୍ଟିଡାଇନ ୧୫୦ ମି.ଗ୍ରା.ର ୧୦ଟି ବଟିକାର ଦାମ ଭାରତରେ ମାତ୍ର ଟ. ୩.୫୦ରେ ମିଳିବାବେଳେ ତାହା ଆମେରିକାରେ ଟ. ୮୬୩.୫୯ ଓ ପାକିସ୍ଥାନରେ ଟ. ୭୪.୦୯ ଦେବାକୁ ପଡୁଥିଲା । କ୍ୟାନସର ରୋଗୀପାଇଁ ବୋପୋସାଇଡ୍ ଇଂଜେକସନ (୧୮୦ ମି.ଗ୍ରା.) ନାମକ ଭାରତୀୟ ଔଷଧର ଦାମ ୧୯୦ ଟଙ୍କାରେ ମିଳୁଥିବାବେଳେ ଆମେରିକାରେ ତାହାର ଦାମ ଟ. ୬୨୧୦.୩୦ ଥିଲା । ଏପରି ଅନେକ ଉଦାହରଣ ରହିଛି । କ୍ୟାନ୍ସର ରୋଗୀ ପାଇଁ ୨୫୦ ମି.ଗ୍ରା.ର ଇରେସା ନାମକ ଔଷଧର ୩୦ଟି ବଟିକାର ଦାମ ଥିଲା ୨୨୨ ଡ଼ଲାର ଯାହାକୁ ଇଣ୍ଡିଆନ ଜେନରିକ୍ ଉତ୍ପାଦନ ପ୍ରକ୍ରିୟା ବୋଲି କୁହାଯାଏ । କିନ୍ତୁ ପରିବର୍ତ୍ତିତ ପେଟେଣ୍ଟ ଆଇନର ଅନ୍ତର୍ଭୁକ୍ତ ହୋଇଯିବାପରେ ଏହି ଔଷଧର ଦାମ ୧୮୦୨ ଡ଼ଲାର । ସେହିପରି Temodarର ୫ଟି କ୍ୟାପସୁଲର ଦାମ ୫୦୦.୮୨ ଡ଼ଲାରରୁ ୧୮୩୫ ଡ଼ଲାର, Zometaର ୬୪ ଡ଼ଲାରରୁ ୮୭୩ ଡ଼ଲାରକୁ ବୃଦ୍ଧିପାଇଛି । ଏହି ତଥ୍ୟ ପ୍ରକାଶ କରିଛି ନେସନାଲ ଏଡ଼ସ୍ କଣ୍ଟ୍ରୋଲ ଏସୋସିଏସନ । ଏକଦା ଏଡ଼ସ ରୋଗୀପାଇଁ ଏକଥିରାପିର ଦାମ ବର୍ଷକୁ ୧୨୦୦୦ ଡ଼ଲାରରୁ ୧୪୦ ଡ଼ଲାରକୁ ଭାରତୀୟ କଂପାନୀ ଖସାଇ ଆଣିପାରିଥିଲା । ଏହା କେବଳ ୧୯୭୦ ପେଟେଣ୍ଟ ଆଇନଯୋଗୁଁ ।

ବର୍ତ୍ତମାନ ପେଟେଣ୍ଟ ଆଇନର ସଂଶୋଧନ ଦ୍ୱାରା product patent ଅର୍ଥାତ ଉତ୍ପାଦ ସ୍ୱତ୍ୱାଧିକାର ଲାଗୁ ହୋଇଗଲା । ଏହାଫଳରେ କୌଣସି ଏକ ନିର୍ଦ୍ଦିଷ୍ଟ ରୋଗ

Digitized by srujanika@gmail.com

ପାଇଁ ଏକ ଔଷଧ ପ୍ୟାକେଜ ହୋଇ ବଜାରକୁ ଆସିଗଲା ପରେ ସେହି ଔଷଧର ବିକଳ୍ପ ଅନ୍ୟ ନାମରେ ପ୍ରସ୍ତୁତ ହୋଇପାରିବ ନାହିଁ । ଏପରିକି ନୂଆ ପ୍ରକ୍ରିୟାରେ ବି ସେହି ଔଷଧ ପ୍ରସ୍ତୁତ କରାଯାଇପାରିବ ନାହିଁ । ଏପରି ଏକ ଅବାଞ୍ଛିତ ଓ ବିବେକହୀନ ନିଷ୍ପତ୍ତି ଦ୍ୱାରା ଗୋଟିଏ ଗୋଟିଏ ବହୁରାଷ୍ଟ୍ରୀୟ କଂପାନୀମାନେ ଅନେକ ପୁରାତନ ଔଷଧକୁ ମଧ୍ୟ ନବୀକରଣ କରି ପେଟେଣ୍ଟ କରିଦେବେ । ଅନେକ ଭାରତୀୟ ଔଷଧ କଂପାନୀ ବନ୍ଦ ହୋଇଯିବ । କାରଣ ସାଧାରଣ କଂପାନୀ ଚାହିଁଲେ ବି ଅନେକ ଔଷଧକୁ ପେଟେଣ୍ଟ ରେଜିଷ୍ଟ୍ରେସନ କରିପାରିବେ ନାହିଁ । କାରଣ ଏହା ଅତି ଖର୍ଚ୍ଚବହୁଳ । ଏଣୁ ସାଧାରଣ ରୋଗୀର ଔଷଧ ବଜାରରୁ ଉଭାନ ହୋଇଯିବ । ସେସବୁ ଏକଚାଟିଆ କଂପାନୀମାନଙ୍କ ନିୟନ୍ତ୍ରଣରେ ରହିବ । ଆମେରିକାର ସର୍ବବୃହତ ଜେନରିକ୍ ଡ୍ରଗ କଂପାନୀ ବାୟୋଜେନେରିକ୍ସ ଇନ କର୍ପୋରେସନର ଅଧ୍ୟକ୍ଷ ବି ଲ୍ଲହଦାଦ୍ କହିଛନ୍ତି ଯେ ୧ ଜାନୁଆରୀ ୨୦୦୫ରେ ବିଶ୍ୱ ବାଣିଜ୍ୟ ସଂଗଠନର ଚୁକ୍ତିନାମା ଲାଗୁ ହୋଇଗଲାପରେ ଆଗାମୀ ଦିନରେ ବିଶ୍ୱର ଦୁଇ ତୃତୀୟାଂଶ ଲୋକ ଜୀବନ ରକ୍ଷା ଔଷଧରୁ ବଞ୍ଚିତ ହେବେ । ଏହି ଦୃଷ୍ଟିରୁ ଭାରତରେ ଔଷଧ ଉପରେ ନିର୍ଭରଶୀଳ ଆଫ୍ରିକାର ଅନେକ ଦେଶ, ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଏବଂ ବିଶ୍ୱର ବିଭିନ୍ନ ଏଡ୍ସ୍ ସଂଗଠନମାନେ ଭାରତର ପ୍ରଧାନମନ୍ତ୍ରୀଙ୍କୁ ନିବେଦନ କରି ଅଧ୍ୟାଦେଶର ପୁନଃବିଚାର କରିବାକୁ ଲେଖିଛନ୍ତି । ନିୟୁୟର୍କ ଟାଇମ୍ସର ସଂପାଦକୀୟ (ଜାନୁଆରୀ ୧୮) କହିଛି ଯେ – ଭାରତର ପେଟେଣ୍ଟ ଆଇନ ସଂଶୋଧନ ଅଧ୍ୟାଦେଶ ବହୁରାଷ୍ଟ୍ରୀୟ ଓ ଭାରତୀୟ ବଡ଼ କଂପାନୀମାନଙ୍କ ଦ୍ୱାରା ଅତ୍ୟଧିକ ପ୍ରଭାବିତ ଯେଉଁମାନେ ଭାରତର ମଧ୍ୟବିତ୍ତ ଶ୍ରେଣୀକୁ ଅତ୍ୟଧିକ ଦାମରେ ଔଷଧ ବିକ୍ରିକରି ଲାଭ ଉଠାଇବାକୁ ଚାହିଁ ବସିଛନ୍ତି । ଏହି ପତ୍ରିକା ଟିପ୍ପଣୀ କରିଛନ୍ତି ଯେ – ବିଶ୍ୱ ବାଣିଜ୍ୟ ସଂଗଠନର ନିୟମାବଳୀରେ ଥିବା ଜନ ସ୍ୱାସ୍ଥ୍ୟ ପ୍ରତି ଦେଶମାନଙ୍କର କର୍ତ୍ତବ୍ୟଗତ ଅଧିକାରର ସୁଯୋଗ ନନେଇ ଔଷଧ କଂପାନିମାନଙ୍କ ପ୍ରତି ସରକାର ଅଧିକ ଆଗ୍ରହ ଦେଖାଇଛନ୍ତି ।

ଟ୍ରିପ୍ସ (Trade Related Aspects of Intellectual Property Rights)ର ଅଷ୍ଟମ ଧାରା ଅନୁଯାୟୀ କୌଣସି ଦେଶ ପେଟେଣ୍ଟ ଆଇନ ବଦଳାଇବା ବେଳେ ନିଜର ଜନସ୍ୱାସ୍ଥ୍ୟ ସାମାଜିକ ଓ ଆର୍ଥିକ କ୍ଷେତ୍ର ତଥା ବୈଷୟିକ ବିକାଶ ଜନିତ ସ୍ୱାର୍ଥର ସୁରକ୍ଷା ପ୍ରତି ଧ୍ୟାନ ଦେଇପାରିବେ । ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଅଧିକାର ଅନ୍ତର୍ଦେଶୀୟ ସମ୍ମିଳନୀ ମାନଙ୍କର ସନନ୍ଦ ଓ ଭାରତୀୟ ମାନବିକ ଅଧିକାର ଆଇନ (୧୯୯୩) ଅନୁଯାୟୀ ଦେଶ ଜନସ୍ୱାସ୍ଥ୍ୟ ଅଧିକାରକୁ ତ୍ୟାଗ କରିପାରିବ ନାହିଁ ।

ପରିବେଶବିଜ୍ଞାନୀ ଡଃ. ବନ୍ଦନା ଶିବାଙ୍କ ଅନୁଯାୟୀ ବିଗତ ସଂଶୋଧନରେ କୃଷି କ୍ଷେତ୍ରରେ ପେଟେଣ୍ଟକୁ ଭର୍ତ୍ତିକରି ଦିଆଗଲା । ବର୍ତ୍ତମାନ ସଂଶୋଧନ ଉତ୍ପାଦ ସ୍ୱତ୍ତ୍ୱାଧିକାର

Digitized by srujanika@gmail.com

ଦ୍ୱାରା କଂପାନୀମାନେ ଆମ ଚାଷୀଙ୍କ ବିହନରୁ ଏକ ଜିନ ନେଇ ସେମାନଙ୍କ ଜେନେଟିକ୍ ଇଂଜିନିୟରିଙ୍ଗ କରିଆରେ ଏକ ନୂଆ ବିହନ ନାମରେ ପେଟେଣ୍ଟ ଭୁକ୍ତ କରି ଚାଷୀଙ୍କ ମୂଳ ବିହନକୁ ବେଆଇନ ବୋଲି ଦାବି କରିପାରିବେ । ଆଉ ଏକ ଅଧ୍ୟାଦେଶ ଆଣିବା ପୂର୍ବରୁ ସରକାର ଆମର ଥିବା ୧୯୬୬ ବିହନ ଆଇନକୁ ବଦଳାଇ ନୂଆ ଆଇନ କରି ଚାଷୀଙ୍କୁ ବିହନ ପାଇଁ ଅନୁବନ୍ଧନ କରିବା ପାଇଁ ବାଧ କରାଯାଉଛି । ଏହାଦ୍ୱାରା ଆମ ଦେଶର କୋଟି କୋଟି ଚାଷୀ ନିଜ ବିହନ ସଂକ୍ରାନ୍ତରେ ଅନୁବନ୍ଧନ କରିବାକୁ କେବେ ଚାହିଁବେ ନାହିଁ କିମ୍ବା ଏ ସଂକ୍ରାତରେ ଜାଣନ୍ତି ନାହିଁ । ଏତିକିବେଳେ କଂପାନୀମାନେ ଏ ସୁବିଧା ହାସଲ କରି ଚାଷୀଙ୍କ ବିହନକୁ ମଧ୍ୟ ନିଜର ବିହନ ବୋଲି ଅନୁବନ୍ଧନ କରିଦେଇ ପାରିବେ ଏବଂ ପେଟେଣ୍ଟ ଲାଗୁ କରିଦେବେ । ଏପରି ଏକ ସ୍ଥିତି ଆସିବ, ଚାଷୀ ପାଖରେ ବିହନ ରଖିବା ଅଧିକାର ରହିବ ନାହିଁ ଓ ରଖିଲେ ଧର୍ତ୍ତବ୍ୟ ଅପରାଧ ହେବ । ବିହନ ପେଟେଣ୍ଟ ଦ୍ୱାରା ଭାରତୀୟ ଚାଷୀ ବର୍ଷକୁ ୧୦ ହଜାର କୋଟି ଟଙ୍କାର କ୍ଷତି ସହିବାକୁ ବାଧ ହେବେ ।

ଅଧ୍ୟାଦେଶ ବିଲରେ ପରିଣତ ହୋଇ ପେଟେଣ୍ଟ ଆଇନ ସଂଶୋଧିତ ହୋଇଗଲା ପରେ ବାଣିଜ୍ୟମନ୍ତ୍ରୀ କମଳନାଥ କହିଛନ୍ତି ଯେ – ଏହାଦ୍ୱାରା କେବଳ ୩% ପ୍ରତିଶତ ବ୍ୟତୀରେକ ସାଧାରଣ ଔଷଧ ଗୁଡ଼ିକ ଉପରେ କୌଣସି ପ୍ରଭାବ ପଡିବ ନାହିଁ ଓ ଜୀବନ ରକ୍ଷକ ଔଷଧ ଗୁଡ଼ିକ ପ୍ରତି ଧ୍ୟାନ ଦିଆଯିବ । କିନ୍ତୁ ଭାରତୀୟ ଫାର୍ମାସିଉଟିକଲ ଏଲାୟନ୍‌ସର ସଂପାଦକ ଡି.ପି. ଶାହା କହନ୍ତି – ପ୍ରୋଡାକ୍ଟ ପେଟେଣ୍ଟ ଲାଗୁ ହୋଇଗଲା ପରେ ଭାରତୀୟ ବଜାରରୁ ପ୍ରାୟ ୩ ହଜାର କୋଟି ଟଙ୍କାର ଔଷଧ ହଟିଯିବ । ଆମ ଔଷଧ ବଜାରର ମୋଟ କାରବାର ପ୍ରାୟ ୨୨ ହଜାର କୋଟି ଟଙ୍କାର । ଏହାର ୪୦% ପ୍ରତିଶତ ଏବେ ବି ପେଟେଣ୍ଟ ଭୁକ୍ତ ନୁହଁ । କିନ୍ତୁ ବର୍ତ୍ତମାନ ଏହାର ପରିଣାମ କ'ଣ ହେବ ଚିନ୍ତା କରିବା ସମୟ ଆସିଛି । ମେଲ୍ ବକ୍ସରେ ୯ ହଜାର ପେଟେଣ୍ଟ ପାଇଁ ଆବେଦନ ପଡିରହିଥିଲା । ଏହାର ପ୍ରାୟ ୮୦% ବିଦେଶୀ କଂପାନୀମାନଙ୍କର । ଏହାପରେ ସ୍ୱାସ୍ଥ୍ୟ ଓ କୃଷି କ୍ଷେତ୍ରରେ ବିପର୍ଯ୍ୟୟ ହେବ । ଏପରିକି କଂପ୍ୟୁଟରରେ କୌଣସି ନୂଆ ପ୍ରୋଗ୍ରାମ ମଧ୍ୟ ପେଟେଣ୍ଟଭୁକ୍ତ ହୋଇପାରିବ । ଅର୍ଥାତ କୌଣସି ବ୍ୟକ୍ତି ନିଜର ବୁଦ୍ଧି ପ୍ରୟୋଗ କରି ଅନୁରୂପ କାର୍ଯ୍ୟପାଇଁ ନୂଆ କାର୍ଯ୍ୟକ୍ରମ ତିଆରି କରିବା ଅଧିକାରରୁ ବଞ୍ଚିତ ହେବ । ଏପରି ଏକ ଭୟାବହ ପରିଣାମକୁ ସରକାର କାହିଁକି ଡାକି ଆଣିଛନ୍ତି ?

ବର୍ତ୍ତମାନ ୟୁପିଏ ସରକାର ଯେଉଁ ଅଧ୍ୟାଦେଶ ବିଲ୍ ଆଣିଲେ, ତାହା ପୂର୍ବତନ ଏନ୍‌ଡିଏ ସରକାର ୨୦୦୩ରେ ବିଲ ଆଣିଥିଲେ । କିନ୍ତୁ ଲୋକସଭା ଭଙ୍ଗ ହୋଇଯିବା ଦ୍ୱାରା ବିଲ୍‌ଟି ସତ୍ତା ହରାଇଥିଲା । ସରକାରୀ ଦଳ ଓ ବିରୋଧୀ ଦଳ ଏଥିରେ ଏକ । ଅର୍ଥାତ ଭାରତୀୟ ଶାସକ ଶ୍ରେଣୀର ରାଜନୀତି ସଂପୂର୍ଣ୍ଣଭାବେ ସାମ୍ରାଜ୍ୟବାଦୀ ଶକ୍ତିଙ୍କ

Digitized by srujanika@gmail.com

ନିୟନ୍ତ୍ରଣରେ । ବାମପନ୍ଥୀ ସାଂସଦମାନଙ୍କ ସମ୍ମୁଖରେ ଏହା ଏକ ଆହ୍ୱାନ । ୟୁପିଏ ସରକାର ବାମପନ୍ଥୀଙ୍କ ସମର୍ଥନରେ ଆଶ୍ରିତ । ନିଜର କ୍ଷମତାକୁ ରଖିବା ପାଇଁ ବାମପନ୍ଥୀଙ୍କ ଚାପରେ ବିଲ୍‌କୁ ପ୍ରତ୍ୟାହୃତ କରିନେବା ଆଶା କରାଯାଉଥିଲା । ବାମପନ୍ଥୀଙ୍କ ସାଲିସହୀନ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ସାମାନ୍ୟ କେତୋଟି ସଂଶୋଧନ ପରେ ବାମପନ୍ଥୀମାନେ ବିଲ୍‌କୁ ଗୃହୀତ କରାଇବାରେ ସମ୍ମତି ଦେଇଦେବାପରେ ୧୯୭୦ ପେଟେଣ୍ଟ ଆଇନର ଚରିତ୍ର ବଦଳିଗଲା । ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ହାତରେ ଚାବିକାଠି ରହିଲା ।



Digitized by srujanika@gmail.com

# ଜଳ ହିଁ ଜୀବନ

# ବଜାରୀକରଣରୁ ମୁକ୍ତ କରାଯାଉ

## ଜଳପାଇଁ ଯୁଦ୍ଧର ସଙ୍କେତ

ଭାରତରେ ୧୭ କୋଟି ଲୋକ ସ୍ୱଚ୍ଛପାଣିରୁ ବଞ୍ଚିତ ଏବଂ ୬୯% ଲୋକଙ୍କ ପାଇଁ ଆବଶ୍ୟକ ପରିମଳ ବ୍ୟବସ୍ଥା ଅଭାବ । ୩୧୧୯ ସହର ମଧ୍ୟରୁ ମାତ୍ର ୨୧୭ଟି ସହରରେ ପରିତ୍ୟକ୍ତ ପାଣିକୁ ବିଶୋଧନ କରିବା ବ୍ୟବସ୍ଥା ରହିଛି ।

ପୃଥିବୀରେ ୧୧୦ କୋଟି ଲୋକଙ୍କୁ ଆବଶ୍ୟକ ଜଳ ମିଳୁ ନାହିଁ । ପରିମଳ ବ୍ୟବସ୍ଥାରୁ ୨୫୦ କୋଟି ଲୋକ ବଞ୍ଚିତ । ଜଳକୁନେଇ ସୃଷ୍ଟି ହେଉଥିବା ରୋଗରେ ପ୍ରତିଦିନ ବିଶ୍ୱରେ ୨୦ ହଜାର ଶିଶୁ ମରୁଛନ୍ତି । ୨୦୨୫ ସାଲ ବେଳକୁ ୪୮ଟି ଦେଶରେ ୨୮୦ କୋଟି ଲୋକ ଜଳର ଅଭାବର ସମ୍ମୁଖୀନ ହେବେ । ଉତ୍କଟ ଜଳ ଅଭାବରୁ ପ୍ରାୟ ୪୬ କୋଟି ଲୋକ କଷ୍ଟ ପାଉଛନ୍ତି । ଦୂଷିତ ଜଳ ଯୋଗୁଁ ପ୍ରତିବର୍ଷ ୫୦ ଲକ୍ଷରୁ ଅଧିକ ଲୋକ ମରୁଛନ୍ତି ଯାହାକି ବିଶ୍ୱ ଯୁଦ୍ଧମାନଙ୍କର ମୃତ୍ୟୁସଂଖ୍ୟାର ୧୦ଗୁଣ ଅଧିକ । ୨୦୫୦ ବେଳକୁ ପ୍ରାୟ ୪୦୦ କୋଟି ଲୋକ ପାଣିର ଅଭାବର ସମ୍ମୁଖୀନ ହେବେ ।

ଆଇପିସିସି (IPCC) ବୈଜ୍ଞାନିକମାନେ ୧୯୯୬ରେ ବାୟୁମଣ୍ଡଳ ପରିବର୍ତ୍ତନ ଉପରେ କହିଥିଲେ ଯେ ପୃଥିବୀରେ ପ୍ରତ୍ୟେକ ବ୍ୟକ୍ତି ପ୍ରତି ଜଳର ଉପଲବ୍ଧ ୧୦୦୦ ଘନମିଟର ତଳକୁ ଖସି ଆସିଲାଣି । ବର୍ତ୍ତମାନ କୁଓ୍ୱେତ, ଜୋର୍ଡ଼ାନ, ଇସ୍ରାଏଲ, ରାଓ୍ୱାଣ୍ଡା, ସୋମାଲିଆ, ଆଲଜିରିଆ ଏବଂ କେନିୟାରେ ସର୍ବନିମ୍ନ ପରିମାଣର ପାଣି ଥିବା ବେଳେ ୨୦ ରୁ ୩୦ ବର୍ଷ ମଧ୍ୟରେ ଲିବିୟା, ଦକ୍ଷିଣ ଆଫ୍ରିକା, ଇରାନ ଓ ଇଥୋପିଆରେ ଏହି ଜଳର ପରିମାଣ ସର୍ବନିମ୍ନସ୍ତରକୁ ଚାଲିଆସିବ । କେତେକ ଦେଶ ଜଳ ପାଇଁ ଦେଶ ଦେଶ ମଧ୍ୟରେ ତିକ୍ତତା ରହିବ ଯେହେତୁ ଏକଦେଶର ଜଳର ମୂଳ ଉତ୍ସ ଅନ୍ୟ ଦେଶରେ ରହିଛି । କାମ୍ବୋଡ଼ିଆ, ସିରିଆ, ସୁଦାନ, ଇଜିପ୍ଟ, ଇରାକ୍ ପରି ଦେଶର ନଦୀଗୁଡ଼ିକ ପଡ଼ୋଶୀ ଦେଶମାନଙ୍କରୁ ବାହାରିଛି ।

ବିଶ୍ୱର ଛୋଟ ଦେଶ ଦିଜବୋଉଟି (ଲୋହିତ ସାଗରର ମୁହଁରେ) ସବୁଠାରୁ କମ ଜଳ ସଂରକ୍ଷିତ ରହିଛି । ଏଠାରେ ବାର୍ଷିକ ପ୍ରତି ବ୍ୟକ୍ତି ପାଇଁ ୨୩ ଘ.ମି. ଅର୍ଥାତ

Digitized by srujanika@gmail.com

୫୦୦୦ ଗ୍ୟାଲେନ ଜଳ ମିଳୁଛି । କୁଓ୍ୱେତରେ ୭୫ ଘନ ମିଟର ଏବଂ ମାଲଟାରେ ମିଳୁଛି ୮୫ ଘନମିଟର । ୧୯୯୦ ଦଶକରେ ପ୍ରତି ଜଣ ପିଛା ୧୦୦୦ ଘନ ମିଟର ଅର୍ଥାତ ୨୨୦ ଗ୍ୟାଲେନରୁ କମ ଜଳ ସମ୍ପଦ ମିଳୁଥିବା ଦେଶର ସଂଖ୍ୟା ଥିଲା ୧୮ଟି । ୨୦୨୫ ସାଲ ବେଳକୁ ୩୪ଟି ଦେଶରେ ଏହି ନିମ୍ନତମଜଳ ସ୍ତର ଚାଲିଆସିବ ବୋଲି ବିଶ୍ୱ ବ୍ୟାଙ୍କର ଏକ ରିପୋର୍ଟରେ କୁହାଯାଇଛି । ଏତିକିବେଳେ ସର୍ବନିମ୍ନରେ ଥିବା ଦେଶ ଦିଜବୌତି ପ୍ରତି ଜଣ ପିଛା ୮ ଘନ ମିଟରକୁ ଚାଲି ଆସିବ ଏବଂ କୁଓ୍ୱେତରେ ମାତ୍ର ୪୨ ଘନମିଟରକୁ ଖସିଆସିବ ।

ପ୍ରଚୁର ଜଳ ଥିବା ଦେଶ ଇଂଲଣ୍ଡରେ ପ୍ରତି ଜଣ ପିଛା ୨୦୯୦ ଘନମିଟର ଅର୍ଥାତ ୪୬୦୦୦୦ ଗ୍ୟାଲେନ ଜଳ ସଂପଦ ରହିଥିବା ବେଳେ ଯୁକ୍ତରାଷ୍ଟ୍ର ଆମେରିକାରେ ୯୯୧୩ ଘନମିଟର ଅର୍ଥାତ ୨୧୮୧୦୦୦ ଗ୍ୟାଲେନ ରହିଛି ।

ନୀଳ ନଦୀ ଉପରେ ପ୍ରାୟ ୧୦ ଗୋଟି ଦେଶ ନିର୍ଭର କରୁଛନ୍ତି, କିନ୍ତୁ ଇଜିପ୍ଟର ୯୭% ଜଳ ନୀଳ ନଦୀରୁ ଆସୁଛି, ଏଥିରୁ ୯୫% ଜଳ ଉପର ଭାଗ ଆଠ ଗୋଟି ଦେଶ ଦେଇ ଆସୁଥିବା ନୀଳ ନଦୀର ସ୍ରୋତରୁ ଆସୁଛି । ୧୯୫୯ ସାଲରେ ସୁଦାନ ଓ ଇଜିପ୍ଟ ମଧ୍ୟରେ ଏକ ରାଜିନାମା ହୋଇଛି ନୀଳ ନଦୀର ଜଳ ବଣ୍ଟନକୁ ନେଇ, କିନ୍ତୁ ଅନ୍ୟ ୭ଟି ଦେଶ ଏଥିରେ ସ୍ୱାକ୍ଷର କରିନାହାନ୍ତି । ଏମାନଙ୍କ ମଧ୍ୟରୁ କୌଣସି ଦେଶ ଯଦି ନିଜ କୃଷିକାର୍ଯ୍ୟ ବୃଦ୍ଧି କରିବା ପାଇଁ ଅଧିକ ପାଣି ବ୍ୟବହାର କରିବାକୁ ବିଭିନ୍ନ ଯୋଜନା କରିବେ ନୀଳ ନଦୀର ପାଣିକୁ ନେଇ, ତାହାହେଲେ ଇଜିପ୍ଟ ତାହାର ସୈନ୍ୟବଳର ପ୍ରୟୋଗ କରିବା ସମ୍ଭାବନା ରହିଛି । ଏହି ଦେଶମାନେ ହେଲେ କେନିୟା, ରାଓଣ୍ଡା, ବୁରୁଣ୍ଡି, ଉଗାଣ୍ଡା, ତାଞ୍ଜାନିଆ ଏବଂ ଜାଇରେ ଯେଉଁ ଦେଶ ଦେଇ ନୀଳ ନଦୀ ବହୁଛି ।

୧୯୬୭ ଆରବ-ଇସ୍ରାଏଲ ଯୁଦ୍ଧର ପରିଣାମ ହେଲା ଜୋର୍ଡ଼ାନର ଏକ ଅଂଶ ଇସ୍ରାଏଲର ନିୟନ୍ତ୍ରଣରେ ଯେଉଁଠି ଏକ ନଦୀର ଉପର ମୁଣ୍ଡରେ ପାଣି ରହିଛି । ସେହି ଜଳ ଉପରେ ସିରିଆ ଓ ଲେବାନନର ମଧ୍ୟ ଅଧିକାର ଅଛି । ଏଣୁ ଭବିଷ୍ୟତରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠାର ଏକମାତ୍ର ଭରସା ହେଉଛି ପାଣିକୁ ନେଇ ବିବାଦର ଅବସାନ । ଇଉଫ୍ରେଟିସ ନଦୀ ଉପରେ ତୁର୍କି, ସିରିଆ ଓ ଇରାକ୍ ନିର୍ଭର କରନ୍ତି ।

ଭାରତର ପଡ଼ୋଶୀ ବାଙ୍ଗଲା ଦେଶ, ଭୁଟାନ ସହ ମଧ୍ୟ ଜଳ ଚୁକ୍ତିନାମା ରହିଛି । ଜଳର ବଣ୍ଟନକୁ ନେଇ ନଦୀମାନଙ୍କ ଉପରେ ଜଳ ଭଣ୍ଡାର ନିର୍ମାଣ ମଧ୍ୟ ବିବାଦୀୟ ହୋଇଯାଉଛି ।

Digitized by srujanika@gmail.com

ପାଣିକୁ କେନ୍ଦ୍ର କରି ଦେଶ ଦେଶ ମଧ୍ୟରେ ଯୁଦ୍ଧ ହେବା ସମ୍ଭାବନା ରହିଥିବା ବେଳେ ଆମ ଦେଶରେ ନଦୀମାନଙ୍କ ଜଳକୁ କେନ୍ଦ୍ର କରି ରାଜ୍ୟ ରାଜ୍ୟ ମଧ୍ୟରେ ବିବାଦ ବର୍ଷ ବର୍ଷ ଧରି ଚାଲିରହିଛି । ନିକଟ ଅତୀତରେ କାବେରୀ ଜଳକୁ କେନ୍ଦ୍ର କରି କର୍ଣ୍ଣାଟକ ଓ ତାମିଲନାଡୁ ମଧ୍ୟରେ ଯେପରି ଉତ୍ତେଜନା ଲାଗିରହିଲା ସେତିକିବେଳେ କେନ୍ଦ୍ର ସରକାର ଜଳର ବିବାଦରୁ ଖସିଯିବା ପାଇଁ ଜାତୀୟ ନଦୀ ସଂଯୋଗ ଯୋଜନାର ସ୍ୱପ୍ନ ଦେଖାଇବା ଆରମ୍ଭ କରିଦେଇଛନ୍ତି । ପଞ୍ଜାବ, ହରିଆନା, ରାଜସ୍ଥାନ ମଧ୍ୟରେ କେରଳର କେତେକ ନଦୀକୁ ନେଇ ଅନ୍ୟ ରାଜ୍ୟ ସହ, ମହାନଦୀ ପାଣିକୁ କେନ୍ଦ୍ର କରି ଛତିଶଗଡ଼ ଓଡ଼ିଶା ମଧ୍ୟରେ ଏପରି ଅନେକ ରାଜ୍ୟ ରାଜ୍ୟ ମଧ୍ୟରେ ପାଣିର ଅଭାବକୁ ନେଇ ଭବିଷ୍ୟତରେ ତୀବ୍ର ବିବାଦ ଦେଖାଦେବ । ନଦୀ ସଂଯୋଗ ଜରିଆରେ ବେଶୀ କରି ବିବାଦ ଠିଆହେବ ବଳକା ଜଳକୁ କେନ୍ଦ୍ରକରି ।

ଏହି ଜଳର ଅଭାବ ଦେଖାଇ ବିଭିନ୍ନ ରାଜ୍ୟ ସରକାରମାନେ ବିଭିନ୍ନ ଘରୋଇ କଂପାନୀମାନଙ୍କ ହାତରେ ଜଳଯୋଗାଣ ବ୍ୟବସ୍ଥା ଟେକି ଦେଲେଣି ବ୍ୟବସାୟ ପାଇଁ । ସରକାର ନିଜ ଦାୟିତ୍ୱରୁ ମୁକ୍ତି ପାଇବା ପାଇଁ ଜଳର ଅଭାବକୁ ସାମନା ନକରି ଜଳକୁ ବିକିବା ବ୍ୟବସ୍ଥା କରିଦେଲେ, ଯାହା ପାଖରେ ପଇସା ଅଛି ସେ ଜଳ କିଣିପାରିବ, ସେ ଅବସ୍ଥା ସୃଷ୍ଟି କରିବାକୁ ଯାଉଛନ୍ତି ।

ଛତିଶଗଡ଼ର ସିଓନାଥ ନଦୀର ୨୬ କି.ମି. ଏକ ଅଂଶକୁ ୨୨ ବର୍ଷ ପାଇଁ ରେଡ଼ିୟସ ୱାଟର କଂପାନୀକୁ ଦିଆଯାଇଛି ଦୁର୍ଗ ଶିଳ୍ପାଞ୍ଚଳକୁ ପାଣି ଯୋଗାଇବା ପାଇଁ । ଏହି ପାଣି ବିକିବା ଆରମ୍ଭ ହୋଇଗଲାଣି । ଏପରିକି ସାଧାରଣ ଲୋକେ ପାଣି ନେଲେ ମିଟର ଅନୁଯାୟୀ ମୂଲ୍ୟ ଦେବାକୁ ପଡୁଛି । ନଦୀର ଦୁଇପାଖ ପ୍ରାୟ ଏକ କିଲୋମିଟର ଦୂରରେ କେହି ମଟର ବସାଇପାରିବ ନାହିଁ । ମତ୍ସ୍ୟଜୀବୀ ଜାଲ ନେଇ ନଦୀରୁ ମାଛ ଧରିପାରୁନାହାନ୍ତି । ପାଣି ଉପରୁ ଲୋକଙ୍କର ଅଧିକାର ଚାଲିଗଲା । ପାଣିକୁ ମୁକ୍ତ କରିବା ପାଇଁ ଜନ ଆନ୍ଦୋଳନ ଚାଲିଛି । ସରକାର ବାଧ ହୋଇ କହିଲେଣି, କଂପାନୀ ନଦୀରୁ ହଟିବ ବୋଲି । ସେହିପରି କେରଳର ପେରିଆର ନଦୀ, ତାମିଲନାଡୁର ଭବାନୀ ନଦୀକୁ ବିଭିନ୍ନ କଂପାନୀମାନଙ୍କୁ ଦିଆଯାଇଛି । ବାଙ୍ଗାଲୋର ଓ ଦିଲ୍ଲୀରେ ବିଦେଶୀ କଂପାନୀମାନଙ୍କୁ ଦିଆଯାଇଛି ଜଳଯୋଗାଣ ଦାୟିତ୍ୱ । ପ୍ରକୃତିର ଦାନ ଜଳକୁ ବିକିବାର ଅଧିକାର କାହାର ଆସିଲା ? ବଲିଭିଆର କୋଚାବମ୍ବା ସହରରେ କାନଡ଼ା କଂପାନୀକୁ ଦିଆଗଲା ପରେ ସାଧାରଣ ଲୋକଙ୍କ ମାସିକ ଆୟର ଏକ ପଞ୍ଚମାଂଶ କେବଳ ପାଣି ପାଇଁ

Digitized by srujanika@gmail.com

ଦେବାକୁ ପଡ଼ିଲା । ଜନ ଆନ୍ଦୋଳନ ହେଲା, ଦୁଇବର୍ଷ ମଧ୍ୟରେ କଂପାନୀ ହଟିଲା । ଦକ୍ଷିଣ ଆଫ୍ରିକାରେ ଡ଼ଲଫିନକୋଷ୍ଟରେ ୧୯୮୮ରେ ପିଇବା ପାଣିକୁ ସଂପୂର୍ଣ୍ଣ ଘରୋଇକରଣ କରିବା ଦ୍ୱାରା ପାଣି ମହଙ୍ଗା ହେଲା । ଯେଉଁମାନେ ପାଣି କିଣି ପାରିଲେ ନାହିଁ, ସେମାନଙ୍କ ମଧ୍ୟରୁ ୨୦୦୦ ସାଲରେ କେବଳ ହଇଜାରେ ୩୦୦ ଲୋକ ମଲେ ବାହାର ଦୂଷିତ ଜଳ ବ୍ୟବହାର କରିବା ଯୋଗୁଁ । ଏମଧ୍ୟରେ ୟୁରୋପୀୟ ସଂଘ ଭାରତ ସମେତ ୭୨ଟି ଦେଶକୁ ଧମକ ଦେଇ ଚିଠି ଲେଖିଛନ୍ତି ଯେ ବିଶ୍ୱ ବାଣିଜ୍ୟ ସଂସ୍ଥାର ରାଜିନାମା ଅନୁଯାୟୀ ଜଳକୁ ଘରୋଇକରଣ କରାଯାଉ ଓ ସରକାର, ପୌରସଂସ୍ଥା ଗୁଡ଼ିକ ନେଇଥିବା ଜଳ ଯୋଗାଣ ଦାୟିତ୍ୱରୁ ଓହରି ଯାଆନ୍ତୁ । ଯେପରି କୃଷି ଉପରେ ରିହାତି ଉଠାଇ ଦେବାକୁ ବିଶ୍ୱ ବ୍ୟାଙ୍କ ଓ ବିଶ୍ୱ ବାଣିଜ୍ୟ ସଂସ୍ଥା ନିର୍ଦ୍ଦେଶ ଦେଇଛନ୍ତି, ପାଣି ଉପରେ ମଧ୍ୟ ସେହି ଚକ୍ରାନ୍ତ ।

ବିଶ୍ୱର ସବୁଠାରୁ ବଡ଼ ଜଳ କଂପାନୀ ଭିଭିଣ୍ଡି, ସୁଏଜ ଓ ସଭର, ଟମ୍‌ସ ପାଣି କଂପାନୀ ଓ ବେଚେଲ ବିଶ୍ୱର ବିଭିନ୍ନ ଦେଶମାନଙ୍କରେ ଜଳ ସଂପଦକୁ ଆୟତ୍ତ କରି ପାଣିକୁ ବିକୁଛନ୍ତି । ଏମାନେ ସମସ୍ତେ ଫ୍ରାନ୍ସ, ଇଂଲଣ୍ଡ ଓ ଆମେରିକାର । ୧୯୯୦ ରୁ ୨୦୦୨ ମଧ୍ୟରେ ଫ୍ରାନ୍‌ସ କଂପାନୀ ଭିଭିଣ୍ଡି ୫୦୦ କୋଟିରୁ ୧୨୦୦ କୋଟି ଡ଼ଲାର ଆୟ କରିଥିବା ବେଳେ ଇଂଲଣ୍ଡର ଟେମସ ଜଳ କଂପାନୀ ୨.୫ କୋଟିରୁ ୨୫୦ କୋଟି ଡ଼ଲାର ରୋଜଗାର କରିଛି । ଏହି କଂପାନୀମାନେ ୫୬ଟି ଦେଶରେ ପାଣିକୁ ବେପାର କରିସାରିଲେଣି । ଏହି କଂପାନୀମାନେ ବର୍ତ୍ତମାନ ଭାରତରେ ଡ଼େରା ବାନ୍ଧି ବସିଛନ୍ତି ଓ ଭାରତ ସରକାରଙ୍କ ଜଳନୀତିକୁ ନିୟନ୍ତ୍ରଣ କରି ଆବଶ୍ୟକ ପରିବର୍ତ୍ତନ ସହ ନୂଆ ନୂଆ ଆଇନ ଜରିଆରେ ଜନ ସମାଜର ଅଧିକାରରୁ ଜଳକୁ ଛଡ଼ାଇ ନେବାର ଉଦ୍ୟମ ଜାରିରହିଛି ।

ଓଡ଼ିଶାରେ ଟାଟାକୁ ଋଷିକୂଲ୍ୟାର ମୂଳସ୍ରୋତର ପାଣି ନିଜ କଂପାନୀକୁ ପାଇଁ ନେଇଯିବାକୁ ରାଜ୍ୟ ସରକାର ସୁପାରିଶ କରିଥିଲେ । ଟାଟା ହଟିଗଲା । ନଚେତ ଆଜି ଗଂଜାମ ଜିଲ୍ଲାର ଲୋକେ ଟୋପାଏ ଜଳ ପାଇନଥାନ୍ତେ । ଏପରି ଜଳର ଅଭାବକୁ କେନ୍ଦ୍ରକରି ଲୋକ ସଂଘର୍ଷ ଅପରିହାର୍ଯ୍ୟ । ଅନ୍ୟ ପକ୍ଷରେ ଚଳିତ ବର୍ଷ ବର୍ଷାର ଅଭାବ ଯୋଗୁଁ ଓଡ଼ିଶାର ଉପକୂଳ ଅଞ୍ଚଳରୁ ଆରମ୍ଭ କରି ପଶ୍ଚିମାଞ୍ଚଳ ଏପରିକି ଜଙ୍ଗଲ ପାହାଡ଼ ଥିବା ଅଞ୍ଚଳର ସହର ଓ ଗାଁ ମାନଙ୍କରେ ପାଣିର ଘୋର ଅଭାବ । ମହାନଦୀ ତଟରେ ଥିବା ସୋନପୁର, ବଉଦ ସହରର ଲୋକଙ୍କ ପାଇଁ ମଧ୍ୟ ପାଣି ନାହିଁ । ଫୁଲବାଣୀରେ ଜଳକଷ୍ଟ, ସିନାପାଲି, ରେଢ଼ାଖୋଲ, ମୁନିଗୁଡ଼ା, ବାଲିକୁଦା, ବଲାଙ୍ଗିର ଜିଲ୍ଲା, ବ୍ରହ୍ମପୁର ସହର ସମେତ ଗଂଜାମର ଗ୍ରାମାଞ୍ଚଳରେ

Digitized by srujanika@gmail.com

ପାଣିର ଉତ୍କଟ ସମସ୍ୟା ଅନୁଭବ କରିହେଉଛି । ବିରୂପା ନଦୀ ଶୁଖିଗଲାଣି, ବ୍ରାହ୍ମଣୀ ନଦୀ ପ୍ରଦୂଷିତ ହୋଇ ସାରିଲାଣି । ନାଗାବଳୀରେ ରାସାୟନିକ ବର୍ଜ୍ୟବସ୍ତୁ ଭାସୁଛି । ଏହାର ପ୍ରତିକାର ପାଇଁ ସରକାର ଚିନ୍ତିତ ନଥିଲାବେଳେ ଜଳକୁ କିପରି କଂପାନୀ ହାତରେ ଦେଇ ପଇସା ବାଲାଙ୍କ ପାଣି ଜଳର ଗ୍ୟାରେଣ୍ଟି କରାଇବେ ସେହି ଲକ୍ଷ୍ୟରେ ଯୋଜନା ଓ ନୀତି ତିଆରି ହେଉଛି ।

ଜଳର ଉପଲବ୍ଧି ଜଳଉତ୍ସର ସ୍ଥିତି ଉପରେ ନିର୍ଭରଶୀଳ । ପ୍ରକୃତିଦତ୍ତ ଜଳର ଉତ୍ସଗୁଡ଼ିକ ଅନେକ ସ୍ଥାନରେ ଶୁଖିଗଲାଣି । କାରଣ ଏହାର ମୂଳରେ ପରିବେଶଗତ ଅବକ୍ଷୟ ଯୋଗୁଁ । ବିଭିନ୍ନ ପ୍ରକାର ବିକାଶମୂଳକ ପ୍ରକଳ୍ପ ନାମରେ ଜଙ୍ଗଲ ଧ୍ୱଂସ, ଜଳ ସୃଷ୍ଟି କରୁଥିବା ବିଭିନ୍ନ ସଂବଳଗୁଡ଼ିକୁ ଖଣି ଖନନ ଜରିଆରେ ନଷ୍ଟ କରି ଦିଆଗଲାଣି । ୧୯୮୫ ବେଳକୁ ଦେଶର ମାତ୍ର ୭୫୦ ଗ୍ରାମରେ ଜଳର କୌଣସି ଉତ୍ସ ବା ସ୍ରୋତ ନଥିବାବେଳେ ବର୍ତ୍ତମାନ ୬୫ ହଜାର ଗ୍ରାମରେ ଏହି ଅଭାବ ଦେଖାଦେଇଛି ।

ଜଳପାଇଁ ଦେଶ ଦେଶ ମଧ୍ୟରେ ଯୁଦ୍ଧ ହେବା ସହ ବିଭିନ୍ନ ଅଞ୍ଚଳ ଅଞ୍ଚଳ ମଧ୍ୟରେ ଏପରିକି ସାଇବସ୍ତିରେ ଗୃହଯୁଦ୍ଧର ଆଶଙ୍କାକୁ ଏଡ଼ାଇ ଦେଇହେବନାହିଁ ।

ଜନଜାଗରଣ ଜରିଆରେ ଜଳର ସଂରକ୍ଷଣ ସହ ଜଳକୁ ସମସ୍ତଙ୍କ ଅଧିକାରଭୁକ୍ତ କରିବା ପାଇଁ ଘରୋଇକରଣରୁ ମୁକ୍ତ ରଖିବାକୁ ଅଭିଯାନ ଏକାନ୍ତ ଜରୁରୀ ।

## ଜଳର ବଜାରୀକରଣ

ଜଳହିଁ ଜୀବନ ଏବଂ ପ୍ରକୃତିର ଏହା ଏକ ମହାନ ଅବଦାନ । ଏହାର ମାଲିକ କେହି ହୋଇନପାରେ । ଜଳସଂପଦ ଉପରେ ବ୍ୟକ୍ତିଗତ ଭାବେ କିମ୍ବା କ୍ଷମତାଶୀଳ ଗୋଷ୍ଠୀ କିମ୍ବା କର୍ତ୍ତୃପକ୍ଷ କାହାରିବି ବ୍ୟକ୍ତିଗତ ଅଧିକାର ସାବ୍ୟସ୍ତ କରିବା ପ୍ରକୃତିବିରୋଧୀ ଏବଂ ପ୍ରକୃତ ନ୍ୟାୟର ପରିପନ୍ଥୀ । କେବଳ ସମାଜର ସାମୂହିକ ଅଧିକାରକୁ ହିଁ ସ୍ୱୀକାର କରିବାକୁ ହେବ ଯେଉଁଠି ବ୍ୟକ୍ତିଗତ ମାଲିକାନାତ୍ୱ ନାହିଁ କିମ୍ବା ଯାହାକୁ କିଣା ବିକା ବସ୍ତୁ ରୂପେ କେହି ହସ୍ତାନ୍ତର କରିପାରିବ ନାହିଁ । ଜଳ ଏକ ସାର୍ବଜନୀନ ଅତ୍ୟାବଶ୍ୟକ ଉପାଦାନ, କିନ୍ତୁ ଏହାକୁ ଏକ ଆର୍ଥିକ ଆବଶ୍ୟକତା ବୋଲି ସୀମିତ ଅର୍ଥରେ ନୂଆ ସଂଜ୍ଞା ନିରୂପଣ କରି ଏକ ଅଭାବ ବସ୍ତୁରୂପେ ବିବେଚନା କରିବାକୁ ବିଶ୍ୱବ୍ୟାଙ୍କ ଜରିଆରେ ନୂଆ ପରିଭାଷା ଆରମ୍ଭ ହୋଇଛି । ଏହାର ଦୂରଗାମୀ ଉଦ୍ଦେଶ୍ୟ ଓ ପରିଣାମ ଅତି ଭୟାନକ । ବେପାରୀର

Digitized by srujanika@gmail.com

ବ୍ୟାବସାୟିକ ବସ୍ତୁ ହୋଇ ବିଶ୍ୱ ପୁଞ୍ଜି ବଜାରରେ ଗରମ ପିଠା ରୂପେ ଜଳକୁ ଉପସ୍ଥାପିତ କରାଯିବ ଓ ସାଧାରଣ ଜନତା ଯାହା ହାତରେ ପୁଞ୍ଜି ଓ କ୍ରୟ ଶକ୍ତି ନାହିଁ ସେ ପିଇବାକୁ କିମ୍ବା ଚାଷ ପାଇଁ ଜଳକୁ କିଣିନପାରି ଜୀବନ ଓ ଜୀବିକାର ମୂଳଉସ୍ତ ପ୍ରକୃତିଦତ୍ତ ସଂପଦରୁ ନିଜର ଜନ୍ମଗତ ଅଧିକାର ହରାଇବ । ଯାହାକି ସମ୍ବିଧାନରେ ଥିବା ବଞ୍ଚିବାର ଅଧିକାର ଏକ ପ୍ରହସନରେ ପରିଣତ ହେବ ।

ବିଶ୍ୱୀକରଣ, ଉଦାରୀକରଣର ଅବଶ୍ୟମ୍ଭାବୀ ଦର୍ଶାଇ ବିଦ୍ୟୁତକୁ ଘରୋଇକରଣ କରିବା ପରେ ପରେ ଶିକ୍ଷା, ସ୍ୱାସ୍ଥ୍ୟ କ୍ଷେତ୍ରରେ ଘରୋଇକରଣ ଜରିଆରେ ରାଷ୍ଟ୍ରର ଜନମଙ୍ଗଳକାରୀ ଦାୟିତ୍ୱକୁ ପ୍ରତ୍ୟାହାର କରି ନିଆଚାଲିଛି । ବର୍ତ୍ତମାନ ଶିଳ୍ପ ସହ କୃଷିକୁ ମିଶାଇ ଦେଇ କର୍ପୋରେଟ ପରିଚାଳନା ଭିତ୍ତିରେ ସଂପୂର୍ଣ୍ଣଭାବେ ଚାଷକୁ ଚାଷୀଠାରୁ ଛଡ଼ାଇ ନେବା ପାଇଁ ଚକ୍ରାନ୍ତ ଆରମ୍ଭ ହୋଇଯାଇଛି । ଏସବୁର ସଫଳ କାର୍ଯ୍ୟକାରିତା ପାଇଁ ଜଳ ସଂପଦ ଉପରେ ସମାଜର ସାର୍ବଭୌମ ଅଧିକାରକୁ ଛଡ଼ାଇ ନେବା ପ୍ରକ୍ରିୟା ଆଉ ଏକ ପଦକ୍ଷେପ । ତାହା ଲୁଚା ଛପାରେ ନାହିଁ । ସେଥିପାଇଁ ବିଧିବିଧାନର ପୁନର୍ବିନ୍ୟାସ ଓ ନୂଆ ନୀତି ପ୍ରଣୟନ କରିବାକୁ ଭାରତ ସରକାର ୨୦୦୦ରେ ଜଳନୀତି ଘୋଷଣା କରିଛନ୍ତି । ୨୦୦୩ ଏପ୍ରିଲ ମାସରେ ଓଡ଼ିଶା ସରକାର ଅନୁରୂପ ଜଳନୀତି ଏକ ଚିଠା ଆକାରରେ ପ୍ରକାଶ କରିଛନ୍ତି ।

ଭାରତ ସରକାରଙ୍କ ଜଳନୀତିର ନକଲ ଓଡ଼ିଶା ଜଳନୀତିରେ ପ୍ରତିଫଳିତ ହୋଇଛି । ଓଡ଼ିଶାର ଜନସାଧାରଣଙ୍କ ଜଳର ଆବଶ୍ୟକତା ଓ ତାକୁ ହାସଲ କରିବା ପାଇଁ ସରକାରଙ୍କ ତତ୍ପରତା ଖୁବ୍ ଆକର୍ଷଣୀୟ ଭାବ ପ୍ରକାଶ କରି ଜଳନୀତି ଚିଠା ଲେଖାଯାଇଛି । ୨୦୫୦ ସାଲ ବେଳକୁ ଓଡ଼ିଶାର ୬ କୋଟି ଜନତାଙ୍କ ଜଳର ଆବଶ୍ୟକତାକୁ ସ୍ଥାନ ଦିଆଯାଇଛି । ୧୨ ପୃଷ୍ଠାର ଚିଠାର ମାତ୍ର ୨ଟି ପରିଚ୍ଛେଦରେ ଆବଶ୍ୟକତା, ଚିନ୍ତା, ଚେତନା, ଯୋଜନା ସବୁକିଛି ମହତ୍ ଲକ୍ଷ୍ୟଗୁଡ଼ିକର କାର୍ଯ୍ୟକାରିତା ପାଇଁ ଜଳକୁ ବଜାରୀକରଣ, ଘରୋଇକରଣ କରିବାର ବାଟ ଖୋଲିଦେବାକୁ ସ୍ପଷ୍ଟଭାବରେ କୁହାଯାଇଛି । ସମଗ୍ର ଜଳସଂପଦକୁ ଦେଶୀ-ବିଦେଶୀ କର୍ପୋରେଟ ଘରୋଇ କଂପାନୀମାନଙ୍କ ହାତରେ ପରିଚାଳନା, ମାଲିକାନାତ୍ୱ, ଜଳର ହସ୍ତାନ୍ତରୀକରଣ, ପୁନର୍ଗଠନ, ପୁଞ୍ଜି ବିନିଯୋଗ, ଜଳଯୋଗାଣ ଦାୟିତ୍ୱ ଦିଆଯିବାକୁ ଜଳନୀତି ଚିଠାର ପାରା ୧୬(୧)ରେ ବିନା ଦ୍ୱିଧାରେ କୁହାଯାଇଛି । ସେଥିରେ ଲେଖାଯାଇଛି, ସରକାର ଯେତେବେଳେ ଯେଉଁଠି ସମ୍ଭବପର ଓ ଆବଶ୍ୟକ ବୋଲି ଭାବିବେ ଏହି ନୀତି କାର୍ଯ୍ୟକାରୀ ହେବ । ଅର୍ଥାତ୍ ଯେତେବେଳେ ସରକାର ଚାହିଁବେ

Digitized by srujanika@gmail.com

ନିର୍ଦ୍ଦିଷ୍ଟ ଜଳଭଣ୍ଡାରର ପରିଚାଳନା ଓ ଆଧୁନିକୀକରଣ ସହ ଜଳଯୋଗାଣ କୌଣସି କଂପାନୀକୁ ଦେଇଦେବାପାଇଁ ନିଷ୍ପତ୍ତି ନେବେ । ପୁଣି ନୂଆ କରି ବିଭିନ୍ନ ପରିକଳ୍ପିତ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରିବାପାଇଁ ଜଳବେପାରୀଙ୍କୁ ଡାକି ଆଣିବେ । ସରକାରଙ୍କ ଏକମାତ୍ର ଯୁକ୍ତି-ପାଖରେ ପଇସା ନାହିଁ ଏବଂ ସରକାରୀ ପରିଚାଳନାରେ ଦୁର୍ନୀତି, ଅପାରଗତାର ଏକମାତ୍ର ବିକଳ୍ପ କଂପାନୀମାନଙ୍କ ମୁନାଫା ପାଇଁ ଦେଇ ଦିଆଯାଉ । ବିଭିନ୍ନ ନଦୀ, ନାଳ, ପୋଖରୀ ମଧ ଲିଜ ଆକାରରେ ଦେଇ ଦିଆଯିବ ଜଳର ସୁପରିଚାଳନା, ସଫଳ ଯୋଗାଣ ଓ ମିତବ୍ୟୟତା ନାମରେ । ସେଥିପାଇଁ ବିଦେଶୀ ପୁଞ୍ଜି ବିନିଯୋଗକୁ ସ୍ୱାଗତ କରାଯିବ ବିକାଶର ଭିତ୍ତିଭୂମି ନାମରେ ।

ଜଳନୀତି ଚିଠାର ୧୪(୧)ରେ କୁହାଯାଇଛି ଯେ ଏଣିକି ଜଳ ଆଉ ମାଗଣାରେ ମିଳିବ ନାହିଁ । ଏହା ସରକାରଙ୍କ ଆଉ ସେବା କ୍ଷେତ୍ର ହୋଇ ରହିବ ନାହିଁ । ଯେହେତୁ ଜଳର ମୂଳ ଧାର୍ଯ୍ୟ ହେବ ଯେଉଁଥିରେ ଜଳଯୋଗାଣ, ପରିଚାଳନା, ନିର୍ମାଣ ଓ ଭବିଷ୍ୟତ ମରାମତିକାମ ପାଇଁ ହୋଇଥିବା ବ୍ୟୟ ହିସାବକୁ ନିଆଯିବା ସହ କର୍ପୋରେଟ ପରିଚାଳନାର ପ୍ରଥମ ଲକ୍ଷ୍ୟ ମୁନାଫା ସାମିଲ ହେବ । ଜଳସେବାର ମାନ ଅନୁଯାୟୀ ମଧ ଭିନ୍ନ ଭିନ୍ନ ମୂଲ୍ୟ ନିର୍ଦ୍ଧାରଣ ହେବ । ଅର୍ଥାତ ସ୍ୱଚ୍ଛ ପାଣି ପାଇଁ ଅଧିକ ମୂଲ୍ୟ, ଟେପ୍ ପାଣି ପାଇଁ ଅଲଗା ଯିଏ ବି ନିଜେ ବିଭିନ୍ନ ଜଳାଶୟରୁ ନେବ ତାର ମୂଲ୍ୟ ଅଲଗା ହେବ । କାରଣ ଜଳର ସ୍ରୋତ ଓ ଉତ୍ସଗୁଡ଼ିକ ମଧ ସମୟାନୁକ୍ରମେ କଂପାନୀମାନଙ୍କ କର୍ତ୍ତୃତ୍ୱ ଭିତରକୁ ଚାଲିଯିବ । ଛତିଶଗଡ଼ ରାଜ୍ୟର ସିଓନାଥ ନଦୀର ୨୩ କିଲୋମିଟର ଦୈର୍ଘ୍ୟ ଜଳଧାରାକୁ ୱାଟର ରେଡ଼ିଏସ କଂପାନୀକୁ ୨୨ ବର୍ଷ ପାଇଁ ମାତ୍ର ୫ ଲକ୍ଷ ଟଙ୍କା ରାଜସ୍ୱ ପାଇଁ ଲିଜ ଦିଆଯାଇଛି । ଆଜିର ଦିନରେ ନଦୀର ସେହି ନିର୍ଦ୍ଦିଷ୍ଟ ପରିସୀମା ଓ ତାର ଦୁଇ ତଟର ଦୁଇ କିଲୋମିଟର ଭିତରେ ଚାଷୀ ମଧ ନିଜର ଉଠା ଜଳସେଚନ୍ ପମ୍ପ ବ୍ୟବହାର କରିପାରୁନାହିଁ । ଯଦି କରିବ କଂପାନୀକୁ ପାଣିର ଦାମ ଦେବ । ମତ୍ସ୍ୟଜୀବୀ ମାଛ ମାରିବା ଅଧିକାରରୁ ବଞ୍ଚିତ ଏବଂ ନଦୀର ତଳମୁଣ୍ଡରେ ଥିବା ଜନତା ପାଣିରୁ ବଞ୍ଚିତ ହେବ । କାରଣ କଂପାନୀ ପାଣିକୁ ଅଟକାଇ ରଖିପାରୁଛି । ଓଡ଼ିଶାରେ ପ୍ରଥମେ ସହରାଞ୍ଚଳର ପାଣି ଯୋଗାଉଥିବା ଜନ ସ୍ୱାସ୍ଥ୍ୟ ବିଭାଗକୁ ଭାଙ୍ଗି ଦିଆଯାଇ ବିଭିନ୍ନ କଂପାନୀମାନଙ୍କୁ ଦାୟିତ୍ୱ ଦିଆଯିବ ବିଦ୍ୟୁତର ଘରୋଇକରଣ ବ୍ୟବସ୍ଥାକୁ ଅନୁକରଣ କରି । ବିଦ୍ୟୁତ ଅପେକ୍ଷା ଜଳ ଅଧିକ ମୁନାଫା ଦେବ । ଏଥିପାଇଁ କଂପାନୀମାନେ ଜଗି ବସିଛନ୍ତି ଓଡ଼ିଶାକୁ ଆସିବା ପାଇଁ । ମୁଖ୍ୟମନ୍ତ୍ରୀଙ୍କ

Digitized by srujanika@gmail.com

ଫ୍ରାନସ ୱାଟର ଏଜେନ୍‌ସିର କର୍ମକର୍ତ୍ତାମାନେ ଆସି ଆଲୋଚନା କରିଯାଇଛନ୍ତି । ଋଷିକୁଲ୍ୟା ନଦୀ ଅବବାହିକାର ପରିଚାଳନା ପ୍ରଥମେ ଫ୍ରାନସର ଭିଭିଣ୍ଡି କଂପାନୀକୁ ଦିଆଯିବାର ସୂଚନା ମିଳୁଛି ।

ଦିଲ୍ଲୀରେ ଗଙ୍ଗାଜଳକୁ ତେହେରି ଡ୍ୟାମରୁ ଆଣି ଦିଲ୍ଲୀର ସୋନିଆ ବିହାରକୁ ଯୋଗାଇବା ପାଇଁ ଫ୍ରାନସର ସୁଏଜ କଂପାନୀକୁ ଦିଆଯାଇଛି । ସେ ଏକ ଲିଟର ପିଛା ପାଣିର ଦାମ ଧାର୍ଯ୍ୟ କରିସାରିଲାଣି । ଏହା କଂପାନୀକୁ ୧୦ ବର୍ଷର ଗ୍ୟାରେଣ୍ଟି ଦିଆଯାଇଛି ମାତ୍ର ୨୦୦ କୋଟି ଟଙ୍କା ବିନିଯୋଗ କରି ଆମ ଦେଶର ୧୦୫୮୨ କୋଟି ଟଙ୍କା ଖର୍ଚ୍ଚ ହୋଇଥିବା ତେହେରି ଡ୍ୟାମ । ୧୪୭୪୫ କୋଟି ଟଙ୍କା ଖର୍ଚ୍ଚ ହୋଇଥିବା ଅପର ଗଙ୍ଗା କେନାଲ ଓ ୧୧୧ କୋଟି ଟଙ୍କାର ପାଇପ ଲାଇନର ଫାଇଦା ନେବ । ଏହି ୧୦ ବର୍ଷ ମଧ୍ୟରେ ଚାଷୀ ୭୦,୪୨୫ କୋଟି ଟଙ୍କାର କ୍ଷତି ସହିବ, କିନ୍ତୁ ପାଣିରୁ ଲାଭ ପାଇବ କଂପାନୀ । ଏହି ପାଣି ଯୋଗାଣବେଳେ ଅପର ଗଙ୍ଗା କେନାଲରୁ ଚୋକ ହୋଇଯିବ ଓ ଚାଷୀ ପାଇଁ ପାଣି ଯୋଗାଣ ବ୍ୟାହତ ହେବ ।

ଓଡ଼ିଶାରେ ଏପରି ଅନେକ ଘଟଣାର ପୁନରାବୃତ୍ତି ହେବ । ଜଳନୀତି ଚିଠାର ପାରା ୬(୧) ଶେଷ ପରିଚ୍ଛେଦରେ ଲେଖାଯାଇଛି ଯେ, ଜଳଯୋଗାଣର ପ୍ରାଥମିକତା ପିଇବା ପାଣି, ପରେ କୃଷି ଥିଲେ ମଧ୍ୟ ଆବଶ୍ୟକ ସ୍ଥଳେ ପିଇବା ପାଣି ବ୍ୟତୀତ କୃଷି ଓ ଅନ୍ୟାନ୍ୟ କୃଷିଭିତ୍ତିକ ବିକାଶ ପରି କ୍ଷେତ୍ରପାଇଁ ଥିବା ଜଳଯୋଗାଣ ପ୍ରାଥମିକତାକୁ ବାତିଲ୍ କରି ଦିଆଯାଇପାରିବ ଏବଂ ତାହା କଂପାନୀମାନଙ୍କ କିମ୍ବା ବ୍ୟାବସାୟିକ କ୍ଷେତ୍ରପାଇଁ ଜଳଯୋଗାଇ ଦିଆଯିବ । ଚିଠାର ଏସବୁ ଭିତ୍ତିକୁ କାର୍ଯ୍ୟକାରୀ କରିବା ପାଇଁ ଜଳସଂପଦର ପରିଚାଳନାଗତ ବିକେନ୍ଦ୍ରୀକରଣ ନାମରେ ଅର୍ଥାତ ବିଭିନ୍ନ ଆଞ୍ଚଳିକ ଜଳକ୍ଷେତ୍ର କରିବାକୁ ସରକାର ପଦକ୍ଷେପ ନେଉଛନ୍ତି ଏବଂ ପ୍ରତ୍ୟେକ ଜୋନକୁ ନିଶ୍ଚିତଭାବେ ଘରୋଇ କଂପାନୀମାନଙ୍କୁ ନିମନ୍ତ୍ରଣ କରିବା ଯୋଜନା ରହିଛି, କିନ୍ତୁ ସାଧାରଣ ଜନତାଙ୍କ ବିରୋଧରେ ଏହା ଏକ ଚକ୍ରାନ୍ତ ।

କେନ୍ଦ୍ର ସରକାର ଓ ଓଡ଼ିଶା ସରକାରଙ୍କ ଜଳନୀତି ଚିଠାରେ ଥିବା ଅଧିକାଂଶ ବାକ୍ୟ ଓ ନୀତିଗତ ଘୋଷଣା ୧୯୯୮ର ପ୍ରକାଶିତ ବିଶ୍ୱ ବ୍ୟାଙ୍କ ଦ୍ୱାରା ଭାରତ ପାଇଁ ଜଳନୀତି ବହିରେ ଅନୁରୂପ ଭାଷା ଦେଖିବାକୁ ମିଳୁଛି । ଏଥିରୁ ପ୍ରମାଣିତ ହେଉଛି, ବିଶ୍ୱବ୍ୟାଙ୍କର ନିର୍ଦ୍ଦେଶରେ ସରକାରଙ୍କ ଜଳନୀତି ତିଆରି ହୋଇଛି । ବିଶେଷ କରି ଓଡ଼ିଶାରେ ବିଶ୍ୱବ୍ୟାଙ୍କର ସହଯୋଗୀ ଲଣ୍ଡନରୁ ଆସିଥିବା DFID ଚିଠା ଲେଖିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ୧୯୯୪ରେ ଓଡ଼ିଶା

Digitized by srujanika@gmail.com

ସରକାରଙ୍କ ଜଳନୀତିକୁ ଦେଖିଲେ ବର୍ତ୍ତମାନର ଜଳନୀତି ସଂପୂର୍ଣ୍ଣ ଓଲଟା ହୋଇଯାଇଛି । ସେଥିରେ କୃଷିକୁ ଗୁରୁତ୍ୱ ଦିଆଯାଇଥିବାବେଳେ ବର୍ତ୍ତମାନ ଶିଳ୍ପ ଓ ସହରାଞ୍ଚଳ ତଥା ଜଳର ବ୍ୟବସାୟୀକରଣକୁ ପ୍ରାଧାନ୍ୟ ଦିଆଯାଇଛି । ବିଗତ ଚିଠାରେ ଘରୋଇ ପୁଞ୍ଜିର ଆଭାସ ନଥିବାବେଳେ ବର୍ତ୍ତମାନ ଘରୋଇପୁଞ୍ଜିକୁ କେନ୍ଦ୍ରକରି ଜଳର ବଜାରୀକରଣ ସାଙ୍ଗକୁ ମଜାମଜଲିସ୍‌ର ସନ୍ତରଣ ପ୍ରକଳ୍ପ ପାଇଁ ପୁଞ୍ଜି ବିନିଯୋଗକୁ ଅଗ୍ରାଧିକାର ଦେବାକୁ ଚିନ୍ତା କରିଛନ୍ତି । ତାହା ସହିତ ବର୍ତ୍ତମାନ ଥିବା ଜଳସଂପଦ ବିଭାଗର ବିଭିନ୍ନ ଅନୁଷ୍ଠାନକୁ ଭାଙ୍ଗି ଦେବାର ମସୁଧା ମଧ୍ୟ ହୋଇଛି । ଏ ଦିଗରେ ରାଜ୍ୟ ସରକାର ଦୁଇବର୍ଷ ତଳୁ କାର୍ଯ୍ୟ ଆରମ୍ଭ କରିସାରିଲେଣି । ଯଥା ପାଣି ପଞ୍ଚାୟତ ଜରିଆରେ ଚାଷୀଙ୍କ ଉପରକୁ ଦାୟିତ୍ୱ ଠେଲି ଦେବା ଏବଂ ତାହା ବିଫଳ ହେଲେ ଜଳର ପରିଚାଳନା ଘରୋଇ କଂପାନୀକୁ ହସ୍ତାନ୍ତର କରିବା ଉଦ୍ଦେଶ୍ୟରେ ପାଣି ପଞ୍ଚାୟତ ଆଇନ ତିଆରି ହୋଇଛି । ଉଠା ଜଳସେଚନ ନିଗମକୁ ଭାଙ୍ଗିଦେବାକୁ ପଦକ୍ଷେପ ଆରମ୍ଭ ହୋଇଛି । ୭ଟି କ୍ଷୁଦ୍ର ଜଳବିଦ୍ୟୁତ୍ ପ୍ରକଳ୍ପକୁ ଘରୋଇକରଣ କରିବାକୁ ନିଷ୍ପତ୍ତି ହୋଇଛି । ଏହା ଯଦି ହୋଇଯାଏ ଉକ୍ତ ଜଳଭଣ୍ଡାରଗୁଡ଼ିକ ଉପରେ ଘରୋଇକଂପାନୀମାନଙ୍କ ନିୟନ୍ତ୍ରଣ ରହିବ, ଚାଷ ଓ ପିଇବା ପାଣି ପାଇଁ ଜଳ ଉପଲବ୍ଧି ହେବ ନାହିଁ । ଯଦି ହେବ, କଂପାନୀମାନଙ୍କୁ କ୍ଷତିପୂରଣ ଦେବାକୁ ହେବ । ଗତ ୩ ବର୍ଷ ଭିତରେ ଜଳକର ଦୁଇଥର ଚାରିଗୁଣକୁ ବୃଦ୍ଧି ପାଇଛି । ବର୍ତ୍ତମାନ ଯେଉଁଠି ଜଙ୍ଗଲ ସହ ଜଳ ସଂପଦ ରହିଛି, ସେହି ଅଞ୍ଚଳରେ ଖଣି ଖନନ ନାମରେ ଥିବା ଜଳସ୍ରୋତକୁ କଂପାନୀମାନଙ୍କ ବ୍ୟବହାର ପାଇଁ ବିନା ବିଚାରରେ ସରକାର ଛାଡ଼ି ଦେଇଛନ୍ତି । କ୍ରମଶଃ ସ୍ଥାନୀୟ ଲୋକେ ପିଇବା ଓ ଚାଷ ପାଣିରୁ ବଂଚିତ ହେବାକୁ ଯାଉଛନ୍ତି । ୧୯୯୫ରେ ଇସ୍ପାତ କାରଖାନା ନାମରେ ଟାଟା କଂପାନୀକୁ ଋଷିକୁଲ୍ୟା ଜଳକୁ ନେବାପାଇଁ ପିପଲପଙ୍କା ଜଳଭଣ୍ଡାର ନିର୍ମାଣ ପାଇଁ ଦିଆଯାଇଥିଲା । ଏହା ହୋଇଥିଲେ ଗଞ୍ଜାମ ଜିଲ୍ଲାର ଅର୍ଦ୍ଧେକ ଲୋକ ନଦୀରୁ ଟୋପେ ପାଣି ପାଇନଥାନ୍ତେ । ଟାଟା ବିରୋଧୀ ଜନ ଆନ୍ଦୋଳନ ଏହାକୁ ବଂଚାଇ ଦେଲା । ଜଳ ଜଙ୍ଗଲ ଓ ଖଣି ସଂପଦ ଆଦିବାସୀ ଅଞ୍ଚଳରେ ବିଶେଷ ଭାବେ ଅଛି ବୋଲି ସୁପ୍ରିମକୋର୍ଟ ରାୟକୁ ଓଡ଼ିଶା ସରକାର ମାନିବେ ନାହିଁ ବୋଲି କହିବା ମୂଳରେ ଉକ୍ତ ସଂବଳଗୁଡ଼ିକୁ ଘରୋଇକରଣ କରିବାପାଇଁ ଉଦ୍ଦିଷ୍ଟ । ଏହି ନିଷ୍ପତ୍ତି ସଂବିଧାନ ବିରୋଧୀ ।

ଓଡ଼ିଶାର ଦରିଦ୍ର ଜନତାଙ୍କ ପାଇଁ ଜଳ ଏକ ଅମୂଲ୍ୟ ସଂପଦ । ଜଳ ସଂପଦରୁ ପାରମ୍ପରିକ ଜୀବିକା ସହ ବିଭିନ୍ନ କୃଷି ଓ ଜଙ୍ଗଲଭିତ୍ତିକ ଜୀବିକା ମିଳୁଛି ।

Digitized by srujanika@gmail.com

କ୍ରମଶଃ ଜଳର ଉତ୍ସକୁ ହତ୍ୟା କରାଗଲାଣି ବିନାଶମୂଳକ ବିକାଶ ନାମରେ । ନଦୀଜଳକୁ ପ୍ରଦୂଷିତ କରିଦିଆଗଲାଣି କଂପାନୀମାନଙ୍କ ଠାରୁ ନିର୍ଗତ ବିଷାକ୍ତ ବର୍ଜ୍ୟବସ୍ତୁ ଦ୍ୱାରା । ଏପରି ସଙ୍କଟ ସୃଷ୍ଟି କରି ଜଳର ଅଭାବ ସୃଷ୍ଟି କରାଯାଉଛି । ଅନ୍ୟପଟେ ଜଳର ଅଭାବକୁ କେନ୍ଦ୍ରକରି ଜଳକୁ ବଜାରୀକରଣ କରିବା ପାଇଁ ଏବଂ ରାଷ୍ଟ୍ର ନିଜ ଦାୟିତ୍ୱରୁ ଓହରିଯାଇ ପ୍ରକୃତିଗତ ସମ୍ପଳକୁ ବେପାରୀଙ୍କ ହାତରେ ଟେକି ଦେଲାପରେ ଲୋକେ କୁଆଡ଼କୁ ଯିବେ ? ଏହି ନୀତିର ପରିଣାମ ପାଣିକୁ ବିକାଯିବ ଓ ତାକୁ କିଣିବାକୁ ଆମର ସାମର୍ଥ୍ୟ ରହିବ ତ ? ଜଳ ବଜାରୀ ବସ୍ତୁ ହୋଇଗଲା ପରେ ବଂଚିବାକୁ ରାସ୍ତା ମିଳିବ ତ ? ବିକଳ୍ପ ସରକାର ଜଳ ନ ଯୋଗାନ୍ତୁ ପଛେ ଜଳକୁ ବେପାରୀଙ୍କ ହାତରେ ଦେଇ ଦେବାପରି ପାପ କାର୍ଯ୍ୟ ନକରନ୍ତୁ । ଏହା ହିଁ ବିକଳ୍ପ । ଜଳର ବଜାରୀକରଣ ବିରୋଧ ଅଭିଯାନରେ ସାମିଲ ହେବା ଏକାନ୍ତ ପ୍ରୟୋଜନ ।



Digitized by srujanika@gmail.com

# ଜାତୀୟ ନଦୀ ସଂଯୋଗ ଯୋଜନା
# ଏକ ମରୀଚିକା

୩୧ ଅକ୍ଟୋବର ୨୦୦୨ରେ ସୁପ୍ରିମକୋର୍ଟଙ୍କ ଏକ ମଧ୍ୟବର୍ତ୍ତୀ ନିର୍ଦ୍ଦେଶରେ କେନ୍ଦ୍ର ସରକାରଙ୍କୁ କୁହାଯାଇଛି ଯେ ଉତ୍ତର ଭାରତ ଓ ଦକ୍ଷିଣ ଭାରତର ନଦୀସମୂହ ଗୁଡ଼ିକର ସଂଯୋଗ କରି ମରୁଡ଼ି ଓ ବନ୍ୟାର ପ୍ରତିକାର କରାଯାଉ । ତାହାମଧ୍ୟ ଆସନ୍ତା ୧୦ବର୍ଷ ମଧ୍ୟରେ ନଦୀ ସଂଯୋଗ ଯୋଜନାକୁ ସଂପୂର୍ଣ୍ଣ କାର୍ଯ୍ୟକାରୀ କରାଯିବାକୁ କୁହାଯାଇଛି, କିନ୍ତୁ ଭାରତ ସରକାରଙ୍କର ଜଳସଂପଦ ମନ୍ତ୍ରଣାଳୟ ସତ୍ୟପାଠରେ ଉଚ୍ଚତମ ନ୍ୟାୟାଳୟକୁ କହିଲେ ଯେ ଏପରି ଏକ ଯୋଜନା ବନ୍ୟା ଓ ମରୁଡ଼ିର ପ୍ରତିକାର ପାଇଁ ସଂପୂର୍ଣ୍ଣ କାର୍ଯ୍ୟକାରୀ କରିବାକୁ ହେଲେ ୨୦୪୩ ପର୍ଯ୍ୟନ୍ତ ସମୟ ଲାଗିବ । ଏହାପରେ ପରେ ପ୍ରଧାନମନ୍ତ୍ରୀ ଏପରି ଏକ ପରିକଳ୍ପନାକୁ ସତ୍ୟରେ ପରିଣତ କରିବା ପାଇଁ ଯୋଜନା ଆରମ୍ଭ କରିଦେବାକୁ ପ୍ରସ୍ତୁତ ହେଲାପରି ବକ୍ତବ୍ୟ ରଖି ସାରିଲେଣି । ପଛରେ ପଡ଼ିଯିବା ଭୟରେ ବିରୋଧୀଦଳର ନେତ୍ରୀ ସୋନିଆ ଗାନ୍ଧି ମଧ୍ୟ ସରକାରଙ୍କୁ ସମର୍ଥନ ଦେଇ ସାରିଲେଣି । ରାଷ୍ଟ୍ରପତି ଡକ୍ଟର କାଲାମ ମଧ୍ୟ ଏପରି ଏକ ନଦୀ ସଂଯୋଗର ସଫଳତାରେ ଦେଶର ପ୍ରଗତିର ମହୁଫେଣାର ସ୍ୱପ୍ନ ଦେଖିସାରିଲେଣି । ବର୍ତ୍ତମାନ ଯେଉଁଠି ପାଣିର ଅଭାବ ସେହି ଅଞ୍ଚଳରୁ ଜନତା ଅତି ଆଶାୟୀ ଭାବେ ଭାବିଲେଣି ଯେ ବୋଧହୁଏ ଏପରି ଏକ ପରିକଳ୍ପନା ପ୍ରତ୍ୟେକ ଗାଁ ଓ ଘରକୁ ଜଳ ଯୋଗାଇ ଦେଇପାରିବ, କିନ୍ତୁ ଏହି ପରିକଳ୍ପନାରୁ ଯୋଜନା ପାଇଁ ପ୍ରସ୍ତୁତକାରୀ କର୍ତ୍ତୃପକ୍ଷ ଖୋଦ୍ କେନ୍ଦ୍ର ସରକାର ଏପରି ଏକ ଯୋଜନାର ରୂପରେଖକୁ ଲୋକଙ୍କ ପାଖରେ ସ୍ପଷ୍ଟ ଭାବରେ ରଖିବା ଦରକାର । ଯୋଜନାଟି କ'ଣ, କିପରି କାର୍ଯ୍ୟକାରୀ ହେବ, କାହାପାଇଁ କେତିକି ପରିମାଣରେ ସଫଳ ଦେଇ ହେବ ଏବଂ ଏହାର ନିର୍ମାଣ ଖର୍ଚ୍ଚ ସହ ପୁଣି ପରିଚାଳନା ପାଇଁ ଆବଶ୍ୟକ ଆର୍ଥିକ ବ୍ୟବସ୍ଥା ଓ ସର୍ବୋପରି ପ୍ରକଳ୍ପର ଆଜିର ହିସାବରେ ଭବିଷ୍ୟତର ଫଳାଫଳ ଅନ୍ତର୍ଭୁକ୍ତ ହୋଇଛି କି ନାହିଁ ଏସବୁକୁ ସ୍ପଷ୍ଟଭାବେ ଅଧ୍ୟୟନ ପରେ ଯୋଜନା କରି ଉପସ୍ଥାପନ କରାଗଲାପରେ ଦେଶରେ ଆଞ୍ଚଳିକ ସ୍ତରରୁ ଜାତୀୟ ସ୍ତର ପର୍ଯ୍ୟନ୍ତ ଆଲୋଚନାର ଆବଶ୍ୟକତା ରହିଛି । ତାହା ନକଲେ ଲୋକଙ୍କ ମତାମତକୁ ଉପେକ୍ଷା କରି ଏକ ସୁନ୍ଦର ସ୍ୱପ୍ନକୁ ଠିଆ କରିଦେବାପରେ ତାହାର ଅସ୍ତିତ୍ୱ ସବୁବେଳେ ପ୍ରଶ୍ନବାଚୀ ହୋଇ ରହିଯିବ । ତେଣୁ ବାସ୍ତବତା ପ୍ରତି ଅନୁଧ୍ୟାନ ଅତ୍ୟନ୍ତ ଜରୁରୀ ।

Digitized by srujanika@gmail.com

ପ୍ରଥମେ ୧୯୭୨ରେ ପ୍ରଖ୍ୟାତ ବିଶେଷଜ୍ଞ ତଥା ପୂର୍ବତନ କେନ୍ଦ୍ରୀୟ ଜଳମନ୍ତ୍ରୀ କେ.ଏଲ୍. ରାଓଙ୍କ ପ୍ରସ୍ତାବକୁ କେନ୍ଦ୍ରକରି ଉତ୍ତର ଓ ଦକ୍ଷିଣ ଭାରତର ନଦୀଗୁଡ଼ିକର ସଂଯୋଗ ପାଇଁ ଏକ ସମ୍ଭାବ୍ୟ ଯୋଜନା ତିଆରି କରାଗଲା ଯେଉଁ ରାଜ୍ୟମାନଙ୍କ ପାଣିକୁ ଅନ୍ୟତ୍ର ନିଆଯିବ ସେହି ରାଜ୍ୟବାସୀ ଏହାକୁ ବିରୋଧ କଲେ । ପୁଣି ୧୯୭୭ ଭାଇ ମୋରାରଜୀ ସରକାର ବେଳେ ପାଇଲଟ ଡି.ଜେ. ଦସ୍ତୁରଙ୍କ ନେତୃତ୍ୱରେ ଏକ ବିଶେଷଜ୍ଞ କମିଟି ଫୁଲମାଳ କେନାଲ (Garland Canal) ନାମରେ ଏକ ନଦୀ ସଂଯୋଗ ଯୋଜନା ଉପସ୍ଥାପନ କଲେ । ପ୍ରଥମଟି ହିମାଳୟର ଦକ୍ଷିଣାଭିମୁଖୀ ନଦୀ ସ୍ରୋତଗୁଡ଼ିକୁ ଯୋଡ଼ିବା ଏବଂ ଏଥିରେ ୯୦ଟି ହ୍ରଦର ଜଳକୁ ଉପଯୋଗ କରିବା ପରିକଳ୍ପନା ଥିଲା । ଦ୍ୱିତୀୟଟି କେନ୍ଦ୍ରୀୟ ଓ ଦାକ୍ଷିଣାତ୍ୟ ଗାର୍ଲ ଲେଣ୍ଡ କେନାଲ ସହ ୨୦୦ଟି ସମନ୍ୱିତ ଜଳଭଣ୍ଡାରର ସଂଯୋଗ ସ୍ଥାପନ । ସେତେବେଳେ ଏହି ପ୍ରକଳ୍ପଟିର ବ୍ୟୟ ଅଟକଳ ହୋଇଥିଲା ୨୪୦୯୫ କୋଟି ଟଙ୍କା । ଏହି ଦସ୍ତୁର ପରିଯୋଜନାକୁ ଦୁଇଟି ବିଶେଷଜ୍ଞ କମିଟି ଦ୍ୱାରା ପରୀକ୍ଷା କରାଗଲାପରେ ପ୍ରତ୍ୟାଖ୍ୟାନ କରାଗଲା । କାରଣ, ବୈଷୟିକ କୁଶଳତା ଦୃଷ୍ଟିରୁ ଦୋଷଯୁକ୍ତ ଏବଂ ଆର୍ଥିକ ଦୃଷ୍ଟିରୁ ଅସମ୍ଭବ ଥିଲା ।

ବର୍ତ୍ତମାନ କେନ୍ଦ୍ର ସରକାରଙ୍କ ନୂଆ ଯୋଜନା ପରିକଳ୍ପନାରେ (୧୯୮୦ର ପ୍ରସ୍ତାବିତ ଯୋଜନାକୁ ସଂଶୋଧିତ କରି) ପ୍ରସ୍ତାବ ଅଛି ଯେ ଭାରତ, ନେପାଳ, ଭୁଟାନରେ ପ୍ରବାହିତ ଗଙ୍ଗା ଓ ବ୍ରହ୍ମପୁତ୍ରର ମୁଖ୍ୟ ଉପନଦୀମାନଙ୍କରେ ଜଳ ଭଣ୍ଡାର ନିର୍ମାଣ ସହ ଆନ୍ତଃ କେନାଲ ସଂଯୋଗ ଦ୍ୱାରା ଗଙ୍ଗାର ପୂର୍ବାଞ୍ଚଳ ଉପନଦୀମାନଙ୍କର ବଳକା ପାଣିକୁ ପଶ୍ଚିମକୁ ସ୍ଥାନାନ୍ତରିତ କରାଯିବ । ବ୍ରହ୍ମପୁତ୍ର ଓ ଏହାର ଉପନଦୀମାନଙ୍କୁ ଗଙ୍ଗାନଦୀ ସହ ସଂଯୋଗ ଏବଂ ଗଙ୍ଗାକୁ ମହାନଦୀ ସହ ସଂଯୋଗ କରିବା ଯୋଜନା ଏଥିରେ ଅନ୍ତର୍ଭୁକ୍ତ । ଏହି ପରିକଳ୍ପନାକୁ ହିମାଳୟ ନଦୀ ବିକାଶ ବୋଲି କୁହାଯାଉଛି । ଆଉ ଏକ ଉପକୂଳ ନଦୀ ବିକାଶ ପରିକଳ୍ପନା ଅନୁଯାୟୀ ମହାନଦୀ-ଗୋଦାବରୀ-କ୍ରିଷ୍ଣା-କାବେରୀ ନଦୀ ସଂଯୋଗ ଓ ଏହି ନଦୀ ଅବବାହିକାମାନଙ୍କରେ ବହୁ ଜଳଭଣ୍ଡାର ନିର୍ମାଣ ସହ ବମ୍ବେର ଉତ୍ତର ଓ ତାପ୍ତିର ଦକ୍ଷିଣରୁ ବହୁଥିବା ପଶ୍ଚିମାଭିମୁଖୀ ନଦୀମାନଙ୍କୁ ଯୋଡ଼ିବା, କେନ-ଚମ୍ବଲ ନଦୀ ସଂଯୋଗ ଏବଂ ଅନ୍ୟ ପଶ୍ଚିମାଭିମୁଖୀ ନଦୀମାନଙ୍କ ଜଳକୁ ପୂର୍ବଆଡ଼କୁ ଗତି ବଦଳାଇବା ଯୋଜନା ଅନ୍ତର୍ଭୁକ୍ତ । ଉକ୍ତ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ବ୍ୟୟ ଅଟକଳ ହୋଇଛି ୫,୬୦,୦୦୦ କୋଟି ଟଙ୍କା । ଜାତୀୟ ଜଳ ବିକାଶ କର୍ତ୍ତୃତ୍ୱ (National Water Development Agency) ହିମାଳୟ କ୍ଷେତ୍ରରେ ୧୪ଟି ଓ ଉପକୂଳ ଅଞ୍ଚଳରେ ୧୬ଟି ସଂଯୋଗ ଚିହ୍ନଟ କରିଛି ଏସବୁର ସମ୍ଭାବ୍ୟ ଅନୁଧ୍ୟାନ ପାଇଁ ।

Digitized by srujanika@gmail.com

ଅତୀତର ଓ ବର୍ତ୍ତମାନର ଯୋଜନାର ପରିକଳ୍ପନା ଅନୁଯାୟୀ ଉତ୍ତର ଭାରତରୁ ଦକ୍ଷିଣ ଭାରତକୁ ବଳକା ପାଣି ନେଇ ମରୁଡ଼ିର ପ୍ରତିକାର କରିବା ସହ ପାଣିର ଚାହିଦା ପୂରଣ ପରି ମହତ୍ ଉଦ୍ଦେଶ୍ୟ ସାଧିତ ହୋଇପାରିଲେ ତାଠାରୁ ଜାତୀୟ ସଫଳତା ଆଉ କିଛି ହୋଇନପାରେ । କିନ୍ତୁ ଏପରି ସ୍ୱପ୍ନ ଦେଖି ଯୋଜନା ଆରମ୍ଭ କରିଦେଇ ଦୁଇପାଦ ଆଗକୁ ଯାଇ ପୁଣି ବାଉଳା ହେବାକୁ ପଡ଼େ, ତାହାହେଲେ ଶହେପାଦ ପଛକୁ ଫେରିବାଠାରୁ ଅଧିକ ଦୟନୀୟ ପରିସ୍ଥିତି ସୃଷ୍ଟିହେବ । ତେଣୁ ବାସ୍ତବତାକୁ ହିଁ ଗୁରୁତ୍ୱ ଦେବାକୁ ହେବ । ନଚେତ ମରୀଚିକା ପଛରେ ଧାଇଁବା ସାର ହେବ।

ଉକ୍ତ ଜାତୀୟ ନଦୀ ସଂଯୋଗ ଯୋଜନା ଅଧିକାର କରାଗଲେ ପ୍ରଥମେ ଯେଉଁ ବାଧାଗୁଡ଼ିକୁ ସମ୍ମୁଖୀନ ହେବାକୁ ପଡ଼ିବ, ସେଗୁଡ଼ିକ ହେଲା – ବର୍ତ୍ତମାନର ଅଟକଳ ୧୮୩୦୦୦ କୋଟିରୁ ୫ ଲକ୍ଷ ୬୦ ହଜାର କୋଟି ଟଙ୍କା ହେବ । ପୁଣି ନିର୍ମାଣ ଅବଧି ଭିତରେ ବ୍ୟୟ ଅଟକଳର ବୃଦ୍ଧି ଅପରିହାର୍ଯ୍ୟ । ଉକ୍ତ ବ୍ୟୟ ଆସିବ କେଉଁଠୁ ? ଯଦି ଆସିବ ଋଣ ଆକାରରେ ସେ ସବୁର ଆୟ କେତିକି ହେବ ? ପୁଣି ଯେଉଁମାନେ ଋଣ ଦେବେ ସେମାନଙ୍କ ସର୍ତ୍ତ ଚାଷକୁ କଂପାନୀମାନଙ୍କ ହାତକୁ ଦେବାପାଇଁ ବ୍ୟବସ୍ଥା କରାଯିବ ନାହିଁ ତ ? ଚାଷୀଙ୍କୁ ପାଣି ବିକାଯିବ ନାହିଁ ତ ? ନା, କେବଳ ଶିଳ୍ପକୁ ଆଖି ଆଗରେ ରଖି ପୁଣି ଅର୍ଥ ସମସ୍ୟା ଆଳ ଦେଖାଇ ଘରୋଇ କଂପାନୀମାନଙ୍କ ଜରିଆରେ ନଦୀ ସଂଯୋଗ ଯୋଜନା କାର୍ଯ୍ୟକାରୀ ପରେ ପରିଚାଳନା ଦାୟିତ୍ୱ ବିଦେଶୀ କଂପାନୀମାନଙ୍କୁ ଦିଆଯିବ ନାହିଁ ତ ?

ବର୍ତ୍ତମାନ ସୁଦ୍ଧା ଦେଶର ବିଭିନ୍ନ ସ୍ଥାନରେ ନିର୍ମାଣ ହୋଇଥିବା ଜଳଭଣ୍ଡାର ଗୁଡ଼ିକ ମଧ୍ୟରୁ ଅଧିକାଂଶର ଜଳ ଚାଷୀ ପାଖରେ ପହଞ୍ଚାଇ ଦିଆଯାଇପାରିନାହିଁ ଏବଂ ଜଳଭଣ୍ଡାର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇପାରିନାହିଁ । କେବଳ ଧାର୍ଯ୍ୟ ଲକ୍ଷ୍ୟ ଅନୁଯାୟୀ ଆବଶ୍ୟକ କେନାଲ ବ୍ୟବସ୍ଥା ପାଇଁ ଉକ୍ତ ଜଳଭଣ୍ଡାର ପ୍ରକଳ୍ପଗୁଡ଼ିକ ପାଇଁ ଦଶମ ଯୋଜନାରେ ୮୦ ହଜାର କୋଟି ଟଙ୍କାର ଓ ୧୧ଶ ଯୋଜନା ପାଇଁ ୧୧୧୦୦୦ ଲକ୍ଷ ଟଙ୍କା ଆବଶ୍ୟକତା ରହିଛି, ତାହା ପୂରଣ ହେବା ଅସମ୍ଭବ । ଓଡ଼ିଶାରେ ଏପର୍ଯ୍ୟନ୍ତ ରେଙ୍ଗାଲି, ଅପର କୋଲାବ ଓ ହରଭଙ୍ଗି ବୃହତ ଓ କ୍ଷୁଦ୍ରଜଳ ଭଣ୍ଡାରକୁ ପାଣି ପାଇଁ କେନାଲ ବ୍ୟବସ୍ଥା ପୂର୍ଣ୍ଣାଙ୍ଗ ହୋଇପାରିନାହିଁ । କେବଳ ରେଙ୍ଗାଲିର କେନାଲ ବ୍ୟବସ୍ଥା ପାଇଁ ଦୁଇ ହଜାର କୋଟି ଟଙ୍କାରୁ ଉର୍ଦ୍ଧ୍ୱ ଖର୍ଚ୍ଚ ହେବ । ତାହା କେନ୍ଦ୍ର ସରକାରଙ୍କ ଯୋଜନାରେ ଆଲୋଚନାକୁ ମଧ୍ୟ ଆସିପାରୁ ନାହିଁ । ତେଣୁ ଜମିକୁ ଜଳ ବୋଲି କହି ନଦୀ ସଂଯୋଗ ଯୋଜନା ଜରିଆରେ ପାଣି ପହଞ୍ଚାଇବାକୁ କେତେ ଶହ ବର୍ଷ ଲାଗିବ ତାହା ନିଶ୍ଚିତ ଭାବେ ମୁଣ୍ଡବ୍ୟଥାର ବିଷୟ ।

Digitized by srujanika@gmail.com

ପୁଣି ଅନ୍ୟ ମୁଖ୍ୟ ବାଧକ ରୂପେ ଠିଆ ହେବ – ଆନ୍ତଃ ରାଜ୍ୟ ଜଳବଣ୍ଟନ କାର୍ଯ୍ୟକାରୀ ହୋଇଥିବା ଟ୍ରିବ୍ୟୁନାଲର ନିର୍ଦ୍ଦେଶଗୁଡ଼ିକ । ବର୍ତ୍ତମାନ ଯେପରି ଭାବରେ ବିଭିନ୍ନ ରାଜ୍ୟ ଭିତରେ ନଦୀମାନଙ୍କୁ ନେଇ ଜଳର ବ୍ୟବହାର ପାଇଁ ନିଷ୍ପତ୍ତି କାର୍ଯ୍ୟକାରୀ ହୋଇଛି, ନଦୀ ସଂଯୋଗ ଯୋଜନା ପରେ ଯେଉଁ ରାଜ୍ୟ ତଥା ଅଞ୍ଚଳ ସେହି ପରିମାଣରେ ପାଣିର ଭାଗ ନପାଇବେ, ତାହା ହେଲେ ସେମାନଙ୍କ ସଂଘଟିତ ବିଦ୍ରୋହର ପରିମାଣ ପ୍ରତି ବିଚାର କରିବାକୁ ହେବ । ଏହା ସହ ଯେଉଁନଦୀମାନଙ୍କର ପର୍ଯ୍ୟାପ୍ତ ଜଳ ପ୍ରବାହିତ ରାଜ୍ୟବାସୀଙ୍କୁ ମିଳୁଛି, ସେଥିରୁ ଜଳ କମିଗଲେ ସେମାନେ ଏପରି ଏକ ଜଳନୀତିକୁ ଗ୍ରହଣ କରିବେ କି ? ବର୍ତ୍ତମାନ ଆସାମ, ବିହାର, ଆନ୍ଧ୍ରପ୍ରଦେଶ ପରି ରାଜ୍ୟମାନେ ଉକ୍ତ ପ୍ରଶ୍ନକୁ ଉଠାଇ ଆସିଛନ୍ତି ବହୁଦିନରୁ । ଯେଉଁ ରାଜ୍ୟ ନଦୀମାନଙ୍କର ବଳକା ପାଣି ଅଛି ସେହି ନଦୀ ଅଞ୍ଚଳବାସୀଙ୍କ ଜଳଯୋଗାଣର ଗ୍ୟାରେଣ୍ଟି ନ୍ୟାୟଗତ ଦୃଷ୍ଟିରୁ କେତେ ସ୍ୱୀକାର୍ଯ୍ୟ ସେଥିପ୍ରତି ବିଚାର କରାନଗଲେ ପରିସ୍ଥିତି ସାଂଘାତିକ ହେବ ।

ଆନ୍ତଃରାଜ୍ୟ ବ୍ୟତୀରେକେ ପଡୋଶୀ ରାଷ୍ଟ୍ରମାନଙ୍କ ସହ ନଦୀଜଳକୁ ନେଇ ହୋଇଥିବା ରାଜିନାମା ଏବଂ ଜଳବଣ୍ଟନ ପ୍ରକ୍ରିୟାରେ ନଦୀ-ସଂଯୋଗ-ଯୋଜନା ସମସ୍ୟା ସୃଷ୍ଟି କରିବ । ଉଦାହରଣ ସ୍ୱରୂପ, ବଙ୍ଗଳାଦେଶ ସହ ଆମ ନଦୀ ଜଳ ସଂକ୍ରାନ୍ତୀୟ ରାଜିନାମା ସ୍ୱାକ୍ଷରିତ ହୋଇଛି । ଫାର୍‌କା ଜଳ ଯୋଜନା ଅନ୍ତଃରାଷ୍ଟ୍ରୀୟ ଜଳ ବଣ୍ଟନକୁ ନେଇ କାର୍ଯ୍ୟକାରୀ ହୋଇଛି । ୧୯୯୭ ଡ଼ିସେମ୍ବରରେ ଏକ ନୂଆ ରାଜିନାମା ଅନୁଯାୟୀ ଭାରତ ତାର ଜଳର ପରିମାଣକୁ କମାଇ ପାରିବ ନାହିଁ । ଯଦି ନଦୀ ସଂଯୋଗ ଦ୍ୱାରା ବଙ୍ଗଳା ଦେଶକୁ ଯାଉଥିବା ଜଳର ପରିମାଣ ହ୍ରାସ ପାଏ, ତାହାହେଲେ ସେହି ଦେଶ ରାଜିହେବ ନାହିଁ । ସେହିପରି ନେପାଳ ଓ ଭୁଟାନର ସମ୍ମତି ଅନୁଯାୟୀ ଉକ୍ତ ଯୋଜନାର କାର୍ଯ୍ୟକାରିତା ନିର୍ଭର କରୁଛି ଯେହେତୁ ଗଙ୍ଗା, ବ୍ରହ୍ମପୁତ୍ର ଓ ଅନ୍ୟ ଉପନଦୀମାନଙ୍କର ସ୍ରୋତ ସେହି ଦେଶ ଦେଇ ଆସୁଛି । ମୌସୁମୀର ପରିବର୍ତ୍ତନ ଯେପରି ଦେଖାଦେଉଛି, ହିମାଳୟର ପରିବେଶଜନିତ ଅବକ୍ଷୟ ହେଉଛି, ଭବିଷ୍ୟତରେ ଯଦି ନଦୀମାନଙ୍କରେ ଜଳହ୍ରାସ ହୁଏ ପଡ଼ୋଶୀ ଦେଶମାନେ ଜଳର ଅଭାବକୁ କେନ୍ଦ୍ରକରି ବିବାଦ ସୃଷ୍ଟିକରିବାକୁ ବାଧ ହେବେ ।

ଉକ୍ତ ଯୋଜନାରେ ବହୁ ବୃହତ ଓ କ୍ଷୁଦ୍ର ଜଳ ଭଣ୍ଡାର ନିର୍ମାଣ କରିବାକୁ ହେବ । ପ୍ରାୟ ଦୁଇଶହରୁ ଅଧିକ । ଏହାଦ୍ୱାରା ପ୍ରଚୁର ଜଙ୍ଗଲ, ଜମି ନଷ୍ଟ ହେବ । ଏକାଥରକେ ବହୁପରିମାଣର ଜଙ୍ଗଲ ଧ୍ୱଂସ ଯୋଗୁଁ କ୍ଷୟକ୍ଷତିର ମୂଲ୍ୟାୟନ ସହ ଜଳବାୟୁ ଜନିତ ସଂକଟର ପରିମାଣକୁ ହିସାବ କରିବା ଏକାନ୍ତ ଜରୁରୀ । ପୁଣି ୨ ହଜାର କିଲୋମିଟରରୁ

Digitized by srujanika@gmail.com

ଉର୍ଦ୍ଧ୍ୱ ସଂଯୋଗ କେନାଲ ଦ୍ୱାରା ଯେଉଁ ଚାଷ ଜମି ଚାଲିଯିବ, ଏହାର ଫଳରେ ବହୁ ଗଛପତ୍ର ଓ ଜଙ୍ଗଲ କ୍ଷୟ ମଧ୍ୟ ହେବ । ଜମି ଜଙ୍ଗଲରୁ ଲକ୍ଷ ଲକ୍ଷ ଲୋକ ବିସ୍ଥାପିତ ହେବେ, ନିଜର ଜୀବିକା ହରାଇବେ, ପରିବେଶଗତ ଓ ଜୀବିକାର ସୁରକ୍ଷା ପାଇଁ ଦେଶର ବିଭିନ୍ନ ଅଞ୍ଚଳରେ ଜନ ଆନ୍ଦୋଳନ ଅନିବାର୍ଯ୍ୟ ହୋଇପଡ଼ିବ । ବିକାଶର ସ୍ଲୋଗାନ ଯେତେବେଳେ ବି ନର୍ମଦା ବଞ୍ଚାଅ ଆନ୍ଦୋଳନ ଆଦିବାସୀଙ୍କ ଜୀବନ ଓ ଜୀବିକାର ଅଧିକାର ପାଇଁ ଆଖି ଖୋଲି ଦେଇପାରିଛି । ତେଣୁ ନଦୀ ସଂଯୋଗ ଯୋଜନା ମଧ୍ୟରେ ବହୁ ନର୍ମଦା ଆନ୍ଦୋଳନ ଅହେତୁକ ହୋଇପଡ଼ିବ । ସରକାରମାନେ ସାମନା କରିପାରିବେ ତ ? ପୁଣି ଦେଶରେ ବିକାଶ ନାମରେ ଜନ ସମାଜରେ ଏକ ବିଭାଜନ ପ୍ରକ୍ରିୟା ହିଂସାତ୍ମକ ପରିସ୍ଥିତି ସୃଷ୍ଟିକରିବ । ମେଧା ପାଟକରଙ୍କ ଅନୁସାରେ କେବଳ ସର୍ଦ୍ଦାର ସରୋବର ପ୍ରକଳ୍ପର କେନାଲ ଦ୍ୱାରା ୧୫୦ ହଜାର ଲୋକେ ଜମି ହରାଉଛନ୍ତି, ସେମାନଙ୍କ ମଧ୍ୟରୁ ୨୩୫୦୦ ନିଜ ନିଜ ମୋଟ ଜମିର ଏକ ଚତୁର୍ଥାଂଶ ଓ ୨୦୦୦ ପରିବାର ସଂପୂର୍ଣ୍ଣଭାବେ ନିଜ ଜମି ହରାଇବାବେଳେ ଏମାନଙ୍କୁ ଥଇଥାନ ତାଲିକାଭୁକ୍ତ କରାଯାଉନାହିଁ ।

ପ୍ରଦୂଷଣଜନିତ ପ୍ରଶ୍ନ ମଧ୍ୟ ଆସିବ । ଗଙ୍ଗା ନଦୀ ଓ ଦେଶର ଅନେକ ଶିଳ୍ପାଞ୍ଚଳର ନଦୀମାନେ ପ୍ରଦୂଷିତ ହୋଇସାରିଲେଣି ଯାହାକୁ ସ୍ୱଚ୍ଛ କରିବା ପାଇଁ ଯୋଜନାରେ ଅର୍ଥ ଖର୍ଚ୍ଚ ହେଉଛି । ନଦୀ ସଂଯୋଗ ପରେ ପ୍ରଦୂଷିତ ଜଳ ସର୍ବତ୍ର ଯିବ । ଏହାଦ୍ୱାରା ପ୍ରଦୂଷଣ ସଂକ୍ରମଣକୁ ଲୋକେ ଗ୍ରହଣ କରିବେ କି ? ପୁଣି ଅନ୍ୟସ୍ଥାନରେ ଜଳକୁ ପ୍ରଦୂଷିତ କରାଇବା ଯଥାର୍ଥ କି ? ଏସବୁକୁ ହିସାବ କରି ନିଷ୍ପତ୍ତି ନେବାପାଇଁ ପରିବେଶ ମନ୍ତ୍ରଣାଳୟ ବହୁ ପରୀକ୍ଷାର ସମ୍ମୁଖୀନ ହେବ ।

ଜଳଭଣ୍ଡାର, କେନାଲ ବ୍ୟବସ୍ଥା ଯୋଗୁଁ ଲକ୍ଷ ଲକ୍ଷ ବିସ୍ଥାପିତ ଲୋକଙ୍କ ପାଇଁ କ୍ଷତିପୂରଣ ଓ ପୁନର୍ବାସ ପାଇଁ ପ୍ରଚୁର ଅର୍ଥ ଓ ଜମିର ବ୍ୟବସ୍ଥା କରିବା ସମ୍ଭବପର କି ? ଯଦି ନାହିଁ, ସାମାଜିକ ବିସ୍ଫୋରଣ ସ୍ଥିତି ସୃଷ୍ଟିହେବ । ଉତ୍ତରରୁ ଦକ୍ଷିଣକୁ ଜଳ ଗଡ଼ି ଗଡ଼ି ଚାଲିଯିବ ନାହିଁ । ଦକ୍ଷିଣକୁ ପାଣି ଉପରକୁ ଉଠାଇ ନେବାକୁ ହେବ କାରଣ ପୂର୍ବଘାଟ ପର୍ବତମାନ ଡେଇଁଲେ ଯାଇ ପାଣି ଦକ୍ଷିଣକୁ ଯାଇପାରିବ । ପାଣିକୁ ନେବାପାଇଁ ହେଲେ ଲିଫ୍ଟ ପମ୍ପରେ ଉଠାଇବାକୁ ହେବ ବିଭିନ୍ନ ସ୍ଥାନରେ କିମ୍ବା ପର୍ବତମାଳା, ପାହାଡ଼ରେ ଟନଲ ଖୋଳି ନେବାକୁ ହେବ । ଲିଫ୍ଟ ପାଇଁ ବହୁ ପରିମାଣ ବିଦ୍ୟୁତ ଦରକାର, ସେଥିପାଇଁ ଗୋଟିଏ ହିସାବରେ ୯୦ ହଜାର ମେଗାୱାଟର ଆବଶ୍ୟକତା ଥିବାବେଳେ ଯଦି ବୁଲେଇ କରି ବିଭିନ୍ନ ପାହାଡ଼ ପଖାରେ ନିଆଯାଏ ସେଥିପାଇଁ ୧୦ ହଜାର ମେଗାୱାଟ

Digitized by srujanika@gmail.com

ଦରକାର । ଏଥିପାଇଁ ବ୍ୟୟ ବହୁଳ ହେବ । ଉତ୍ପାଦନ ଓ ମୂଲ୍ୟ ଦୃଷ୍ଟିରୁ ଏହା ଏକ ବଡ଼ବାଧକ ।

ଗଙ୍ଗା ଓ ବ୍ରହ୍ମପୁତ୍ରର ବଳକା ପାଣି ସର୍ବଦା ନଥାଏ । ଦେଶର ମୋଟ ବର୍ଷାଜଳ ୪୦୦୦୦୦ କୋଟି ଘନ ମିଟର ମଧ୍ୟରୁ ଅଧିକାଂଶ ପରିମାଣ ବର୍ଷର ୧୦୦ ଘଣ୍ଟା ମଧ୍ୟରେ ପଡ଼ିଥାଏ । ଉକ୍ତ ସମୟ ମଧ୍ୟରେ ଦେଶର ସର୍ବତ୍ର ବର୍ଷା ହୋଇଥାଏ ଓ ଶୁଖିଲା ନଦୀମାନଙ୍କରେ ମଧ ବନ୍ୟା ଆସିଥାଏ । ତାହାହେଲେ ଉକ୍ତ ସମୟର ପାଣି ଗଙ୍ଗା ଓ ବ୍ରହ୍ମପୁତ୍ରରୁ ନେଇ ଯେଉଁ ନଦୀମାନଙ୍କ ଜରିଆରେ ଯିବ ସେହି ନଦୀମାନଙ୍କ ବନ୍ୟାର ପ୍ରକୋପ ଅତ୍ୟଧିକ ହେବ । ଉକ୍ତ ୧୦୦ ଘଣ୍ଟା ସମୟର ବଳକା ପାଣିକୁ ରଖୁଥିବା ଜଳଭଣ୍ଡାରଗୁଡ଼ିକ ବାକି ୯ ମାସ ସମସ୍ତ ଅଞ୍ଚଳକୁ ପାଣି ଯୋଗାଇପାରିବେ କି ?

କେନ୍ଦ୍ର ସରକାରଙ୍କ ପୂର୍ବତନ ଜଳସଂପଦ ସଚିବ ରାମସ୍ୱାମୀ ଆର. ଆୟାରଙ୍କ ଅନୁଯାୟୀ ୧୯୮୨ ଅଧକ୍ଷ ଗଠନ କରାଯାଇ ବଳକାଜଳ ସଂକ୍ରାନ୍ତରେ ଅନୁଧ୍ୟାନ କରାଯାଇଛି । ୧୯୯୯ ସେପ୍ଟେମ୍ବର ମାସରେ NCIWRDP (National Commission on Integrated Water Resources Development Plan) ରିପୋର୍ଟରେ ଆର୍ଥିକ ଓ ପରିବେଶ ସମସ୍ୟା ଗୁରୁତର ବୋଲି ଦର୍ଶାଇଛି ।

ଉକ୍ତ ରିପୋର୍ଟ ପରାମର୍ଶ ଦେଇ କହିଛି ଯେ – ଆନ୍ତଃ ସଂଯୋଗ ବଦଳରେ ଜଳ ବଣ୍ଟନ ବ୍ୟବସ୍ଥାରେ ସଂପୂର୍ଣ୍ଣ ବିକାଶ ଓ ଦକ୍ଷ ବ୍ୟବହାର କରାଯାଇ ପାରିଲେ ପୃଥକଭାବେ ପ୍ରତ୍ୟେକ ନଦୀ ଅବବାହିକାର ଆବଶ୍ୟକତାକୁ ଭଲଭାବେ ପୂରଣ କରିହେବ । କେବଳ କାବେରୀ ଓ ଭାଇଯାଇ ନଦୀ ପକ୍ଷରେ ସମ୍ଭବ ନୁହେଁ ।

ଜଳସଂପଦ ମନ୍ତ୍ରାଳୟର ଆଉଜଣେ ପୂର୍ବତନ ସଚିବ ଏମ.ଏସ.ରେଡ଼ି କହିଛନ୍ତି ଯେ – ଉକ୍ତ ନଦୀ ସଂଯୋଗ ଯୋଜନା ଜରିଆରେ ପ୍ରତି ସେକେଣ୍ଡରେ ମାତ୍ର ୧୫୦୦ ଘନ ମିଟର ଜଳ ଉଠାଯିବାର ସମ୍ଭାବନା ରହିଛି । ଏହା ବନ୍ୟା ନିୟନ୍ତ୍ରଣ କରିପାରିବ ନାହିଁ । କାରଣ ଗଙ୍ଗା, ବ୍ରହ୍ମପୁତ୍ର, ମହାନଦୀ ଓ ଗୋଦାବରୀ ନଦୀ ମାନଙ୍କ ବନ୍ୟା ବେଳେ ପ୍ରତି ସେକେଣ୍ଡରେ ସାଧାରଣତଃ ୩୦୦୦୦ ରୁ ୬୦୦୦୦ ଘନମିଟର ପାଣି ବହୁଥାଏ । ସେ ମତ ଦେଇଛନ୍ତି ଯେ, ପ୍ରତ୍ୟେକ ନଦୀ ଅବବାହିକା ଅଞ୍ଚଳରେ ଜଳକୁ ଯେପରି ସଦୁପଯୋଗ କରାଯାଇପାରିବ ସେଥିପାଇଁ ସେହି ଆମ ଦେଶର ସମସ୍ତ ନଦୀର ପାଣିର ସାମର୍ଥ୍ୟ ଅଛି । ବର୍ତ୍ତମାନ ଥିବା ୧୪ କୋଟି ହେକ୍ଟର ଚାଷ ଜମିକୁ ଜଳସେଚିତ କରାଯାଇପାରିବ । ବର୍ତ୍ତମାନ କେବଳ ୫ କୋଟି ୩୦ ଲକ୍ଷ ହେକ୍ଟର ଜଳସେଚିତ ଜମି ସରକାରୀ ହିସାବରେ ।

Digitized by srujanika@gmail.com

## ପ୍ରସ୍ତାବିତ ଉପକୂଳର ବଡ଼ ବଡ଼ ନଦୀମାନଙ୍କ ସଂଯୋଗ ତାଲିକା

| ସଂଯୋଗ ନଦୀ | ନଦୀରୁ ପାଣିଯିବ (ଘ.ମି.ମି.) | ନଦୀକୁ ଯିବା ପାଣିର ପରିମାଣ (ଘ.ମି.ମି.) |
|---|---|---|
| ମହାନଦୀର ମଣିଭଦ୍ରା ଠାରୁ ଡ଼ାଉଲ ସ୍ୱରମ | ମହାନଦୀ ୧୧, ୧୭୬ | ଗୋଦାବରୀ ୬୫୦୦ |
| ଇଛାମପଲ୍ଲୀରୁ ନାଗାର୍ଜୁନ ସାଗର | ଗୋଦାବରୀ ୧୬୪୨୬ | କ୍ରିଷ୍ଣା ୧୪୨୦୦ |
| ଇଛାମପଲ୍ଲୀରୁ ପୁଲିଚ୍ଚନ୍ତଲା | ଗୋଦାବରୀ ୪୩୭୧ | କ୍ରିଷ୍ଣା ୪୩୭୧ |
| ପୋଲାଭରମରୁ ବିଜୟୱାଡ଼ା | ଗୋଦାବରୀ ୪୩୦୩ | କ୍ରିଷ୍ଣା ୩୩୦୫ |
| ଆଲମଟୀରୁ ପେନ୍ନାର | କ୍ରିଷ୍ଣା ୧୯୮୦ | ପେନାର ୧୯୮୦ |
| ସ୍ରିସାଇଲମ ରୁ ପେନ୍ନାର | କ୍ରିଷ୍ଣା ୨୩୧୦ | ୨୦୯୫ |
| ନାଗାର୍ଜୁନ ସାଗରୁ ସୋମାସିଲା | କ୍ରିଷ୍ଣା ୧୨୧୪୬ | ପେନ୍ନାର ୮୬୪୮ |
| ସୋମାସିଲାରୁ ଗ୍ରାଣ୍ଡ ଆନିକଟ | ପେନ୍ନାର ୮୫୬୫ | କାବେରୀ ୩୮୫୫ |
| କଟାଲାଇ ରେଗୁହାଡରୁ ଭାଇଗାଇ ଗୁଣ୍ଡାର | କାବେରୀ ୨୨୫୨ | ଭାଇଗାଇ ୨୨୫୨ |

(Source NCIWRDP'S REPORT - September 1999)

**ପଶ୍ଚିମାଞ୍ଚଳ ନଦୀ ସଂଯୋଗ**

କେନ - ବେଟଓ୍ୱା, ପାର୍ବତୀ - କାଳୀସିନ୍ଧ - ଚମ୍ବଲ, ପାର - ତାପି - ନର୍ମଦା, ଦାମନ ଗଙ୍ଗା - ପିଂଜାଲ, ବେଡ଼ତି - ଭାର୍ଦା, ନେତ୍ରବତୀ - ହେମବତୀ, ପମ୍ପା - ଆଚଙ୍କଭିଲ୍ - ଭାଇଗାଇ

(Source NCIWRDP'S REPORT - September 1999)

Digitized by srujanika@gmail.com

**ବିକଳ୍ପ :**

ବଡଲୋକଙ୍କୁ ଉତ୍ତର ନାହିଁ ପରି ବର୍ତ୍ତମାନ ଦେଶର ସର୍ବୋଚ୍ଚ କ୍ଷମତାଶାଳୀ ପଦଧାରୀ ବ୍ୟକ୍ତି ଓ ବିଚାରାଳୟ ନଦୀ ସଂଯୋଗ ପାଇଁ କହିଦେବା ପରେ ଜାତୀୟ ସ୍ତରରେ ବହୁ ବିଶେଷଜ୍ଞ, ଆଞ୍ଚଳିକ ସ୍ତରରେ ଅଭିଜ୍ଞ ବ୍ୟକ୍ତିମାନଙ୍କ ସମେତ ଜନ ସାଧାରଣଙ୍କ ମଧ୍ୟରେ ଖୋଲା ଆଲୋଚନା ନ ହେବାର ସମ୍ଭାବନା ଅଛି । ଆମ ଗଣତନ୍ତଟି ବିକାଶ ନାମରେ ଆଲୋଚନା ବେଳେ ଗଣତନ୍ତ୍ରରେ ପରିଣତ ହୋଇଯାଉଛି । ବିନା ତର୍କ ଓ ଅନୁଧ୍ୟାନରେ ବିନା ଏପରି ଏକ ସ୍ୱପ୍ନବିଳାସୀ ପରିକଳ୍ପନାର ବାସ୍ତବତା ପ୍ରତି ଆଖି ବୁଜିଦେଇ କେବଳ ଏକ ମରୀଚିକାରେ ପରିଣତ ହେବ ।

ଦେଶର ବନ୍ୟା ଓ ମରୁଡ଼ିର ପ୍ରତିକାର ପାଇଁ ପ୍ରଥମେ ଆଞ୍ଚଳିକ ସ୍ତରରେ ହିଁ ଯୋଜନା କାର୍ଯ୍ୟକାରିତା ଜନସାଧାରଣଙ୍କ ଭାଗିଦାରୀକୁ କେନ୍ଦ୍ରକରି ହିଁ ସମ୍ଭବପର । ପ୍ରଥମେ ଗଙ୍ଗା ନଦୀ ଓ ବ୍ରହ୍ମପୁତ୍ରର ପାଣିକୁ ଦକ୍ଷିଣକୁ ନେବା ବଦଳରେ ନିର୍ଦ୍ଦିଷ୍ଟ ନଦୀମାନଙ୍କ ସହ ସଂପୃକ୍ତ ରାଜ୍ୟମାନଙ୍କ ଶୁଖିଲା ଅଞ୍ଚଳକୁ ଛୋଟ ଛୋଟ ଜଳାଶୟ ଓ ସଂଯୋଗ କେନାଲ ଜରିଆରେ ବର୍ଷ ସାରା ଜଳର ଉପସ୍ଥିତି ଓ ବ୍ୟବହାର ପ୍ରତି ଧ୍ୟାନ ଦେବା ଏକ ସଫଳ ଉଦ୍ୟମ ହେବ । ଯେଉଁ ଦେଶରେ ନଦୀ ସଂଯୋଗ କରାଯାଇଛି ତାହା ସୀମିତ ଭାବରେ ହୋଇଛି । ଆମ ଦେଶରେ ମଧ୍ୟ ପଶ୍ଚିମ ଯମୁନା କେନାଲ ଏବଂ ଆଗ୍ରା କେନାଲ ଜରିଆରେ ହିମାଳୟରୁ ପଞ୍ଜାବ, ଉତ୍ତରପ୍ରଦେଶ ଏବଂ ରାଜସ୍ଥାନ ପର୍ଯ୍ୟନ୍ତ, ଉନବିଂଶ ଶତାବ୍ଦୀରୁ କୁର୍ଣ୍ଣଲ - କୁଡ଼ାପାଲ ଏବଂ ପେରିୟାର ଭାଇଗାଇ କେନାଲ ପରି କେତେକ ସଂଯୋଗ ଜଳ ବ୍ୟବସ୍ଥା ହୋଇଛି ଏବଂ ଏହାଦ୍ୱାରା କୃଷିରେ ବିକାଶ ହୋଇଛି ବୋଲି ଜଣେ ପୂର୍ବତନ ମୁଖ୍ୟଯନ୍ତ୍ରୀ (କେନ୍ଦ୍ର ଜଳ ଆୟୋଗ) ଏମ୍.ଏସ୍. ମେନନ ଉଦାହରଣ ଦେଇ ଜାତୀୟ ସ୍ତରରେ ନଦୀ ସଂଯୋଗ ସପକ୍ଷରେ ମତ ଦେଇଛନ୍ତି । ଶ୍ରୀ ମେନନଙ୍କ ପରାମର୍ଶ ରାଜ୍ୟ ରାଜ୍ୟ ମଧ୍ୟରେ ବୁଝାମଣା ହେବା ଦରକାର ଓ ଜଳର କ୍ଷତି ସହୁଥିବା ରାଜ୍ୟକୁ ଜଳର ହିତାଧିକାରୀ ରାଜ୍ୟଠାରୁ କ୍ଷତିପୂରଣ ଦେବାକୁ ପ୍ରସ୍ତୁତ ହେବା ଉଚିତ, କିନ୍ତୁ ଆମର ଅନୁଭୂତି ହେଲା- ଯେଉଁ ରାଜ୍ୟମାନେ ନିଜର ଶୁଖିଲା ଅଞ୍ଚଳ ଥାଉ ଥାଉ ଅନ୍ୟ ରାଜ୍ୟକୁ ବଳକା ପାଣି ନାମରେ ତ୍ୟାଗ କରିବା ସହଜ ନୁହେଁ । କାବେରୀକୁ ନେଇ କର୍ଣ୍ଣାଟକ-ତାମିଲନାଡୁ ମଧ୍ୟରେ ଶତ୍ରୁତା ବଢୁଛି । ପୁଣି କ୍ଷତିପୂରଣ ପ୍ରସ୍ତାବଟି ଆହୁରି ଅବାସ୍ତବ । ତେଣୁ ରାଜ୍ୟ ମଧ୍ୟରେ ଥିବା ନଦୀମାନଙ୍କୁ ନେଇ ଛୋଟ ଛୋଟ କେନାଲ, ଜଳ ସଂରକ୍ଷଣ ପାଇଁ ପୁରାତନ ପାରଂପରିକ ଜଳାଶୟକୁ ଗୁରୁତ୍ୱ ଦେଇ ସ୍ୱଳ୍ପ ଖର୍ଚ୍ଚରେ ଯୋଜନା ହେବା ବିଜ୍ଞତାର କାର୍ଯ୍ୟ ହେବ । ଏହାଫଳରେ ଭୟରୁ ମୁକ୍ତ ରହିବେ

Digitized by srujanika@gmail.com

କୋଟି କୋଟି ଜନତା ଯେଉଁମାନେ ନଦୀ ସଂଯୋଗ ପରିକଳ୍ପନାରେ ଜୀବିକା ହରାଇବେ ଓ ଜଳ ବି ହରାଇବେ ଏହା ସହ ପରିବେଶ ଅପୂରଣୀୟ କ୍ଷତିରୁ ରକ୍ଷା ପାଇଯିବ ।

## ଓଡ଼ିଶା ପାଇଁ ମହାବିପତ୍ତି

ନଦୀ ସଂଯୋଗ ନାମରେ ଜଳଭଣ୍ଡାର ହେବ ଯାହାଦ୍ୱାରା ଲକ୍ଷ ଲକ୍ଷ ଲୋକ ବିସ୍ଥାପିତ ହେବେ ଓ ଜୀବିକା ହରାଇବେ । ଓଡ଼ିଶା ପରିପ୍ରେକ୍ଷୀରେ ବିଚାର କରିବା, ଯଦି ଆଜି ହୀରାକୁଦ ବନ୍ଧ ଦ୍ୱାରା ବନ୍ୟା ନିୟନ୍ତ୍ରଣ ହୋଇ ପାରୁନାହିଁ ଆଉ ଏକ ବନ୍ଧ ନିର୍ମାଣ ପାଇଁ କେତେକ ସ୍ୱାର୍ଥପର ବ୍ୟକ୍ତି ଦାବି କରୁଛନ୍ତି କିନ୍ତୁ ପୁଣି ବନ୍ଧନିର୍ମାଣ ଅଧିକ କ୍ଷତି କରିବ । ପୁଣି ମହାନଦୀରେ ବଳକା ପାଣି ଅଛି ବୋଲି ଯାହା କୁହାଯାଉଛି ତାହା ବର୍ତ୍ତମାନ ସ୍ଥିତିରେ ଠିକ ନୁହେଁ । ମହାନଦୀରୁ ବଳକା ପାଣି ଗୋଦାବରୀ ଦେଇ କାବେରୀକୁ ପାଣି ଦେବାପାଇଁ ମଣିଭଦ୍ରା ଡ୍ୟାମ ନିର୍ମାଣ ପାଇଁ ନଦୀ ସଂଯୋଗ ଯୋଜନାରେ ରହିଛି । ଉପକୂଳବର୍ତ୍ତୀ ବନ୍ୟା ନିୟନ୍ତ୍ରଣ ପାଇଁ ପ୍ରସ୍ତାବିତ ଟିକରପଡ଼ା ଓ ପରେ ମଣିଭଦ୍ରାଠାରେ ବଡ଼ ଜଳ ଭଣ୍ଡାରକୁ ବୌଦ ସମେତ ସମଗ୍ର ପଶ୍ଚିମ ଓଡ଼ିଶା ଲୋକେ ପ୍ରତିବାଦ କରିବାରୁ ତାହା ପ୍ରତ୍ୟାହୃତ ହୋଇଛି ୩୦ ବର୍ଷ ତଳୁ । ଆଜି କାବେରୀକୁ ଜଳ ନେବାପାଇଁ ଓଡ଼ିଶାର ଏହି ବନ୍ଧ ନିର୍ମାଣ ହେଲେ ହଜାର ହଜାର ଗ୍ରାମର ଲକ୍ଷାଧିକ ପରିବାର ବିସ୍ଥାପିତ ହେବେ । ଏହା ଆଉ ସମ୍ଭବପର ନୁହେଁ । ଓଡ଼ିଶାର କେତେକ ପୂର୍ବତନ ମୁଖ୍ୟମନ୍ତ୍ରୀ କହିଲେଣି ମହାନଦୀରେ ଯଥେଷ୍ଟ ପାଣିନାହିଁ ବାହାରକୁ ନେବା ପାଇଁ । ସେମାନଙ୍କ ମତ ଅନୁଯାୟୀ ୧୯୨୨ ରୁ ୧୯୮୮ ମଧ୍ୟରେ ମହାନଦୀର ପ୍ରବାହିତ ଜଳକୁ ହିସାବ କରି ମଣିଭଦ୍ରା ଠାରେ ପ୍ରବାହିତ ଜଳର ପରିମାଣ ୪୦ ଘନ କି.ମି. ଆକଳନ କରାଯାଇଥିଲା । ଜଳର ବ୍ୟବହାର ପରିମାଣ ୨୮ ଘନ କି.ମି. । ଆଉ ୧୨ ଘନ କି.ମି. ବଳକା ଅଛି ବୋଲି କୁହାଯାଉଛି, କିନ୍ତୁ ତାହା ବର୍ତ୍ତମାନ ପାଇଁ ଭୁଲ । ହୀରାକୁଦ ବନ୍ଧ ନିର୍ମାଣ ପରଠାରୁ ଜଳପ୍ରବାହ କମି ମଣିଭଦ୍ରା ଠାରେ ୨୭.୩୬ ଘ. କି.ମି. ହୋଇଛି । ଏହା ଆବଶ୍ୟକତା ଠାରୁ କମ୍ । ତେଣୁ ମହାନଦୀରେ ବଳକା ପାଣି ନାହିଁ । ପୁଣି ମହାନଦୀକୁ ବ୍ରାହ୍ମଣୀ ନଦୀରେ ସଂଯୋଗ କରି ବନ୍ୟା ନିୟନ୍ତ୍ରଣର ପରିକଳ୍ପନା ଓଡ଼ିଶା ସରକାର କରିଛନ୍ତି ବୋଲି ଜଳସଂପଦ ମନ୍ତ୍ରୀ ଯେଉଁ ଦିନ କହିଲେ ତାପର ଦିନ ବ୍ରାହ୍ମଣୀରେ ବନ୍ୟା । ମହାନଦୀର ବନ୍ୟା ଜଳ ଯଦି ବ୍ରାହ୍ମଣୀରେ ପଡ଼ିଥାନ୍ତା ତାହାହେଲେ ସେଠାର ବନ୍ୟା ପରିସ୍ଥିତି କ'ଣ ହୋଇଥାନ୍ତା ? ତେଣୁ ବଡ଼ ନଦୀବନ୍ଧ କିମ୍ବା ନଦୀ ସଂଯୋଗ ବନ୍ୟା ନିୟନ୍ତ୍ରଣର ବାଟ ନୁହଁ ବରଂ ବନ୍ୟାର ପ୍ରକୋପ ବଢ଼ାଇବ । ହୀରାକୁଦ ବନ୍ଧ ହେଲାପରେ ବହୁ ବର୍ଷ ହେଲା ନଦୀବନ୍ଧକୁ ରକ୍ଷା କରିବାକୁ ପାଣି ନିଷ୍କାସନ କରିବା ପରେ ମହାନଦୀରେ ପ୍ରବଳ ବନ୍ୟା

Digitized by srujanika@gmail.com

ହୋଇଥାଏ । ପୁଣି ଗଙ୍ଗାରୁ ଜଳ ବନ୍ୟାବେଳେ ହିଁ ମହାନଦୀ ଦେଇ ଗୋଦାବରୀକୁ ନିଆଯିବ କେନାଲ ଦ୍ୱାରା । ଏହା ହେଲେ ଉପକୂଳବର୍ତ୍ତୀ ଜଳପ୍ଲାବିତ ଅଞ୍ଚଳର ଅବସ୍ଥା କ'ଣ ହେବ ? ପ୍ରତି ବର୍ଷ ଓଡ଼ିଶା ବନ୍ୟାର ବ୍ୟାପକତା ଉପକୂଳବର୍ତ୍ତୀ ଅଞ୍ଚଳ ସମେତ ବଲାଙ୍ଗିର, କଳାହାଣ୍ଡି, ସମ୍ବଲପୁର, କୋରାପୁଟ, ରାୟଗଡ଼ା ଜିଲ୍ଲା ମାନଙ୍କର ଅପୂରଣୀୟ କ୍ଷତି କରୁଛି । ତେଣୁ କେବଳ ଉପକୂଳ ଦୁଇ ଜିଲ୍ଲାର ବନ୍ୟା ନିୟନ୍ତ୍ରଣ ନାମରେ ଆଉ ଏକ ହୀରାକୁଦ ବନ୍ଧର ନିର୍ମାଣ ବନ୍ୟାର ପ୍ରତିବନ୍ଧକ ହୋଇନପାରେ । ବରଂ ମହାବିପତ୍ତିର କାରଣ ହେବ । ପୁଣି ଉକ୍ତ ବନ୍ୟା ସମୟରେ ହିଁ ଗଙ୍ଗାର ବଳକା ପାଣି ସୁବର୍ଣ୍ଣରେଖା ଓ ମହାନଦୀ ଦେଇ ଗୋଦାବରୀକୁ ନେବା ବେଳେ ସମଗ୍ର ଓଡ଼ିଶା ବନ୍ୟାର ବିଭୀଷିକା ଭିତରେ ହିଁ ରହି ବିପର୍ଯ୍ୟସ୍ତ ହେବ । ଓଡ଼ିଶା ସରକାର ନୀରବ କାହିଁକି ?

ପୁଣି 'ନଦୀ ସଂଯୋଗ ଯୋଜନାରେ ଅର୍ଥ ନିବେଶ ପାଇଁ ବହୁରାଷ୍ଟ୍ରୀୟ କଂପାନୀମାନଙ୍କୁ ଡ଼ାକିବେ । ସେମାନେ ଜଳଯୋଗାଣକୁ ବ୍ୟବସାୟ କରିବେ । ଏଥିରୁ ଭାରତର ଚାଷୀ ଓ ସାଧାରଣ ଲୋକ ଜଳ କିଣି ପାରିବେ ତ ?

ଗଙ୍ଗା ଓ ବ୍ରହ୍ମପୁତ୍ରର ଜଳକୁ ଦକ୍ଷିଣ କାବେରୀ ପର୍ଯ୍ୟନ୍ତ ନେବାକୁ ହେଲେ ମହାନଦୀ ଜରିଆରେ ଓଡ଼ିଶାର ଉପକୂଳ ଅଞ୍ଚଳ ଦେଇ ସଂଯୋଗ କେନାଲ ଗୋଦାବରୀକୁ ଯୋଡ଼ିବା ଅପରିହାର୍ଯ୍ୟ ।ଏଠି ଏକ ବଡ଼ ପ୍ରଶ୍ନ ମାତ୍ର ୧୦୦ ଘଣ୍ଟାରେ ଅତ୍ୟଧିକ ବର୍ଷା ଜଳ ଯେତେବେଳେ ମହାନଦୀ ଦେଇ ଆସିବ ମହାନଦୀର ଅବସ୍ଥା କ'ଣ ହେବ ? ବର୍ତ୍ତମାନ ବନ୍ୟା ସାଙ୍ଗରେ ହୀରାକୁଦର ପାଣି ଛାଡ଼ିଲେ ପୂର୍ବତଟ ସଂପୂର୍ଣ୍ଣ ବନ୍ୟା ଘେରରେ । ଯଦି ଗଙ୍ଗା ସହ ସଂଯୋଗ ହେବାପରେ ସେହି ସମୟରେ ହୀରାକୁଦ ପାଣି ଛାଡ଼ିବା ସମ୍ଭବପର ନୁହଁ । ଯଦି ଛାଡ଼େ ପଶ୍ଚିମାଞ୍ଚଳରେ ମଧ୍ୟ ପ୍ରବଳ ବନ୍ୟା ହେବ ।

ପୁଣି ଓଡ଼ିଶା ଭିତରେ ଏହି ନଦୀ ସଂଯୋଗ ଯୋଜନା ଜରିଆରେ ମଣିଭଦ୍ରାଠାରେ ବୃହତ ଜଳ ଭଣ୍ଡାର ହେବାକୁ ବାଧ୍ୟ । ଓଡ଼ିଶାର ସମତଳ ଅଞ୍ଚଳ ପାଇଁ ଉକ୍ତ ନଦୀବନ୍ଧ ଯୋଜନାକୁ ପଶ୍ଚିମାଞ୍ଚଳ ଗ୍ରହଣ କରିନଥିବାରୁ ତାହା ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରତ୍ୟାହୃତ ହୋଇଛି । ପୁଣି ୭୩ତମ ସଂବିଧାନ ସଂଶୋଧନ ଏବଂ ଆଦିବାସୀ ସ୍ୱୟଂଶାସନ ବିଧି ଲାଗୁ ହେଲାପରେ ଆଦିବାସୀ ଅଞ୍ଚଳର ଜଳ, ଜଙ୍ଗଲ ଜମି ସେମାନଙ୍କ ବିନା ଅନୁମତିରେ ନିଆଯାଇ ପାରିବ ନାହିଁ । ଏହା ବ୍ୟତୀତ ଆଉ ୩ଟି ନଦୀବନ୍ଧ ନିର୍ମାଣ ପ୍ରସ୍ତାବ ରହିଛି ନଦୀ ସଂଯୋଗ ଯୋଜନାରେ । ଓଡ଼ିଶାର ମହାନଦୀ ଉପକୂଳ ଅଞ୍ଚଳରେ ଏବେ ବି ୨,୧୭,୮୪୫ ହେକ୍ଟର ଜମି ଜଳ ମଗ୍ନ ହେଉଛି । ସଂଯୋଗ କେନାଲ ଉକ୍ତ ଉପକୂଳ ଅଞ୍ଚଳ ଦେଇ ଗଲାପରେ ଅବସ୍ଥା ଅଧିକ ସାଂଘାତିକ ହେବ । ଜଳମଗ୍ନ ଜମିର

Digitized by srujanika@gmail.com

ପରିମାଣ କେତେଗୁଣ ବଢ଼ିଯିବ ତାହା ହିସାବ କରିବା ଏକାନ୍ତ ଜରୁରୀ । ପୁଣି ମହାନଦୀର ପାଣି ଅନ୍ୟତ୍ର ପଠାଇବା ପାଇଁ ଯଥେଷ୍ଟ ନୁହଁ । କାରଣ ମହାନଦୀରେ ବର୍ଷା ଦିନ ବ୍ୟତୀରକେ ଅନ୍ୟ ଦିନମାନଙ୍କରେ ସେପରି ଅଧିକ ପାଣି ପ୍ରବାହିତ ହୁଏ ନାହିଁ । ଅନ୍ୟ ନଦୀ ଅବବାହିକା ଗୁଡ଼ିକରେ ପାଣି ଅଭାବ ବୋଲି ଅନୁଧ୍ୟାନ ରିପୋର୍ଟରେ ଉଲ୍ଲେଖ ଅଛି । ଯଥା ଗଂଜାମର ଋଷିକୂଲ୍ୟା ନଦୀ ଅବବାହିକା ଜଳ ଅଭାବ ବୋଲି ୧୯୮୫ରୁ ବିଶେଷଜ୍ଞମାନେ ଦର୍ଶାଇଛନ୍ତି । ଏହାର ସମାଧାନ ପାଇଁ ମହାନଦୀରୁ କେନାଲ ବ୍ୟବସ୍ଥାରେ ବର୍ତ୍ତମାନ ଥିବା ଗଂଜାମର ଜଳଭଣ୍ଡାରଗୁଡ଼ିକୁ ଜଳ ଆଣି ଗଂଜାମର କୃଷି ପାଇଁ ଆବଶ୍ୟକ ଜଳ ଯୋଗାଇବାକୁ ମଧ୍ୟ ବିଶେଷଜ୍ଞମାନେ ପରାମର୍ଶ ଦେଇଛନ୍ତି । ଏହିପରି ଓଡ଼ିଶାର ବିଭିନ୍ନ ସ୍ଥାନରେ ବଡ଼ ନଦୀମାନଙ୍କ ଜଳକୁ କ୍ଷୁଦ୍ର ଜଳାଶୟ ଓ କେନାଲ ବ୍ୟବସ୍ଥା ଜରିଆରେ ମରୁଡ଼ିର ପ୍ରତିକାର କରାଯାଇପାରିବ । ଏହି ଯୋଜନା ଦ୍ୱାରା ପରିବେଶଜନିତ ସଙ୍କଟ ମଧ୍ୟ ଭୟାନକ ହେବ । କାରଣ ଓଡ଼ିଶାର ଜଙ୍ଗଲ ହ୍ରାସ ଉଦ୍‌ବେଗ ପରିସ୍ଥିତି ସୃଷ୍ଟି କରିଛି । ପରିବେଶ ସନ୍ତୁଳନ ପାଇଁ ଏକ ତୃତୀୟାଂଶ ଜଙ୍ଗଲ ରହିବା ଆବଶ୍ୟକ ବେଳେ ଆମ ଜଙ୍ଗଲ ମାତ୍ର ୧୫ ପ୍ରତିଶତ ଅଛି । ତେଣୁ ଓଡ଼ିଶାର ଜଳ ଓ ପରିବେଶ ସମସ୍ୟା ଜାତୀୟ ନଦୀ ସଂଯୋଗ ଯୋଜନା ଦ୍ୱାରା ଜଟିଳ ହେବ ଏବଂ ସାମାଜିକ ଓ ଆର୍ଥିକ ସଂକଟ ସୃଷ୍ଟି କରିବ ।

ଓଡ଼ିଶାର ଭୂତଳ ଜଳକୁ ମଧ୍ୟ ଠିକ୍ ଭାବେ ବ୍ୟବହାର କରାଯାଇପାରିନାହିଁ । ତେଣୁ ଆମ ଆବଶ୍ୟକତାକୁ ଆଖି ଆଗରେ ରଖି ଆମ ନଦୀ ଜଳ ଓ ଭୂତଳ ଜଳକୁ ଛୋଟ ଛୋଟ ସ୍ଥାନୀୟ ପ୍ରକଳ୍ପ ଜରିଆରେ ସ୍ଥାନୀୟ ଦେଶୀୟ ଜ୍ଞାନକୁ ବ୍ୟବହୃତ କରାଯାଇପାରିଲେ ଭବିଷ୍ୟତ ପାଇଁ ମଧ୍ୟ ଜଳ ସଂରକ୍ଷିତ ହୋଇ ରହିପାରିବ । ନଦୀମାନଙ୍କରୁ ପାଣି ଯୋଗାଇବା ନାମରେ କଂପାନୀମାନଙ୍କୁ ନଦୀ ବିକା ଆରମ୍ଭ ହେଲାଣି । ଛତିଶଗଡ଼ର ସିଓ୍ୱନାଥ ନଦୀର ୨୬ କି.ମି. ଓ୍ୱାଟର ରେଡ଼ିଅସ କଂପାନୀକୁ ୨୨ ବର୍ଷ ପାଇଁ ଜଳ ବିକିବାକୁ ଲିଜ୍ ଦିଆ ଯାଇଥିଲା । ଜନ ଆନ୍ଦୋଳନ ଦ୍ୱାରା ୧୦ ବର୍ଷ ପରେ ଏହି କଂପାନୀ ହଟିଲା । ଏପରି ବହୁସଂଖ୍ୟକ କଂପାନୀମାନଙ୍କୁ ଡକାଯିବ ନଦୀ ସଂଯୋଗ ଯୋଜନା କ୍ଷେତ୍ରକୁ । ଋଷିକୁଲ୍ୟାର ଜଳ ପରିଚାଳନା ଦାୟିତ୍ୱ ଫ୍ରାନସର ଏକ କଂପାନୀକୁ ଦେବା ପ୍ରସ୍ତାବ ଓଡ଼ିଶା ସରକାର ଚିନ୍ତାକଲେଣି । ଏହା ଯଦି ନଦୀ ସଂଯୋଗ ଯୋଜନାରେ ଲାଗୁ ହେବ, ଜଳ ସଂପୂର୍ଣ୍ଣଭାବେ ଘରୋଇକରଣ ହେବ । ଏପରି ଏକ ମରୀଚିକା ପଛରେ ବିଶ୍ୱବ୍ୟାଙ୍କ ରହିଥିବା ମନେହେଉଛି । ଜଳକୁ ବଜାରୀକରଣ କରିବା ଦେଶପାଇଁ ଏକ ବିପଦ ଓ ଆମ ଓଡ଼ିଶା ପାଇଁ ମହା ବିପତ୍ତି ।



Digitized by srujanika@gmail.com

# କୋକାକୋଲା ବନାମ ମଣିଷ ଜୀବନ

କେରଳର ପାଲକାଡ଼୍ ଜିଲ୍ଲାର ପ୍ଲାଚିମାଡ଼ାରେ ପହଞ୍ଚିଲି ୨୦୦୫ ଏପ୍ରିଲ ୨୧ ତାରିଖ ସକାଳ ୯ଟାରେ । ସ୍ଥାନ ମୋ'ପାଇଁ ଥିଲା ସଂପୂର୍ଣ୍ଣ ନୂଆ । 'କୋକାକୋଲା ହଟାଅ' ଜନ ଆନ୍ଦୋଳନର ବାର୍ଷିକୀ (ଏପ୍ରିଲ ୨୨)ରେ ଭାଗନେବା ମୋର ଗନ୍ତବ୍ୟ ଲକ୍ଷ୍ୟ । ବସରୁ ଓହ୍ଲାଇବା ପରେ ପାଲକାଡ଼୍-କୋୟମ୍ବାଟୁର ରାସ୍ତାରେ ପ୍ଲାଚିମାଡ଼ା ଗାଁ । ରାସ୍ତାକଡ଼ରେ ହିନ୍ଦୁସ୍ଥାନ କୋକାକୋଲା ବିଭେରେଜ୍ ଲିମିଟେଡ୍‌ର ବିରାଟ ଗେଟ । ତା' ଆଗରେ ଏକ ତାଳପତ୍ରରେ ତିଆରି କୁଡ଼ିଆଟିଏ । ବ୍ୟାନରରେ ଲେଖାଯାଇଛି ମାଲାୟାଲାମ ଭାଷାରେ - କୋକାକୋଲା ବିରୋଧୀ ଜନ ସଂଗ୍ରାମ । ପହଞ୍ଚିଲି କୁଡ଼ିଆକୁ । ଏଠି ସମସ୍ତ ପ୍ରକାର ଆନ୍ଦୋଳନ କାର୍ଯ୍ୟକ୍ରମ କରାଯାଏ ଓ ଆନ୍ଦୋଳନର କର୍ମକର୍ତ୍ତା ଏହି ଖୋଲା ତାଳପତ୍ର ଛପର କୁଡିଆରେ ରହିଥାନ୍ତି । ଦାୟିତ୍ୱରେ ଅଛନ୍ତି କୋକା ହଟାଅ ଆନ୍ଦୋଳନର ଆଦିବାସୀ ନେତ୍ରୀ ମଇଲାମା ।

ଗାଁର କୂଅପାଣି ବିଷାକ୍ତ ରାସାୟନିକ ଯୁକ୍ତ । ପୁଣି ପାଣି ଶୁଖିଯାଉଛି । ଏହିପାଣିରେ ସ୍ୱାସ୍ଥ୍ୟ ଖରାପ ହୋଇଯିବ । ତେଣୁ ମତେ ଯିବାକୁ ହେଲା ଏକ କିଲୋମିଟର ଦୂର ଶୁଖିଲା ଜଳାଶୟଟିକୁ ଯେଉଁଠିର ପାଣି ମଧ ମଇଳା । କିନ୍ତୁ ଏକ ଖାଲ କରି ପାଣିକୁ ରଖାଯାଇଛି । ସେଥିରୁ ପାଣି ଆଣି ଗାଧୋଇବା ହେଲା । ତାପରେ ପାଣି କେଉଁଠୁ ଲୋକେ ପିଅନ୍ତି ଓ ଖାଆନ୍ତି ବୁଝିବା ପରେ ଜାଣିଲି ଯେ ପଞ୍ଚାୟତ ଟେଙ୍କରରେ ଅନ୍ୟସ୍ଥାନରୁ ପାଣିଆଣି ପ୍ରତ୍ୟେକଦିନ ଯୋଗାଉଛି । ମୋ' ମନରେ ଏକ ବଡ଼ ପ୍ରଶ୍ନ ଉଠିଲା - ଯେଉଁଠି ଲୋକଙ୍କ ପାଇଁ ପିଇବା ପାଣି ନାହିଁ କିମ୍ବା ଗାଧୋଇବା ପାଇଁ କୂଅର ପାଣି ଅନୁପଯୁକ୍ତ ଓ ଶୁଖିଯାଉଛି, ସେଠିକୁ କୋକାକୋଲା ଆସିଛି କାହିଁକି ? ତାପାଇଁ ଜଳର ସ୍ରୋତ କେଉଁଠି ? କାରଣ, କେବଳ ଜଳ ହେଉଛି ଏହି ମୃଦୁପାନୀୟ ପାଇଁ ମୁଖ୍ୟ କଞ୍ଚାମାଲ । ଗୋଟିଏ ବୋତଲ ପାନୀୟ ତିଆର କରିବା ପାଇଁ ୧୩ ବୋତଲ ପାଣିର ଆବଶ୍ୟକତା ହେଉଛି । କେରଳର ଉକ୍ତ କୋକାକୋଲା ପ୍ଲାଣ୍ଟ ଦେଶର ଅନ୍ୟତମ ଏକ ବୃହତ୍ତମ ଉତ୍ପାଦନ କେନ୍ଦ୍ର । ଏଠି ପ୍ରତ୍ୟେକଦିନ ୮୫ ଟ୍ରକ ବୋଝ ବିକ୍ରି ପାଇଁ ପଠାଯାଏ । ପ୍ରତ୍ୟେକ ଟ୍ରକରେ ୫୫୦ ରୁ ୬୦୦ ପର୍ଯ୍ୟନ୍ତ ପେଡ଼ି ଯାଏ । ପ୍ରତ୍ୟେକ ପେଡ଼ିରେ ୨୪ଟି ବୋତଲ ଥାଏ । ଅର୍ଥାତ ପ୍ରତ୍ୟେକ ଦିନ

Digitized by srujanika@gmail.com

ଏହି ପ୍ଲାଣ୍ଟରୁ ୧୧ ଲକ୍ଷରୁ ୧୨ ଲକ୍ଷ ବୋତଲ ପର୍ଯ୍ୟନ୍ତ ବଜାରକୁ ଯାଏ । ୩୬୦୦୦୦ ଲିଟର ପରିମାଣର ମୃଦୁପାନୀୟ ଉତ୍ପାଦନ ପାଇଁ ଦୈନିକ ପାଣିର ଆବଶ୍ୟକ ହୁଏ ୪୬ ଲକ୍ଷ ୮୦ ହଜାର ଲିଟର । ବର୍ଜ୍ୟଜଳ ୪୩ ଲକ୍ଷ ୬୦ ହଜାର ଲିଟର ଛଡ଼ାଯାଏ ବାହାରକୁ ଯାହା ଜମି ଭିତରକୁ ଯାଏ । ଭୂତଳ ଉପର ଭାଗ ବର୍ଜ୍ୟ ଜଳକୁ ପ୍ରଦୂଷିତ କରେ ।

ସବୁଠାରୁ ବିଡ଼ମ୍ବନା ହେଉଛି ପଞ୍ଚାୟତର ୪ ହଜାର ଗ୍ରାମବାସୀ ପିଇବା ଓ ଖାଇବା ପାଇଁ ଦୈନିକ ମାତ୍ର ୪୦ ହଜାର ଲିଟର ପାଣି ପାଇପାରୁନଥିବାବେଳେ ସେମାନଙ୍କ ସାମନାରେ ଏକ ବିଦେଶୀ କଂପାନୀ ସୁଦୂର ଆମେରିକାରୁ ଆସି ଏତେ ବଡ଼ ପରିମାଣର ପାଣିର ମାଲିକ ହୋଇଯାଇଛି । ଏପରି ସ୍ଥିତି ଏକ ଗଣତାନ୍ତ୍ରିକ ରାଷ୍ଟ୍ର, ସଭ୍ୟ ସମାଜ ଓ ମୌଳିକ ଅଧିକାରର ରକ୍ଷକ ରୂପେ କାର୍ଯ୍ୟ କରୁଥିବା ନିର୍ବାଚିତ ସରକାର ଥିବା ମାଟିରେ ସମ୍ଭବପର ହେଉଛି କିପରି ? ତାହାହେଲେ ଏସବୁ ଅନୁଷ୍ଠାନଗୁଡ଼ିକ ପଙ୍ଗୁ ହୋଇସାରିଲାଣି ? ନା ମୂଳରୁ କାମ କରୁନାହିଁ ? ଅନୁଧ୍ୟାନରୁ ଜଣାଗଲା ଯେ ପାଲଘାଟ୍ ଅଞ୍ଚଳର ବାର୍ଷିକ ବର୍ଷା କେରଳ ରାଜ୍ୟର ବାର୍ଷିକ ମୋଟ ବର୍ଷାର ଅଧା । ଏଠି ଭୂତଳ ଜଳ ଉପରେ ନିର୍ଭର କରନ୍ତି । କେବଳ ପିଇବା ଓ ଖାଇବା ତଥା ଗୃହକାର୍ଯ୍ୟ ପାଇଁ ନୁହଁ, କୃଷିପାଇଁ ମଧ ଭୂତଳ ଜଳ ଉପରେ ଚାଷୀ ନିର୍ଭରଶୀଳ । ନଡ଼ିଆ ଓ ଧାନଚାଷ ମୁଖ୍ୟ ଫସଲ । ନଦୀ, ନାଳ, ଜଳଭଣ୍ଡାର ନଥିବା ସ୍ଥାନକୁ କୋକାକୋଲା ଆସିଲା କିପରି ? ସେଟଲାଇଟ ଜରିଆରେ ପ୍ଲାଚିମାଡ଼ା ଅଞ୍ଚଳର ଭୂତଳ ଜଳ ସବୁ ଅଞ୍ଚଳଠାରୁ ଅତ୍ୟଧିକ ବୋଲି ଜାଣିବା ପରେ ଏହି ସ୍ଥାନକୁ କଂପାନୀ ବାଛି ନେଇଛି । ଏକ ହଜାର ମିଟର ଗଭୀର ପର୍ଯ୍ୟନ୍ତ ଜଳ ଏଠି ଅଛି । ଭୂତଳ ଜଳର ପତନ ଯେତେ ଆସିଗଲେ ବି ତାର ମେସିନ ଜରିଆରେ ଜଳ ଟାଣି ଆଣିପାରିବ । ଏହାର ପରିଣାମ ଅଞ୍ଚଳର ନଳକୂପ, କୂଅ, ପୋଖରୀ ଶୁଖିଯିବା ସହ ଯେଉଁଠି ଚାଷ ପାଇଁ ଉଠା ଜଳସେଚନ ବ୍ୟବସ୍ଥା ଅଛି ସବୁର ଜଳ ତଳକୁ ତଳକୁ ଯିବା ଅନିବାର୍ଯ୍ୟ । ଜନସାଧାରଣ ତଥା ସମାଜର ଅଧିନରେ ଥିବା ଉକ୍ତ ଜଳ ପରି ପ୍ରାକୃତିକ ସଂପଦର ଅଧିକାରୀ ଏବେ ଏକ ବହୁରାଷ୍ଟ୍ରୀୟ କଂପାନୀ ।

ଏକଥା କଂପାନୀ ଆସିବା ବେଳେ କେହି ଜାଣିନଥିଲେ । ପଞ୍ଚାୟତ କଂପାନୀ ପାଣି ଦେବା ପାଇଁ ଅନୁମତି ଦେଇଥିଲା । କିନ୍ତୁ ୬ ମାସ ପରେ ଜଳର ପତନ ତଳକୁ ତଳକୁ ଗଲା । ଜଳର ଅଭାବ ପରିଲକ୍ଷିତ ହେଲାବେଳକୁ ପ୍ଲାଣ୍ଟ ନିକଟସ୍ଥ ଗ୍ରାମମାନଙ୍କର ଜଳ ଦୂଷିତ ହେବାରେ ଜଣାପଡ଼ିଲା । ରାନ୍ଧିଲା ପରେ ଭାତ ଅସ୍ୱାଭାବିକ ବର୍ଣ୍ଣ ଦିଶିଲା ଓ ଅସ୍ୱାଦ ଲାଗିଲା । ମୁଣ୍ଡ ବ୍ୟଥା, ପେଟ ବ୍ୟଥା, ଚର୍ମ ରୋଗ ଇତ୍ୟାଦି

Digitized by srujanika@gmail.com

ରୋଗର ଲକ୍ଷଣ ଅଞ୍ଚଳ ବାସିନ୍ଦାମାନଙ୍କ ଦେହରେ ଦେଖାଦେଲା । କ୍ରମଶଃ କୋକାକୋଲାର ବର୍ଜ୍ୟବସ୍ତୁ ମାଟି ଓ ଜଳକୁ ପ୍ରଦୂଷିତ କରିବା ଲୋକଲୋଚନକୁ ଆସିବା ସହ ଭୂତଳ ଜଳର ଅଭାବ ଘୋର ସଂକଟ ସୃଷ୍ଟି କଲା । ମହିଳାମାନେ ପିଇବା ପାଣି ପାଇଁ ପ୍ରାୟ ଚାରି କିଲୋମିଟର ଚାଲି ଚାଲି ପାଣି ଯିବାକୁ ବାଧ ହେଲେ । ଏପରି ପରିସ୍ଥିତିର ସାମନା କରିବା ପରେ ପେରୁମାଟି, ପଟାଂଚେରୀ ଓ ମୁଆଲାମାଡ଼ା ପଞ୍ଚାୟତମାନଙ୍କ ଗ୍ରାମବାସୀମାନେ ଏକାଠି ହୋଇ କୋକାକୋଲା ହଟାଅ ଅଭିଯାନ ପାଇଁ ମେଳିହେଲେ । କୋକାକୋଲା କଂପାନୀ, ନିଜର ବର୍ଜ୍ୟବସ୍ତୁକୁ ସାର ରୂପେ ବ୍ୟବହାର କରିବା ପାଇଁ ସ୍ଥାନୀୟ ଚାଷୀଙ୍କୁ ବିକ୍ରି କରିବାପରେ ସେଗୁଡ଼ିକ ବିଷାକ୍ତ ଓ ଜମି ପାଇଁ କ୍ଷତିକାରକ ବୋଲି ଜଣାପଡ଼ିଥିଲା ।

୨୨ ଏପ୍ରିଲ ୨୦୦୨ ବିଶ୍ୱ ଧରିତ୍ରୀ ଦିବସରେ ପ୍ରାୟ ୨୦୦୦ ମହିଳା, ପୁରୁଷ ଓ ବାଳକବାଳିକା ହାତରେ ଖାଲି ପାଣିଗରା ଧରି କଂପାନୀ ସମ୍ମୁଖରେ ଧାରଣା ଦେବାସହ ରାସ୍ତାରୋକ ଜରିଆରେ ପ୍ରତିବାଦ ଆରମ୍ଭ କରିଥିଲେ । ଏହି ଆନ୍ଦୋଳନ ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଚାଲୁରହିଛି କୋକାକୋଲା ବିରୋଧ ସମର ସମିତି ସଂଗଠନର ନେତୃତ୍ୱରେ । କେରଳର ସଂଗ୍ରାମୀ ଆଦିବାସୀ ଗୋଷ୍ଠୀ ମହାସଭାର ନେତ୍ରୀ ଶ୍ରୀମତୀ ସି.କେ. ଜାନୁ ସହଯୋଗ କରୁଛନ୍ତି । ତାପର ସମୟ ମାନଙ୍କରେ ଆନ୍ଦୋଳନକୁ ସହଯୋଗ କରିବା ପାଇଁ ମେଧା ପାଟକର, ଡଃ ବନ୍ଦନା ଶିବା ପରି ପରିବେଶ ସୁରକ୍ଷା ତଥା ଜୀବନ ଓ ଜୀବିକା ବଞ୍ଚାଅ ଆନ୍ଦୋଳନର ନେତା ଓ ନେତ୍ରୀମାନେ ବିଭିନ୍ନ କାର୍ଯ୍ୟକ୍ରମରେ ସାମିଲ ହୋଇଛନ୍ତି । ଜନସାଧାରଣଙ୍କ ସମର୍ଥନ ଓ ଆନ୍ଦୋଳନର ତୀବ୍ରତା ଦେଖି ପେରୁମାଟି ପଞ୍ଚାୟତ ଅଧ୍ୟକ୍ଷ ପଞ୍ଚାୟତର ବୈଠକର ନିଷ୍ପତ୍ତି ଅନୁଯାୟୀ କଂପାନୀକୁ ଭୂତଳ ଜଳ ବ୍ୟବହାର ପାଇଁ ଦିଆଯାଇଥିବା ଅନୁମତି ପତ୍ର ପ୍ରତ୍ୟାହାର କରିନେଲା । ପଞ୍ଚାୟତ ବାର୍ଷିକ ଟିକସ ଦେୟ କଂପାନୀଠାରୁ ପ୍ରାୟ ୬ ଲକ୍ଷ ଟଙ୍କା ପାଉଥିଲା, କିନ୍ତୁ ଜନସାଧାରଣଙ୍କ ଜୀବନ ଓ ଜୀବିକାର ସୁରକ୍ଷା ପାଇଁ ଏହି ଅର୍ଥ ତୁଳନାରେ ଅମୂଲ୍ୟ ସଂପଦ ଜଳର ସୁରକ୍ଷା ପାଇଁ ଲୋକଙ୍କ ମତକୁ ପଞ୍ଚାୟତ ଅଧ୍ୟକ୍ଷ ସମ୍ମାନ ଦେଲେ । ରାଜ୍ୟ ସରକାର କଂପାନୀକୁ ସାହାଯ୍ୟ କରିବାକୁ ଯାଇ ପଞ୍ଚାୟତ ଆଦେଶକୁ ସ୍ଥଗିତ କରି ଦେବାପରେ ପଞ୍ଚାୟତ ହାଇକୋର୍ଟକୁ ଗଲା । ମାନ୍ୟବର ହାଇକୋର୍ଟ ବିଚାରପତି କେ. ବାଳକ୍ରିଷ୍ଣନ ରାୟ ଦେଇ ପଞ୍ଚାୟତର ନିଷ୍ପତ୍ତିକୁ କାୟମ ରଖି କଂପାନୀ ପ୍ଲାଚିମାଡ଼ାର ଜଳ ବ୍ୟବହାର କରିପାରିବ ନାହିଁ ବୋଲି ନିର୍ଦ୍ଦେଶ ଦେଲେ ୧୬ ଡ଼ିସେମ୍ବର ୨୦୦୩ରେ । କୋକାକୋଲା ପ୍ଲାଚିମାଡ଼ା ଛାଡ଼ି ଚାଲିଯିବାକୁ ଜନ ଆନ୍ଦୋଳନ ଚାଲୁରହିଛି । ଉତ୍ପାଦନ ବନ୍ଦ ହୋଇଛି କିନ୍ତୁ କଂପାନୀ

Digitized by srujanika@gmail.com

ତାର ଅର୍ଥ ବଳରେ ସରକାର ଓ ରାଜନୈତିକ ଦଳମାନଙ୍କୁ ପ୍ରଭାବିତ କରିବା କାର୍ଯ୍ୟ ଅବ୍ୟାହତ ରଖିଛି । ହାଇକୋର୍ଟଙ୍କ ରାୟରେ କେରଳ ପଞ୍ଚାୟତରାଜ ଆଇନରେ ଥିବା ପଞ୍ଚାୟତର ଅଧିକାରକୁ ସାବ୍ୟସ୍ତ କରାଯାଇଛି । କେରଳ ପଞ୍ଚାୟତରାଜ ଆଇନ ୧୯୯୪ର ୨୩୨ ଧାରା ଅନୁଯାୟୀ ପଞ୍ଚାୟତ ସ୍ୱାସ୍ଥ୍ୟ ପ୍ରତି ହାନିକରୁଥିବା କୌଣସି ସଂବଳର ବ୍ୟବହାର ଉପରେ ପ୍ରତିବନ୍ଧକ ଜାରି କରିପାରିବ । ଏହି ହାନିକରୁଥିବା ୧୫୯ ବ୍ୟାବସାୟିକ ରକମ ମଧ୍ୟରୁ ଏରେଟ୍‌ଡ଼ ୱାଟର ଅର୍ଥାତ କଂପାନୀର ଜଳ ଅନ୍ୟତମ ।

କେରଳରେ ପଞ୍ଚାୟତକୁ ଯେପରି କ୍ଷମତାର ବିକେନ୍ଦ୍ରୀକରଣ କରାଯାଇଛି ତାହା ସବୁରାଜ୍ୟଠାରୁ ଖୁବ୍ ପ୍ରଗତିଶୀଳ ଓ କ୍ଷମତାଶାଳୀ । ତେଣୁ ଆଜି ପଞ୍ଚାୟତ ନିଜ ଅଧିକାରକୁ ସାବ୍ୟସ୍ତ କରିପାରିଛି । କିନ୍ତୁ କଂପାନୀ ଏକ ଡ଼ିଭିଜନ ବେଞ୍ଚକୁ ଆବେଦନ କରିବା ପରେ ୨୦୦୫ ଏପ୍ରିଲ ମାସରେ ସେହି କେରଳ ହାଇକୋର୍ଟର ଆଉ ଦୁଇଜଣ ବିଚାରପତି ପ୍ରଥମ ରାୟକୁ ରଦ୍ଦ କରିଦେଇ କଂପାନିକୁ ପାଣି ଦେବାପାଇଁ ପଞ୍ଚାୟତକୁ ନିର୍ଦ୍ଦେଶ ଦେଇଛନ୍ତି । ପଞ୍ଚାୟତ ତରଫରୁ ସଙ୍ଗେ ସଙ୍ଗେ ଦେଶର ସର୍ବୋଚ୍ଚ ଅଦାଲତ ସୁପ୍ରିମକୋର୍ଟରେ ଏହି ରାୟ ବିରୁଦ୍ଧରେ ଆବେଦନ କରାଯାଇଛି । ବିଚାର ବିଭାଗୀୟ ଶେଷ ନିଷ୍ପତ୍ତି ଜନତାଙ୍କ ଅଧିକାର ସପକ୍ଷରେ ଯିବକି ଲୁଟ ପାଇଁ ଆସିଥିବା କଂପାନୀର ସ୍ୱାର୍ଥପାଇଁ ହେବ ତାହା ଭବିଷ୍ୟତ କହିବ ।

ପେରୁମାଟି ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତର ସ୍ଥାନୀୟ ୩ଟି କୂଅରୁ ପାଣି ନେଇ ଆର.ଏ.ଏଲ୍.ରେ ପରୀକ୍ଷା କରିବାପରେ ଜଣାପଡ଼ିଥିଲା ଯେ ପାଣିରେ ଆଲକାଲିନିଟ ଓ କ୍ଲୋରାଇଡ଼ ରହୁଥିବା ଯୋଗୁଁ ପାନୀୟ ଯୋଗ୍ୟ ନୁହଁ । ଏହି ୩ଟି ସେମ୍ପଲରେ ପ୍ରତି ୧୦ ଲକ୍ଷରେ ୩,୫୨,୩୯୬, ୩୬୪ ଭାଗ ଆଲକାଲିଟି ଏବଂ ୭୭୦,୯୧୦ ଓ ୮୬୦ ଭାଗ କ୍ଲୋରାଇଡ଼ ରହିଥିବା ଜଣାପଡ଼ିଥିଲା ।

ବି.ବି.ସି. ରେଡ଼ିଓର ତଥ୍ୟମୂଳକ କାର୍ଯ୍ୟକ୍ରମ ତରଫରୁ ପ୍ଲାଚିମଡ଼ାରୁ କଂପାନୀ ବର୍ଜ୍ୟବସ୍ତୁ ନେଇ ଇଂଲଣ୍ଡର University of Exter ରେ ପରୀକ୍ଷା କରାଯାଇଥିଲା । ସେଥିରେ କାଡ଼ମିୟମ, ଲିଡ଼୍ ପରି ଟକ୍ସିକ ମେଟାଲ ଅଛି ବୋଲି ପ୍ରମାଣିତ ହୋଇଛି ଯାହାଦ୍ୱାରା କ୍ୟାନ୍‌ସର ଓ କିଡ଼ନି ଜନିତ ରୋଗ ହୁଏ । ବିବିସି ରେଡ଼ିଓର ଜହନଓ୍ୱଟ୍ ପ୍ଲାଚିମଡ଼ା ଆସି ଅନୁସନ୍ଧାନ କରି ଏକଥା କହିଛନ୍ତି ।

କୋକାକୋଲା ପ୍ଲାଣ୍ଟ ଆସିବାପରେ ସାଧାରଣ ଗରିବ ତଥା କୃଷିଶ୍ରମିକମାନଙ୍କ ରୋଜଗାର କମିଛି । ଏହି ପ୍ଲାଣ୍ଟରେ ଯେଉଁ କେତେକ ନିର୍ଦ୍ଦିଷ୍ଟ ଶ୍ରମିକ କାମ କରନ୍ତି ସେମାନେ ଦୈନିକ ମାତ୍ର ୫୦ ରୁ ୬୦ ଟଙ୍କା ପାଉଥିବାବେଳେ କେରଳର କୃଷି

Digitized by srujanika@gmail.com

ଶ୍ରମିକ ୧୦୦ ଟଙ୍କା ପାଏ । ଏପ୍ରିଲ ୨୨ ତାରିଖରେ ପ୍ଲାଚିମଡ଼ାଠାରେ ଆନ୍ଦୋଳନର ବାର୍ଷିକୀ ଦିବସ ପାଳନ ଅବସରରେ କୋକାକୋଲା ପ୍ଲାଣ୍ଟ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରାଗଲା । ଏଥିରେ ଆନ୍ଦୋଳନର କର୍ମକର୍ତ୍ତାଙ୍କ ସମେତ ସ୍ଥାନୀୟ ସି.ପି.ଆଇ.ଏମ୍. ଏମ୍.ପି., ପଡ଼ୋଶୀ ଏମ୍.ପି. (ଜନତାଦଳ ଏସ୍.), ପଞ୍ଚାୟତ ଅଧ୍ୟକ୍ଷ, ସମସ୍ତ ବିରୋଧୀ ଦଳ, ସି.ପି.ଆଇ.ଏମ୍.ଏଲ୍. ଲିବରେସନ, ଏସ୍.ୟୁ.ସି.ଆଇ. ଓ ସେମାନଙ୍କର ଯୁବ ସଂଗଠନର ପ୍ରତିନିଧିମାନେ ଯୋଗ ଦେଇ କୋକାକୋଲା ବିରୋଧରେ ମତପ୍ରକାଶ କରିଥିଲେ । କିନ୍ତୁ ରାଜ୍ୟର ପ୍ରମୁଖ ବିରୋଧୀଦଳ ସି.ପି.ଆଇ.ଏମ୍. ଓ ସି.ପି.ଆଇ. ଏହି ଆନ୍ଦୋଳନକୁ ନିଜ ଦଳର କାର୍ଯ୍ୟକ୍ରମ ତଥା ରାଜ୍ୟସ୍ତରରେ ଏହାକୁ ଏକ ପ୍ରସଙ୍ଗକରି କୋକାକୋଲାକୁ ହଟାଇବା ପାଇଁ ଏପର୍ଯ୍ୟନ୍ତ ସ୍ଥିର କରିପାରିନାହାନ୍ତି ଯଦିଚ ଦଳ ଭିତରେ ବିରୋଧ ପାଇଁ ବିତର୍କ ଆରମ୍ଭ ହୋଇଛି । ବାମପନ୍ଥୀମାନଙ୍କ ସରକାର ବେଳେ କୋକାକୋଲା ଓ ପେପ୍‌ସି କୋଲା କେରଳକୁ ଆସିଛନ୍ତି । କଂଗ୍ରେସ ଶାସନ ବର୍ତ୍ତମାନ ସେମାନଙ୍କ ସେବାରେ ନିୟୋଜିତ ।

ଆନ୍ଦୋଳନର ଚରିତ୍ର ବର୍ତ୍ତମାନ ସୁଦ୍ଧା ଆଞ୍ଚଳିକ । ଏହାର ନେତୃତ୍ୱ ଆଞ୍ଚଳିକ ଜନତାଙ୍କ ଭିତରେ ହିଁ ରହିଆସିଛି କିନ୍ତୁ ଆନ୍ଦୋଳନରେ ବାର୍ତ୍ତା ଜାତୀୟସ୍ତରରେ ପହଞ୍ଚିଛି ଓ ଦୃଷ୍ଟି ଆକର୍ଷଣ କରିପାରିଛି । ଆନ୍ଦୋଳନ ପ୍ରତି ସାଧାରଣ ଶିକ୍ଷିତ ସମାଜରେ ଥିବା ସମର୍ଥନକୁ ଅନୁଭବ କରି ହେଉଛି । କାରଣ, ପାଣି ଉପରେ ଅଧିକାର ତଥା ବଞ୍ଚିବାର ଅଧିକାର ଚାଲିଯାଉଛି । ଏହି ଲେଖାର ଲେଖକ ଏକ ଗଣ ସଂଗଠନର କର୍ମକର୍ତ୍ତା ତଥା ଜନ ଆନ୍ଦୋଳନମାନଙ୍କ ସହଯୋଗୀ ରୂପେ ଏପ୍ରିଲ ୨୨ କାର୍ଯ୍ୟକ୍ରମରେ ଯୋଗଦେଇ କେରଳର ସମସ୍ତ ରାଜନୈତିକ ଦଳର ପ୍ରତିନିଧିମାନଙ୍କୁ ନିବେଦନ କରିଥିଲା ଯେ – "ପ୍ଲାଚିମାଡ଼ା କୋକାକୋଲା ବିରୋଧୀ ସଂଗ୍ରାମ ସାମ୍ରାଜ୍ୟବାଦ ଓ ଜଗତୀକରଣ ବିରୋଧରେ ଏକ ଆଦର୍ଶବାଦୀ ଜନ ଆନ୍ଦୋଳନ । ଏଠାର ଗରିବ ଜନତା ବିଶ୍ୱର ଏକ ଶକ୍ତିଶାଳୀ ଗଣତନ୍ତ୍ର ବିରୋଧୀ କର୍ପୋରେଟ ବିରୋଧରେ ସଂଗ୍ରାମ କରୁଛନ୍ତି । ପୁଣି ଏହି ସଂଗ୍ରାମରେ ବ୍ୟକ୍ତିର ବଞ୍ଚିବାର ଅଧିକାର ସାଙ୍ଗକୁ ପଞ୍ଚାୟତର ପ୍ରାକୃତିକ ସଂବଳ ଉପରେ ଅଧିକାର ସୁରକ୍ଷା ପାଇଁ ସମସ୍ତ ଜନବାଦୀ ରାଜନୈତିକ ଶକ୍ତି ଯୋଗଦେବା ଏକାନ୍ତ କର୍ତ୍ତବ୍ୟ । ଯଦି ସୁପ୍ରିମକୋର୍ଟରେ କଂପାନୀର ବିଜୟ ହୁଏ ତାହାହେଲେ କେରଳର ପଞ୍ଚାୟତ ଆଇନ ଅକାମି ହୋଇଯିବ ଓ କ୍ଷମତାର ବିକେନ୍ଦ୍ରିକରଣ ବିଫଳ ହୋଇଯିବ । ଏଥିପାଇଁ ମୁଖ୍ୟ ରାଜନୈତିକ ଦଳମାନେ ସୁପ୍ରିମକୋର୍ଟରେ ପଞ୍ଚାୟତ ସପକ୍ଷରେ ମତ ଦେବା ଓ କୋକାକୋଲା ହଟାଅ ଆନ୍ଦୋଳନ ରାଜ୍ୟ ବ୍ୟାପି କରାଇବା ଏକାନ୍ତ ଜରୁରୀ ।"

---

Digitized by srujanika@gmail.com

ଏହି ଆନ୍ଦୋଳନରୁ ଓଡ଼ିଶା ପରି ରାଜ୍ୟର ସଚେତନ ନାଗରିକମାନେ ଶିକ୍ଷାନେବା ଅତି ଜରୁରୀ । ଓଡ଼ିଶା ସରକାର କୋକାକୋଲାକୁ ବିକ୍ରିକର ଛାଡ଼ କରିଛନ୍ତି ୬ ବର୍ଷ ପାଇଁ । କୋକାକୋଲା ଦ୍ୱାରା ଖୋର୍ଦ୍ଧା ଓ ଜଗତପୁରରେ ଜଳର ଅଭାବ ଘଟିବା ସହ ଜଳ ଓ ଜମି ପ୍ରଦୂଷିତ ହେବ । ତେଣୁ ଓଡ଼ିଶାର ଜନସାଧାରଣ କୋକାକୋଲା ପେପସି କୋଲାର ତାଡ଼ନାର ଶିକାର ନହେବା ପାଇଁ ଏହି କଂପାନୀମାନଙ୍କୁ ହଟାଇବା ଆନ୍ଦୋଳନ ଅତ୍ୟନ୍ତ ସମୟୋପଯୋଗୀ । ବିଦେଶୀ କଂପାନୀର ମୃଦୁପାନୀୟ ପିଇବା ବର୍ଜନ କରିବା ଏକ ଦେଶପ୍ରେମୀ କର୍ତ୍ତବ୍ୟ ।



Digitized by srujanika@gmail.com

# "ଶୁଖୁଆ-ଗୁଡ଼କୁ ବାନ୍ଧ, କୋକା-କାର୍ଗିଲକୁ ଛାଡ଼"

ଓଡ଼ିଶା ସରକାର ନିଜ ଆର୍ଥିକ ଅଭାବକୁ ପୂରଣ କରିବାକୁ ଯାଇ ଶୁଖୁଆ, ଗୁଡ଼, କଦଳୀ, ରସୁଣ, ପିଡ଼ିଆ, ଗୁଡ଼ାଖୁ, ସାଇକେଲ, ମହମବତୀ ଏପରି ଅନେକ ସର୍ବସାଧାରଣ ଖାଉଟି ଜିନିଷ ଉପରେ ପ୍ରବେଶ କର ଆଦାୟ କରିବାକୁ ନିଷ୍ପତ୍ତି ନେଇଛନ୍ତି । ବହୁ ଆଗରୁ ଓମଫେଡ଼ ଦୁଗ୍ଧ ଉପରେ ମଧ୍ୟ ପ୍ରବେଶ କର ଲାଗୁ ହେବା ଘୋଷଣାକୁ ଓଡ଼ିଶାର ଜନତା ତୀବ୍ର ବିରୋଧ କରିଛନ୍ତି । ଏସବୁକୁ ମହଙ୍ଗା କରିବା ପରିଣାମରେ ବିଶେଷ କ୍ଷତିଗ୍ରସ୍ତ ବ୍ୟକ୍ତିଟି ସିଏ, ଯିଏକି ମଧ୍ୟମ ଓ ନିମ୍ନ ଆୟରେ ନିଜ ପରିବାର ଚଳାଉଛି । ପୁଣି ଦୁଗ୍ଧ ଚାଷୀ ଉପରେ ବୋଝ କାହିଁକି ? ଧାନର ଅଭାବ ବିକ୍ରି ସାଙ୍ଗକୁ ଦୁଗ୍ଧ ଚାଷୀଠାରୁ ପ୍ରବେଶ କର ଆଦାୟ ପରେ ତାର ହ୍ରାସ ପାଇଥିବା ଆୟରୁ ପୁଣି ମହଙ୍ଗା ଦରରେ ଶୁଖୁଆ ଗୁଡ଼ ମଧ୍ୟ କିଣିବାକୁ ବାଧ୍ୟ । ଏପରି ଆର୍ଥିକ ପରିଚାଳନାର ଯୁକ୍ତି ସରକାରଙ୍କ ଠାରେ ପଇସା ନାହିଁ । ପଇସା ନଥିବା ସରକାରୀ ତହବିଲକୁ କୋକାକୋଲା କଂପାନୀ ଠାରୁ ବିକ୍ରି ଟିକସ ଆସୁଥିଲା, କିନ୍ତୁ ତାକୁ ଆମ ରାଜ୍ୟ ସରକାର କାହିଁକି ଆସନ୍ତା ପାଞ୍ଚ ବର୍ଷ ପାଇଁ ଛାଡ଼ କରି ଦେଇଛନ୍ତି ? ଦେଶରୁ କୋକାକୋଲା ପେପ୍‌ସିକୋଲା ପରି ବିଦେଶୀ କଂପାନୀମାନଙ୍କୁ ହଟାଇବା ପାଇଁ ଜନ ଆନ୍ଦୋଳନ ହେଉଛି । ଏହି କଂପାନୀମାନଙ୍କ ମୃଦୁପାନୀୟରେ ବିଷ ଧରାପଡ଼ିବା ବେଳକୁ ହିଁ ଓଡ଼ିଶା ସରକାର ବିକ୍ରିକର ପାଞ୍ଚ ବର୍ଷ ପାଇଁ ଛାଡ଼ କରିଛନ୍ତି । ଏହାର ପରିମାଣ ବାର୍ଷିକ ପ୍ରାୟ ୧୬ ରୁ ୨୦ କୋଟି ଟଙ୍କା ହେବ ।

ଓଡ଼ିଶା ସରକାର ଓ ଭାରତ ସରକାର ଆଉ ଏକ ବିଦେଶୀ ଆମେରିକାର କାର୍ଗିଲ କଂପାନୀକୁ ଡାକି ଆଣିଛନ୍ତି ଆମ ଦେଶରେ ବିହନ, ଖାଦ୍ୟ ଓ ତେଲ ବିକିବାକୁ । ପାରାଦୀପ ଠାରେ କାର୍ଗିଲ କଂପାନୀ ଏକ ଖାଇବା ତେଲ ବିଶୋଧନ କାରଖାନା ପାଇଁ ମାଗଣା ଜମି ଓ ବିଭିନ୍ନ ସୁବିଧା ହାସଲ କରିଛି । ଆମେରିକା ଓ କାନଡ଼ାର ଚାଷୀଙ୍କ ଫସଲରୁ ଉତ୍ପାଦିତ ଅଶୋଧିତ (କ୍ରୁଡ଼) ତେଲ ଆମଦାନୀ କରିବ । ପରେ ପାରାଦୀପ କାରଖାନାରୁ ରିଫାଇନାରୀ ପ୍ରକରଣ କରି ତେଲକୁ ବଜାରରେ ବିକ୍ରି

Digitized by srujanika@gmail.com

କରୁଛି । ଏହାର ବାର୍ଷିକ ଉତ୍ପାଦନ ଲକ୍ଷ୍ୟ ପ୍ରାୟ ୩ ଲକ୍ଷ ମାଟ୍ରିକ ଟନରୁ ଊର୍ଦ୍ଧ୍ୱ । କିନ୍ତୁ ଓଡ଼ିଶା ବଜାରର ଚାହିଦା ହେଉଛି ୨.୪୭ ଲକ୍ଷ ମେଟ୍ରିକ ଟନ୍ । ପ୍ରତିଦିନ ପ୍ରାୟ ୧୦୦୦ ଟନ୍ ତେଲ ଓଡ଼ିଶା, ଛତିଶଗଡ଼ ଓ ପଶ୍ଚିମବଙ୍ଗ ବଜାରକୁ ଛାଡ଼ିବ । ୧୦ ଲକ୍ଷ ଟନ୍ ଅଶୋଧିତ (କ୍ରୁଡ଼) ତେଲ : ସୋୟାବିନ, ତାଳ, ପାମୋଲିନର କିସମ ଆମେରିକା ଓ କାନଡ଼ାରୁ ଆମଦାନୀ କରିବ କାର୍ଗିଲ କଂପାନି । କାର୍ଗିଲ କଂପାନୀର ବିଜ୍ଞାପନ ଓ ବିଭିନ୍ନ ବ୍ୟାବସାୟିକ କୌଶଳ ଅବଲମ୍ବନ କରି ତେଲ ବଜାରକୁ ନିୟନ୍ତ୍ରଣ କରିବ । ଏହି କଂପାନୀର ତେଲ ବଜାରକୁ ଗଲା ପରେ ଓଡ଼ିଶାର ତୈଳ ଉତ୍ପାଦନ କମିବାକୁ ବାଧ୍ୟ । ବିଭିନ୍ନ ଆଞ୍ଚଳିକ ସ୍ତରରେ ତେଲକଳ ଓ ଘଣା ବନ୍ଦ ହୋଇଯିବ । ଆମ ଚାଷୀଙ୍କ ତୈଳବୀଜ ଉତ୍ପାଦନ ହ୍ରାସ ପାଇବା ସହ ବୀଜର ଦାମ ମିଳିବ ନାହିଁ । ଏପରି ଏକ ସ୍ଥିତି ଆସନ୍ନ ହେବାକୁ ଯାଉଥିଲା ବେଳେ କାର୍ଗିଲ କଂପାନିର ତେଲ ଉପରୁ ପ୍ରାୟ ୩୦ କୋଟି ଟଙ୍କା ବାର୍ଷିକ ହାରରେ ୬ ବର୍ଷ ପାଇଁ ୧୫୦ କୋଟି ଟଙ୍କା ଟିକସ ଛାଡ଼ିବା ପାଇଁ ସରକାର ବ୍ୟବସ୍ଥା କରିଛନ୍ତି । ଏସବୁ ସମ୍ଭବପର କାରଣ ବିଦେଶୀ କଂପାନୀମାନେ ଯେଉଁ କମିସନ ଦେବେ ତାହା ବିଦେଶରେ ଡ଼ଲାର ଜରିଆରେ ସୁରକ୍ଷିତ ରହିବ । କାର୍ଗିଲ କଂପାନୀକୁ ରିହାତି ଦେବାର ଯୁକ୍ତି ମଧ୍ୟ ଶୁଣିବାକୁ ମିଳୁଛି । ଓଡ଼ିଶାକୁ ଶିଳ୍ପୀକରଣ କରିବା ପାଇଁ ଏସବୁ ଅପରିହାର୍ଯ୍ୟ । ଓଡ଼ିଶାର ବହୁ ତେଲ କଳ, ତୈଳବୀଜ ଉତ୍ପାଦନ ବନ୍ଦ ହୋଇଗଲା ପରେ ପ୍ରାୟ ଦୁଇ ଲକ୍ଷ ତୈଳବୀଜ ଚାଷୀଙ୍କ ଜୀବିକା ଚାଲିଯିବ । ୧୯୯୩ରୁ ଓଡ଼ିଶାରେ ତୈଳବୀଜ ଉତ୍ପାଦନ ହ୍ରାସ ପାଇ ଚାଲିଛି ଦେଶର ଆମଦାନୀ ବୃଦ୍ଧି ଯୋଗୁଁ । କାର୍ଗିଲ କଂପାନୀ ୧୫୦ କୋଟି ଟଙ୍କାର ବିନିଯୋଗରେ ମାତ୍ର ୧୦୦ ଜଣଙ୍କୁ ପରୋକ୍ଷ ଓ ପ୍ରତ୍ୟକ୍ଷ ନିଯୁକ୍ତି ମିଳିଛି । ଏପରି ଶିଳ୍ପୀକରଣ ଓଡ଼ିଶାର ଦାରିଦ୍ର୍ୟ ବଢ଼ାଇବ ନା ପ୍ରଗତି କରିବ ?

ବର୍ତ୍ତମାନ ଓଡ଼ିଶା ସରକାରଙ୍କ କର ସଂଶୋଧନ ଆଇନ ବଳରେ ଶୁଖୁଆରେ ପ୍ରବେଶ କର ଲାଗୁକଲାବେଳେ ବଡ଼ ବଡ଼ ଟ୍ରାକ୍ଟର ଓ ମାଟିଖୋଳା ଯନ୍ତ୍ରରୁ ୨ ପ୍ରତିଶତ ବିକ୍ରିକର ହ୍ରାସ କରାଯାଇଛି । ଏସବୁ ବଡ଼ ବଡ଼ କୋଟିପତି ଠିକାଦାରମାନେ ଜାତୀୟ ରାଜପଥ ତଥା ପ୍ରଧାନମନ୍ତ୍ରୀ ସଡ଼କ କାମରେ ବ୍ୟବହାର କରି ଆମ ରାଜ୍ୟର ଗାଁ ମାନଙ୍କର ଶ୍ରମନିଯୁକ୍ତିକୁ ବେକାର ରଖୁଛନ୍ତି । ପୁଣି ଏହି ଯନ୍ତ୍ରପାତିରେ ରିହାତି ଦେବା ଅର୍ଥ ଓଡ଼ିଶାର ମାଟିର କାମରେ କାମ ପାଉନଥିବା ମୂଲିଆଙ୍କୁ ପାରିଶ୍ରମିକରୁ ବଞ୍ଚିତ କରି ଠିକାଦାରମାନଙ୍କ ସ୍ୱାର୍ଥରକ୍ଷା କରିବା । କାର୍ଯ୍ୟରେ ପ୍ରୋତ୍ସାହନ ଲାଭର କିଛି ଅଂଶ ମନ୍ତ୍ରୀ ଅଫିସରମାନଙ୍କ ପକେଟକୁ ନିଶ୍ଚିତ

Digitized by srujanika@gmail.com

ଯିବ । ଅନ୍ୟପଟେ ଆର୍ଥିକ ଅଭାବର କାରଣ ଦର୍ଶାଇ ଓଡ଼ିଶା ରାଜସ୍ୱ ବୃଦ୍ଧି ପାଇ ସ୍କୁଲ କଲେଜ ଛାତ୍ରଛାତ୍ରୀଙ୍କ ପରୀକ୍ଷା ଦେୟ ବୃଦ୍ଧି କରିବା କେଉଁ ବିବେକୀ କହି ପାରିବ କି ଏହା ନ୍ୟାୟୋଚିତ ବୋଲି ?

ଏସବୁ ସମ୍ଭବପର କେବଳ ଆମ ଦେଶରେ ଓ ଅଧିକ ଆମ ରାଜ୍ୟରେ । କାରଣ, ରାଜନୈତିକ ସ୍ତରରେ ପ୍ରତିବାଦର ସ୍ୱର ଅତି କ୍ଷୀଣ । ରାଜନୀତିରେ ଜୀବନ ନାହିଁ । ନହେଲେ ସମଗ୍ର ଓଡ଼ିଶାର ରାଜ୍ୟବାସୀ ମରୁଡ଼ିଗ୍ରସ୍ତ ହୋଇଥିଲାବେଳେ, ଏପରିକି ଚାଷୀ ଓ କୃଷି ଶ୍ରମିକ ଦାଦନ ଶ୍ରମିକ ହୋଇ ରାଜ୍ୟବାହାରେ ନିର୍ଯ୍ୟାତିତ ହେଉଥିବାବେଳେ ଓଡ଼ିଶା ବିଧାନସଭାରେ ମନ୍ତ୍ରୀ, ବିରୋଧୀଦଳ ନେତା ତଥା ବିଧାୟକମାନଙ୍କ ଦରମା, ଭତ୍ତା ବୃଦ୍ଧି ବିଲ୍ ବିନା ପ୍ରତିବାଦରେ ଗୃହୀତ ହୋଇନଥାନ୍ତା । ରାଜ୍ୟବାସୀଙ୍କ ଭିତରେ ବି ବିଦ୍ରୋହ ପରିପ୍ରକାଶ ହେଲାନାହିଁ । ରାଜନୈତିକ ସ୍ତରରେ ଆନ୍ଦୋଳନର ଆଭାସ ମଧ୍ୟ ମିଳିଲା ନାହିଁ । ଏହାର ମୂଳକାରଣ, ନାଗରିକସ୍ତରରେ ଚେତନା କମ୍ ଓ ଚେତନାଶୀଳ ନାଗରିକ ତଥା ଜନବାଦୀ ଗଣ ସଂଗଠନମାନଙ୍କ ଶକ୍ତି ମଧ୍ୟ ଅତି ସୀମିତ । କ୍ଷମତାସୀନ ରାଜନେତାମାନେ ମଧ୍ୟ ମୁଖ ଲଜ୍ଜା ଛାଡ଼ି ସାରିଲେଣି । ନଚେତ ମହାବାତ୍ୟାର ଦାରୁଣ ଆଘାତରୁ ମୁକ୍ତ ହୋଇନଥିବା ବେଳେ ୨୦୦୨ରେ ମରୁଡ଼ି ଓ ବନ୍ୟା ପ୍ରପୀଡ଼ିତ ଓଡ଼ିଶାବାସୀଙ୍କ ଝାଳବୁହା ଟିକସ ଓ ସେମାନଙ୍କ ମୁଣ୍ଡ ଉପରେ ବୋଝ ହେଉଥିବା ଋଣରୁ ନିର୍ବାଚିତ ପ୍ରତିନିଧିମାନେ ବର୍ଦ୍ଧିତ ଦରମା, ଭତ୍ତା ନେବାକୁ କୁଣ୍ଠବୋଧ କରିଥାନ୍ତେ । ତାହା ହେଲାନାହିଁ ।

ଓଡ଼ିଶାର ଗାଁ ଗହଳ ତଥା ଜଙ୍ଗଲ ଅଞ୍ଚଳରୁ ସଂଗୃହୀତ କେନ୍ଦୁପତ୍ର, ଖଲିପତ୍ର ତଥା ଲଘୁ ଜଙ୍ଗଲଜାତ ଦ୍ରବ୍ୟ ଉପରେ ବିକ୍ରୟ କର ଲାଗୁ ହୋଇଗଲା ଯାହା ଗରିବ ଲୋକଙ୍କ ଉତ୍ପାଦନ ତଥା ବିକ୍ରୟ ଉପରେ ପ୍ରଭାବ ପଡ଼ିବ । ଅଥଚ ରାଜ୍ୟ ସରକାର କୋକାକୋଲା ଉପରୁ ବିକ୍ରି ଟିକସ ଅତି କମରେ ବାର୍ଷିକ ୧୬ କୋଟି ଟଙ୍କା ହିସାବରେ ୫ ବର୍ଷ ପାଇଁ ୮୦ କୋଟି ଟଙ୍କା ଛାଡ଼ କରିଛନ୍ତି । କୁହାଯାଉଛି, କଂପାନୀ ସର୍ତ୍ତପାଳନ କରିଥିବା ଯୋଗୁଁ ଟିକସ ରିହାତି ଦିଆଯାଇଛି । କି କି ସର୍ତ୍ତ ସରକାର ଏପର୍ଯ୍ୟନ୍ତ କହିନାହାନ୍ତି । ନିର୍ବାଚନ ଓ ବ୍ୟକ୍ତିଗତ ପାଣ୍ଠି ପୂରଣ କରିବା ପାଇଁ ପ୍ରଧାନ ସର୍ତ୍ତ ହୋଇଥିବ ଏଥିରେ ସନ୍ଦେହ ନାହିଁ । ଏସବୁ ରିହାତି ବଡ଼ ବଡ଼ କଂପାନୀମାନଙ୍କୁ ଦିଆଯାଉଥିବାବେଳେ ରାଜ୍ୟ ସରକାର ଋଣ ନକଲେ ଅଚଳ ଅବସ୍ଥା ସୃଷ୍ଟି ହେଉଛି । ଓଡ଼ିଶା ବିକାଶ ରିପୋର୍ଟ (ନବକୃଷ୍ଣ ଚୌଧୁରୀ ବିକାଶ

Digitized by srujanika@gmail.com

ଅଧ୍ୟୟନ କେନ୍ଦ୍ର) ୨୦୦୨ ଅନୁଯାୟୀ ଓଡ଼ିଶାର ସ୍ଥିତି ଏପରି ହେଲାଣି ଯେ ବିକାଶ କାର୍ଯ୍ୟ ପାଇଁ ୧୦୦ ଟଙ୍କା ଲଗାଇବାକୁ ହେଲେ ୪୨୪ ଟଙ୍କା ଋଣ ଆଣିବାକୁ ପଡୁଛି । ପୁଣି ବିଦ୍ୟାଳୟ ବନ୍ଦ ହୋଇଯାଉଛି ଶିକ୍ଷକମାନଙ୍କୁ ଦରମା ଦେବାକୁ ପଇସା ନାହିଁ ବୋଲି । ୧୫ ବର୍ଷ ଧରି ହଜାର ହଜାର ଶିକ୍ଷକ ଦରମା ନପାଇ ଭୋକିଲାରେ ଅଛନ୍ତି । ତାଙ୍କୁ ପଚାରେ କିଏ ?

ଓଡ଼ିଶାର ଧାନର ଅଭାବୀ ବିକ୍ରି ଯୋଗୁଁ ଚାଷୀଙ୍କ ଆର୍ଥିକ ମାନଦଣ୍ଡ ହ୍ରାସ ପାଇ କ୍ରୟଶକ୍ତି ନଷ୍ଟ ହେଉଥିବାବେଳେ ଚାଷୀର ଉତ୍ପାଦନ ତଥା ଖାଉଟୀ ଜିନିଷ ଉପରେ ପ୍ରବେଶ କର ବସାଇ ଅଧିକ ବୋଝ ଲଦିବା ବଡ଼ ବଡ଼ କଂପାନୀଙ୍କୁ ଛାଡ଼ କରି ରାଜସ୍ୱ ହରାଇବା ଅରାଜକତାର ଏକ ନମୁନା । ସଂକ୍ଷେପରେ କହିଲେ : ''ଶୁଖୁଆ ଗୁଡ଼କୁ ବାନ୍ଧି କୋକାକୋଲା କାର୍ଗିଲକୁ ଖୋଲାରେ ଛାଡ଼ୁଛନ୍ତି'' । ଅର୍ଥାତ ନିରୀହ ଗରିବ ଲୋକଙ୍କୁ ଥାନା ହାଜତରେ ରଖି ବଡ଼ ଘରର ଅପରାଧୀଙ୍କୁ ଛାଡ଼ି ଦେବା ଯାହା ଆମ ରାଜ୍ୟର ରାଜୁତିର ଆର୍ଥିକ ନୀତି ତାହା ।



Digitized by srujanika@gmail.com

# ପେପ୍‌ସି–କୋକା ହଟାଅ ସ୍ୱାଧୀନତା ବଞ୍ଚାଅ

୧୯୮୫ରୁ ବିତର୍କ ଓ ବିରୋଧ ଆରମ୍ଭ ହେଲାଣି ବିଦେଶୀ ମୃଦୁପାନୀୟ କଂପାନୀମାନଙ୍କୁ ପୁଣିଥରେ ପ୍ରବେଶ କରିବାକୁ ନଦେବାପାଇଁ, କିନ୍ତୁ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧି ବହୁରାଷ୍ଟ୍ରୀୟ କଂପାନୀ ପେପ୍‌ସି ଦ୍ୱାରା ପ୍ରଭାବିତ ହୋଇ ଦୁଆର ଖୋଲିଦେଲେ ପଞ୍ଜାବ ଚାଷୀଙ୍କ ସ୍ୱାର୍ଥରକ୍ଷା ନାମରେ । ପେପ୍‌ସି ସହ ଚୁକ୍ତିଥିଲା ପଞ୍ଜାବର ଚାଷୀଙ୍କ ୨୫% ଫଳ ପନିପରିବାକୁ ବ୍ୟବହାର କରି ଖାଦ୍ୟକରଣ ଶିଳ୍ପ ସ୍ଥାପନ କରିବ ଏବଂ ଅତିକମ୍‌ରେ ୫୦ ହଜାର ନୂଆ କର୍ମନିଯୁକ୍ତି ସେହି ରାଜ୍ୟବାସୀଙ୍କୁ ଦେବ । କଂପାନୀର ମୋଟ ପୁଞ୍ଜିବିନିଯୋଗର ୭୫% ଖାଦ୍ୟ ଓ କୃଷି ପ୍ରକରଣରେ ଖର୍ଚ୍ଚ ହେବାବେଳେ ମାତ୍ର ୨୫% ଥଣ୍ଡାପାନୀୟରେ ଲାଗିବ ବୋଲି ଚୁକ୍ତିନାମାରେ ଲେଖାଯାଇଥିଲା, କିନ୍ତୁ ପୃଥିବୀର ବିଭିନ୍ନ ଦେଶକୁ ଯାଇ ଲୁଟ୍‌କରି ଆମେରିକା ସାମ୍ରାଜ୍ୟବାଦର ଦଲାଲ ସାଜିଥିବା ଏହି କଂପାନୀମାନଙ୍କ ପାଇଁ କୌଣସି ଚୁକ୍ତି, କାନୁନ ବାଧକ ହୋଇନପାରେ । ଯେହେତୁ ସାର୍ବଭୌମଦେଶମାନଙ୍କର ରାଜନେତାମାନେ ଉକ୍ତ କଂପାନୀମାନଙ୍କର ଦଲାଲି କାର୍ଯ୍ୟରେ ନିୟୋଜିତ ହୋଇପାରନ୍ତି । ୧୯୮୫ ଅଗଷ୍ଟ ୧୫ଦିନ ହିଁ ପେପ୍‌ସିକୁ ଅନୁମତି ମିଳିଥିଲା ଆଜାଦୀ ଭାରତକୁ ଆସିବା ପାଇଁ । ସେ ନିଜକୁ ଆଜାଦୀ ଘୋଷଣା କରି ଚୁକ୍ତିନାମାକୁ ଅଳିଆ ଟୋକେଇରେ ଫୋପାଡ଼ି ନିଜର ରାଜତ୍ୱକୁ ଜାହିର କଲା କେବଳ ଥଣ୍ଡା ପାନୀୟକୁ ବେପାର କରିବାପାଇଁ । ପାନ ଦୋକାନରେ ବିକ୍ରିକରୁଥିବା ବ୍ୟକ୍ତିଙ୍କୁ ନିଯୁକ୍ତି ସଂଖ୍ୟା ଦର୍ଶାଇଲା । ପେପ୍‌ସିର ପ୍ରତିଦ୍ୱନ୍ଦୀ କୋକାକୋଲା ପୁଣି ଫେରି ଆସିଲା ଯାହାକୁ ୧୯୭୭ରେ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇଙ୍କ ସରକାର ଦେଶରୁ ତଡ଼ି ଦେଇଥିଲେ । ସେହି ତଡ଼ିବା ମୂଳରେ କାରଣ ଥିଲା କୋକାକୋଲା ଦୀର୍ଘ ୪୦ ବର୍ଷ ରହିବା ପରେ ବି ତାର ରାସାୟନିକ ଫର୍ମୁଲାକୁ ପ୍ରକାଶ କରିବାକୁ ମନକଲା ଓ ଲାଭର ୬୦% ଭାରତରେ ହିଁ ବିନିଯୋଗ କରିବାକୁ ରାଜିହେଲା ନାହିଁ । ୪୦ ଦଶକରେ ଭାରତକୁ କୋକାକୋଲା ଓ ପେପ୍‌ସି ଆସିଥିଲେ । କିନ୍ତୁ ପେପ୍‌ସି ପ୍ରତିଦ୍ୱନ୍ଦିତାରେ ହାର ମାନି

Digitized by srujanika@gmail.com

ଫେରିଯାଇଥିଲା । କୋକାକୋଲା ୧୯୭୭ରେ ହଟିଯିବା ପରେ ଭାରତର ବିଭିନ୍ନ ରାଜ୍ୟରେ ସ୍ଥାନୀୟ ଓ ଜାତୀୟ ସ୍ତରରେ ପ୍ରାୟ ଶତାଧିକ ଦେଶୀ ମୃଦୁପାନୀୟ ବଜାରରେ ଦେଖିବାକୁ ମିଳିଲା । ଏହାଦ୍ୱାରା ସ୍ଥାନୀୟ ରୋଜଗାର ବୃଦ୍ଧି ସହ ଦେଶରୁ ଚାଲିଯାଉଥିବା ଅର୍ଥ (ପୁଣି ଡ଼ଲାରରେ) ବଞ୍ଚି ରହିଗଲା । କିନ୍ତୁ ବିଗତ ୧୮ ବର୍ଷ ମଧ୍ୟରେ କୋକା ପେପ୍‌ସିଙ୍କ ବାଘ ମୁହଁରେ ସମସ୍ତ ଭାରତୀୟ ମୃଦୁପାନୀୟ ଗିଳି ପଡ଼ିଲେ । ଆଜି ସମଗ୍ର ଦେଶର ବଜାରରେ ଏହି ଦୁଇ କଂପାନୀଙ୍କ ବିଭିନ୍ନ ବ୍ରାଣ୍ଡ ନାମରେ ଲୁଟର ପ୍ରତିଯୋଗିତା ଚାଲିଛି । ବିଜ୍ଞାପନ ଜରିଆରେ ଶହ ଶହ କୋଟି ଖର୍ଚ୍ଚ କରି ମିଥ୍ୟା ପ୍ରଚାର ଚାଲିଛି । ପେପ୍‌ସି କୋକାକୋଲା ଆଜି ଯୁବକ ଯୁବତୀ, ବାହାଘର, ବନ୍ଧୁ ଚର୍ଚ୍ଚା, ପାର୍ଟିର ଷ୍ଟାଟାସ ସିମ୍ବଲ ହୋଇଯାଇଛି । ଏହାର ସୁଯୋଗ ନେଇ କଂପାନୀମାନଙ୍କ ବିଷଥିବା ପାଣି ସ୍ୱାସ୍ଥ୍ୟକର ବୋଲି ଆଜି କୋଟି କୋଟି ଭାରତୀୟ ଶିଶୁଠାରୁ ଆରମ୍ଭ କରି ବୃଦ୍ଧମାନଙ୍କ ରକ୍ତକୁ ଶୋଷି ନେଉଥିବାବେଳେ ଆମ ସ୍ୱଦେଶୀ ସରକାରମାନେ ଏହି କଂପାନୀମାନଙ୍କୁ ଆମ ପ୍ରଗତି ଓ ବିକାଶର ପୃଷ୍ଠପୋଷକ ବୋଲି ଧରିନେଇଛନ୍ତି । ମିଠା ପାନୀୟରୁ ଖାଲି ପାଣି ବୋତଲ ହଜାର ହଜାର କୋଟି ଟଙ୍କାର ବ୍ୟବସାୟକୁ ବ୍ୟାପକ କରିବା ପାଇଁ ବର୍ତ୍ତମାନ ଆମ ଦେଶର ଜଳଯୋଗାଣ ନାମରେ ଜଳସଂପଦର ମାଲିକ ହେବାକୁ ବସିଲେଣି । କେନ୍ଦ୍ର ଓ ରାଜ୍ୟ ସରକାର ଏଥିପାଇଁ ଜଳନୀତି ବଦଳାଇ ସାରିଲେଣି । ଏହି ବିଦେଶୀ କଂପାନୀମାନଙ୍କୁ ହଟାଇବା ପାଇଁ ଆଜାଦୀ ବଞ୍ଚାଅ ଆନ୍ଦୋଳନ ଠାରୁ ଆରମ୍ଭ କରି ବିଭିନ୍ନ ଜନ ସଂଗଠନ ଓ ସାମ୍ରାଜ୍ୟବାଦ ବିରୋଧୀ ରାଜନୈତିକ ସଂଗଠନମାନେ ପ୍ରତିରୋଧ କରି ଆସୁଥିଲେ ମଧ୍ୟ ଶୋଷଣର ସତ୍ୟତାକୁ ସ୍ୱୀକାର କରାଯାଉନଥିଲା । ଆଜି ସେଣ୍ଟର ଫର ସାଇନ୍‌ସ ଏଣ୍ଡ ଏନଭାଇରୋଁମେଣ୍ଟ ୩ ମାସ ପୂର୍ବେ ପିଇବା ପାଣିରେ ଓ ବର୍ତ୍ତମାନ ମୃଦୁ୍ୟପାନୀୟ ବୋତଲରେ ବିଷ ଧରା ପକାଇବା ପରେ ଦେଶରେ ଆଲୋଡ଼ନ ସୃଷ୍ଟି ହୋଇଛି । ଜନଚେତନା ବଢ଼ିଛି । କିନ୍ତୁ ଏହାକୁ ମଧ୍ୟ ଚପାଇଦେଇ ପୁଣି ବିଷକୁ ଅମୃତ ବୋଲି ପ୍ରମାଣିତ କରି ବେପାର ଚାଲୁ ରଖିବାକୁ ପ୍ରକ୍ରିୟା ଆରମ୍ଭ ହୋଇଯାଇଛି ।

ସିଏସ୍‌ଇ ପରୀକ୍ଷାଗାର କହିଲା ଆମେରିକାରେ ମିଳୁଥିବା ବୋତଲରେ ବିଷ ନାହିଁ, କିନ୍ତୁ ଭାରତରେ ଏହା ଅତିମାତ୍ରାରେ ଅଛି । ୧୨ଟି ବ୍ରାଣ୍ଡର ବୋତଲରୁ ମିଳୁଥିବା ତଥ୍ୟ ହେଲା – ୟୁରୋପୀୟମାନ ତୁଳନାରେ – ୧) ପେପ୍‌ସିର କୀଟନାଶକ ବିଷ ୩୭ ଗୁଣ, ୨) କୋକାକୋଲାରେ ୪୫ ଗୁଣ, ୩) ମାଉଣ୍ଟନ ଡ୍ୟୁରେ ୨୮ଗୁଣ, ୪) ଡାଇଟ୍ ପେପ୍‌ସିରେ ୧୪ ଗୁଣ, ୫) ମିରିଣ୍ଡା ଅରେଞ୍ଜରେ

Digitized by srujanika@gmail.com

୩୯ ଗୁଣ, ୬) ମିରିଣ୍ଡା ଲେମନରେ ୭୦ ଗୁଣ, ୧୦) ଲିମିକାରେ ୩୦ ଗୁଣ, ୧୧) ସ୍ପ୍ରାଇଟରେ ୧୧ ଗୁଣ, ୧୨) ଥମସ୍ ଅପ୍‌ରେ ୨୨ ଗୁଣ ଅଧିକ ବିଷର ପରିମାଣ ରହିଛି ।

ଏ ମଧ୍ୟରେ ପେପ୍‌ସି ଦାବି କରୁଛି ଯେ, ବାଙ୍ଗାଲୋରସ୍ଥିତ ବିମ୍‌ଟା ପରୀକ୍ଷାଗାର ଦ୍ୱାରା ନିୟମିତ ଯାଞ୍ଚ ହେଉଛି କିନ୍ତୁ ଏହି ପରୀକ୍ଷାଗାରର ଅଧ୍ୟକ୍ଷ ଡକ୍ଟର ଏସପି ଓ୍ୱାସିରେଡ୍ଡି ଖବର କାଗଜକୁ କହିଛନ୍ତି ଯେ ପେପ୍‌ସିର ୪୦ଟି କାରଖାନା ମଧ୍ୟରୁ ମାତ୍ର ୨ଟିର ନମୁନା ଯାଞ୍ଚ ପାଇଁ ଆସିଥିଲା । ଏପରି ମିଥ୍ୟାକୁ ସତ୍ୟରେ ପରିଣତ କରି ଯେଉଁ ଡିଡ଼ିଟି ଦ୍ୱାରା ମଶା ମରାଯାଏ, ତାହା ଏହି କଂପାନୀମାନଙ୍କ ଦ୍ୱାରା ଭାରତ ମଣିଷମାନଙ୍କୁ ମଶା ବୋଲି ଭାବି ଥଣ୍ଡା ପାନୀୟରେ ଦିଆଯାଉଛି । ଡ଼ିଡ଼ିଟି ସହ ଆର୍ଗନୋକ୍ଲୋରିନ୍ ଓ ଆର୍ଗେନଫାରଫୋସ ପରି ବିଷ ପଦାର୍ଥ ରହିଛି ପାନୀୟରେ । ଆମେରିକାରେ ଜଣେ ବୈଜ୍ଞାନିକ ମାର୍କ ପେଣ୍ଡଗ୍ରାଷ୍ଟ "ଫାର ଗ୍ରାଣ୍ଡ୍ କଣ୍ଟ୍ରି ଏଣ୍ଡ୍ କୋକାକୋଲା" ନାମକ ବହିରେ ପ୍ରକାଶ କରିଛନ୍ତି ଯେ - କୋକାକୋଲାରେ ସାଇଟ୍ରେଟ କୈଫିନ, ଭେନିଲା, ଫ୍ଲେଭରିଙ୍ଗ୍ ଏଫଇ କୋକ, ସାଇଟ୍ରିକ ଏସିଡ୍, ଲେମ୍ବୁରସ, ଚିନି ଓ ପାଣି ସହିତ କିଛି ଅଲକାହଲ (ମଦ) ମଧ୍ୟ ମିଶୁଛି । ପେପ୍‌ସି ତାର ଟିଣ ଡ଼ବାରେ ପାନୀୟ ସ୍ୱାସ୍ଥ୍ୟକର ବୋଲି କୋକାକୋଲାଠାରୁ ଆଗକୁ ଯିବାପାଇଁ ପ୍ରଚାର କଲାବେଳେ କୋକାକୋଲା ଏକ ନୂଆ ଡାଇଟ୍ କୋକ ବଜାରକୁ ଛାଡ଼ିଛି । ଏଥିରେ ଚିନି ନାହିଁ ବୋଲି କହି ଡାଇବେଟିସ୍ ରୋଗୀ ପାଇଁ ଉପଯୁକ୍ତ ବୋଲି କହୁଛି । କିନ୍ତୁ ଏଥିରେ ଥିବା ଏସ୍ପରଟେନ କାରଣରୁ କୋକା ପିଉଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ୪୦% ପ୍ରତିଶତ ଲୋକଙ୍କ ମୁଣ୍ଡବ୍ୟଥା, ଝିମିଝିମା ପରି ଅନେକ ରୋଗର ଶିକାର ହେଉଛନ୍ତି ବୋଲି ଏକ ଅଧ୍ୟୟନରୁ ଜଣାପଡ଼ିଛି । ଆମେରିକାର ପ୍ରସିଦ୍ଧ ଦନ୍ତ ଚିକିତ୍ସକ ଡ଼ା. ରାବର୍ଟ ଡେଜ ଏବଂ ଦନ୍ତ ଚିକିତ୍ସା ବିଜ୍ଞାନର ପତ୍ରିକା "କ୍ଲିନିକଲ ରିସର୍ଚ୍ଚ ନିୟୁଜ ଲେଟର'ର ସଂପାଦକ ଡା. ଜାର୍ଡ଼ନ କ୍ରିଷ୍ଟେସନ୍ ସ୍ପଷ୍ଟଭାବରେ କହିଛନ୍ତି ଯେ ଥଣ୍ଡାପାନୀୟ (ମିଠା କାର୍ବୋନେଟେଡ଼ ଜଳ) ଦାନ୍ତର ବଡ଼ ଶତ୍ରୁ ।

ଏସବୁ ତଥ୍ୟ ସତ୍ତ୍ୱେ ପେପ୍‌ସି କୋକାକୋଲାକୁ ଆମ ଦେଶରୁ ବାହାର କରିବାକୁ ସରକାର ଚାହୁଁନାହାନ୍ତି କିମ୍ବା ମୁଖ୍ୟ ବିରୋଧୀ ଦଳ କଂଗ୍ରେସ ଦଳ ମଧ୍ୟ ଦାବି କରୁନାହିଁ । ସେମାନେ ଆମକୁ ନଚାଇବାରେ ସକ୍ଷମ ହେଉଛନ୍ତି । ପେପ୍‌ସି ଆସିଛି ସୁଦୂର ଆମେରିକାର ନ୍ୟୁୟର୍କରୁ ଏବଂ କୋକାକୋଲା ଆସିଛି ସେହି ଦେଶର ଆଟଲାଣ୍ଟରୁ, ତାର ଜନ୍ମ ୧୮୮୫ରୁ । ମୋଟାମୋଟି ଭାବେ ପେପ୍‌ସି ୦.୦୧୮/ l

Digitized by srujanika@gmail.com

ଅର୍ଥାତ ୩୬ ଗୁଣ ଏବଂ କୋକାକୋଲାର ୦.୦୧୫ /l ଅର୍ଥାତ ୩୦ ଗୁଣ ରାସାୟନିକ ବିଷ ଅଧିକ ଥିବାବେଳେ ୟୁରୋପିୟନ ମାନ ଅନୁଯାୟୀ ମୋଟାମୋଟି ପେଷ୍ଟିସାଇଡ଼ର ପରିମାଣ ୦.୦୦୬୮/l ରହିଲେ ଚଳିବ ବୋଲି ଧାର୍ଯ୍ୟ ହୋଇଛି । କିନ୍ତୁ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ସଂସଦରେ ବିଷ ଅମୃତ ବୋଲି ସାର୍ଟିଫିକେଟ ଦେଇଦେଲେ, ଏହି ବିଷ ଖାଇଲେ ଭାରତୀୟମାନେ ମରିବେ ନାହିଁ । ଏହି ସାର୍ଟିଫିକେଟ ପାଇଁ କୋଟି କୋଟି ଟଙ୍କା ଚାନ୍ଦା ସହ ୱାସିଂଟନରୁ ଫତୁଆ ନିଶ୍ଚୟ ଆସିଥିବ । ଆମ ଗଣତନ୍ତ୍ରକୁ ତଣ୍ଟି ଚିପିଦେବାର ଏହା ଏକ ନମୁନା ।

ପେପ୍‌ସି କୋକାର ଲୁଟରେ ଆମ ପାଣିବି ବିଷ ହେଉଛି । ଚାଷୀର ପାଣି ମଧ ଲୁଟ ହେଉଛି । ସାଧାରଣ ଜନତା ଜଳରୁ ଅଧିକାର ହରାଉଛି । ଅଥଚ ଭାରତ ସରକାରଙ୍କ ବିଦେଶୀ ପ୍ରୀତିରେ କେରଳର ପାଲକାଡ଼ ଜିଲ୍ଲାର ପ୍ଲାଚିମେଡ଼ାରେ କୋକାକୋଲା ଚାଷୀଙ୍କ ପାଣି ନେବା ସହ ମାଟିକୁ ବିଷାକ୍ତ କରି ସାରିଲାଣି । ସେହିପରି ତାମିଲନାଡୁର ଭବାନୀ ନଦୀରୁ ଦୈନିକ ଜଳନେବା ଦ୍ୱାରା ଲୋକେ ପିଇବା ପାଣିରୁ ବଞ୍ଚିତ । ଆଜି ଆମ ବଜାରରେ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ରାଜତ୍ୱ ।

ଆମ ଦେଶରେ ଯେଉଁଠି ପ୍ରତ୍ୟେକ ଶିଶୁ ଦୁଗ୍ଧ ଅଧା ଲିଟର ପିଇବାକୁ ପାଏ ନାହିଁ ଏବଂ ତାର ପରିବାର କିଣିପାରେ ନାହିଁ, ସେହି ଦେଶରେ କ୍ଷୀର ଲିଟର ୮ରୁ ୧୦ ଟଙ୍କାରେ ବିକ୍ରିହେଲାବେଳେ ପାଣି ବୋତଲର ଦାମ ୧୦ ଟଙ୍କାରେ ବିକ୍ରି ହେଉଛି । ତାହା ମଧ ୨୦୦୧ ବର୍ଷରେ ମୋଟ ୬୫୪ କୋଟି ମୃଦୁପାନୀୟ ବୋତଲ ବିକ୍ରି ହୋଇଛି ବୋଲି ହିସାବ କରାଯାଇଛି । ଅର୍ଥାତ ଗୋଟିଏ ବୋତଲର ଦାମ ୧୦ ଟଙ୍କା ହେଲେ ୬୫୪୦ କୋଟି ଟଙ୍କାର କାରବାର ମଧରୁ ୭୫ ଭାଗ ଅର୍ଥାତ ପ୍ରାୟ ୫ ହଜାର କୋଟି ଟଙ୍କା ସାଧାରଣ ଲୋକଙ୍କ ପକେଟରୁ ବିଦେଶକୁ ଚାଲିଯାଉଛି । ପୁଣି ପାଣିରୁ ହଜାର ହଜାର କୋଟି ଟଙ୍କା ମୁନାଫା ନେବାକୁ ବିଦେଶୀ କଂପାନୀମାନେ ହାଜର ହେଲେଣି । ଆମ ଓଡ଼ିଶା ସରକାର ଶୁଖୁଆ,ଗୁଡ଼ ଓ ଓମଫେଡ଼ ଦୁଗ୍ଧରେ ପ୍ରବେଶ ଟିକ୍‌ସ, ଖଲିପତ୍ର, କେନ୍ଦୁପତ୍ର ପରି ଜଙ୍ଗଲଜାତ ଦ୍ରବ୍ୟ ଉପରେ ବିକ୍ରିକର ଆଦାୟ କରିବାକୁ ନିଷ୍ପତ୍ତି ନେବାବେଳେ କୋକାକୋଲା ପେପସି ଉପରୁ ୫ ବର୍ଷ ପାଇଁ ବିକ୍ରି କର ଛାଡ଼ କରିବା କେଉଁ ସ୍ୱାଧୀନତାର ଫଳ ? ସତରେ ଆମ ଅର୍ଥମନ୍ତ୍ରୀ, ମୁଖ୍ୟମନ୍ତ୍ରୀ କେତେ ପାଇଥିବେ ଲୋକେ ଅନୁସନ୍ଧାନ କରି ନପାରିଲେ ଅନୁମାନ କରିବେ କି ? ଏକଥା ମଧ ଅନୁସନ୍ଧାନ କରି ହିସାବ ନେବା ଏକାନ୍ତ ଜରୁରୀ ଯାହାଦ୍ୱାରା ଆମ ଦେଶର ବଡ଼ ଅଫିସର, ମନ୍ତ୍ରୀ, ରାଜନେତାମାନଙ୍କ

Digitized by srujanika@gmail.com

ପୁଅ ଝିଅ କ୍ୱାଇଁ ପରି ପରିବାରର ସଦସ୍ୟମାନେ ପେପ୍ସି କୋକାକୋଲା କଂପାନୀର ବିଭିନ୍ନ ପଦପଦବୀ ଓ ଲାଭଦାୟକ ଏଜେନ୍ସିରେ ଥିବେ ଜଣାପଡ଼ିବ । କାରଣ ସ୍ୱାଧୀନତା କେବଳ ତାଙ୍କରି ପାଖରେ, ଆଉ ଆମେ ସମସ୍ତେ ପରାଧୀନତା ଆଡ଼କୁ ନା ! ଆମ ସ୍ୱାଭିମାନ କହୁଛି, ଏମାନଙ୍କୁ ଧିକାର କରିବାକୁ । ପେପ୍‌ସି କୋକା ହଟାଅ, ସ୍ୱାଧୀନତା ବଞ୍ଚାଅ ଅଭିଯାନ ଏକମାତ୍ର ବାଟ ।



Digitized by srujanika@gmail.com

# ବିଶ୍ୱବାଣିଜ୍ୟ ସଙ୍ଗଠନରେ ଚଞ୍ଚକତା
## ଦୋହାରୁ କାନ୍‌କନ୍ ଓ ହଂକଂ ସମ୍ମିଳନୀ ପର୍ଯ୍ୟନ୍ତ

୧୯୯୦ ଦଶକରେ ଖୋଲାବଜାର ଅର୍ଥନୀତି, ଉଦାରୀକରଣ ଓ ଘରୋଇକରଣର ମୁଖ୍ୟ ଉପଲବ୍ଧି ହେଲା ଗାଟ୍‌ର ନୂତନ ସଂସ୍କରଣ ସହ ବିଶ୍ୱ ନିୟନ୍ତ୍ରଣର ଦଣ୍ଡଧାରୀ ବିଶ୍ୱ ବାଣିଜ୍ୟ ସଙ୍ଗଠନର ସୃଷ୍ଟି । କେବଳ ଦେଶ ଦେଶ ମଧ୍ୟରେ ବାଣିଜ୍ୟ କାରବାରକୁ ଶୃଙ୍ଖଳିତ ଓ ସନ୍ତୁଳିତ କରିବା ପ୍ରତ୍ୟେକ ଦେଶର ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟତାକୁ ବଜାୟ ରଖି ବିଶ୍ୱରେ ଏକ ସମତାଭିତ୍ତିକ ବ୍ୟବସାୟ ନୀତିକୁ ଯେକୌଣସି ବ୍ୟକ୍ତି ବା ସଙ୍ଗଠନ ସ୍ୱାଗତ କରିପାରେ, କିନ୍ତୁ ବେପାର ନାମରେ ବିଭିନ୍ନ ଗରିବ ବିକାଶଶୀଳ ଦେଶମାନଙ୍କ କୃଷି, ସଂସ୍କୃତି, ଜୀବିକା ତଥା ଆର୍ଥିକ ଓ ସାମାଜିକ ନୀତିକୁ ଜନସମାଜର ଇଚ୍ଛା ବିରୋଧରେ ବଦଳାଇବା ପ୍ରକ୍ରିୟା ଓ ଧନୀ ଦେଶମାନଙ୍କର ଆଧିପତ୍ୟ ବିସ୍ତାର ସହ କୂଟନୈତିକ ଚାଲ୍‌ବାଜିର ପ୍ରୟୋଗ ଦ୍ୱାରା ବିଶ୍ୱ ବାଣିଜ୍ୟ ନୀତି ଓ ସଙ୍ଗଠନ ମାତ୍ର କେତୋଟି ମୁଷ୍ଟିମେୟ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ହାତରେ ଘାତକ ଅସ୍ତ୍ର ରୂପେ ବ୍ୟବହୃତ ହୋଇଯାଇଛି । ୧୯୮୬ ଉରୁଗୁଏଠାରେ ଅନୁଷ୍ଠିତ ଗାଟ୍ ଆଲୋଚନାରୁ ବିଶ୍ୱ ବାଣିଜ୍ୟ ସଙ୍ଗଠନ ହେବା ଯାଏଁ ଆମେରିକା ଓ ୟୁରୋପୀୟ ସଙ୍ଘ ଆଗରେ ଭାରତ ପରି ଦେଶମାନଙ୍କ ସରକାରମାନେ ଆତ୍ମସମର୍ପଣ ସହ ବିଭିନ୍ନ ସର୍ତ୍ତକୁ ସ୍ୱୀକାର କରି ଦସ୍ତଖତ ଦେଇଛନ୍ତି । ଆଜି କୁହାଯାଉଛି, ଏହା ଜଗତୀକରଣର ଏକ ଅପରିହାର୍ଯ୍ୟ ଅଙ୍ଗ ଓ ବିକଳ୍ପହୀନ । କିନ୍ତୁ ଅସଲରେ ଏହି ଦେଶମାନେ ବିଗତ ଦିନର ବିଶ୍ୱ ବାଣିଜ୍ୟ ସଙ୍ଗଠନର ଜବରଦସ୍ତ ( ସନ୍ତ୍ରାସବାଦ) ନୀତିରେ ଭୀତତ୍ରସ୍ତ ହୋଇ ଦୟାର ପାତ୍ର ହେବା ପାଇଁ ବିଭିନ୍ନ ସମୟରେ ହେଉଥିବା ନୀତି ନିର୍ଦ୍ଧାରଣ ସମୀକ୍ଷା ବୈଠକରେ ଗୁହାରି କରୁଛନ୍ତି । କିନ୍ତୁ ଶୁଣୁଛି କିଏ ?

ଆଜି ବାଣିଜ୍ୟ କାରବାରକୁ ନେଇ ବିଶ୍ୱ ବାଣିଜ୍ୟ ସଙ୍ଗଠନ ସବୁଦେଶକୁ ଖୋଲା ବଜାର ପାଇଁ ଦୁଆର ଖୋଲିଦେବାକୁ କହୁଛି । କିନ୍ତୁ ମୂଳ ପ୍ରଶ୍ନ କିଏ କାହା ପାଇଁ ଖୋଲିବ ? ଏହାର ଉତ୍ତରରେ ବାଛବିଚାର ଓ ଚଞ୍ଚକତା ଭରି ରହିଛି ।

Digitized by srujanika@gmail.com

ଧନୀ ବିକଶିତ ଦେଶ ଆମେରିକା ତା ବଜାର ଭିତରକୁ ଭାରତୀୟ ବସ୍ତ୍ର ସାମଗ୍ରୀକୁ କଟକଣା ଜାରି କରିପାରୁଛି ବାଳଶ୍ରମିକ ଓ ପରିବେଶଗତ କାରଣ ଦର୍ଶାଇ । କିନ୍ତୁ ଭାରତର ବଜାରକୁ ଆମେରିକାର ଯେକୌଣସି ସାମଗ୍ରୀ ଖୋଲାରେ ଆସିବାକୁ ଆଇନ ପରିବର୍ତ୍ତିତ ହୋଇଯାଉଛି । ୧୯୭୦ର ଭାରତୀୟ ସତ୍ତ୍ୱାଧିକାର ଆଇନ ଖତମ ହୋଇଗଲା । କୃଷିକୁ ବାଣିଜ୍ୟ ସର୍ତ୍ତ ଭିତରକୁ ନ ଆଣିବା ପାଇଁ ହେଉଥିବା ପ୍ରତିବାଦ ଦୁର୍ବଳ ହୋଇଗଲା ଯେଉଁଦିନ ଫ୍ରାନ୍ସ ଓ ଜାପାନ୍ ନିଜ ସ୍ୱାର୍ଥ ପାଇଁ ଆମେରିକା ସହିତ ସାଲିସ କରିଦେଲେ । କିନ୍ତୁ ତା ପରେ ବ୍ରାଜିଲ ସହ କାନ୍ଧ ମିଳାଇ ଭାରତ ଯଦି ନେତୃତ୍ୱ ନେଇଥାନ୍ତା, ତୃତୀୟ ବିଶ୍ୱର ଅନେକ ରାଷ୍ଟ୍ର ସହଯୋଗ କରିଥାନ୍ତେ ନିଜ ନିଜ ସ୍ୱାଭିମାନ ଓ ସ୍ୱାଧୀନତାର ସୁରକ୍ଷା ପାଇଁ । ଆମ ଦେଶର ବିଭିନ୍ନ ସମୟର ଭିନ୍ନ ଭିନ୍ନ ସରକାରମାନେ ସାମ୍ରାଜ୍ୟବାଦୀ ଶକ୍ତି ଆଗରେ ମୂଳଚାଲ କରିବା ପାଇଁ ସାହସ ନକରି ଚାପ ଆଗରେ ନିଜଦେଶର ସ୍ୱାର୍ଥକୁ ବଳି ଦେଇଛନ୍ତି । ଆମଦେଶର କୃଷି, ଖାଦ୍ୟ, ସ୍ୱାସ୍ଥ୍ୟ ଓ ଶିକ୍ଷାରେ ଥିବା ରାଷ୍ଟ୍ରର ଜନମଙ୍ଗଳ ଦାୟିତ୍ୱକୁ ହଟାଇବା ପାଇଁ ବିଶ୍ୱ ବାଣିଜ୍ୟ ସଙ୍ଗଠନ ସର୍ତ୍ତାବଳୀକୁ କେନ୍ଦ୍ରକରି ବାଧ କରୁଛି । ଆମଦେଶର ଚାଷୀକୁ ଜଳସେଚନ, ବିହନ କିମ୍ବା କୃଷି ଉପକରଣରେ ରିହାତି କିମ୍ବା ଫସଲର ସହାୟକ ମୂଲ୍ୟ ଦିଆଯିବ କି ନାହିଁ ଏବଂ ଆମ ଦେଶୀୟ ଉତ୍ପାଦନର ସୁରକ୍ଷା ପାଇଁ ଆମଦାନୀ କଟକଣା ରହିବ କି ନାହିଁ, ଆମର ସରକାର ନିଷ୍ପତ୍ତି ନେବା ସ୍ଥିତିରେ ନାହାନ୍ତି । ସବୁକିଛି ନିର୍ଦ୍ଦେଶନା ଓ ନିୟନ୍ତ୍ରଣ ଆସୁଛି ବିଶ୍ୱ ବାଣିଜ୍ୟ ସଙ୍ଗଠନରୁ ଓ ବିଶ୍ୱ ବ୍ୟାଙ୍କରୁ । ୨୦୦୦ ଅପ୍ରିଲରୁ ୨୦୦୧ ମାର୍ଚ୍ଚ ଶେଷ ସୁଦ୍ଧା ଭାରତୀୟ ବଜାରକୁ ୧୪୨୯ଟି ବିଦେଶୀ ସାମଗ୍ରୀ ବିନା କଟକଣା ଓ ଶୂନ୍ କର ସହ ଆସିବାକୁ ଅନୁମତି ଦିଆଗଲା । ଆଜି ଆମ ବଜାରରେ ଚାଉଳ, ଗହମ, ନଡ଼ିଆ, ପନିପରିବା, ମାଂସ, ଅଣ୍ଡା, ଦୁଧ ସବୁ କିଛି ବିଦେଶରୁ ଆସି ଶସ୍ତାରେ ବିକ୍ରୀ ହେବା ପରେ ଆମ କୃଷିଜାତ ଦ୍ରବ୍ୟର ମୂଲ୍ୟ ହ୍ରାସ ହେବାକୁ ବାଧହୋଇଛି । ଉତ୍ପାଦନ ମଧ୍ୟ ହ୍ରାସ ହେବାରେ ଲାଗିଛି । ଏଥିରେ ଧନୀ ଦେଶମାନଙ୍କ ସରକାରମାନେ ପ୍ରଚୁର ରିହାତି ଦେଇ ସେମାନଙ୍କ ଚାଷୀଙ୍କ ସାମଗ୍ରୀ କିଣି ଆମ ବଜାରକୁ ଶସ୍ତାରେ ପଠାଉଛନ୍ତି ଆମ ଚାଷ ଓ କ୍ଷୁଦ୍ର ଶିଳ୍ପକୁ ମାରିବା ପାଇଁ । ବିଶ୍ୱ ବାଣିଜ୍ୟ ସଙ୍ଗଠନ ଏଇ ରିହାତିକୁ ବିରୋଧ କରୁଥିଲେ ସୁଦ୍ଧା ଧନୀ ଦେଶ ପାଇଁ ଲାଗୁ ହେଉନାହିଁ । ଆମେରିକା ଓ ୟୁରୋପରେ କୃଷିକ୍ଷେତ୍ରରେ ଯେଉଁ ରାଶି ରିହାତି ଦିଆଯାଉଛି ତାହା କିପରି ସମ୍ଭବ ହେଉଛି ? ସେମାନଙ୍କ ପାଇଁ ଭିନ୍ନ ରାସ୍ତା ଅଛି । ତାର ନାମ ଗ୍ରୀନ ବାକ୍ସ ଓ ବ୍ଲୁ ବାକ୍ସ । ଗ୍ରୀନବାକ୍ସ ବା ସବୁଜ ପେଡ଼ି ଛରିଆରେ

Digitized by srujanika@gmail.com

କୃଷି ସାମଗ୍ରୀ ଦ୍ୱାରା ଉତ୍ପାଦିତ ନୂଆ ସାମଗ୍ରୀ ଉପରେ ରିହାତି ବା ସାହାଯ୍ୟ ଦିଆଯାଉଛି । ଜାପାନର କ୍ଷୀରର ସହାୟକ ମୂଲ୍ୟ ପାଇଁ ପ୍ରତ୍ୟେକ ଗାଈ ପିଛା ବାର୍ଷିକ ୨୭୦୦ ଡ଼ଲାର ରିହାତି ଦିଆଯାଉଥିବାବେଳେ ଆମ ଦେଶରେ ଦୁଗ୍ଧ ଉତ୍ପାଦନ କମାଇବା ପାଇଁ ଡେନମାର୍କ ଓ ଅନ୍ୟଦେଶରୁ ଏହାର ଖୋଲା ଆମଦାନୀ ପାଇଁ ବାଟ ଖୋଲି ଦିଆଯାଇଛି । ଯୁକ୍ତରାଷ୍ଟ୍ର ଆମେରିକାରେ ରାଷ୍ଟ୍ରପତି ଜର୍ଜ ବୁଶ୍ ୨୦୦୮ ସାଲ ପର୍ଯ୍ୟନ୍ତ କୃଷି ପାଇଁ ୧୧୮ ବିଲିୟନ ଡ଼ଲାର ଅର୍ଥାତ ୫୪୨୮୦୦ କୋଟି ଟଙ୍କା ରିହାତିର ବ୍ୟବସ୍ଥା କରିଛନ୍ତି । ସମୃଦ୍ଧ ଓ ଧନୀଦେଶମାନେ ବାର୍ଷିକ ମୋଟ ୧୫ ଲକ୍ଷ ୫୫ ହଜାର କୋଟି ଟଙ୍କା ଚାଷରେ ରିହାତି ସ୍ୱରୂପ ଖର୍ଚ୍ଚ କରୁଛନ୍ତି । ଦରକମାଇ ଦେବା ପାଇଁ ଆମେରିକାର କପାରେ ବର୍ଷକୁ ୧୪୦୦୦ କୋଟିରୁ ୧୮୦୦୦ କୋଟି ଟଙ୍କା ରିହାତି ଦିଆଯିବା ଦ୍ୱାରା ଆନ୍ତର୍ଜାତିକ ବଜାରରେ ଗରିବ ଦେଶମାନଙ୍କ ଚାଷୀ କ୍ଷତିଗ୍ରସ୍ତ ହେଉଛନ୍ତି ଯାହାଫଳରେ ମାଲି ଦେଶର ଚାଷୀ କପାର ମୂଲ୍ୟ ହ୍ରାସ ହେବା ଦ୍ୱାରା ୧୫୦ କୋଟି ଟଙ୍କା କ୍ଷତି ସହିଲା । ଯାହାକି ସେ ଦେଶକୁ ମିଳିଥିବା ବିଦେଶୀ ସାହାଯ୍ୟ ଠାରୁ ଅଧିକ । ସେହିପରି ବୁର୍କନା ଫାସୋ, ଚାଦ ଓ ପଶ୍ଚିମ ଓ ମଧ୍ୟ ଆଫ୍ରିକାର ଲକ୍ଷ ଲକ୍ଷ ଚାଷୀ ପରିବାର କପା ଆୟରୁ ବଞ୍ଚିତ ହେଲେ । ଏହାକୁ ବିରୋଧ କରି ଏକ ସନ୍ତୁଳିତ କୃଷି ନୀତିପାଇଁ ତୃତୀୟ ବିଶ୍ୱର କେତେକ ଦେଶ ଦାବିକଲେ ଦୋହା ସମ୍ମିଳନୀରେ । କିନ୍ତୁ ସେଠାରେ ଯାହା ଆଲୋଚନା ହେଲା ଲିଖିତ ନୀତି ପ୍ରକାଶିତ ହେଲା ଓଲଟା ।

ବର୍ତ୍ତମାନ ପୁଣି କାନ୍‌କନ୍‌ରେ ଆମ ଚାଷର ସୁରକ୍ଷା ଭାରତ ଉଠାଇବା ଏକାନ୍ତ ଜରୁରୀ । ପୁଣି ଚଳିତ ସେପ୍ଟେମ୍ବର୧୦ରୁ୧୪ଯାଏଁ ମେକ୍ସିକୋର କାନକନ ସହରରେ ବିଶ୍ୱ ବାଣିଜ୍ୟ ସଂଗଠନର ସଭ୍ୟମାନଙ୍କ ମନ୍ତ୍ରୀସ୍ତରୀୟ ସମ୍ମିଳନୀ ହେଲା । ଧନୀ ରାଷ୍ଟ୍ରମାନେ ଏକ ଚିଠା ପ୍ରସ୍ତୁତ କରି ରଖିଲେ ଆଉ ବାକି ସମସ୍ତ ଦେଶ ଉପରେ ଚାପ ପ୍ରୟୋଗ କରି ଗ୍ରହଣୀୟ କରାଇନେବାକୁ । ସେହି ଚିଠାରେ କୃଷିର ସମୀକ୍ଷା ନକରି ବରଂ କୃଷି କ୍ଷେତ୍ରରେ କର୍ପୋରେଟ ମାଲିକାନା, ଠିକା, ଚାଷ ଓ ଜେନେଟିକ ଖାଦ୍ୟ ଓ ବିହନ ଲାଗୁ କରିବାକୁ ଯୋଜନା ହେଲା । କାନକନ୍ ସମ୍ମିଳନୀରେ "ବିକାଶ" ପ୍ରସଙ୍ଗକୁ ଗୁରୁତ୍ୱ ଦେବାପାଇଁ ୨୫ ଗୋଟି ବିକାଶଶୀଳ ରାଷ୍ଟ୍ର ତରଫରୁ ଏକ ଦାବିପତ୍ର ପ୍ରସ୍ତୁତ କରି ଜୁନ ୧୦ରେ ଦିଆଗଲା । ଏଥିରେ ଚୀନ, ଭାରତ, ବ୍ରାଜିଲ, ଆର୍ଜେଣ୍ଟିନା, ବୋଲିଭିଆ, ଚିଲି, କ୍ୟୁବା, ମାଲେସିଆ, ମେକ୍ସିକୋ, ପାକିସ୍ତାନ, ଥାଇଲ୍ୟାଣ୍ଡ, ଜିମ୍ବାୱେ, ଦକ୍ଷିଣ ଆଫ୍ରିକା ପ୍ରମୁଖ ଦେଶମାନେ ଅଛନ୍ତି । ଏହି ଦଳ ତରଫରୁ ତିନୋଟି ସାମାନ୍ୟ ପ୍ରସ୍ତାବ ରଖାଗଲା ।

Digitized by srujanika@gmail.com

ଦୋହାରେ ସହମତ ପ୍ରକାଶ ପାଇଥିବା ଉକ୍ତ ତିନୋଟି ମଧ୍ୟରୁ ସଂପୂର୍ଣ୍ଣ ଆଲୋଚନାର ମୂଳ ବିନ୍ଦୁ ବିକାଶ ରହୁ । ବ୍ୟାବସାୟିକ ଅବସ୍ଥାରେ ପ୍ରତ୍ୟେକ ରାଷ୍ଟ୍ରର ବିକାଶ ପ୍ରତି ଧ୍ୟାନ ଦିଆଯାଇପାରିବ । ଦ୍ୱିତୀୟରେ ସମସ୍ତ ଦେଶମାନଙ୍କ ସାମଗ୍ରିକ ବୁଝାମଣାର ଫଳ ସ୍ୱରୂପ ବିଷୟଗୁଡ଼ିକୁ ଗୁରୁତ୍ୱ ଦିଆଯାଉ ଏବଂ କୌଣସି ପ୍ରସଙ୍ଗକୁ ଗୌଣ କରି ଅନ୍ୟ ଏକକୁ ନୂଆ ଭାବରେ ବ୍ୟାଖ୍ୟା କରି ପ୍ରଭାବଶାଳୀ ଦେଶର ସ୍ୱାର୍ଥ ପାଇଁ କରାନଯାଉ । ତୃତୀୟତ ନିଷ୍ପତ୍ତି ପ୍ରକ୍ରିୟାରେ ପ୍ରତ୍ୟେକ ଦେଶ ସମାନ ଭାବରେ ଭାଗ ନେଉ ଏବଂ ତାହାର ମତାମତକୁ ସମାନ ଅଧିକାରର ସମ୍ମାନ ଦିଆଯାଉ । ବର୍ତ୍ତମାନ କେତେକ ବିକଶିତ ଦେଶ ନିର୍ଦ୍ଦିଷ୍ଟ ବିକାଶଶୀଳ ଦେଶମାନଙ୍କ ସହ ସବୁଜଗୃହରେ ବୁଝାବଣା କରି ସର୍ବସମ୍ମତି ନାମରେ ଯେଉଁ ନିଷ୍ପତ୍ତିକୁ ଥାପି ଦିଆଯାଉଛି ତାହା ବହୁ ଗରିବ ଦେଶମାନଙ୍କ ସ୍ୱାର୍ଥର ପରିପନ୍ଥୀ ।

କିନ୍ତୁ ବିକଶିତ ଦେଶମାନଙ୍କ ତରଫରୁ ଅଣ କୃଷି ସାମଗ୍ରୀର ଖୋଲା ବିଚରଣ (Non-Agricultural Market Access) ପାଇଁ ଚାଲିଥିବା ବେଳକୁ ମୁଖ୍ୟ ବିଷୟରେ ପରିଣତ କରିବାକୁ ଉଦ୍ୟମ ଚାଲିଲା । ଏଥିରେ ୨୦୧୫ ବେଳକୁ ବିଶ୍ୱର କୌଣସି ଦେଶରେ ଶିଳ୍ପଜାତ ଦ୍ରବ୍ୟର ରପ୍ତାନୀ ଉପରେ କୌଣସି କଟକଣା ନଥିବ । ଏହାଦ୍ୱାରା କେତୋଟି ଶିଳ୍ପୋନ୍ନତ ଦେଶକୁ ଛାଡ଼ିଦେଲେ ଆଉ ଅଧିକାଂଶ ଦେଶର ଶିଳ୍ପ ବନ୍ଦ ହୋଇଯିବ କାରଣ ନିଜ ଆଭ୍ୟନ୍ତରୀଣ ବଜାରରେ ଧନୀ ଦେଶଙ୍କ ସହ ପ୍ରତିଯୋଗିତା ସମ୍ଭବପର ନୁହଁ । ବହୁକଷ୍ଟସାଧ ରୋଗପାଇଁ ପେଟେଣ୍ଟଭୁକ୍ତ ଔଷଧର ଦାମ ଅତ୍ୟଧିକ ଯୋଗୁଁ ଗରିବ ରାଷ୍ଟ୍ରମାନେ ଶସ୍ତାରେ ସେହି ଔଷଧର ଅନ୍ୟ ବିକଳ୍ପ ଔଷଧ ଅନ୍ୟ ଦେଶରୁ ଆମଦାନୀ କରିବାପାଇଁ ଦୋହାରେ ହୋଇଥିବା ପ୍ରସ୍ତାବକୁ କାର୍ଯ୍ୟକାରୀ ନକରାଇ ଦେବାକୁ ଧନୀ ଦେଶମାନଙ୍କ ଔଷଧ କଂପାନୀମାନେ ଲାଗିଛନ୍ତି । କାନକନ ସମ୍ମିଳନୀରେ ବିକାଶଶୀଳ ଓ ଗରିବ ଦେଶମାନଙ୍କର ସ୍ୱାର୍ଥର ସୁରକ୍ଷା ପାଇଁ ଭାରତ, ଚୀନ ପରି ଦେଶମାନଙ୍କ ଦ୍ୱାରା ତୃତୀୟ ବିଶ୍ୱର ଦେଶମାନଙ୍କୁ ଏକାଠି କରିପାରିଲେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କୁ ଅଟକାଇ ହେବ । ଭାରତ ପରି ଦେଶ ମୂଳରୁ କୃଷିକୁ ବିଶ୍ୱ ବାଣିଜ୍ୟ ସଂଗଠନର ଶୃଙ୍ଖଳାରୁ ମୁକ୍ତ ରଖିବା ସହ, ଶିକ୍ଷା ଓ ସ୍ୱାସ୍ଥ୍ୟ ଓ ଜଳକୁ ବ୍ୟାବସାୟିକ କ୍ଷେତ୍ରରୁ ବାଦଦେବା ପାଇଁ ଅଡ଼ି ବସିବା ଏକାନ୍ତ କାମ୍ୟ । ନଚେତ ଦେଶର ସ୍ୱାର୍ବଭୌମତ୍ୱ ପ୍ରତି ବିପଦ ଆସନ୍ନ ହୋଇପଡ଼ିବ ।

୨୦୦୧ ନଭେମ୍ବର ଦୋହା ସମ୍ମିଳନୀରେ ଭାରତ ସରକାରଙ୍କ ପ୍ରତିନିଧି ଆରମ୍ଭରେ ଉଠାଇଥିବା ନୀତିଗତ ପ୍ରଶ୍ନରୁ ଓହରିଆସି ସାଲିସରେ ପହଞ୍ଚିଗଲେ

Digitized by srujanika@gmail.com

ଆମେରିକାର ଚାପଯୋଗୁଁ । ଆମ କଥା ନଶୁଣିଲେ ବିଶ୍ୱ ବାଣିଜ୍ୟ ସଂଗଠନରୁ ମୁକ୍ତ ହୋଇ ଚାଲି ଆସିବା ଏକ ଦେଶ ପ୍ରେମୀ କାର୍ଯ୍ୟ । ଜେନେଟିକ୍ ମୋଡ଼ିଫାଇଡ୍ ଖାଦ୍ୟ ଓ ବିହନ ଗରିବ ଦେଶର ବଜାରରେ ଖୋଲା ବିକ୍ରୟ ଓ ସେମାନଙ୍କ କୃଷିରେ ଥିବା ଘରୋଇ ସୁରକ୍ଷାକୁ ବଳବତ୍ତର ରଖିବା ସହ ସମସ୍ତ ସେବା କ୍ଷେତ୍ରକୁ ଘରୋଇକରଣ କରିବାର ବାଟ ଖୋଲିବାକୁ ପ୍ରସ୍ତାବ ରହିଲା । ସେଥିମଧ୍ୟରୁ ଜଳ କ୍ଷେତ୍ରରେ କିପରି ବିଦେଶୀ ପୁଞ୍ଜି ନିବେଶର ଖୋଲା ବିଚରଣର ଗ୍ୟାରେଣ୍ଟି ପାଇଁ ସମସ୍ତ ଦେଶ ରାଜି ହେବେ ସେଥିପାଇଁ ଆମେରିକା-ୟୁରୋପୀୟ ସଂଘ, ଜାପାନ ଓ କାନଡ଼ା ପରି ଧନୀ ଦେଶମାନେ କୌଶଳ ପ୍ରୟୋଗ କରି ମନେଇବାରେ ଲାଗିଛନ୍ତି । ଯଦି ସେଥିରେ ବିଫଳ ହୁଅନ୍ତି, ଶେଷ ଦିବସରେ ଧମକ ଦେଇ ପ୍ରସ୍ତାବ ଗୃହୀତ କରାଇ ନେବେ । ଦୋହାରେ ଏକ ଆଲୋଚନା ସଭା ଭିତରକୁ କେନିଆର ପ୍ରତିନିଧିଙ୍କୁ ପ୍ରବେଶ କରିବାକୁ ଦିଆଗଲା ନାହିଁ । ତେଣୁ କାନକନ ସମ୍ମିଳନୀରେ ଏହାର ପୁନରାବୃତ୍ତି ହେବା ସମ୍ଭାବନା ଯଥେଷ୍ଟ ରହିଲା ।

ଗତ ୧୩ ମଇରେ ଜେନେଭା ଠାରେ ଅନୁଷ୍ଠିତ ବିଶ୍ୱ ବାଣିଜ୍ୟ ସନ୍ଧାନର ସାଧାରଣ ପରିଷଦ ବୈଠକରେ ବିଶ୍ୱବ୍ୟାଙ୍କର ଅଧ୍ୟକ୍ଷ ଜେମ୍ସ ବୋଲ ଫେନସନ ଓ ମୁଦ୍ରାପାଣ୍ଠିର ପରିଚାଳନା ନିର୍ଦ୍ଦେଶକ ହୋର୍ଷ୍ଟ କୋହଲର ଉପସ୍ଥିତ ରହି ଡ଼ିସେମ୍ବର ୨୦୦୪ ସୁଦ୍ଧା ବିକାଶଶୀଳ ଓ ଅଣ ବିକଶିତ ଦେଶମାନଙ୍କ କୃଷି କ୍ଷେତ୍ରରେ ସରକାରୀ ସାହାଯ୍ୟ, ରିହାତି ସମସ୍ତ ସୁବିଧା ବନ୍ଦ କରି ସଂପୂର୍ଣ୍ଣଭାବେ ଉଦାରୀକରଣ କରିବାକୁ ଆହ୍ୱାନ ଦେଲେ । ଏହି ବୈଠକରେ ଉକ୍ତ ତିନି ବିଶ୍ୱ ସଂଗଠନ ଏକମନ ଓ ଏକ ବିଚାରରେ ମିଳିତ କାର୍ଯ୍ୟ କରିବା ପାଇଁ ଏକ ସୂଚନା । ଏହାଦ୍ୱାରା ସାମ୍ରାଜ୍ୟବାଦୀ ଶକ୍ତିମାନେ ଅଧିକ ଶକ୍ତିଶାଳୀ ହେବେ ।

ଶିକ୍ଷାରେ ଉଦାରୀକରଣକୁ ସଂପୂର୍ଣ୍ଣଭାବେ ଲାଗୁ କରିବା ପାଇଁ ଚାପ ପ୍ରୟୋଗ ହେବ । ବିଦେଶରୁ ବିଶ୍ୱବିଦ୍ୟାଳୟମାନଙ୍କ ଶାଖା ଖୋଲି ଏଠାରେ ଶିକ୍ଷାର ଆନ୍ତର୍ଜାତିକ ବ୍ୟବସାୟୀକରଣ ପାଇଁ ବାଟ ଖୋଲିଲାଣି । ବିଶ୍ୱ ବିଦ୍ୟାଳୟ ଅନୁଦାନ ଆୟୋଗରେ ପରିବର୍ତ୍ତନ ଆଣିବାକୁ ପଦକ୍ଷେପ ନିଆଗଲାଣି । ଶିକ୍ଷାର ଘରୋଇକରଣ ଆମ ଦେଶରେ ଆରମ୍ଭ ହୋଇସାରିଲାଣି । ବର୍ତ୍ତମାନ ଛତିଶଗଡ଼ ପରି ଏକ ଛୋଟିଆ ରାଜ୍ୟରେ ୩୬ଟି ଘରୋଇ ବିଶ୍ୱବିଦ୍ୟାଳୟ ଖୋଲିଗଲାଣି । ବିଦେଶୀ ବିଶ୍ୱ ବିଦ୍ୟାଳୟ ଶିକ୍ଷା ବ୍ୟବସାୟ ସଂସ୍ଥା ରୂପେ ଖୋଲାଯିବ ଯଦି ଆମ ଦେଶର ସରକାର ଏହାକୁ ବିରୋଧ ନକରିବେ । ଚାର୍ଟାଡ଼ ଏକାଉଣ୍ଟେନସି ଓ କନସଲଟେନସିକୁ ସେବାକ୍ଷେତ୍ରରେ ଭିତ୍ତିକରି ଖୋଲା ପ୍ରବେଶ କରିବାକୁ ପ୍ରସ୍ତାବ

Digitized by srujanika@gmail.com

ରହିଛି । ଏହା ହୋଇଗଲେ ଭାରତ ପରି ଦେଶକୁ ଆମ ଦେଶର ବିଭିନ୍ନ ଯୋଜନା ଓ ସରକାରୀ କାମ ସହ ବିଦେଶୀ କଂପାନୀମାନଙ୍କ ପାଇଁ ବିଦେଶୀ ସଂସ୍ଥାମାନେ ଆସି ଅଡ଼ିଟିଂ ଓ ପରାମର୍ଶ ନାମରେ ଶହ ଶହ କୋଟି ଟଙ୍କା ଲୁଟ କରିନେବେ । ଆମ ଲୋକେ ଚାହିଁ ବସିଥିବେ । ଋଣଦାତାମାନେ ଯାହା ଚାହିଁବେ, ତାହା ଆମ ଘରେ ବସି କରିବେ । ଓକିଲାତି ମଧ୍ୟ ସେମାନେ କରିବେ ଏଠି ।

୧୯୯୬ରେ ସିଙ୍ଗାପୁରରେ ହୋଇଥିବା ମନ୍ତ୍ରୀସ୍ତରୀୟ ବୈଠକରେ ବିକଶିତ ଦେଶମାନେ ପୁଞ୍ଜିନିବେଶ ସହ, ପ୍ରତିଯୋଗିତା ନୀତି, ସରକାରୀ ରାଜସ୍ୱ ଓ ବ୍ୟବସାୟ ପାଇଁ ସୁଯୋଗ ପ୍ରଭୃତି ନୀତି ଉପରେ ଅମୀମାଂସିତ ଆଲୋଚନା ହୋଇଥିଲା । ବିକାଶଶୀଳ ଦେଶମାନେ ନିଜ ଦେଶର ସ୍ୱାର୍ଥର ସୁରକ୍ଷା ପାଇଁ ଏହାକୁ ବିରୋଧ କରିଥିଲେ, କିନ୍ତୁ କାନକୁନ ବୈଠକରେ ପୁନଃ ଉକ୍ତ ପ୍ରସଙ୍ଗଗୁଡ଼ିକୁ ଗୃହୀତ କରାଇ ନେବାକୁ ଷଡ଼ଯନ୍ତ୍ର ଚାଲିଲା ।

## ସମ୍ମିଳନୀ ପରେ –

## ବିଶ୍ୱ ବାଣିଜ୍ୟ ସଂଗଠନ କାନକୁନ୍ ବିଫଳତାରେ ଆମ ସଫଳତା ନାହିଁ

କାନକୁନ ମନ୍ତ୍ରୀସ୍ତରୀୟ ସମ୍ମିଳନୀରେ ଧନୀରାଷ୍ଟ୍ରମାନଙ୍କ ପ୍ରସ୍ତୁତ ଚିଠା ଗୃହୀତ ହୋଇପାରିଲା ନାହିଁ ଗରିବ ଓ ବିକାଶଶୀଳ ଦେଶମାନଙ୍କ ସଫଳ ପ୍ରତିରୋଧ ଯୋଗୁଁ । ଏଥିରେ ତୃତୀୟ ବିଶ୍ୱର ଅଧିକାଂଶ ଦେଶର ପ୍ରତିନିଧିମାନେ ଯେଉଁ ବିକଳ୍ପ ଚିଠା ନିଜ ନିଜ ଦେଶର କୃଷି ଓ କୃଷକଙ୍କୁ ବଞ୍ଚାଇବା ପାଇଁ ଆମେରିକା, ଜାପାନ ଓ ୟୁରୋପୀୟ ସଂଘ ନିଜ ଦେଶରେ ଦେଉଥିବା କୃଷି ସବସିଡ଼ିକୁ ହଟାଇବା ସହ ଗରିବ ଦେଶମାନଙ୍କ ବଜାରକୁ କୃଷି ଆମଦାନୀ ଉପରେ ପ୍ରତିରକ୍ଷାମୂଳକ କଟକଣା ଜାହିର କରିବା ପାଇଁ ମିଳିତ ଉଦ୍ୟମରେ ଉପସ୍ଥାପନ କଲେ, ତାହା ଧନୀ ଦେଶମାନଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେଲା । ଏକ ସମାଧାନ ସୂତ୍ରର କୌଶଳ ପ୍ରୟୋଗ କରି ବିକାଶଶୀଳ ଓ ଗରିବ ଦେଶମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବା ଉଦ୍ୟମ କରାଗଲା । ଏହାର ମୁକାବିଲା କରିବାପାଇଁ ବିକାଶଶୀଳ ଦେଶମାନଙ୍କ ମଧ୍ୟରୁ ପ୍ରଥମେ ୧୭ ରୁ ଆରମ୍ଭ ହୋଇ ୨୨ଟି ଦେଶ ଏକାଠି ହୋଇ ବୈଠକର ଶେଷ ପର୍ଯ୍ୟନ୍ତ ଏକ ସ୍ୱରରେ ନିଜର ଏଜେଣ୍ଡା ଉପସ୍ଥାପନ କଲେ ଯେଉଁଥିରେ ନିଜ ନିଜ ଦେଶରେ କୃଷି ପ୍ରତି ପ୍ରତିରକ୍ଷାମୂଳକ ନୀତି ଚାଲୁ ରହିବା ସହ ଧନୀ ଦେଶମାନଙ୍କର କୃଷି ସବସିଡ଼ିକୁ ହଟାଇ ଏକ ସମତୁଲ

Digitized by srujanika@gmail.com

କୃଷି ନୀତି ପାଇଁ ଦାବି ଉଠାଇଲେ । ଶେଷ ମୁହୂର୍ତ୍ତରେ ବିକାଶଶୀଳ ଜି-୨୨ଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବା ପାଇଁ ଏହାର ପ୍ରତିଷ୍ଠାତା ସଭ୍ୟ ବ୍ରାଜିଲର କୃଷି ରପ୍ତାନିରେ ସହାୟକ ହେଲାପରି କେତେକ ନିୟମ ବଦଳାଇବା ପାଇଁ ଉଦ୍ୟମ ହେଲା । ଯାହାଫଳରେ ଭାରତ ତାର ବଜାରରେ ବିଦେଶର କୃଷିଜାତ ପଦାର୍ଥ ଉପରେ ୫ କିମ୍ବା ଶୂନ କରକୁ ଖସି ଆସିଥାନ୍ତା । କିନ୍ତୁ ବ୍ରାଜିଲ ଏହି ଚକ୍ରାନ୍ତକୁ ସ୍ୱୀକାର ନକରି ଏକତା ରକ୍ଷା କରି ଶେଷ ପର୍ଯ୍ୟନ୍ତ ଭାରତ, ଚୀନ ସମେତ ୨୨ଟି ଦେଶକୁ ଏକାଠି ରଖିବାରେ ପ୍ରମୁଖ ଦାୟିତ୍ୱ ତୁଲାଇଲା । ଯାହାଫଳରେ ଆମେରିକା ଓ ୟୁରୋପୀୟ ସଂଘ ନିଜ କୂଟ ନୀତିରେ ବିଫଳ ହେଲେ । ୧୯୯୬ରେ ମାଲେସିଆ ଖସି ଆସିଥିବାରୁ ସିଙ୍ଗାପୁର ଏଜେଣ୍ଡା ଧନୀରାଷ୍ଟ୍ରମାନଙ୍କ ସପକ୍ଷରେ ସମ୍ଭବପର ହୋଇଥିଲା । କିନ୍ତୁ ଏହିଥର ମାଲେସିଆ ସେହି ଏଜେଣ୍ଡାକୁ ବିରୋଧ କରିବା ପାଇଁ ନେତୃତ୍ୱ ନେବାରୁ ଭାରତ ଓ ଅନ୍ୟ ଦେଶମାନଙ୍କ ସହଯୋଗରେ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଛୋଟ ଦେଶହେଲେ ହେଁ କାନକୁନ ସମ୍ମିଳନୀରେ ପ୍ରତିବାଦ କରି ପ୍ରଥମେ କେନିଆ ବୈଠକରୁ ଚାଲିଆସିଥିଲା । ପଶ୍ଚିମ ଆଫ୍ରିକାର ଦରିଦ୍ରତମ ଦେଶ ଚାଦ, ମାଲି, ବୁର୍କିନା ଫାସୋର କପା ରପ୍ତାନୀର ଉଚିତ ମୂଲ୍ୟ ପାଇବା ପାଇଁ ଧନୀ ଦେଶମାନେ ସବସିଡ଼ି ହଟାଇବା ଦାବିକୁ ଅଗ୍ରାହ୍ୟ କରି ବୈଠକକୁ ବିନା କୌଣସି ନିଷ୍ପତ୍ତିରେ ସମାପ୍ତ କରିଦିଆଗଲା । ଆମେରିକା ତାର କପାଚାଷୀଙ୍କୁ ବାର୍ଷିକ ୩୦୦ କୋଟି ଡ଼ଲାର ଅର୍ଥାତ୍ ପ୍ରାୟ ୧୪ ହଜାର କୋଟି ଟଙ୍କା ଏବଂ ୟୁରୋପୀୟ ସଂଘ ୪୬୦୦ କୋଟି ଟଙ୍କାର ରିହାତି ଦେଉଛି । ଏହାଫଳରେ ଗରିବ ଦେଶମାନେ କପାକୁ କମ ଦାମରେ ବିକିବାକୁ ବାଧ୍ୟ ହେଉଛନ୍ତି । ୟୁରୋପୀୟ ସଂଘ ରାଜି ହୋଇଥିବା ବେଳେ ଆମେରିକା ତା' ଦେଶର ଉତ୍ପାଦକମାନଙ୍କ ଚାପରେ ରାଜି ନହୋଇ ଆଲୋଚନାକୁ ଭଣ୍ଡୁର କରିଦେଲା ।

ଭାରତ ପରି ଦେଶମାନଙ୍କ ଉପରେ ଚାପ ପ୍ରୟୋଗ କରି ସିଙ୍ଗାପୁର ଚିଠା ପ୍ରସ୍ତାବର ୪ଟିରୁ ଦୁଇଟିକୁ ସଂଶୋଧିତ ଚିଠାରେ ରଖାଯାଇ ଗୃହୀତ କରାଇବାକୁ ଷଡ଼ଯନ୍ତ୍ର ଚାଲିଲା । ସେହି ଦୁଇଟି ପ୍ରସ୍ତାବରେ ସରକାରୀ ଖାଦ୍ୟଶସ୍ୟ ସଂଗ୍ରହ ଓ ବାଣିଜ୍ୟ କାରବାରକୁ ସହଜ ସୁଗମ କରିବା ବିଷୟ ଥିଲା । ଏଥିରେ ଶେଷଦିନ ଭାରତ ଆମେରିକା ଚାପରେ ରାଜି ହୋଇଯାଇଥିଲା । କିନ୍ତୁ ଆଫ୍ରିକା ବିଶେଷ କରି ପଶ୍ଚିମ ମଧ୍ୟ ଆଫ୍ରିକୀୟ ଦେଶମାନେ ଏହାର ତୀବ୍ର ବିରୋଧ କରି ସମ୍ମିଳନୀ କକ୍ଷ ତ୍ୟାଗ କରିବା ପରେ ଆଲୋଚନାକୁ ସ୍ଥଗିତ ରଖାଯାଇ ସମ୍ମିଳନୀର ସମାପ୍ତି ଘୋଷଣା କଲା । ଏହି ବିଫଳତା ଧନୀ ଦେଶମାନଙ୍କ ସ୍ୱାର୍ଥପରତାକୁ ପଦାରେ ପକାଇବା ସହ

Digitized by srujanika@gmail.com

ବିଶ୍ୱ ବାଣିଜ୍ୟ ସଂଗଠନର ଅଗଣତାନ୍ତ୍ରିକ ପ୍ରକ୍ରିୟାକୁ ପ୍ରତିରୋଧ କରିପାରିବା ସାମର୍ଥ୍ୟ ଐକ୍ୟବଦ୍ଧଭାବେ ପ୍ରଦର୍ଶନ କରାଯାଇ ପାରିଲା ।

ଭାରତର ବାଣିଜ୍ୟ ମନ୍ତ୍ରୀ ଅରୁଣ ଜେଟଲୀଙ୍କୁ ଯେପରି ଭାବରେ ସଂବାଦପତ୍ର ଓ ଗଣମାଧମରେ କାନ୍‌କୁନ୍ ସଫଳତା ପାଇଁ ପ୍ରଶଂସା କରାଯାଉଛି ତାହା ବାସ୍ତବତା ଠାରୁ ବହୁ ଦୂରରେ । ଆଫ୍ରିକା ଦେଶମାନଙ୍କ ଦ୍ୱାରା କପାର ସବସିଡ଼ି ଓ ସିଙ୍ଗାପୁର ପ୍ରସଙ୍ଗ ନେଇ ଶେଷ ପର୍ଯ୍ୟନ୍ତ ବିରୋଧ ଓ ବ୍ରାଜିଲକୁ ମୂଲଚାଲରେ ସୁବିଧା ଦେବା ଘୋଷଣା ସତ୍ତ୍ୱେ ସେ ଜି-୨୨ରୁ ନ ଓହରିବା ସାଙ୍ଗକୁ ଦକ୍ଷିଣ କୋରିଆର ଚାଷୀବିକ୍ଷୋଭ ପ୍ରଦର୍ଶନରେ ଆତ୍ମହତ୍ୟା ତୃତୀୟ ବିଶ୍ୱର ପ୍ରତିରୋଧକୁ ସଶକ୍ତ କରାଇ ପାରିଲା । ଯଦି ଆମ ଦେଶର କେନ୍ଦ୍ରମନ୍ତ୍ରୀ ପ୍ରକୃତରେ ନୀତିଗତଭାବେ ଆମେରିକା ପରି ଦେଶମାନଙ୍କ ଆଧିପତ୍ୟର ଓ ସାମ୍ରାଜ୍ୟବାଦୀ ବଜାର ଅର୍ଥ ବ୍ୟବସ୍ଥାରୁ ଆମ ଦେଶର କୃଷି ଓ ଶିଳ୍ପକୁ ମୁକ୍ତ କରିବା ପାଇଁ ଚାହାଁନ୍ତି, ତାହାହେଲେ ବିଶ୍ୱ ବାଣିଜ୍ୟ ସଂଗଠନର ଚୁକ୍ତି ଅନୁଯାୟୀ କୃଷି, ଖାଦ୍ୟ, କୁଟୀରଶିଳ୍ପ ପରି କ୍ଷେତ୍ରରୁ ବିଗତ ୧୦ ବର୍ଷ ମଧ୍ୟରେ ପ୍ରତ୍ୟାହୃତ ରିହାତି ଓ ପ୍ରତିରକ୍ଷା ପୁନଃ ପ୍ରବର୍ତ୍ତନ କରି ବିଗତ ଦିନରେ ୧୪୨୯ଟି ପଦାର୍ଥରୁ ଉଠାଯାଇଥିବା ଆମଦାନୀ କଟକଣା ପୁନଃ ଲାଗୁ କରିବାକୁ କେନ୍ଦ୍ର ସରକାର ଯଥା ଶିଘ୍ର ନିଷ୍ପତ୍ତି କାହିଁକି ନେଉ ନାହାନ୍ତି ? ୬ ବର୍ଷ ମଧ୍ୟରେ ବିକଶିତ ଦେଶମାନେ କୃଷି ଉପରେ ୨୦% ଏବଂ ବିକାଶଶୀଳ ଦେଶମାନେ ୧୦ ବର୍ଷ ମଧ୍ୟରେ ୧୩% ସବସିଡ଼ି କମାଇବାକୁ ନିଷ୍ପତ୍ତି ହୋଇଥିଲା, କିନ୍ତୁ ଏପର୍ଯ୍ୟନ୍ତ ଆମେରିକା ପାଳନ କରିବା ପରିବର୍ତ୍ତେ ସବୁଜ ପେଡ଼ି ରିହାତି (Green Box subsidy) ଏବଂ ନୀଳ ପେଡ଼ି ରିହାତି (Blue Box Subsidy) ନାମରେ ଅଧିକ ପରିମାଣର ଆର୍ଥିକ ସାହାଯ୍ୟ ଦେଇଛି । ୧୯୯୭ ମାନବ ସମ୍ବଳ ରିପୋର୍ଟ ଅନୁଯାୟୀ ଆମେରିକାର ପ୍ରତିଚାଷୀଙ୍କୁ ୧୯୯୫ରେ ୨୯୦୦୦ ଡ଼ଲାର ସାହାଯ୍ୟ ଦିଆଯାଇଥିଲା ଯାହାକି ପ୍ରକୃତ ଆୟର ୧୦୦ ଗୁଣ ଅଧିକ । ସେତେବେଳେ ମୁଖ୍ୟ ମକା ଚାଷ ଅଞ୍ଚଳରେ ପ୍ରତ୍ୟେକ ଚାଷୀର ବାର୍ଷିକ ଆୟ ମାତ୍ର ୩୦୦ ଡ଼ଲାର ଥିଲା । ମାନବ ସମ୍ବଳ ରିପୋର୍ଟ (୨୦୦୩) ଅନୁଯାୟୀ ଧନୀଦେଶମାନେ ବିଶ୍ୱ ବାଣିଜ୍ୟ ସଂଗଠନକୁ ମାଧମ କରି ଉଦାରୀକରଣ ଓ ଜଗତୀକରଣ ନାମରେ ନିଜ ନିଜ ଦେଶମାନଙ୍କର ସ୍ୱାର୍ଥକୁ ସୁରକ୍ଷା ଦେଉଛନ୍ତି । ବିଶ୍ୱ ବାଣିଜ୍ୟ ସଂଗଠନର ନିୟମ ଅନୁଯାୟୀ ପ୍ରତ୍ୟେକ ଦେଶ ନିଜ ଦେଶର ମୋଟ ଘରୋଇ ଉତ୍ପାଦନର ୧୦ ପ୍ରତିଶତ ପର୍ଯ୍ୟନ୍ତ କୃଷି ରିହାତି ଦିଆଯିବା ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲେ ସୁଦ୍ଧା ଭାରତରେ ଏପର୍ଯ୍ୟନ୍ତ ମାତ୍ର ୩%ରେ ରହିଛି । ତେଣୁ ଆମ ଦେଶରେ କୃଷିରୁ ରିହାତି ଉଠାଇବା ଆର୍ଥିକ

Digitized by srujanika@gmail.com

ସଂସ୍କାର ନୀତି ନିୟମରୁ ବହିର୍ଭୂତ ହୋଇଥିଲେ ମଧ ଆମ ବଜାରକୁ ଧନୀ ଦେଶମାନଙ୍କ ପାଇଁ ଖୋଲା ରଖିବାକୁ ଭାରତ ସରକାର ନେଇଥିବା ଚାଷ ବିରୋଧୀ ନିଷ୍ପତ୍ତି ଅଗଣତାନ୍ତ୍ରିକ । ୨୦୦୦-୨୦୦୧ରେ ଆମ ଦେଶକୁ କୃଷି ଆମଦାନୀର ମୂଲ୍ୟ ୧୩୭୦ କୋଟି ଟଙ୍କା ଥିବା ବେଳେ ୨୦୦୧-୨୦୦୨ରେ ବୃଦ୍ଧି ପାଇ ୧୦୩୦୫ କୋଟି ଟଙ୍କା ହୋଇଛି ଆର୍ଥିକ ସର୍ବେକ୍ଷଣ ରିପୋର୍ଟ ଅନୁସାରେ । ଉଦାରୀକରଣ ଯୋଗୁଁ ଆମ ଦେଶର କୃଷି କ୍ଷେତ୍ରରେ ପୁଞ୍ଜି ଗଠନରେ ପବ୍ଲିକ ସେକ୍ଟରର ଅଂଶ ୧୯୯୫ରେ ଥିଲା ୩୩% କିନ୍ତୁ ୨୦୦୧ ବେଳକୁ କମିଯାଇ ହେଲା ୨୩.୫% । ପୁଞ୍ଜି ବିନିଯୋଗ ମଧ ଉକ୍ତ ସମୟ ମଧରେ ପ୍ରାୟ ଏକ ହଜାର କୋଟି ଟଙ୍କା କମିଛି । ଏହି ପରିପ୍ରେକ୍ଷୀରେ ଭାରତର ଚାଷ ତାର ଉତ୍ପାଦିତ ପଦାର୍ଥ ଧାନ, ଗହମ, କପା, ଆଖୁ, ରବର, ନଡ଼ିଆ, ତୈଳବୀଜ ପ୍ରମୁଖ ଶସ୍ୟର ଉଚିତ ମୂଲ୍ୟ ପାଇପାରୁ ନଥିବାବେଳେ ସାରୁ ବିହନ ଓ ଜଳକର ଓ କୃଷି ଉପକରଣ ପାଇଁ ଅଧିକ ଦାମ ଦେଉଛି । ଏଥିପାଇଁ ବିଶ୍ୱ ବାଣିଜ୍ୟ ସଂଗଠନର ନୀତି ନିୟମ, ଉଦାରୀକରଣ ଓ ଖୋଲା ବଜାର ଅର୍ଥନୀତି ଦାୟୀ । କାନକୁନ୍‌ରୁ ଫେରିବା ପରେ ଅତୀତର ଭୁଲକୁ ସ୍ୱୀକାର କରି ଭାରତ ସରକାର ଯଦି କୃଷି ଓ କ୍ଷୁଦ୍ର ଶିଳ୍ପ ଓ କୁଟୀର ଶିଳ୍ପରେ ବିଦେଶୀଙ୍କ ପ୍ରବେଶକୁ ନିଷେଧ କରିବା ସହ ପ୍ରତିରକ୍ଷାମୂଳକ ସହାୟକ ନୀତି ଘୋଷଣା କରିପାରିଲେ ସ୍ୱଦେଶୀର ଅସଲ ପରିଚୟ ମିଳନ୍ତା ।

ସେବାକ୍ଷେତ୍ରରେ ଅତ୍ୟଧିକ ସଂସ୍କାର ଆଣିବା ପାଇଁ ଚିଠା ପ୍ରସ୍ତାବ ଘୋଷଣାରେ ସ୍ୱାସ୍ଥ୍ୟ, ଶିକ୍ଷା, ପାଣି ଯୋଗାଣରେ ବିଦେଶୀ କଂପାନୀ ପ୍ରବେଶକୁ ଭାରତ ସରକାର ବିରୋଧ କରିନାହାନ୍ତି ।

ମେକ୍ସିକୋର ଚାଷୀ, ସାଧାରଣ ନାଗରିକ ବହୁ ସଂଖ୍ୟାରେ କାନକୁନ ବିକ୍ଷୋଭ ପ୍ରଦର୍ଶନରେ ଭାଗ ନେଇଥିଲେ । ଯେହେତୁ ସେହି ଦେଶରେ ଦଶ ବର୍ଷ ତଳୁ ଜଳ ବ୍ୟବସ୍ଥା ଘରୋଇକରଣ ହୋଇଯାଇ ଥିବାରୁ ଦିନକୁ ମାତ୍ର ୪ ଘଣ୍ଟା ଜଳଯୋଗାଣ ହେଉଛି । ଭୂତଳ ଜଳ ଟକ୍‌ସି ହୋଇଗଲାଣି । ଆମେରିକାରୁ ଖାଦ୍ୟଶସ୍ୟ ଆସିବା ଯୋଗୁଁ ଚାଷୀ ବେକାର । କାନକୁନ ଆଲୋଚନା ବିଫଳ ହେଲା ସତ, କିନ୍ତୁ ଧନୀ ରାଷ୍ଟ୍ରମାନଙ୍କ ଆଧିପତ୍ୟ ଶେଷ ହୋଇନାହିଁ । ସେମାନଙ୍କ ସବ୍‌ସିଡ଼ି କମିନାହିଁ । ବିଶ୍ୱ ବାଣିଜ୍ୟ ସଂଗଠନର ଗଣତାନ୍ତ୍ରିକ ପ୍ରକ୍ରିୟା ପାଇଁ ନାହିଁ । ଆମ ପାଇଁ ଏପର୍ଯ୍ୟନ୍ତ କୌଣସି ସଫଳତା ମିଳିନାହିଁ । ତେଣୁ ଏକମାତ୍ର ବାଟ ଏଥିରୁ ମୁକ୍ତି ।

(ସଙ୍କେତ : ଏସ.ପି. ଶୁକ୍ଲା, ଗିରିଶ ମିଶ୍ର, ରୁଦର ଦତ୍ତଙ୍କ ଲେଖା ଓ ଦି ହିନ୍ଦୁର ରିପୋର୍ଟରୁ ତଥ୍ୟ ସଂଗୃହୀତ)



Digitized by srujanika@gmail.com

# ମଣ୍ଡିଶାଳରୁ ହାଣ୍ଡିଶାଳ ଯାଏଁ ବିଶ୍ୱ ବାଣିଜ୍ୟ ସଂଗଠନ

ବିଶ୍ୱବାଣିଜ୍ୟ ସଂଗଠନର ସୃଷ୍ଟି ସାମ୍ରାଜ୍ୟବାଦ ଶକ୍ତିର କୁଟନୀତିର ପଶାଖେଳରୁ ତୃତୀୟବିଶ୍ୱର ବଜାରମାନଙ୍କୁ ଦଖଲ କରିବା ପାଇଁ । ଗାଟ୍ (GATT)ର ପରିସରକୁ ପରିବର୍ଦ୍ଧିତ କରି ଦିଆଯାଇ ନୂଆ ନାମରେ ପ୍ରତିଷ୍ଠିତ ବିଶ୍ୱ ବାଣିଜ୍ୟ ସଂଗଠନ (WTO) ଆଜି ବିଶ୍ୱ ଖୋଲାବଜାର ଅର୍ଥ ବ୍ୟବସ୍ଥାର ନିୟନ୍ତ୍ରଣ କେନ୍ଦ୍ର । ସର୍ବଦା ପୃଥିବୀର ବହୁଦେଶର ଆର୍ଥିକ ଓ ସାଂସ୍କୃତିକ ଧାରାର ମୂଳପିଣ୍ଡ କୃଷି ରହି ଆସିଛି । କୃଷିକ୍ଷେତ୍ର ସହ ଭାରତ ସମେତ ପ୍ରାୟ ସମସ୍ତ ବିକାଶଶୀଳ ଓ ଅଣବିକଶିତ ଗରିବ ରାଷ୍ଟ୍ରମାନଙ୍କ ୭୫% ଜନତାଙ୍କ ଜୀବିକା ଯୋଡ଼ା ହୋଇ ରହିଛି । କ୍ଷୁଦ୍ର ଚାଷୀ ଓ କୃଷି ଶ୍ରମିକଙ୍କ ସଂଖ୍ୟା ସର୍ବାଧିକ । ଏପରିକି ବଡ଼ ଜମିମାଲିକଙ୍କ ଜମି ଚାଷ କରନ୍ତି ଭୂମିହୀନ ଛୋଟ ଚାଷୀ । ବିକଶିତ ଦେଶ ଫ୍ରାନସର କୃଷି ଏକ ପ୍ରମୁଖ ଆର୍ଥିକ କ୍ଷେତ୍ର ଯେଉଁଠି କୃଷକ ତାର ପରିଚୟ ପାଇଁ ସଚେତନ । ଆରମ୍ଭରୁ କୃଷିକୁ କିପରି ବିଶ୍ୱ ବାଣିଜ୍ୟର ପରିଧିକୁ ଆଣି ଏହାକୁ ବହୁଜନଙ୍କ ବଦଳରେ ମାତ୍ର କେତେକ ନିର୍ଦ୍ଦିଷ୍ଟ ବଡ଼ ବଡ଼ ବ୍ୟାବସାୟିକ ମାଲିକଙ୍କ ନିୟନ୍ତ୍ରଣରେ ରହିବ, ତାର ବାଟ ଖୋଲିବା ପାଇଁ ୧୯୮୬ ଠାରୁ ଉରୁଗୁଏ ରାଉଣ୍ଡ ଆଲୋଚନାରେ ଯୁକ୍ତରାଷ୍ଟ୍ର ଆମେରିକା ଓ ୟୁରୋପୀୟ ସଂଘ କୃଷିପ୍ରଧାନ ଦେଶମାନଙ୍କ ସରକାର ଉପରେ ଚାପ ପକାଇ ଆସୁଥାନ୍ତି । ବ୍ରାଜିଲ ସମେତ ଆଫ୍ରିକୀୟ ଦେଶମାନେ ଭାରତର ନେତୃତ୍ୱ ଉପରେ ନିର୍ଭର କରି ବିଶ୍ୱବାଣିଜ୍ୟ ସଂଗଠନରୁ କୃଷିକୁ ସଂପୂର୍ଣ୍ଣ ମୁକ୍ତ ରଖିବାକୁ ପ୍ରତିରୋଧ କରୁଥିଲେ, କିନ୍ତୁ ଭାରତ ପକ୍ଷରୁ ଗାଟ୍ ରାଜଦୂତ ରୂପେ ପ୍ରତିନିଧିତ୍ୱ କରି ବଳିଷ୍ଠ ଯୁକ୍ତି ସହ ଆମେରିକାର କୂଟନୀତିକୁ ପ୍ରତିହତ କରି ପାରୁଥିବା ଏସ୍.ପି. ଶୁକ୍ଳାଙ୍କୁ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ତାଙ୍କୁ ଫେରାଇ ଆଣି ଅନ୍ୟବ୍ୟକ୍ତିଙ୍କୁ ଅବସ୍ଥାପିତ କଲେ । ଭାରତ ପକ୍ଷରୁ କୃଷିକୁ ବିଶ୍ୱବାଣିଜ୍ୟ ସଂଗଠନ ଭିତରକୁ ଠେଲି ଦେଇ କୃଷି ପ୍ରତି ଥିବା ରାଷ୍ଟ୍ରର ଦାୟିତ୍ୱରୁ କ୍ରମଶଃ ଓହରି ରିହାତି ବ୍ୟବସ୍ଥାରେ କାଟ କରିବା ପରି ସର୍ତ୍ତଗୁଡିକୁ ମାନି ନେବାପରେ ତୃତୀୟ ବିଶ୍ୱର ସଂଗଠନ ଓ ପ୍ରତିରୋଧ ଦୁର୍ବଳ ହୋଇଗଲା । ଏହାଦ୍ୱାରା ଭାରତ ସରକାର ତୃତୀୟ ବିଶ୍ୱବଂଧୁ ରାଷ୍ଟ୍ରମାନଙ୍କ ପ୍ରତି ପ୍ରତାରଣା କରିବା ସହ ଭାରତୀୟ କୃଷକ ସମାଜ ପ୍ରତି ବିଶ୍ୱାସଘାତକତା କଲେ । ୧୯୯୫ ଜାନୁଆରୀରୁ ସଂଗଠନ କାର୍ଯ୍ୟକ୍ଷମ ହେବାପରେ କୃଷିଜାତ ଦ୍ରବ୍ୟ ଗୁଡିକର ବାଣିଜ୍ୟ କାରବାର ଉପରେ ଅନେକ କଟକଣା ଉଠାଇବା ଓ

Digitized by srujanika@gmail.com

ବିଭିନ୍ନ କୃଷିଭିତ୍ତିକ ଶିଳ୍ପପଦାର୍ଥ ଗୁଡ଼ିକରୁ କରମୁକ୍ତ କରାଇବା ସହ ଅନେକ ବ୍ୟବସ୍ଥାକୁ ବାଣିଜ୍ୟ କାରବାରରେ ନିୟମାବଳୀରେ ଅନ୍ତର୍ଭୁକ୍ତ କରାଇ ଦିଆଗଲା । ଭରତ ପରି ବିକାଶଶୀଳ ଦେଶଗୁଡ଼ିକରେ କୃଷିରେ ଯେତିକି ରିହାତି ଦିଆଯାଉଥିଲା ତାହା ବିକଶିତ ଦେଶମାନଙ୍କ ତୁଳନାରେ ଅତି ନଗଣ୍ୟ । ତେଣୁ ଆନୁପାତିକ ହାରରେ ରିହାତି କାଟ ବ୍ୟବସ୍ଥାରେ ଧନୀଦେଶମାନଙ୍କ କୃଷି ପାଇଁ ସେପରି ବାଧା ସୃଷ୍ଟି ହେଲା ନାହିଁ । ଭାରତର ଚାଷୀଙ୍କୁ ରିହାତି କାଟ, ଗହମ, ଚାଉଳ ସଂଗ୍ରହ ବ୍ୟବସ୍ଥାରେ କଟକଣା, ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ବିହନ ବ୍ୟବସାୟ ଓ ଖାଦ୍ୟ ଉତ୍ପାଦନରେ ପ୍ରବେଶ ପରି ଅନେକ ଖୋଲାବଜାର ନୀତି ସହ କୃଷିକୁ ଯୋଡ଼ିଦେବା ଦ୍ୱାରା ଆମ ଦେଶରେ କୃଷିର ବିପର୍ଯ୍ୟୟ ଅପରିହାର୍ଯ୍ୟ ହୋଇପଡ଼ିଛି । ୨୦୦୦ ଓ ୨୦୦୧ ମଧ୍ୟରେ ୧୪୨୯ଟି ପଦାର୍ଥ ବିଦେଶରୁ ଆମ ଦେଶ ଭିତରକୁ ଖୋଲା ଅବାଧ ପ୍ରବେଶ ପାଇଁ କେନ୍ଦ୍ର ସରକାର ସମସ୍ତ କର ଓ କଟକଣା ଉଠାଇଦେଲେ । ଏହାର ପରିଣାମରେ ଆମ ଦେଶର ବଜାରକୁ ଧନୀଦେଶମାନଙ୍କ ସରକାରୀ ରିହାତି ରପ୍ତାନି ଜିନିଷ ଶସ୍ତାରେ ଆସିବା ପରେ ଆମ କୃଷିଜାତ ଫସଲ ଓ ଖାଦ୍ୟପଦାର୍ଥଗୁଡ଼ିକ ପ୍ରତିଯୋଗିତାର ସମ୍ମୁଖୀନ ହୋଇନପାରି ଅଭାବୀ ବିକ୍ରିର ଶିକାର ହେବାକୁ ବାଧ୍ୟହେଉଛନ୍ତି । କୃଷି ଉତ୍ପାଦନ ଖର୍ଚ୍ଚ ବହୁଳ ହୋଇଗଲା । ଅନ୍ୟ ପଟେ ମନସେଣ୍ଟୋ, ସିଞ୍ଜେନିଆ ପରି ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ଜେନେଟିକ ବିହନ ମଧ୍ୟ ଆସିଗଲାଣି । ଚାଷୀଙ୍କୁ ପ୍ରଲୋଭିତ କରି ତାର ବ୍ୟବହାର ପାଇଁ ଯେପରି ଉତ୍ସାହିତ କରାଯାଉଛି, ତାର ପରିଣାମ ଭୟାବହ ହେବାରେ ଲାଗିଛି । ଫସଲର ସୁରକ୍ଷା କିମ୍ବା କୃଷି ଉତ୍ପାଦନର ସହାୟକ ମୂଲ୍ୟ କିମ୍ବା କୃଷି ପ୍ରତି ସୁରକ୍ଷା ରିହାତିର ତାଲିକାରୁ ବାଦପଡ଼ିଲା । ଆମେରିକା ଓ ୟୁରୋପୀୟ ସଂଘ ସେମାନଙ୍କ କୃଷିରେ ରିହାତିକୁ କମାଇବା ବଦଳରେ ବିଭିନ୍ନ ଆଳରେ ତଥା ଛଦ୍ମ ତରିକାରେ ଯଥା ନୀଳ ପେଡ଼ି (Blue Box), ସବୁଜ ପେଡ଼ି (Green Box) ନାମରେ ବଢ଼ାଇ ଚାଲିଛନ୍ତି । ଏହାର ଫଳାଫଳ ଆଫ୍ରିକା ଦେଶମାନଙ୍କରୁ କପାର ରପ୍ତାନୀ ବିଦେଶୀ ବଜାରରେ ପ୍ରଚୁର କ୍ଷତିର ସମ୍ମୁଖୀନ ହୋଇ ଚାଷୀ ବରବାଦର ଦ୍ୱାର ଦେଶରେ । ବିଶ୍ୱ ବାଣିଜ୍ୟ ସଂଗଠନର ନିୟମାବଳୀ, କାର୍ଯ୍ୟକାରିତା ଓ ଫଳାଫଳ କେବଳ ଧନୀ ଦେଶମାନଙ୍କୁ ମୁନାଫା ଦେଉଛି । ଚାଷୀ, ଚାଷ ଓ ନିଜ ଖାଦ୍ୟ ନିରାପତ୍ତାକୁ ନେଇ ସ୍ୱାଧୀନ ନିଷ୍ପତ୍ତି କରିବାକୁ ଲାଟିନ୍ ଆମେରିକା, ଆଫ୍ରିକା ଓ ଦକ୍ଷିଣ ପୂର୍ବ ଏସିଆର ଦେଶମାନଙ୍କ ସାର୍ବଭୌମ ଅଧିକାର ନଥିଲା ପରି ଅନୁଭୂତ ହେଲାଣି । କାରଣ ଭାରତ ସରକାର କୃଷିକୁ WTOର ଅନ୍ତର୍ଭୁକ୍ତ କରିବାକୁ ଦସ୍ତଖତ କରିବା ପୂର୍ବରୁ ସଂସଦର ମତ ନିଆଯାଇନଥିଲା । ବରଂ ଦେଶର ଚାଷୀଙ୍କ ମତକୁ କୁଠାରାଘାତ କରାଯାଇଥିଲା । କୃଷି ରାଜ୍ୟ ସମ୍ପୂର୍ଣ୍ଣ ବିଷୟ ହୋଇଥିବାବେଳେ ସଂଘୀୟ ବ୍ୟବସ୍ଥାର ଖିଲାପ କରି କେନ୍ଦ୍ର ସାମ୍ରାଜ୍ୟବାଦୀ ଶକ୍ତିର ଚାପ

Digitized by srujanika@gmail.com

ଆଗରେ ମୁଣ୍ଡ ନୁଆଁଇ ଏକ ଅବାସ୍ତବ ଓ ଅପ୍ରାକୃତ କୃଷି ବ୍ୟବସ୍ଥାକୁ ରାଜ୍ୟମାନଙ୍କ ଉପରେ ଥୋପି ଦେଲା । ୧୯୭୦ ପେଟେଣ୍ଟ ଆଇନକୁ ପରିବର୍ତ୍ତନ କରି ପ୍ରୋସେସ୍ ପେଟେଣ୍ଟ ସହ ପ୍ରୋଡ଼ାକ୍ଟ ପେଟେଣ୍ଟକୁ ଗୃହୀତ କରାଇ ବଡ଼ ବଡ଼ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ଆସୁରିକ ଶକ୍ତିର ନିୟନ୍ତ୍ରଣ ଭିତରକୁ କୃଷି ତଥା ଖାଦ୍ୟ ଉତ୍ପାଦନ ଓ ତାର ବ୍ୟବସାୟକୁ ଠେଲି ଦିଆଗଲା । ଏସବୁର ଅନ୍ତିମ ପରିଣାମର ଜ୍ୱଳନ୍ତ ଉଦାହରଣ ଆନ୍ଧ୍ରରୁ ଆରମ୍ଭ କରି କର୍ଣ୍ଣାଟକ, ମହାରାଷ୍ଟ୍ର, ପଞ୍ଜାବ ପରି ରାଜ୍ୟମାନଙ୍କରେ କୃଷକଙ୍କ ଆତ୍ମହତ୍ୟାର ସଂଖ୍ୟା ଗତ ୪ ବର୍ଷରେ ପ୍ରାୟ ୩୦ହଜାରକୁ ଟପିଲାଣି । ଓଡ଼ିଶାରେ କୃଷି ଉତ୍ପାଦନ କମିବା ସହ କୃଷିର ସହାୟକ ଜଙ୍ଗଲ ଓ ଜମିକୁ ଖଣି ଓ ଶିଳ୍ପ ନାମରେ ଧ୍ୱଂସ କରାଯାଉଛି । କୃଷିଜାତ ଦ୍ରବ୍ୟର ଉଚିତ ମୂଲ୍ୟ ନପାଇ ଚାଷୀ ତଳିତଳାନ୍ତ । ଶିଳ୍ପ ନାମରେ କାର୍ଗିଲ କଂପାନୀର ତେଲ କାରଖାନା ଦ୍ୱାରା ଓଡ଼ିଶାର ଛୋଟ ଛୋଟ ତେଲ କଳ ଗୁଡ଼ିକ ବନ୍ଦ ହୋଇଯିବ ଓ ତୈଳବୀଜ ଚାଷ ବାଧାପ୍ରାପ୍ତ ହେବ । ଯେହେତୁ କଂପାନୀର କଞ୍ଚାମାଲ ଆସିବ ବିଦେଶରୁ ।

ଏସବୁ ପାଇଁ ଦାୟୀ କିଏ ? ବିଶ୍ୱ ବାଣିଜ୍ୟ ସଂଗଠନ ଭିତରେ ପ୍ରବେଶ ହିଁ ମୁଖ୍ୟ କାରଣ । ଗ୍ରୀନ୍‌ବାକ୍ସ ନାମରେ ଆମେରିକା ବାର୍ଷିକ ୫୦୦୦ କୋଟି ଡଲାର ଏବଂ ୟୁରୋପୀୟ ସଂଘ ୨୨୦୦ କୋଟି ଡ଼ଲାର କୃଷି ଉପରେ ସାହାଯ୍ୟ ଦେଉଛନ୍ତି । କେବଳ ୨୦୦୩ରେ ଓଇସିଡ଼ି ଦେଶମାନଙ୍କ କୃଷି ରପ୍ତାନି ଉପରେ ୩୫୦୦୦ କୋଟି ଡ଼ଲାର ରିହାତି ଦିଆଯାଇଥିଲା । କୃଷି ବାଣିଜ୍ୟ ଉପରେ ୟୁରୋପୀୟ ସଂଘ ଦେଇଥିଲା ୧୦୦୦୦ କୋଟି ଡ଼ଲାର । ୟୁରୋପରେ ପ୍ରତି ଗାଈ ପାଇଁ ସରକାରୀ ସାହାଯ୍ୟ ଦିଆଯାଉଛି ଦୈନିକ ୩ ଡ଼ଲାର ଅର୍ଥାତ ୧୩୫ ଟଙ୍କା । ଜାପାନରେ ଏକ ଗାଈ ପିଛା ବାର୍ଷିକ ୨୭ ହଜାର ଟଙ୍କା ସରକାର ଦୁଗ୍ଧ ଉତ୍ପାଦନ ନାମରେ ସବ୍‌ସିଡ଼ି ଦିଆଯାଉଛି । ଏହାର ନାମ ଧଳା ପେଡ଼ି ବା white box ବୋଲି ଅଭିହିତ କରି ବିଶ୍ୱ ବାଣିଜ୍ୟ ସଂଗଠନର ନୀତି ନିର୍ଦ୍ଧାରକମାନେ ଫାଙ୍କି ଦେଇପାରନ୍ତି । ଏପରି ନୂଆ ନୂଆ ନାମକରଣ କୌଶଳଗତ ଭାବେ ବ୍ୟବହୃତ ହେଉଛି । ଆମେରିକା ୨୦୦୨ରେ କପାଚାଷୀଙ୍କୁ ଏକ କେ.ଜି. ପ୍ରତି ୧.୪୫ ଡ଼ଲାର ହିସାବରେ ୩୦୭୦୦ କୋଟି ଡ଼ଲାର ରିହାତି ପ୍ରଦାନ କରିଥିଲା । ଏହାର ଫଳ ସ୍ୱରୂପ ଖୋଲାବଜାର ବ୍ୟାପାରରେ ପ୍ରତିଯୋଗିତା କରିନପାରି ଆଫ୍ରିକାର ବେନିନ, ବୁର୍କିନା, ଫାସୋ, ଚାଦ, ଟାଗୋ, କେନିଆ ଓ ମାଲି ଦେଶର କପାଚାଷୀମାନେ ୪୦୦୦୦ କୋଟି ଡ଼ଲାର ମୂଲ୍ୟର ରପ୍ତାନି ରାଜସ୍ୱ ହରାଇଲେ । ଯେହେତୁ ଆମେରିକାର କପା ଚାଷୀ ରିହାତି ପାଇ ଶସ୍ତାରେ ବିକ୍ରି କଲା । ବ୍ରିଟିଶ୍ ଫାଇନାନ୍ସିଆଲ ଟାଇମ୍ ଅନୁଯାୟୀ (୨୨.୬.୨୦୦୫) ଆମେରିକା ସରକାର ତାର ଧାନ ଉତ୍ପାଦନ ପାଇଁ ଖର୍ଚ୍ଚ ହେଉଥିବା ପ୍ରତି ଡ଼ଲାରରେ ୭୨ ସେଣ୍ଟ ରିହାତି ଦେଉଛି । ମୋଜାମ୍ବିକରେ ଚିନି ଉତ୍ପାଦନ ଖର୍ଚ୍ଚ ଏକ

Digitized by srujanika@gmail.com

ଟନ୍ ପିଛା ୧୦୮ରୁ ୧୪୪ ଡ଼ଲାର ହେଉଥିବାବେଳେ ୟୁରୋପରେ ତାହା ୫୫୭ ଡ଼ଲାର । କିନ୍ତୁ ୟୁରୋପର ଚିନିକଳଗୁଡ଼ିକ ବାର୍ଷିକ ୪୪୫୫ କୋଟି ଟଙ୍କା ମୂଲ୍ୟର ରିହାତି ପାଇ ଆନ୍ତର୍ଜାତୀୟ ବଜାରରେ ଚିନିକୁ ଶସ୍ତାରେ ବିକ୍ରି କରିବା ଦ୍ୱାରା ଗରିବ ଦେଶମାନଙ୍କ ଆଖୁ ଚାଷୀ ନିଜ ଉତ୍ପାଦନର ମୂଲ୍ୟ ପାଇବାରୁ ବଞ୍ଚିତ । ସେହିପରି କୁକୁଡ଼ାଚାଷରେ ବାର୍ଷିକ ୫୨୦୦ କୋଟି ଡ଼ଲାର ରିହାତି ଦେଇ ଗରିବ ଦେଶର ବଜାରରେ ଶସ୍ତାରେ ଚିକେନ ବିକ୍ରି କଲାପରେ ସେହି ଦେଶମାନଙ୍କର ଛୋଟ ଛୋଟ ଚିକେନ ବ୍ୟବସାୟୀଙ୍କ ଦାନା ପାଣି ବୁଡ଼ିଗଲା । ଏସବୁ ସମ୍ଭବପର ହେଲା ଧନୀଦେଶଙ୍କ ସ୍ୱାର୍ଥରେ କେବଳ ବିଶ୍ୱ ବାଣିଜ୍ୟ ସଂଗଠନ ପରି ହତିଆରକୁ ବ୍ୟବହାର କରି । ଅପର ପକ୍ଷରେ ଗରିବ ଓ ବିକଶିତ ଦେଶମାନଙ୍କ ଚାଷୀ ଓ ଶ୍ରମିକ ପାରଂପରିକ ଚାଷ, ବୃତ୍ତି ତଥା ଜୀବିକା ହରାଇ ଦାଣ୍ଡର ଭିକାରୀ ହେବାରେ ଲାଗିଛନ୍ତି । ଭାରତ ଓ ଆଫ୍ରିକାରେ ଆଜିର ଦିନରେ କୋଟି କୋଟି ଲୋକ ଦୈନିକ ଏକ ଡ଼ଲାରରୁ ଅର୍ଥାତ ୫୦ ଟଙ୍କାରୁ କମ୍ ପାଇ ଅନାହାରରେ କାଳାତିପାତ କରୁଥିବାବେଳେ ଖୋଲାବଜାର, ଉଦାରୀକରଣ ଓ ବିଶ୍ୱୀକରଣ ଅର୍ଥ ବ୍ୟବସ୍ଥା ଏକ ଆଶୀର୍ବାଦ ବୋଲି ସାମ୍ରାଜ୍ୟବାଦୀ ଶୋଷକମାନଙ୍କ ଦଲାଲ ହୋଇ କାର୍ଯ୍ୟ କରୁଥିବା ଭାରତ ସମେତ ଅନେକ ସ୍ୱାଧୀନ ଓ ଗଣତାନ୍ତ୍ରିକ ଦେଶର ଶାସକଶ୍ରେଣୀ ସ୍ୱୀକାର କରିବା ଫଳରେ ଆଜି ପ୍ରକୃତରେ ଏହା ବହୁଜନଙ୍କ ପାଇଁ ଅଭିଶାପରେ ପରିଣତ ହୋଇ ଶୋଷଣର ମାଧ୍ୟମ ହୋଇଯାଇଛି ।

୧୯୯୧ ପରେ ଜଗତୀକରଣ ଏବଂ ୧୯୯୫ରୁ ବିଶ୍ୱ ବାଣିଜ୍ୟ ସଂଗଠନର କାର୍ଯ୍ୟକାରିତା ପରଠାରୁ ଆମ ଦେଶରେ କୃଷି, କ୍ଷୁଦ୍ରଶିଳ୍ପ, ଶିକ୍ଷା ଓ ସ୍ୱାସ୍ଥ୍ୟରେ ଯେଉଁ ବିପର୍ଯ୍ୟୟ ଦେଖାଦେଉଛି, ତାହାଠାରୁ ଆମେରିକାର ବାଡ଼ିତଳେ ଥିବା ଲାଟିନ ଆମେରିକୀୟ ଦେଶମାନଙ୍କ ଅନୁଭୂତି ଅତି ଭୟଙ୍କର ଭାବରେ ଅଙ୍ଗେ ଲିଭାଉଛନ୍ତି । ତେଣୁ ଆଜି ବିଶ୍ୱ ବାଣିଜ୍ୟ ସଂଗଠନ ବିରୋଧରେ ତଥା ଆମେରିକା ନେତୃତ୍ୱରେ ଚାଲିଥିବା ଖୋଲା ବଜାରର ଶୋଷଣ ବିରୋଧରେ ସଫଳ ବିଦ୍ରୋହ ଦେଖାଦେଇଛି ଲାଟିନ ଆମେରିକା ଦେଶମାନଙ୍କରେ । ଭେନେଜୁଏଲା, ଆର୍ଜେଣ୍ଟାଇନା, ବୋଲଭିଆ, ମେକ୍ସିକୋ, ବ୍ରାଜିଲ ପରି ଦେଶମାନଙ୍କର କୃଷି ବିପର୍ଯ୍ୟସ୍ତ । ଏହାର ପୁନରୁଦ୍ଧାର କରିବାକୁ ଚାଲିଛି ରାଜନୈତିକ ବିକଳ୍ପ ପାଇଁ ସଂଘର୍ଷ । ଦକ୍ଷିଣକୋରିଆ ଏକ ବିକଶିତ ଦେଶ ବୋଲି କୁହାଯାଉଛି, କିନ୍ତୁ ତାର ଚାଷୀ ଆଜି ସର୍ବହରା । ସେଇଥିପାଇଁ WTO ଡବ୍ଲୁଟିଓ ବିରୋଧରେ ତୀବ୍ର ପ୍ରତିବାଦର ପ୍ରତୀକ ହେଉଛି ଦକ୍ଷିଣକୋରିଆର କୃଷକ ସମାଜ ଯାହାର ପ୍ରତିନିଧି ମିଃଲି ପ୍ରତିବାଦରେ ଆତ୍ମହତ୍ୟା କରି କାନକୁନ୍ ସମ୍ମିଳନୀରେ ଶହୀଦ ହୋଇଗଲେ ।

ହଂକଂରେ ବିଶ୍ୱ ବାଣିଜ୍ୟ ସଂଗଠନର ୧୪୯ଟି ସଭ୍ୟଦେଶର ମନ୍ତ୍ରୀସ୍ତରୀୟ ସମ୍ମିଳନୀ ଶେଷ ହୋଇଯାଇଛି ଡିସେମ୍ବର ୧୮ରେ । ଅତିରଂଜିତ କରି କେନ୍ଦ୍ର ବାଣିଜ୍ୟମନ୍ତ୍ରୀ

Digitized by srujanika@gmail.com

କମଲନାଥ କହିଲେ ଆମର ବିଜୟ ହେଲା ବୋଲି । ବିଜୟର ସ୍ୱାଦ କିଏ ପାଇବ ? ଆମ ଚାଷୀ, ଆମ କୃଷିର ସୁରକ୍ଷା ପାଇଁ ଆମେ ପାଇଲେ କ'ଣ ? ଏସବୁର ଉତ୍ତର ପଚାରିଲେ ମିଳିବ କେବଳ ଆଉପଛକୁ ଯାଇ ହେବନି । ଅର୍ଥାତ ଆଗକୁ ଚାଲ, ପାହାଡ଼ର ତଡ଼ାରୁ ଖସି ମର କିମ୍ବା ସମୁଦ୍ରରେ ବୁଡ଼ି ମରପଛେ ଏହି WTO ର ନିର୍ଯ୍ୟାତନା ମଧ୍ୟରେ ରହ । ଡବ୍ଲୁଟିଓର ନିୟମ ଭିତରେ ଦେଶର ପ୍ରତ୍ୟେକ କ୍ଷେତ୍ର ବିଶ୍ୱ ବାଣିଜ୍ୟ ପରିସରକୁ ଆସିଗଲାଣି । ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାର ବାହାରୁ କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ବ୍ୟାଙ୍କ, ବୀମା, ଅର୍ଥ, ପରିବହନ, ସଡ଼କ, ବନ୍ଦର, ବିମାନକେନ୍ଦ୍ର, ନଗର ନିଗମସେବା, ଆଇନସେବା, କଂପ୍ୟୁଟର ସଫଟେଓ୍ୱର, ଜଳ ପରିବହନ (ଅଡ଼ିଓ – ଭିଡ଼ିଓ) ବିତରଣ, ପର୍ଯ୍ୟଟନ, ଦୂର ସଞ୍ଚାର, ପିଇବା ପାଣି, ଖାଦ୍ୟ ପଦାର୍ଥ, ପୋଷାକ, ଖୁଚୁରା ଦୋକାନ ଏ ସମସ୍ତ କ୍ଷେତ୍ରରେ ବିଦେଶୀ ପୁଞ୍ଜି ବିନିଯୋଗ ସହ ବିଦେଶୀ ବ୍ୟବସାୟୀଙ୍କ ପାଇଁ ମୁକ୍ତ ବଜାରର ଅନ୍ତର୍ଭୁକ୍ତ ହେବା ପାଇଁ କୁହାଯାଉଛି । ଏହି ଦିଗରେ ଆଂଶିକଭାବେ ଅନେକ ହୋଇସାରିଲେଣି । ଜେନେଟିକ ମୋଡ଼ିଫାଇଡ୍ ବିହନ ଓ ଖାଦ୍ୟକୁ କିପରି ଚାଷୀଙ୍କ ଉପରେ ଥୋପାଯିବ ସେଥିପାଇଁ ଷଡ଼ଯନ୍ତ୍ର ଚାଲିଛି । ଆମ ଜମିରେ କି ବିହନ, କି ସାର ଓ କି କୀଟନାଶକ ଔଷଧ ବ୍ୟବହୃତ ହେବ, ଆମ ଚାଷକୁ ସଂରକ୍ଷଣ ଦିଆ ଯିବକି ନାହିଁ କିମ୍ବା ଫସଲରେ ସହାୟକ ମୂଲ୍ୟ ଦିଆଯିବକି ନାହିଁ, ଏହାର ନୀତିଗତ ନିଷ୍ପତ୍ତି ବିଶ୍ୱ ବାଣିଜ୍ୟ ସଂଗଠନର ସର୍ତ୍ତାବଳୀ ଓ ନିୟମ ଦ୍ୱାରା ପରିଚାଳିତ ହେବା ଆରମ୍ଭ ହୋଇଗଲାଣି । ଆମେ କେଉଁ ରକମର ଚାଉଳ କିମ୍ବା ଡ଼ାଲି କି ତେଲ ଖାଇବା, ତାହା ବିଶ୍ୱ ବାଣିଜ୍ୟ ସନନ୍ଦ ଦ୍ୱାରା ନିର୍ଦ୍ଦେଶିତ ହେବ ତାହାହେଲେ ଆମ ଭାତହାଣ୍ଡିରେ ଯେଉଁ ଚାଉଳ ରନ୍ଧା ହେବ ତାହା ମଧ୍ୟ ଆମ ଅନୁସାରେ ହେବ ନାହିଁ । ଏହାଠାରୁ ବଳି ଆଉ କି ଅସହାୟତା ପରିଦୃଷ୍ଟ ହେବ ? ଦେଶର ଦୁଇ ମୁଖ୍ୟ ଶାସକ ଦଳ କଂଗ୍ରେସ ଓ ବିଜେପି ଓ ଏମାନଙ୍କ ସହଚରମାନେ ଅସହାୟତା ଓ ବିପର୍ଯ୍ୟୟ ପାଇଁ ଦାୟୀ । ବିଶ୍ୱ ବାଣିଜ୍ୟ ସଂଗଠନ ନିର୍ଦ୍ଦେଶରେ ପେଟେଣ୍ଟ ଆଇନରେ ପରିବର୍ତ୍ତନ ହୋଇଗଲା । ଆମ ଚାଷୀଙ୍କ ନିଜ ବିହନ ଅଧିକାର ଚାଲିଯିବା ବାଟ ସଫା ହୋଇଗଲା । ମନସେଣ୍ଟୋ, ସିଞ୍ଜେଣ୍ଟ, କାର୍ଗିଲ ପରି ବିଦେଶୀ କଂପାନୀମାନଙ୍କ ହାତରେ ଥିବା ବୌଦ୍ଧିକ ସଂପଦ ହତିଆର-ଟ୍ରିପ୍ସ ଦ୍ୱାରା ଆମ ଚାଷ ଓ ଔଷଧ ତିଆରି ନିୟନ୍ତ୍ରିତ ହେବା ଆରମ୍ଭ ହେଲାଣି । ଆମ ଧାନ, ମୁଗ ତଥା ବିଭିନ୍ନ ଫସଲର କିସମ ନିର୍ଦ୍ଧାରିତ ହେବ ସେମାନଙ୍କ ବ୍ୟାବସାୟିକ ମୁନାଫାକୁ ନେଇ । ବଜାରକୁ ଆସିବ ସେମାନଙ୍କ ମେକାନାଇଜଡ଼ ଉତ୍ପାଦନ ଶସ୍ତାରେ । ତୈଳବୀଜ, ଡାଲି ଜାତୀୟ ଫସଲ କ୍ରମଶଃ ଲୋପ ପାଇବ । ବିରି, କପା, ଜି.ଏମ୍. ସୋୟାବିନ ପରି ଅନେକ ବିହନ ଜରିଆରେ ଆମ ଚାଷୀଙ୍କ ଆତ୍ମହତ୍ୟା ବୃଦ୍ଧି ହୋଇ ଚାଲିବ । ଶେଷରେ ଚାଷୀ ଜମି ଛାଡ଼ିବାକୁ ବାଧ୍ୟ ହେବ ।

Digitized by srujanika@gmail.com

ଆମ ରନ୍ଧାଶାଳର ରେସନ କେବଳ ବହୁରାଷ୍ଟ୍ରୀୟ କଂପାନୀ ଓ ଧନୀ ଦେଶର କର୍ପୋରେଟ ଚାଷରୁ ଉତ୍ପାଦନ ମଧ୍ୟରେ ସୀମିତ ହେବନାହିଁ । ସେଗୁଡିକ ମଧ୍ୟ ଆମ ସହର ଓ ଗାଁର ବିଦେଶୀ ଖୁଚୁରା ଦୋକାନରୁ ଆସୁଥିବ । କାରଣ ବର୍ତ୍ତମାନ କେନ୍ଦ୍ର ସରକାର ଖୁଚୁରା ଦୋକାନ ମାନଙ୍କରେ ବିଦେଶୀ ପୁଞ୍ଜି ବିନିଯୋଗକୁ ଅନୁମତି ଦେବାକୁ ପ୍ରସ୍ତୁତ ହୋଇ ସାରିଲାଣି । ଏସବୁକୁ ସହଜ ଓ ନିୟମିତ କରିବାକୁ ବିଭିନ୍ନ ସମୟରେ ସଭ୍ୟ ଦେଶମାନଙ୍କ ମନ୍ତ୍ରୀସ୍ତରୀୟ ସମ୍ମିଳନୀ ବସୁଛି । ବିଭିନ୍ନ ଦେଶର ଜନତାଙ୍କ ତରଫରୁ ପ୍ରତିବାଦ କରିବା ପାଇଁ ଗଣ ସଂଗଠନମାନେ ପହଞ୍ଚି ଯାଉଛନ୍ତି ସମ୍ମିଳନୀ ସମ୍ମୁଖରେ । ଅନ୍ୟପଟେ ଆଫ୍ରିକା ଓ ଲାଟିନ ଆମେରିକାରେ ବିଶ୍ୱ ବାଣିଜ୍ୟ ସଂଗଠନ ତଥା ଜଗତୀକରଣର ପାତର ଅନ୍ତର ନୀତିର କୁଫଳ ଦ୍ୱାରା ଅର୍ଥବ୍ୟବସ୍ଥା ବିପର୍ଯ୍ୟସ୍ତ । ସେହି ଦେଶମାନଙ୍କରେ ଗଣବିଦ୍ରୋହ ଆରମ୍ଭ ହୋଇ ସାରିଲାଣି । ତେଣୁ ପ୍ରତିରୋଧର ସ୍ୱର ଉଠୁଛି ଓ ମନ୍ତ୍ରୀସ୍ତରୀୟ ବୈଠକର ଗ୍ରୀନ୍‌ରୁମ୍ ନିଷ୍ପତ୍ତିକୁ ଅନେକ ଛୋଟ ଛୋଟ ଦେଶ ମାନିବାକୁ ପ୍ରସ୍ତୁତ ହେଉନାହାନ୍ତି । ସେଥିପାଇଁ ୧୯୯୯ ସିଆଟଲର ସମ୍ମିଳନୀ ଓ ୨୦୦୩ କାନକୁନ ସମ୍ମିଳନୀ ଅଚଳ ହୋଇଗଲା । ବର୍ତ୍ତମାନ ହଂକଂର ସମ୍ମିଳନୀକୁ ସଫଳ ଚିତ୍ର ଦେବାପାଇଁ ଆମେରିକାର କୌଶଳଗତ ପାଲରେ ଭାରତ ପରି କେତେକ ଦେଶ ପଡ଼ିଗଲେ । ଭାରତର ଶାସକବର୍ଗର ମାନସିକତା ଆମେରିକା ନେତୃତ୍ୱାଧୀନ ବିଶ୍ୱବ୍ୟାପାରର ଅଂଶ ହୋଇ ରହିବା ସପକ୍ଷରେ । ତେଣୁ ଗରିବ ଜନସାଧାରଣଙ୍କ ପକ୍ଷ ନେବାର ବାହାନାରେ କିଛି ପାଇବାର କରାମତି ଦେଖାଇବା ସଫଳତାର ଚାବି ଆଙ୍କିବାକୁ ଏକ ପ୍ରୟାସ । ଏହାର ଫଳସ୍ୱରୂପ ଆମେରିକା ଓ ୟୁରୋପୀୟ ସଂଘ କୃଷି ରପ୍ତାନୀ ଉପରେ ୧୯୧୩ ସୁଦ୍ଧା ରିହାତି ହଟାଇନେବାକୁ ରାଜି ହୋଇଥିବା ପ୍ରସ୍ତାବ ଏକ ବିଜୟ ବୋଲି ବହୁ ପ୍ରଚାରିତ ହେଉଛି । ବାସ୍ତବରେ ରପ୍ତାନି ଉପରେ ରିହାତି ସେହି ଦେଶମାନଙ୍କର ମୋଟ କୃଷି ରିହାତିର ମାତ୍ର ୨.୩ ପ୍ରତିଶତ । ୨୦୧୩ ପରେ ମଧ୍ୟ ସେମାନଙ୍କ ଦେଶ ଭିତରେ କୃଷି ରିହାତି ପ୍ରାୟ ୯୭% ଚାଲୁ ରହିବ । ସେତେବେଳେ ଅନ୍ୟ ଦେଶମାନଙ୍କର ରିହାତି ବନ୍ଦ ହୋଇ ଯାଇଥିବ କାରଣ ଋଣ ଓ ଅନ୍ୟ ସେବା କ୍ଷେତ୍ରରେ ସର୍ତ୍ତଗୁଡିକ ବାଧ୍ୟ କରୁଥିବେ । ଅନ୍ୟ ପକ୍ଷରେ ଆସନ୍ତା ଆଠ ବର୍ଷରେ ଏହି ଚାଲୁ ରହିଥିବା ରପ୍ତାନି ରିହାତିର ସୁଯୋଗ ନେଇ ଭାରତ ସମେତ ଅନେକ ଦେଶର ବଜାରରେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଦଲାଲ ବହୁରାଷ୍ଟ୍ରୀୟ କଂପାନୀମାନେ ପ୍ରଭୁତ୍ୱ ଜାହିର କରିସାରିଥିବେ । ୨୦୧୩ ପରେ ଆମେରିକା କହିବ ସେ ତାର ରିହାତି ବନ୍ଦ କରିପାରିବ ନାହିଁ ଯେପରି ପ୍ରଦୂଷଣ ରୋକିବାକୁ କାଇରୋ ରାଜିନାମାକୁ ରାଷ୍ଟ୍ରପତି ବୁଶ ପ୍ରତ୍ୟାଖ୍ୟାନ କରିଦେଲେ ୟୁରୋପୀୟ ସଂଘ ସ୍ୱୀକୃତି ଦେବାପରେ ବି । ନିକଟ ଭବିଷ୍ୟତରେ ବିକାଶଶୀଳ ଦେଶ ଓ ଅଣବିକଶିତ ଦେଶମାନଙ୍କ ୭୦ ଭାଗ ଗରିବ ଓ

Digitized by srujanika@gmail.com

ନିମ୍ନ ମଧ୍ୟବିତ୍ତ ଜନତାଙ୍କ ଜୀବିକା ଓ ଜୀବନ ଦୁର୍ବିସହ ହୋଇଯିବ । ସବୁଠାରୁ ବଡ଼ ବିପଦ ଆସନ୍ନ ହୋଇପଡିବ ଖାଦ୍ୟ ସୁରକ୍ଷା ପ୍ରତି । ହଂକଂ ସମ୍ମିଳନୀରେ କୃଷିରେ କୌଣସି ସାଲିସ କରିବା ପରିବର୍ତ୍ତେ ବିଶ୍ୱ ବାଣିଜ୍ୟ ସଂଗଠନରୁ କୃଷିକୁ ସଂପୂର୍ଣ୍ଣ ମୁକ୍ତ କରିବା ଏକମାତ୍ର ବିକଳ୍ପ ଥିଲା ଯାହାକି ଉରୁଗୁଏ ରାଉଣ୍ଡ କଥାବାର୍ତ୍ତାର ଆରମ୍ଭରେ ଭାରତ ସମେତ ସମସ୍ତ ଗରିବ ଦେଶଙ୍କ ଦାବି ଥିଲା । ଆଜି ସାଧାରଣ ଜନତାଙ୍କ ଏହି ବିଶ୍ୱ ସଂଗଠନରୁ ବିଦାୟ ନେବା ଦାବିକୁ ଗ୍ରହଣ କରିବାକୁ ଭାରତ ସରକାର ଓ ରାଜନୈତିକ ଦଳମାନଙ୍କର ଯଦି ସାହସ ନାହିଁ ଅନ୍ତତଃ କୃଷିକୁ ସଂପୂର୍ଣ୍ଣ ମୁକ୍ତ କରିବା ପାଇଁ ସ୍ୱର ଉତ୍ତୋଳନ କଲେ ଆମେରିକା ହାର ମାନିବାକୁ ବାଧ ହେବ । ନଚେତ ଏହି ହଂକଂ ସମ୍ମିଳନୀର ତଥାକଥିତ ସଫଳତା ଏକ କୌଶଳ ରୂପେ ଆମ କୃଷିକୁ ଗ୍ରାସ କରିବ । ୨୦୦୧ ମସିହା ଦୋହା ସମ୍ମିଳନୀରେ ବିକଶିତ ଦେଶମାନେ ଜଗତୀକରଣର ଲାଭକୁ ନ୍ୟାୟୋଚିତ ବାଟରେ ସମସ୍ତ ଦେଶକୁ ବାଣ୍ଟିବା ପାଇଁ ସଫଳ ପଦକ୍ଷେପ ନେବାକୁ ପ୍ରତିଶ୍ରୁତି ଦେଇଥିଲେ; କିନ୍ତୁ ୪ ବର୍ଷ ମଧ୍ୟରେ ବଣ୍ଟନରେ ଅସମତା ଯଥେଷ୍ଟ ବୃଦ୍ଧିପାଇଛି । ୧୯୯୭ ରୁ ୨୦୦୧ ମଧ୍ୟରେ ସମସ୍ତ ଜିନିଷର ମୂଲ୍ୟ ସୂଚାଙ୍କରେ ୫୩% ତଳକୁ ଖସିଛି । ଏହାଦ୍ୱାରା ଆଫ୍ରିକାର ଦୁଇଗୁଣ ରପ୍ତାନି ବଢ଼ାଯିବା ପରେ ପୂର୍ବ ଆୟକୁ ନିଶ୍ଚିତ ରଖିବାକୁ ସମର୍ଥ ହୋଇଛନ୍ତି । ୨୦୦୫ର ମାନବ ସମ୍ବଳ ରିପୋର୍ଟ କହୁଛି - ବିଶ୍ୱ ବାଣିଜ୍ୟ ପ୍ରତିଯୋଗିତାରେ ଅସମତାର ପରିମାଣ ଅତିମାତ୍ରାରେ ବଢ଼ିବା ହେତୁ ଗରିବମାନେ ଆମଦାନୀ ପ୍ରତିଯୋଗିତାର ଚକରେ ପେଷି ହୋଇଯାଆନ୍ତି । ୧୯୯୭ରେ ଫଳ ରପ୍ତାନିରେ ୭୫% ଛୋଟ ଚାଷୀମାନଙ୍କର ଯୋଗଦାନ ଥିଲା । କିନ୍ତୁ ୨୦୦୦ ବେଳକୁ ତାହା ୧୮%କୁ ଆସିଗଲା । ଏହାର ମୂଳକାରଣ ବଡ଼ବଡ଼ କଂପାନୀମାନଙ୍କ ହାତକୁ ଫଳ ଚାଷ ଚାଲିଗଲା ।

ହଂକଂ ସମ୍ମିଳନୀର ପ୍ରକୃତ ଚିଠା ପୁଣି ଜେନେଭାରେ ତିଆରି ହେବ ଏବଂ ବିଦେଶୀ ପୁଞ୍ଜି ବିନିଯୋଗକୁ ସୁରକ୍ଷା, ସମସ୍ତ ସେବାକ୍ଷେତ୍ରକୁ ଘରୋଇକରଣ ଓ ଜଳ ସଂପଦକୁ ଏକ ପଣ୍ୟଦ୍ରବ୍ୟ ରୂପେ ବ୍ୟବସାୟ କରିବାକୁ ବାଧ କରିବା ପାଇଁ ଆବଶ୍ୟକ ନିୟମାବଳୀ ଗୃହୀତ କରିବାକୁ ଉଦ୍ୟମ ଜାରି ରହିବ । ଆଉ ଏକ ଲୁକ୍କାୟିତ ଏଜେଣ୍ଡା ରହିଛି ଯାହାକି ତିନି ସାମ୍ରାଜ୍ୟବାଦୀ ଅସ୍ତ୍ର ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି ଓ ବିଶ୍ୱ ବାଣିଜ୍ୟ ସଂଗଠନର ଏକ ମିଳିତ ସଂଗଠନ ତିଆରି ହେବ । ତାର ନାମ ରହିବ ଆନ୍ତର୍ଜାତିକ ପ୍ରାକୃତିକ ସଂପଦ ପ୍ରତିଷ୍ଠାନ । ଏହା ଜରିଆରେ ଅଣ ବିକଶିତ ଓ ବିକାଶଶୀଳ ଦେଶମାନଙ୍କର ପ୍ରାକୃତିକ ସଂପଦ ଗୁଡିକରୁ ମହାସୁଲ ଆଦାୟ କରାଯାଇ ପାଣ୍ଠି ହେବ । ତାହା ଖଣିମାନଙ୍କ ବିକାଶରେ ଖର୍ଚ୍ଚ ହେବ । କି ସୁନ୍ଦର ଷଡ଼ଯନ୍ତ୍ର ? ଯାହାର ଫଳ ଭୋଗିବେ ପୁଞ୍ଜିବାଦୀ ଓ ବିକଶିତ ରାଷ୍ଟ୍ରମାନଙ୍କ କଂପାନୀମାନେ । ଏକଥା ପ୍ରକାଶ କରିଛି ୨୦୦୩ ଅକ୍ଟୋବର ୩

Digitized by srujanika@gmail.com

ତାରିଖର ଫାଇନାନ୍‌ସିଆଲ ଟାଇମ୍‌ସ । ତେଣୁ ବିଶ୍ୱ ବାଣିଜ୍ୟ ସଂଗଠନ ଯେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ହାତରେ ଏକ ଅକ୍ଟୋପସ ହତିଆର, ଯାହାରି ଜରିଆରେ ମଣ୍ଡିଶାଳରୁ ହାଣ୍ଡିଶାଳ ଯାଏ ଆମ ଲଗାମ ରହିବ । ଏ ଲଗାମରୁ ମୁକ୍ତ ହେବା ଏକାନ୍ତ ଜରୁରୀ । ବାଣିଜ୍ୟରେ ଆମଦାନୀ କଟକଣାକୁ ପୁନଃ ଲାଗୁ କରାଯିବା ସହ ଆଭ୍ୟନ୍ତରୀଣ ବଜାରରେ କୃଷି, କ୍ଷୁଦ୍ରଶିଳ୍ପ ଓ କୁଟୀରଶିଳ୍ପ ଉତ୍ପାଦନକୁ ସୁରକ୍ଷା ଦେବାପାଇଁ ରିହାତି ବ୍ୟବସ୍ଥାକୁ ସୁସଂଗଠିତ କରି ଦେଶର ଖାଦ୍ୟ ନିରାପତ୍ତା ଓ ସ୍ୱାବଲମ୍ବନ ଅର୍ଥ ବ୍ୟବସ୍ଥାକୁ ସୁଦୃଢ଼ କରାଯାଇପାରିବ । ଶାସକ ଓ ବିରୋଧୀ ଦଳ ମାନଙ୍କ ଆଭିମୁଖ୍ୟରେ ମଧ୍ୟ ଏହାକୁ କେନ୍ଦ୍ର କରି ପରିବର୍ତ୍ତନ ଅତ୍ୟନ୍ତ ଜରୁରୀ । ନଚେତ୍‌ ଦେଶ ଗୋଲାମ ହୋଇଯିବ ।



Digitized by srujanika@gmail.com

# ସ୍ୱରାଜ ଲୁଣ ପୁଣି ବନ୍ଦୀଶାଳରେ
## ଅଧିକ ଆୟୋଡ଼ିନ୍ ସ୍ୱାସ୍ଥ୍ୟ ପ୍ରତି ବିପଦ

ପାଣି ଓ ଲୁଣ ପ୍ରତ୍ୟେକ ମଣିଷଙ୍କ ଅତ୍ୟାବଶ୍ୟକ ଖାଦ୍ୟ ପଦାର୍ଥ ଯାହା ସାଧାରଣ ଗରିବ ଲୋକଙ୍କ ପାଇଁ ଜୀବନ । ପାଣିକୁ ଘରୋଇକରଣ ଓ ବଜାରୀକରଣ ଭିତରକୁ ଠେଲି ଦିଆଯିବା ପାଇଁ କେନ୍ଦ୍ର ଓ ରାଜ୍ୟ ସରକାରମାନେ ସମସ୍ତ ରାସ୍ତା ଖୋଲି ସାରିଲେଣି । ବର୍ତ୍ତମାନ ଲୁଣକୁ ମଧ ବଜାରର ଏକ ଲାଭଦାୟକ ଶୋଷଣ ପାଇଁ ପଣ୍ୟଦ୍ରବ୍ୟ ରୂପେ କଂପାନୀମାନଙ୍କ ହାତରେ ଟେକିଦେବାପାଇଁ କେନ୍ଦ୍ରର କଂଗ୍ରେସ ନେତୃତ୍ୱାଧୀନ ସରକାର ସ୍ୱାଧୀନତା ଦିବସକୁ ହିଁ ବାଛିଲେ । ଏହି ନିଷ୍ପତ୍ତି ଜରିଆରେ ସରକାର ତଥା କଂଗ୍ରେସ ପାର୍ଟି କହିବାକୁ ଚାହେଁଯେ – ଆଜିର କଂଗ୍ରେସ ଅତୀତରୁ ସଂପୂର୍ଣ୍ଣ ଭିନ୍ନ ତାର ଭିନ୍ନତା, ଆଦର୍ଶ ଓ ଲକ୍ଷ୍ୟକୁ ନେଇ । ୧୯୨୯ ଲାହୋର ଅଧିବେଶନରେ କଂଗ୍ରେସ ଲୁଣକୁ କରମୁକ୍ତ କରିବା ପାଇଁ ବ୍ରିଟିଶ ସାମ୍ରାଜ୍ୟ ପାଖରେ ଦାବି କରିଥିଲା । ମହାତ୍ମାଗାନ୍ଧୀ ସାବରମତୀ ଆଶ୍ରମରୁ ଦାଣ୍ଡିଯାତ୍ରା ଆରମ୍ଭ କଲେ ୧୯୩୦ ଏପ୍ରିଲ ୬ ତାରିଖରେ । ଲକ୍ଷ୍ୟ ଅତି ସ୍ପଷ୍ଟ ଥିଲା । ଜଣେ ସ୍ୱାଧୀନ ନାଗରିକର ସ୍ୱାଭାବିକ ଅଧିକାର ଅଛି ପ୍ରକୃତିଦତ୍ତ ସମୁଦ୍ରରୁ ଅତ୍ୟାବଶ୍ୟକ ଲୁଣ ଅମଳ କରିବାକୁ ଯେପରି ପାଣି ଓ ପବନ ପ୍ରତ୍ୟେକ ଜୀବଜନ୍ତୁ ପାଇଁ ମୁକ୍ତ । ସେହି କଂଗ୍ରେସ ଦାଣ୍ଡିଯାତ୍ରାର ୭୫ ବର୍ଷ ବାର୍ଷିକୀ ପାଳନକୁ ଏକ ପ୍ରହସନରେ ପରିଣତ କରି ଗରିବ ଜନତାଙ୍କ ଶସ୍ତା ସାଦାଲୁଣକୁ ଆୟୋଡ଼ିନ ଯୁକ୍ତ ନାମରେ କଂପାନୀ ମାଲରେ ପରିଣତ କରିବା ନିଷ୍ପତ୍ତି ସ୍ୱାଧୀନତା ଆନ୍ଦୋଳନର ମୂଲ୍ୟବୋଧ ତଥା ନାଗରିକ ଅଧିକାର ପ୍ରତି ଅବମାନନା ଓ ବିଶ୍ୱାସଘାତକତା କରିଛି ।

୧୯୩୦ଲବଣ ସତ୍ୟାଗ୍ରହ ପୂର୍ବରୁ ଗାନ୍ଧୀଜୀ ତତ୍‌କାଳୀନ ଭାରତୀୟ ଲର୍ଡ଼ ଇରଉଇନ୍‌ଙ୍କୁ ପତ୍ରଲେଖି ପଚାରିଥିଲେ ଯେ ଜଣେ ସାଧାରଣ ଭାରତୀୟଙ୍କ ଦୈନିକ ଆୟ ମାତ୍ର ୩ ଅଣା ଥିବାବେଳେ ତାର ଶାସକ ଭାଇସରାୟଙ୍କ ଦୈନିକ ଖର୍ଚ୍ଚ ୭୦୦ ଟଙ୍କା । ଏହା ଏକ ଶୋଷଣ ପ୍ରକ୍ରିୟାର ପରିଣାମ, ବରଦାସ୍ତର ବାହାରେ । ଏଣିକି ଶୋଷଣର ମୁକ୍ତି ପାଇଁ ସଂପୂର୍ଣ୍ଣ ସ୍ୱରାଜ ଏକାନ୍ତ ଜରୁରୀ । ଏହି ଲକ୍ଷ୍ୟ ହାସଲ ପାଇଁ

Digitized by srujanika@gmail.com

ଅତି ଗରିବ ଲୋକର ଆବଶ୍ୟକ ଲୁଣକୁ କରମୁକ୍ତ କରାଇ ତାର ବଞ୍ଚିବାର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଦାଣ୍ଡିଯାତ୍ରାର ମୂଳ ବିଚାର ଥିଲା । ବ୍ରିଟିଶ ସାମ୍ରାଜ୍ୟ ସେଦିନ ଦୋହଲି ଯାଇଥିଲା ଯେତେବେଳେ ଦାଣ୍ଡି ସମେତ ଦେଶର ସମସ୍ତ ଉପକୂଳରେ ହଜାର ହଜାର ସତ୍ୟାଗ୍ରହୀ ଲାଠି, ଗୁଳି, ଜେଲକୁ ଖାତିର ନକରି ଆଇନ ଅମାନ୍ୟ କରି ଲୁଣ ମାରିଥିଲେ । ୧୯୪୬ରେ କଂଗ୍ରେସ ଓ ମୁସଲିମ ଲିଗ୍‌ର ସଂଯୁକ୍ତ ସରକାର ଗଠିତ ହେଲାପରେ ଗାନ୍ଧିଜୀ ଲିଖିତଭାବେ ସନ୍ଦେଶ ଦେଲେ ଯେ - ''ପାଣି ଓ ପବନ ପରି ଲୁଣରୁ ମଧ କୌଣସି ଟିକସ ଆଦାୟ କରାନଯାଉ । ଏହି କ୍ରମରେ ଲୁଣ ସ୍ୱାଧୀନତାର ଏକ ପ୍ରତୀକ ହୋଇଯାଇଛି ।

ଭାରତରେ ୧୮୫୯ରେ ପ୍ରଥମେ ଲୁଣ ଉତ୍ପାଦନ ଉପରେ ଟିକସ ଜାରି କରିବାକୁ ବ୍ରିଟିଶ ସଂସଦ ଲେଜିସ୍ଲେଟିଭ୍ କାଉନସିଲ ବିଧେୟକ ଆଣିଥିଲା । କ୍ରମଶଃ କର ବୃଦ୍ଧିକରି ଶେଷରେ ୧୯୨୯ରେ ଲୁଣକୁ ସମ୍ପୂର୍ଣ୍ଣଭାବେ କଂପାନୀ ହାତକୁ ଦେଇ ଦିଆଗଲା । ଫଳରେ ପାରଂପରିକ ଲୁଣ ଉତ୍ପାଦନକାରୀ ଜୀବିକା ହରାଇବା ସହ ସାଧାରଣ ଲୋକେ ନିଜର ଅଧିକାରଭୁକ୍ତ ଲୁଣକୁ ଏକ ମୁକ୍ତ ସାମଗ୍ରୀ ଭାବରେ ପାଇବାରୁ ବଞ୍ଚିତ ହେଲେ ।

ସ୍ୱାଧୀନତା ପରେ ପରେ ଆମ ଦେଶରେ ସବୁଠାରୁ ଶସ୍ତା ଓ ପର୍ଯ୍ୟାପ୍ତ ପରିମାଣରେ ଲୁଣ ବଜାରକୁ ଆସୁଥିଲା । ଲୁଣକୁ କେହି ଚୋରି କରି ନିଅନ୍ତି ନାହିଁ ବୋଲି ଦୋକାନବାଲା ଖୋଲାରେ ଲୁଣ ରଖିଥାନ୍ତି । କିନ୍ତୁ ଏପରି ଏକ ସୁସ୍ଥ ଓ ସଭ୍ୟ କାରବାରକୁ ଖତମ କରିଦିଆଗଲା ଯେଉଁଦିନଠାରୁ କଂପାନୀମାନଙ୍କ ହାତରେ ଲୁଣ ବ୍ୟବସାୟକୁ ହସ୍ତାନ୍ତର କରିବା ପ୍ରକ୍ରିୟା ଆରମ୍ଭ ହେଲା ।

ଆଜି ୬୦ ବର୍ଷର ସ୍ୱାଧୀନତା ପରେ ଉଦାରୀକରଣ ଅର୍ଥ ବ୍ୟବସ୍ଥାରେ ଆମ ଦେଶର ସାଧାରଣ ଗରିବ ଲୋକର ଦୈନିକ ଆୟ ୩୦ ଟଙ୍କାରୁ କମ ଥିବାବେଳେ ସର୍ବୋଚ୍ଚ ଆୟକାରୀ ମଧରେ ଫରକ ଲକ୍ଷାଧିକ ଗୁଣ ଅଧିକ । ଏହି ଫରକ ବେଳେ ସାଦା ଲୁଣର ଉତ୍ପାଦନ ବିକ୍ରି, ଖାଇବା ଉପରେ ନିଷେଧ ଜାରିକରି ଆୟୋଡ଼ିନ ଯୁକ୍ତ ଲୁଣକୁ ବାଧ୍ୟତାମୂଳକ କରିବା ପଛରେ ସ୍ୱାସ୍ଥ୍ୟଗତ କାରଣ ଅପେକ୍ଷା କଂପାନୀରାଜର ମୁନାଫା କେନ୍ଦ୍ରିତ ସ୍ୱାର୍ଥ ନିହିତ ରହିଛି । ସରକାର ଯଦି ଗଳଗଣ୍ଡ ରୋଗୀର ନିରାକରଣ ପାଇଁ ପ୍ରକୃତରେ ଚାହାଁନ୍ତି ରୋଗୀଙ୍କୁ ଚିହ୍ନଟ କରି ଆୟୋଡ଼ିନ ଡ୍ରପ କାହିଁକି ଦେଉନାହାନ୍ତି ? ଦେଶର ସର୍ବତ୍ର ଗଳଗଣ୍ଡ ରୋଗ ହୁଏ ନାହିଁ । ସମୁଦ୍ରରୁ ବହୁ ଦୂରରେ ବିଶେଷ କରି ହିମାଳୟ କ୍ଷେତ୍ରରେ କେତେକ ସ୍ଥାନରେ ଉକ୍ତ ରୋଗ ଦେଖାଯାଏ । ଅନ୍ୟତ୍ର ଅତି

Digitized by srujanika@gmail.com

ନଗଣ୍ୟ । ସେଥିପାଇଁ ଆୟୋଡ଼ିନ ଅଭାବ ସ୍ଥାନରେ ଆବଶ୍ୟକ ଆୟୋଡ଼ିନ ପରିମାଣ ସ୍ୱାସ୍ଥ୍ୟ ବିଭାଗ ତରଫରୁ ଯୋଗାଇ ଦେବା ଏକ କର୍ତ୍ତବ୍ୟ । କିନ୍ତୁ ଯେଉଁଠି ସମୁଦ୍ର ଲୁଣରେ, ପରିବାରେ, ବାୟୁମଣ୍ଡଳରେ ଥିବା ଆୟୋଡ଼ିନ ପାଉଥିବା ବହୁଜନଙ୍କୁ ଆୟୋଡ଼ିନଯୁକ୍ତ ଲୁଣ ବାଧ କରିବା ପଦକ୍ଷେପ ନୂଆ ନୂଆ ରୋଗ ସୃଷ୍ଟି କରିବ ।

ୟୁନିସେଫକୁ ଆୟୋଡ଼ିନ ଯୁକ୍ତ ଲୁଣର ପ୍ରଚାର ପାଇଁ ବ୍ୟବହାର କରାଯାଉଛି । କିନ୍ତୁ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର ଏକ ସଂସ୍ଥା ଇଣ୍ଟରନେସନାଲ କାଉନ୍‌ସିଲ ଫର କଣ୍ଟ୍ରୋଲ ଅଫ ଆୟୋଡ଼ିନ ଡ଼େଫିସିଏନ୍‌ସି ଏଣ୍ଡ ଡ଼ିସଅର୍ଡ଼ର (International Council for control of iodine deficiency and disorder) ସ୍ୱୀକାର କରିଛି ଯେ - ଲୁଣରେ ମିଶାଇ ଆୟୋଡ଼ିନ ବ୍ୟବହାରର ମାତ୍ରା ବଢ଼ିଗଲେ ସ୍ୱାସ୍ଥ୍ୟ ପ୍ରତି ବିପଦ । କେବଳ ଆୟୋଡ଼ିନ ଅଭାବଗ୍ରସ୍ତ ରୋଗୀ ହିଁ ଆୟୋଡ଼ିନ ସେବନ କରିବା ଉଚିତ ।

ଅଖିଳ ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥା ପକ୍ଷରୁ ଏକ ପୁସ୍ତିକାରେ ଆୟୋଡ଼ିନ ଅଭାବ ହେଲେ ବୁଦ୍ଧି କମିଯିବ ଓ ବିକଳାଙ୍ଗ ହେବ ବୋଲି କୁହାଯାଇଛି । କିନ୍ତୁ ନିଉଟ୍ରିସନ ବିଶେଷଜ୍ଞ ଡାକ୍ତର ଶାନ୍ତିଲାଲ କୋଠାରୀ ଏହି ତଥ୍ୟକୁ ମିଥ୍ୟାବୋଲି କହିଛନ୍ତି ଓ ଆହ୍ୱାନ କରିଛନ୍ତି ଯେ ଯେଉଁ ଡାକ୍ତର ଏହାକୁ ପ୍ରମାଣିତ କରାଇଦେବେ ତାକୁ ୧୦ ଲକ୍ଷ ଟଙ୍କା ଇନାମ ଦେବାକୁ ଘୋଷଣାରେ ପ୍ରକାଶ କରିଛନ୍ତି ।

ଆମେରିକାର ନ୍ୟୁ ଜର୍ସି ଡ଼ିପାର୍ଟମେଣ୍ଟ ଆଫ ହେଲଥର ଫେକ୍ଟସିଟ ଅନୁଯାୟୀ ଆୟୋଡ଼ିନ ଚର୍ମ ଓ ଆଖିରେ ଜ୍ୱାଳା ସୃଷ୍ଟି କରେ । କାସ ଓ ଶ୍ୱାସ ରୋଗ ହୁଏ । ଏହା ଫୁସଫୁସ ଯକୃତକୁ ପ୍ରଭାବିତ କରେ । ଥାଇରାଡ଼ ଗ୍ରନ୍ଥିଗୁଡ଼ିକରେ ଅସୁବିଧା ହୁଏ । ଏହି ଫେକ୍ଟସିଟ୍ ସୂଚନା ଦିଏ ଯେ ଆୟୋଡ଼ିନ ଦ୍ୱାରା କାସର ଆଶଙ୍କାକୁ ମନା କରାଯାଇପାରେନା । ଆୟୋଡ଼ିନର ମାତ୍ରା ବଢ଼ିଗଲେ ମଣିଷ ଜୀବନ ପ୍ରତି ବିପଦ ମଧ୍ୟ । ଆମେରିକାରେ ଆଇନ ଅନୁସାରେ ବାୟୁମଣ୍ଡଳରେ ୦.୧ ପିପିଏମ୍ ଆୟୋଡ଼ିନ ହିଁ ନିରାପଦ । ଆମେରିକାର ଆଉ ଏକ ବିଜ୍ଞାନ ପତ୍ରିକା ଆଇଡ଼ିଡ଼ି ନ୍ୟୁଜଲେଟର ଅନୁଯାୟୀ ଆମେରିକାର ଗ୍ରେଟ ଲେକ୍‌ସ ଓ ମଧ୍ୟ ପଶ୍ଚିମ ଅଞ୍ଚଳରେ ଗଳଗଣ୍ଡ ରୋଗ ବ୍ୟାପିବାରୁ ଆୟୋଡ଼ିନ ପ୍ରଚଳନ କରାଗଲା । କିନ୍ତୁ ବହୁସଂଖ୍ୟାରେ ହାଇପରଥାଇରୋଡ଼ିଜମ୍ ରୋଗୀ ଦେଖିବାକୁ ମିଳିଲା । ଏକାଡ଼େମୀ ଆଫ ନ୍ୟୁଟ୍ରିସନ ଇଂପ୍ରୁଭମେଣ୍ଟର ଅଧ୍ୟକ୍ଷ ଡଃ ଶାନ୍ତିଲାଲ କୋଠାରୀଙ୍କ ଅନୁଯାୟୀ ଅଷ୍ଟ୍ରେଲିଆରେ ୧୯୫୦ରୁ ସ୍କୁଲରେ ଛାତ୍ରଙ୍କୁ ଆୟୋଡ଼ିନ ବଟିକା ଦିଆଯାଉଥିଲା । କିନ୍ତୁ ୧୯୬୦ରୁ

Digitized by srujanika@gmail.com

ଆୟୋଡ଼ିନ ଯୁକ୍ତ ଖାଦ୍ୟ ପଦାର୍ଥରେ ବିକ୍ରି କଲାପରେ ୧୯୬୩ ବେଳକୁ ସେଠାରେ ପ୍ରତି ଏକ ଲକ୍ଷ ଲୋକରେ ହାଇପରଥାଇରୋଡ଼ିଜମ ରୋଗୀଙ୍କ ସଂଖ୍ୟା ୨୪ ଥିଲାବେଳେ ୧୯୬୭ରେ ଏହା ୧୨୪କୁ ବୃଦ୍ଧି ପାଇଲା । ଫଳରେ ଆୟୋଡ଼ିନର ବାଧ୍ୟତାମୂଳକ ବ୍ୟବହାରକୁ ବନ୍ଦ କରାଗଲା । ଜିମ୍ବାୱେରେ ୧୯୯୧-୯୫ ମଧ୍ୟରେ Nodwar goiter ରୋଗ ତିନିଗୁଣ ବୃଦ୍ଧି ହେଲା । ସୁଇଜରଲ୍ୟାଣ୍ଡରେ ୧୯୮୦ରେ ଲୁଣରେ ଆୟୋଡ଼ିନ ମାତ୍ରା ୩.୭୫ ମାଇକ୍ରୋଗ୍ରାମ ମିଶାଇବା ଦ୍ୱାରା ହାଇପରଥାଇରୋଡ଼ିଜମ ରୋଗୀଙ୍କ ସଂଖ୍ୟା ୧୦ ପ୍ରତିଶତ ବଢ଼ିଲା । ଏସବୁ ତଥ୍ୟ ପ୍ରମାଣିତ କରୁଛି ଯେ ଲୁଣ କିମ୍ବା ଖାଦ୍ୟପଦାର୍ଥ ଛରିଆରେ ଆୟୋଡ଼ିନ ସମସ୍ତଙ୍କ ପାଇଁ ଅନିବାର୍ଯ୍ୟ କରିବା ବିଜ୍ଞାନ ସମ୍ମତ ନୁହଁ ଏବଂ ଜୀବନପ୍ରତି ବିପଦ । ତେଣୁ ଆୟୋଡ଼ିନ ବଟିକା କିମ୍ବା ବୁନ୍ଦା ଗଳଗଣ୍ଡ ରୋଗ ଦେଖାଯାଉଥିବା ନିର୍ଦ୍ଦିଷ୍ଟ ଅଞ୍ଚଳରେ ସରକାର ପୋଲିଓ ଦେବାପରି ବଣ୍ଟନ କରିବା ଉଚିତ ।

ଆମ ଦେଶରେ ବାର୍ଷିକ ମୋଟ ୧୪୦ ଲକ୍ଷ ଟନ ଲୁଣ ଉତ୍ପାଦନ ହେଉଛି । ଏଥିରୁ ୬୫ ଲକ୍ଷ ଟନ୍ ବିଭିନ୍ନ ଶିଳ୍ପ କ୍ଷେତ୍ରରେ ବ୍ୟବହୃତ ହେଲାବେଳେ ୬୦ ଲକ୍ଷ ଟନ ଖାଇବାରେ ବ୍ୟବହାର କରାଯାଉଛି । ଏହି ୬୦ ଲକ୍ଷ ଟନ ପାରଂପରିକ ଲୁଣ ଉତ୍ପାଦନ ପ୍ରକ୍ରିୟାରେ କ୍ରମଶଃ କମି କମି କଂପାନୀମାନଙ୍କ ହାତକୁ ଆସିଗଲାଣି ଆୟୋଡ଼ିନ ଯୁକ୍ତ ନାମରେ । ବର୍ତ୍ତମାନ ଦେଶୀ-ବିଦେଶୀ କଂପାନୀମାନେ ଲୁଣ ବ୍ୟବସାୟ କରି ଗରିବ ଲୋକଙ୍କୁ ପକେଟ ଲୁଣ କିଣିବାକୁ ସମସ୍ତ ଚକ୍ରାନ୍ତ କରି କେନ୍ଦ୍ର ଓ ରାଜ୍ୟ ସରକାରମାନଙ୍କୁ ପ୍ରଭାବିତ କରିବାରେ ସଫଳ ହେଉଛନ୍ତି । ୧୯୯୮ରେ ବାଜପେୟୀ ସରକାର ସାଦା ଲୁଣ ଉପରେ ନିଷେଧ ଜାରିକରି ପୁଣି ଜନ ପ୍ରତିବାଦ ଯୋଗୁଁ ୨୦୦୦ରେ ପ୍ରତ୍ୟାହାର କରିଥିଲେ । ଓଡ଼ିଶା ସରକାର ୨୦୦୨ରେ ଆୟୋଡ଼ିନକୁ ବାଧ କରି ବିଜ୍ଞପ୍ତି ପ୍ରକାଶ କଲେ । ଭାରତ ସରକାର ପୁଣି ଅଗଷ୍ଟ ୧୫ ରୁ ସାଦା ଲୁଣକୁ ଅଖାଦ୍ୟ ରୂପେ ଘୋଷଣା କରି ଏହାକୁ ବିକ୍ରି ଓ ବ୍ୟବହାର ଉପରେ ନିଷେଧ ଜାରି କରିଛନ୍ତି । ସାଦା ଲୁଣକୁ ଯିଏ ମଣିଷ ଖାଦ୍ୟ ବ୍ୟତୀତ ଅନ୍ୟ ପାଇଁ ବ୍ୟବହାର କରିବ ସେ ଲାଇସେନ୍ସ କରି ଅନୁବନ୍ଧନ କରିବାକୁ ବାଧ । ନଚେତ ଏହା ଦଣ୍ଡନୀୟ ଅପରାଧ । ଏହା ଫଳରେ ଆୟୋଡ଼ିନ ନାମରେ କଂପାନୀ ଲୁଣ ବଜାରରେ ଆଧିପତ୍ୟ ବିସ୍ତାର କରିବ ଓ ସାଦା ଲୁଣ ଚୋରାରେ ବିକ୍ରି ହେବ ଅର୍ଥାତ ଦୁଇଆଡୁ ଦର ବୃଦ୍ଧି ହେବ । କାରଣ ପଶୁମାନଙ୍କୁ ଚାଷୀ ଲୁଣ ଖାଇବା ପାଇଁ କଳା ବଜାରରୁ ଲୁଣ କିଣିବ । ଗରିବ ଲୋକେ ଚଢ଼ାଦରରେ କଂପାନୀ ଲୁଣ ଖର୍ଦ୍ଦ କରିବାକୁ ବାଧ ହେବେ । ନଚେତ ଲୁଣ ଟିକକ ପାଇଁ ମଧ୍ୟ ଚିନ୍ତାରେ ରହିବେ । କାରଣ ଏ

Digitized by srujanika@gmail.com

ଦେଶରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ସଂଖ୍ୟା ପ୍ରାୟ ୪୦ କୋଟି ଓ ଓଡ଼ିଶାରେ ୫୦ ଭାଗରୁ ଅଧିକ । ଆଜି ଯେଉଁମାନେ ଆୟୋଡ଼ିନକୁ ବାଧତା କରିବାକୁ ଚାହାଁନ୍ତି ସ୍ୱାସ୍ଥ୍ୟଗତ **କାରଣ** ଦେଖାଇ ସେମାନେ ସରକାରକୁ କହନ୍ତୁ ରୋଗୀଙ୍କୁ ଆୟୋଡ଼ିନ ବଟିକା **ଯୋଗାଇବା** ପାଇଁ ।  ଗାଁ ଗହଳରେ ପିଇବା ପାଣି ଓ ଖାଦ୍ୟ ଅଭାବରୁ ଅନେକ ରୋଗ **ଦ୍ୱାରା** ଓଡ଼ିଶାର ୧୦୦୦ ଶିଶୁ ମଧ୍ୟରେ ପ୍ରାୟ ୯୦ ଶିଶୁ ମରୁଛନ୍ତି । କେବଳ ପ୍ରସବ ବେଳେ ମା' ମୃତ୍ୟୁ ହାର ଅଧିକ । ସରକାର ଏସବୁ ରୋଗର ନିରାକରଣ ସମେତ ମ୍ୟାଲେରିଆ ପରି ରୋଗର ପ୍ରତିରୋଧ ପାଇଁ ଜରୁରୀ ପଦକ୍ଷେପ କାହିଁକି ନେଉନାହିଁ ? ଗଳଗଣ୍ଡ ରୋଗ ନାମରେ ସାଦା ଲୁଣକୁ ବନ୍ଦୀଶାଳରେ ନରଖି ବରଂ ଅନେକ ରୋଗର ନିରାକରଣ ପାଇଁ ସରକାର ନିଜ ଦାୟିତ୍ୱ ସଂପାଦନା କରିବାକୁ ସ୍ୱାସ୍ଥ୍ୟସେବାର ଉନ୍ନତି କରିବା ଏକାନ୍ତ ପ୍ରୟୋଜନ । ସାଦା ଲୁଣକୁ ସାଧାରଣ ଗରିବ ଲୋକଙ୍କ ଠାରୁ ଛଡ଼ାଇ ନିଆଗଲେ ବିଦ୍ରୋହ ଅନିବାର୍ଯ୍ୟ ।



Digitized by srujanika@gmail.com

# ବିକାଶ ପ୍ରତି ବିଚାର
# ମହାତ୍ମା ଗାନ୍ଧୀ ବନାମ ପଣ୍ଡିତ ନେହେରୁ

ଏ ଲେଖାର ଶୀର୍ଷକ ସମ୍ପର୍କରେ ଏକ ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ମୃତ୍ୟୁର ବହୁବର୍ଷ ବିତିଯିବା ପରେ ଏ ପ୍ରକାର ବିଷୟର କୌଣସି ପ୍ରାସଙ୍ଗିକତା ଅଛି କି ? ସେଥିପାଇଁ ଏହାର ଉଦ୍ଦେଶ୍ୟ ସମ୍ବନ୍ଧରେ ସ୍ପଷ୍ଟ କରିଦେବା ସମୀଚୀନ ହେବ । ମହାତ୍ମା ଗାନ୍ଧୀ ଓ ପଣ୍ଡିତ ନେହେରୁଙ୍କ ଭିତରେ ଏକ କୃତ୍ରିମ ଦ୍ୱନ୍ଦ୍ୱ ସୃଷ୍ଟି କରିବା ଏ ଲେଖାର ଆଦୌ ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଯେଉଁମାନେ ସେମାନଙ୍କ ମୃତ୍ୟୁ ପରେ ଜନ୍ମ ଗ୍ରହଣ କରିଛନ୍ତି, ସେମାନଙ୍କ ଦର୍ଶନ ସମ୍ପର୍କରେ ସ୍ପଷ୍ଟ ଚିତ୍ର ରଖି ପାରିଲେ ସେମାନେ ସବୁ ବିଷୟକୁ ଏକ ସମନ୍ୱିତ ଦୃଷ୍ଟିକୋଣରୁ ଚିନ୍ତା କରିବାକୁ ସୁଯୋଗ ପାଇପାରିବେ । ଆମ ଦେଶରେ ଗୋଟିଏ ଭ୍ରାନ୍ତ ଧାରଣା ରହିଯାଇଛି ଯେ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ମଧ୍ୟରେ ଅନେକାଂଶରେ ଆଦର୍ଶଗତ ସାମ୍ୟ ରହିଛି । ଖାଲି ସେତିକି ନୁହେଁ, ଇତିହାସରେ ଗାନ୍ଧିଜୀଙ୍କ ସ୍ଥାନକୁ ଗୌଣକରିବା ପାଇଁ ଆଜିକାଲି ସୂକ୍ଷ୍ମ ଢଙ୍ଗରେ ଚକ୍ରାନ୍ତ ଚାଲିଛି । ଏଇ ପରିପ୍ରେକ୍ଷୀରେ 'ମହାତ୍ମା ଗାନ୍ଧୀ ବନାମ ନେହେରୁ' ବିଷୟଟି ବହୁ ଆଗରୁ ଆଲୋଚିତ ହେବା ଉଚିତ ଥିଲା । ବରଂ ସେଥିରେ ବିଳମ୍ବ ହେବାରୁ ଏସମ୍ପର୍କରେ ଜନସାଧାରଣଙ୍କ ଚିନ୍ତାଧାରାରେ ସ୍ପଷ୍ଟତା ଆସିବା ପରିବର୍ତ୍ତେ ହତବୁଦ୍ଧି ଦେଖାଦେଇଛି । ବିଭିନ୍ନ ବିଚାରମଧ୍ୟରେ ବିତର୍କରେ ହିଁ ବିଚାରରେ ସ୍ପଷ୍ଟତା ଆସିପାରିବ । ସୁଖର କଥା ଯେ ଗତ କେତେ ବର୍ଷ ହେବ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ମଧ୍ୟରେ ଆଦାନ ପ୍ରଦାନ ହୋଇଥିବା ବହୁ ମହତ୍ୱପୂର୍ଣ୍ଣ ଚିଠିପତ୍ର ପ୍ରକାଶିତ ହୋଇଛି । ସେ ସବୁ ପ୍ରାମାଣିକ ତଥ୍ୟ ଉପରେ ଯେଉଁପ୍ରକାର ଗବେଷଣା ଆବଶ୍ୟକ, ତା ଏପର୍ଯ୍ୟନ୍ତ କରାଯାଇପାରି ନାହିଁ । ସେସବୁ ଚିଠି ଭିତରୁ କେତେକ ଚିଠିକୁ ଏ ଲେଖାରେ ଏଥିପାଇଁ ପ୍ରକାଶ କରିବା ଜରୁରୀ ହୋଇଯାଇଛି, ଯାହାଫଳରେ ସେମାନଙ୍କ ଭିତରେ ଥିବା ଜୀବନ-ଦର୍ଶନ ସମ୍ପର୍କୀୟ ମୌଳିକ ପାର୍ଥକ୍ୟ ସମ୍ପର୍କରେ ଦେଶର ଜନସାଧାରଣ ଅବଗତ ହୋଇ ପାରିବେ । ବିବଦମାନ ବିଚାର ମଧ୍ୟରେ ଖୋଲାଖୋଲି ବାଦ-ବିବାଦକୁ କିପରି ଗାନ୍ଧିଜୀ ପ୍ରୋତ୍ସାହନ ଦେଉଥିଲେ ତା ମଧ୍ୟ ଏ ଚିଠିଗୁଡ଼ିକରୁ ଆହୁରି ସ୍ପଷ୍ଟତର ହୋଇଯିବ ।

Digitized by srujanika@gmail.com

୧୯୨୭ ଜାନୁଆରୀ ୧୭ ତାରିଖ ସାବରମତୀ ଆଶ୍ରମରୁ ଏକ ଚିଠିରେ ପଣ୍ଡିତ ନେହେରୁଙ୍କୁ ଗାନ୍ଧିଜୀ ଲେଖିଛନ୍ତି "ତୁମ ଓ ମୋ' ଭିତରେ ମତପାର୍ଥକ୍ୟ ଏତେ ଗଭୀର ଓ ମୌଳିକ ଯେ ମୋର ମନେହୁଏ ଯେ ଆମ ଦୁହିଁଙ୍କ ମଧ୍ୟରେ କୌଣସି ସାମଞ୍ଜସ୍ୟ ଥିଲା ପରି ମନେ ହେଉନାହିଁ । ମୁଁ ମଧ ତମ ପରି ଜଣେ ସାହସୀ, ସାଧୁ, ସଚ୍ଚୋଟ ଓ ବିଶ୍ୱସ୍ତ ବନ୍ଧୁଙ୍କୁ ହରାଇବି ବୋଲି ଆମ ମତଭେଦକୁ ଚପାଇ ଦେବାକୁ ଚାହେଁ ନାହିଁ । କୌଣସି ଆଦର୍ଶ ପାଇଁ ବେଳେବେଳେ ନିଜର ବହୁ ଅନ୍ତରଙ୍ଗ ବନ୍ଧୁଙ୍କୁ ମଧ ଛାଡ଼ିବାକୁ ପଡ଼ିଥାଏ । ଏକଥା ମଧ ମନେ ରଖିବାକୁ ହେବ ଯେ ବନ୍ଧୁତାଠାରୁ ଆଦର୍ଶ ବହୁ ଉଚ୍ଚରେ । ଯଦି ଆମ ଭିତରେ ବିଚ୍ଛେଦ ବି ହୁଏ ତେବେ ଆମର ବ୍ୟକ୍ତିଗତ ସମ୍ବନ୍ଧରେ କୌଣସି ଆଞ୍ଚ ଆସିବ ନାହିଁ । ମୋ' ମତ ସହ ତମ ମତର ଯେଉଁ ପାର୍ଥକ୍ୟ ରହିଛି, ତାର ପ୍ରଦର୍ଶନ ପାଇଁ ମୁଁ ତମପାଇଁ ଗୋଟିଏ ସମ୍ମାନଜନକ ବାଟ ଖୋଜି ବାହାର କରିଛି । ସେଇଟି ହେଲାଯେ ତମେ ସେ ସମ୍ପର୍କରେ ମୋତେ ଯେଉଁ ଚିଠି ଲେଖିବ, ମୁଁ ତାକୁ 'ୟଙ୍ଗ ଇଣ୍ଡିଆ'ରେ ପ୍ରକାଶିତ କରିବା ସଙ୍ଗେସଙ୍ଗେ ତା' ସହ ମୋର ଏକ ସଂକ୍ଷିପ୍ତ ଉତ୍ତର ମଧ ପ୍ରକାଶିତ କରିବି ।"

ଏକଥା କାହାକୁ ଅବିଦିତ ନାହିଁ ଯେ ଦ୍ୱିତୀୟ ମହାଯୁଦ୍ଧକାଳେ ଇଂରେଜ ସରକାର ଅଡୁଆରେ ପଡ଼ିଯିବେ, ସେଥିପାଇଁ ୧୯୪୨ ସାଲରେ ଭାରତଛାଡ଼ ଡାକି କୌଣସି ଜନଆନ୍ଦୋଳନ କରିବା ସପକ୍ଷରେ ପଣ୍ଡିତ ନେହେରୁ ନ ଥିଲେ । କିନ୍ତୁ ସେ କିପରି ଗାନ୍ଧିଜୀଙ୍କ ଯୋଗୁଁ ହିଁ ଉକ୍ତ ଆନ୍ଦୋଳନରେ ଯୋଗ ଦେଇଥିଲେ ସେ ବିଷୟଟି ୧୯୪୨ ଅଗଷ୍ଟ -ମଇ ୧୪ ତାରିଖରେ ପଣ୍ଡିତ ନେହେରୁଙ୍କୁ ଜେଲରୁ ଖଲାସ କରିବା ଦାବି କରି ଭାଇସରାୟ ଲର୍ଡ଼ ଲିନଲଥଗୋଙ୍କ ନିକଟକୁ ଗାନ୍ଧି ଲେଖିଥିବା ଚିଠିରୁ ସ୍ପଷ୍ଟ ହୋଇଯିବ ।

"ଆପଣଙ୍କ ଘୋଷିତ ନୀତି ଓ ଆମ ନୀତି ପ୍ରାୟ ଏକା । ପ୍ରକୃତ ସମସ୍ୟା ହେଉଛି ଚୀନ ଓ ରୁଷର ସ୍ୱାଧୀନତା । ଆପଣ ଭାବନ୍ତି ଯେ ଦୁଇଦେଶର ସ୍ୱାଧୀନତା ରକ୍ଷା କରିବା ଦୃଷ୍ଟିରୁ ଭାରତବର୍ଷର ସ୍ୱାଧୀନତାର କୌଣସି ଆବଶ୍ୟକତା ନାହିଁ । ମୁଁ ୟାର ଠିକ ବିପରୀତ କଥାଟି ଭାବେ । ଏ ସମ୍ପର୍କରେ ଜବାହରଲାଲ ନେହେରୁ ମୋର ମାପକାଠି ସ୍ୱରୂପ । ଆପଣଙ୍କଠାରୁ ସେ ରଷ ଓ ଚୀନର ଦୁଃଖକୁ ବେଶି ହୃଦୟଙ୍ଗମ କରନ୍ତି । ସେଥିପାଇଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ତାଙ୍କ ପୁରୁଣା ଝଗଡ଼ାକୁ ସେ ଭୁଲି ଯାଇଛନ୍ତି । ମୋଠାରୁ ସେ ବେଶି ନାଜିବାଦ ଓ ଫାସିଷ୍ଟବାଦକୁ ଭୟ କରନ୍ତି । ମୋର ତାଙ୍କସହ ଏ ସମ୍ପର୍କରେ ଦୀର୍ଘ ଦୁଇଦିନ ଧରି ତର୍କ ବିତର୍କ ହୋଇଛି । ସେ ତାଙ୍କ କଥାରେ ଏପରି ଅଟଳ ରହିଲେ ଯେ ମୋ' ପକ୍ଷରେ ତାହା ବର୍ଣ୍ଣନା କରିବା

Digitized by srujanika@gmail.com

ବି ସମ୍ଭବ ନୁହେଁ । କିନ୍ତୁ ଘଟଣା ପ୍ରବାହ ଯେତେବେଳେ ତାଙ୍କ ଆଗରେ ସବୁ ବିଷୟକୁ ସ୍ପଷ୍ଟ କରିଦେଲା, ସେ ମୋ' ସହ ଏକମତ ହେଲେ ଯେ ଭାରତବର୍ଷର ସ୍ୱାଧୀନତା ବ୍ୟତିରେକ ଚୀନ ଓ ଋଷର ସ୍ୱାଧୀନତା ସମ୍ଭବପର ନୁହେଁ । ତାଙ୍କଭଳି ଆପଣଙ୍କର ଜଣେ ଶକ୍ତିଶାଳୀ ମିତ୍ରକୁ କିପରି ବନ୍ଦୀ କରି ରଖିଛନ୍ତି, ମୁଁ ତା ବୁଝିପାରୁନାହିଁ ।''

୧୯୪୫ ସାଲ ଅଗଷ୍ଟ ୫ ତାରିଖରେ ଗାନ୍ଧିଜୀ ପଣ୍ଡିତ ନେହେରୁଙ୍କୁ ଯେଉଁ ଚିଠି ଲେଖିଛନ୍ତି, ତା ଅତି ଗୁରୁତ୍ୱପୂର୍ଣ୍ଣ । ସେ ଚିଠିଟିରେ ସେ ତାଙ୍କ ରାଜନୈତିକ ଓ ସାମାଜିକ ଦିଗଦର୍ଶନର ସୂଚନା ଦେଇ ପଣ୍ଡିତ ନେହେରୁଙ୍କଠାରୁ ସେ ତାଙ୍କର ବିକଳ୍ପ ମତାମତ ଜାଣିବାକୁ ଚାହିଁଛନ୍ତି । ସେ ଲେଖିଛନ୍ତି – ''ମୁଁ ତୁମକୁ ଇଂରେଜୀରେ କି ହିନ୍ଦୁସ୍ଥାନୀରେ ଲେଖିବି ସେକଥା ଭାବି ଠିକ କଲି ଯେ ମୁଁ ତୁମ ନିକଟକୁ ହିନ୍ଦୁସ୍ଥାନୀରେ ଲେଖିବାଟା ହିଁ ଶ୍ରେୟସ୍କର ହେବ । ତମ ଓ ମୋ' ମଧ୍ୟରେ ଥିବା ମତଭେଦ ଏତେ ମୌଳିକ ଯେ ମୋ' ବିଚାରରେ ଜନସାଧାରଣ ସେ ସମ୍ପର୍କରେ ଜାଣି ରଖିବା ଉଚିତ । ସେମାନଙ୍କୁ ଏ ବିଷୟରେ ଅନ୍ଧକାରରେ ରଖିଲେ ତା' ସ୍ୱରାଜର ପରିପନ୍ଥୀ ହେବ ବୋଲି ମୋର ମତ । ''ହିନ୍ଦ୍‌ସ୍ୱରାଜରେ ମୁଁ ଯେଉଁପ୍ରକାର ସମାଜ ଓ ସରକାରର ପରିକଳ୍ପନା କରିଛି, ମୁଁ ବର୍ତ୍ତମାନ ବି ତା ଉପରେ କାଏମ ରହିଛି । ଏ ଗୁଡ଼ିକ କେବଳ କଥାର କଥା ନୁହଁ । ୧୯୦୮ରେ ଯେତେବେଳେ ମୁଁ ଏ ବହି (ହିନ୍ଦ୍ ସ୍ୱରାଜ) ଲେଖିଲି, ସେ ଦିନଠାରୁ ମୁଁ ଯେଉଁସବୁ ଅଭିଜ୍ଞତା ଅର୍ଜନ କରିଛି, ସେଥିରୁ ମୋର ବିଶ୍ୱାସ ଆହୁରି ଦୃଢ଼ୀଭୂତ ହୋଇଛି । ତେଣୁ ମୁଁ ଏକାକୀ ରହିଲେ ମଧ ଯାହା ସତ ତାକୁ ତ୍ୟାଗ କରିବା ପ୍ରଶ୍ନ ଇ ଉଠୁନାହିଁ । ମୁଁ ଲେଖିଲାବେଳେ ମୋ' ସାମ୍ନାରେ ହିନ୍ଦ୍‌ସ୍ୱରାଜ ବହି ନାହିଁ । ସେଥିଯୋଗୁଁ 'ହିନ୍ଦସ୍ୱରାଜ'ର ସମାଜର ଯେଉଁଚିତ୍ର ଅଙ୍କା ଯାଇଛି, ମୋ' ଭାଷାରେ ମୁଁ ତୁମକୁ ପୁନର୍ବାର ତା କହିବାକୁ ଚାହେଁ । ଏହା ଜରୁରୀ ନୁହେଁ ଯେ ସେଥିରେ ଯାହା ଅଛି, ତାର ଅବିକଳ ନକଲ ମୁଁ ଏଠାରେ କରିବି । ମୋର ହୃଦ୍‌ବୋଧ ହୋଇଛି ଯେ କେବଳ ଭାରତ ନୁହେଁ, ସାରା ଦୁନିଆ ପାଇଁ ଆମେ ପ୍ରକୃତ ସ୍ୱାଧୀନତା ସେତିକିବେଳେ ପାଇବାକୁ ହକଦାର ହେବା, ଯେତେବେଳେ ସହର ଓ ରାଜପ୍ରାସାଦ ପରିବର୍ତ୍ତେ ଗାଁର କୁଡ଼ିଆରେ ରହିବାକୁ ପ୍ରସ୍ତୁତ ହେବା । କୋଟିକୋଟି ଲୋକେ ସହର ଓ ରାଜପ୍ରାସାଦରେ କସ୍ମିନକାଳେ ଶାନ୍ତିରେ ରହିପାରିବେ ନାହିଁ । ତାହା ହେଲେ ହିଂସା ଓ ଅସତ୍ୟ ବ୍ୟତିରେକ ସେମାନେ ଚଳିପାରିବେ ନାହିଁ । ମଣିଷ ସମାଜ ପାଇଁ ସତ୍ୟ ଓ ଅହିଂସା ବ୍ୟତୀତ ବିନାଶ ଅବଶ୍ୟମ୍ଭାବୀ । ଆମେ ସରଳତା ମାଧମରେ ହିଁ ସତ୍ୟ ଓ ଅହିଂସାର ସନ୍ଧାନ ପାଇପାରିବା ଓ ଚରଖା ହେବ ହେବ ତାର ପ୍ରତୀକ । ଦୁନିଆ ଭୁଲ ବାଟରେ ଚାଲିଛି ବୋଲି ମୁଁ ଡରିଯିବି ନାହିଁ । ଭାରତବର୍ଷ ମଧ ପତଙ୍ଗ ପରି ନିଆଁର

Digitized by srujanika@gmail.com

ଚାରିପଟେ ନାଚିକୁଦି ନିଜକୁ ଛାଡ଼ି ଦେଇପାରେ । ଆମଦେଶକୁ ଓ ତା ଚାରିଆଡ଼େ ସାରା ଦୁନିଆକୁ ମୋର ଶେଷ ନିଶ୍ୱାସ ଥିବା ପର୍ଯ୍ୟନ୍ତ ଏ ଚରମ ବିନାଶରୁ ରକ୍ଷା କରିବା ମୋର ପରମ କର୍ତ୍ତବ୍ୟ ହେବ । ମୋର କହିବାର ଅର୍ଥ ହେଲା ଯେ ମଣିଷର ଯାହା ଆବଶ୍ୟକ ସେଥିରେ, ସେ ସନ୍ତୁଷ୍ଟ ହେବା ସଙ୍ଗେ ସଙ୍ଗେ ଆତ୍ମନିର୍ଭରଶୀଳ ମଧ ହେବ । ତା' ନିଜ ଉପରେ ଯଦି ତା'ର ନିୟନ୍ତ୍ରଣ ନ ରୁହେ ତେବେ ସେ ନିଜକୁ ରକ୍ଷା କରିପାରିବା ଅସମ୍ଭବ ହୋଇଯିବ । ଯେପରି ବୁଦବୁଦରୁ ମହୋଦଧୀର ଉଦ୍ଭବ ହୋଇଥାଏ, ସେହିପରି ବ୍ୟକ୍ତିକୁ ନେଇ ଦୁନିଆର ଉଦ୍ଭବ ହୁଏ । ମୁଁ କିଛି ନୂଆ କଥା କହୁନାହିଁ । ଏହା ଚିରନ୍ତନ ସତ୍ୟ । ମୁଁ ଜାଣେନା ମୁଁ ଏସବୁ କଥା "ହିନ୍ଦ ସ୍ୱରାଜ"ରେ କହିଛି କି ନା । ମୁ ବିଜ୍ଞାନକୁ ତାରିଫ କରେ । ଆଧୁନିକ ବିଜ୍ଞାନ ଦୃଷ୍ଟିରୁ ହିଁ ପୁରାତନକୁ ବିଚାର କରି ସବୁକଥା ନୂଆଢଙ୍ଗରେ ଗଢ଼ିବାକୁ ହେବ । ତମେ ଭାବିବା ଉଚିତ ନୁହଁ ଯେ ଆମ ଗାଁଗୁଡ଼ିକର ବର୍ତ୍ତମାନ ସ୍ଥିତି ଯାହା , ସେଇ ସ୍ଥିତିରେ ତାକୁ ରଖିବାକୁ ଚାହେଁ । ମୋ' ସ୍ୱପ୍ନର ଗ୍ରାମ୍ୟଜୀବନ ହେଉଛି ଯେ ଗ୍ରାମବାସୀମାନେ ବେଶ୍ ବୁଦ୍ଧିମାନ ହେବେ । ପ୍ରତ୍ୟେକ ମଣିଷକୁ ତା' ଆଦର୍ଶ ନେଇ ରହିବାକୁ ହୋଇଥାଏ । ସେମାନେ ଇତର ପ୍ରାଣୀଙ୍କ ଭଳି ଅନ୍ଧକାରରେ ରହିବା ପରିବର୍ତ୍ତେ ପରିଷ୍କାର ପରିବେଶରେ ରହିବେ । ଦରକାର ପଡ଼ିଲେ ଉଭୟ ପୁରୁଷ ଓ ନାରୀ ସାରା ଦୁନିଆ ବିରୁଦ୍ଧରେ ବି ଠିଆ ହେବାକୁ ସମର୍ଥ ହୋଇପାରିବେ । ସେ ଗାଁରେ ହଇଜା, ମ୍ୟାଲେରିଆ, ବସନ୍ତ ରୋଗ ହେବାର ସମ୍ଭାବନା ରହିବ ନାହିଁ । କେହି ଆଳସ୍ୟରେ କାଳାତିପାତ କରିବେ ନାହିଁ କିମ୍ବା ବିଳାସବ୍ୟସନରେ ମଧ ରହିପାରିବେ ନାହିଁ । ପ୍ରତ୍ୟେକ ବ୍ୟକ୍ତି ତାର ଶାରୀରିକ ଶ୍ରମ ଦେବାକୁ ପ୍ରସ୍ତୁତ ହେବ । ଏ ଚିଠିରେ ମୋ' ପକ୍ଷରେ ସମସ୍ତ ବିଷୟରେ ଟିକିନିଖି ଚିତ୍ର ଦେବା ଆଦୌ ସମ୍ଭବପର ନୁହଁ । ରେଳ, ଡାକ ଓ ତାର ଅଫିସ ନିଶ୍ଚୟ ରହିବ । ଏ ମୂଳକଥାଟି ମୋ' ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ତାକୁ ହାସଲ କରିଯିବା ପରେ ଏହାକୁ ପୂର୍ଣ୍ଣାଙ୍ଗ କରିବାରେ କିଛି ଅସୁବିଧା ହେବନାହିଁ । ମୁଁ ଯଦି ମୌଳିକ କଥାଟିକୁ ବାଦ ଦେଇଦେବି, ତେବେ ସେଇଠି ସବୁ ଶେଷ ହୋଇଯିବ । ଗତ କାର୍ଯ୍ୟକାରୀ କମିଟିରେ ଏସବୁ ବିଷୟରେ ଦୁଇ ତିନି ଦିନ ଧରି ଆଲୋଚନା ହେବାର ସ୍ଥିର ହୋଇଥିଲା । କିନ୍ତୁ ତା' ବ୍ୟତିରେକେ ବି ଆମେ ପରସ୍ପରକୁ ବୁଝିନେବା ଦରକାର । ତାର କାରଣ ହେଲା ଯେ, ଆମ ଦୁହିଁଙ୍କର ସମ୍ପର୍କ କେବଳ ରାଜନୀତିକ ନୁହଁ । ଆମର ବନ୍ଧନ ଏତେ ଗଭୀର ଯେ ସେଥିପାଇଁ ରାଜନୀତିକ କ୍ଷେତ୍ରରେ ଆମେ ପରସ୍ପରକୁ ବୁଝିନେବା ଦରକାର । ଦ୍ୱିତୀୟରେ ଆମେ ଦୁହେଁ କେବକାର ଲୋକ ନୋହୁଁ । ଆମେ ଭାରତର ସ୍ୱାଧୀନତା ପାଇଁ କାମ କରୁଥାଉଁ ଓ ଦରକାର ପଡ଼ିଲେ

Digitized by srujanika@gmail.com

ସେଥିପାଇଁ ହସି ହସି ମୃତ୍ୟୁକୁ ବରଣ କରିବା ପାଇଁ ମଧ୍ୟ ପ୍ରସ୍ତୁତ ଅଛେ । ଆମ ଦୁହିଁଙ୍କର ପ୍ରଶଂସାର ଅବଶ୍ୟକତା ନାହିଁ । ଆମେ ପ୍ରଶଂସିତ ହେଉ ବା ନିନ୍ଦିତ ହେଉ, ସେଥିରେ ଆମର କିଛି ଯାଏ ଆସେ ନାହିଁ । ସେବା କ୍ଷେତ୍ରରେ ପ୍ରଶଂସାର ସ୍ଥାନ ନାହିଁ । ମୁଁ ଭାରତବର୍ଷର ସେବା କରିବା ପାଇଁ ୧୨୫ବର୍ଷ ବଞ୍ଚିବାକୁ ଚାହେଁ ।''

ପଣ୍ଡିତ ନେହେରୁ ୧୯୪୫ ସାଲ ଅକ୍ଟୋବର ୯ ତାରିଖରେ ଗାନ୍ଧିଜୀଙ୍କ ଉଲ୍ଲିଖିତ ଚିଠିର ଯେଉଁ ଉତ୍ତର ଦେଲେ, ତାର କିୟଦଂଶ ହେଲା – ''ମୁଁ ବହୁଦିନ ତଳେ ହିନ୍ଦ୍‌ସ୍ୱରାଜ ପଢ଼ିଥିଲି । ମୋର ସେ ସମ୍ପର୍କରେ କିଛିଟା ଝାପ୍‌ସା ଧାରଣା ଥିଲା । କିନ୍ତୁ ମୁଁ ଯେତେବେଳେ, ତାକୁ କୋଡ଼ିଏ ବର୍ଷ ତଳେ ପଢ଼ିଥିଲି, ମୋତେ ତା' ଅତ୍ୟନ୍ତ ଅବାସ୍ତବ ଲାଗିଥିଲା । କିନ୍ତୁ ତା'ପରେ ଆପଣଙ୍କ ଲେଖା ଓ ଭାଷଣରୁ ଜାଣିଲି ଯେ ଆପଣଙ୍କ ପୁରୁଣା ଚିନ୍ତାଧାରାରେ ପରିବର୍ତ୍ତନ ହେବା ସହ ଆଧୁନିକ ଧାରାକୁ ମଧ୍ୟ ପସନ୍ଦ କରୁଛନ୍ତି । କିନ୍ତୁ ମୁଁ ଯେତେବେଳେ ଜାଣିଲି ଯେ ଆପଣ ପୁରୁଣା ଚିନ୍ତାରେ କାଏମ ରହିଛନ୍ତି, ସେତେବେଳେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କଂଗ୍ରେସ କେବେ ଏସବୁ ଚିନ୍ତାଧାରାକୁ ଗ୍ରହଣ କରିନାହିଁ । ତେଣୁ ଏହାକୁ ମାନିନେବା ପ୍ରଶ୍ନ ଉଠୁଛି କେଉଁଠି ? ଆପଣ ମଧ୍ୟ କେତେକ ଗୌଣ ପ୍ରଶ୍ନକୁ ଛାଡ଼ିଦେଲେ କଂଗ୍ରେସକୁ ଏଗୁଡ଼ିକ ମାନିନେବାକୁ କେବେ କହିନାହାନ୍ତି । ଜୀବନର ଏସବୁ ମୌଳିକ ପ୍ରଶ୍ନ ଓ ବିବଦମାନ ଦର୍ଶନ ସମ୍ପର୍କରେ କଂଗ୍ରେସ ବିଚାର କରିବା ସମୀଚୀନ ଓ ପ୍ରାସଙ୍ଗିକ ହେବ କି ନା ତା' ଆପଣଙ୍କୁ ବିଚାର କରିବାକୁ ଛାଡ଼ି ଦେଉଛି । ମୋ' ମତରେ କଂଗ୍ରେସ ସଙ୍ଗଠନରେ ଏଭଳି ମୌଳିକ ପ୍ରଶ୍ନ ଉପରେ ବିତର୍କ କରିବାରେ ସମୟ ନଷ୍ଟ କରିବା ଉଚିତ ହେବ ନାହିଁ । ତାହାହେଲେ ଲୋକଙ୍କ ମନରେ ଅଯଥା ଭ୍ରାନ୍ତି ସୃଷ୍ଟି ହେବ । ଫଳରେ ତାର କାମ ବାଧାପ୍ରାପ୍ତ ହେବ ।

ଆମ ଗାଁ ଗହଳରେ କିପରି ଯେ ସତ୍ୟ ଓ ଅହିଂସା ରହିଛି ବୋଲି ଆପଣ ଭାବୁଛନ୍ତି, ତା' ମୋ' ପକ୍ଷରେ ବୁଝିବା ମୁସ୍କିଲ ହୋଇଯାଇଛି । ଆମ ଗାଁଗୁଡ଼ିକ ସାଧାରଣଭାବରେ ବୌଦ୍ଧିକ ଓ ସାଂସ୍କୃତିକ ଦୃଷ୍ଟିରୁ ପଛୁଆ । ଆମ ଗାଁଗୁଡ଼ିକୁ ଏକ ପଛୁଆ ପରିବେଶରୁ ପ୍ରଗତି ଆଡ଼କୁ ଆଗେଇ ନେବା ଆଦୌ ସମ୍ଭବପର ନୁହେଁ । ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀର ଲୋକେ ଅଧିକ ପରିମାଣରେ ହିଂସ୍ର ଓ ଛୋଟମନା ।''

ଏ ଉଲ୍ଲିଖିତ ଚିଠି ଗୁଡ଼ିକରୁ ଦିବାଲୋକ ପରି ସ୍ପଷ୍ଟ ହୋଇଯାଇଛି ଯେ ଗାନ୍ଧିଜୀ ଓ ପଣ୍ଡିତ ନେହେରୁଙ୍କ ଭିତରେ ସ୍ୱାଧୀନତା ପ୍ରାପ୍ତିର ପ୍ରାୟ କୋଡ଼ିଏ ବର୍ଷ ପୂର୍ବରୁ ଦେଶର ଓ ଦୁନିଆର ମୌଳିକ ସମସ୍ୟା ସମ୍ପର୍କରେ ଯେଉଁ ଗୁରୁତର ମତ-ପାର୍ଥକ୍ୟ ଥିଲା, ତାଙ୍କର ଶାସନକାଳରେ ପ୍ରାୟ ଅଠର ବର୍ଷ ଭିତରେ ଉଭୟ ପ୍ରଶାସନିକ

Digitized by srujanika@gmail.com

ଓ ଆର୍ଥିକ କ୍ଷେତ୍ରରେ ତାର ପ୍ରତିଫଳନ ହେବା ସ୍ୱାଭାବିକ । ଫଳରେ ପଣ୍ଡିତ ନେହେରୁଙ୍କ ଦ୍ୱାରା ପରିଚାଳିତ ଭାରତ ସରକାର ଓ କଂଗ୍ରେସଦ୍ୱାରା ପରିଚାଳିତ ରାଜ୍ୟ ସରକାରଙ୍କ ଉପରେ ଗାନ୍ଧୀନୀତିର କୌଣସି ଚାପ ରହିଲା ନାହିଁ । ତାଙ୍କ ମୃତ୍ୟୁପରେ ସେ ସ୍ଥିତିରେ କୌଣସି ପରିବର୍ତ୍ତନର ପ୍ରଶ୍ନ ମଧ୍ୟ ଉଠିଲା ନାହିଁ । ଆଜି ଦେଶ ବହୁତ ଗୁରୁତର ପରୀକ୍ଷାର ସମ୍ମୁଖୀନ । ଗାନ୍ଧିଜୀଙ୍କ ପ୍ରଦର୍ଶିତ ସମାନତା ଆଦର୍ଶରୁ ବିଚ୍ୟୁତ ହୋଇଥିବାରୁ ଆମେ ଦେଶର ଏ ଅଧୋଗତି ହୋଇଛି ବୋଲି ଯେଉଁମାନେ ବିଶ୍ୱାସ କରୁଛନ୍ତି, ସେମାନଙ୍କ ପାଇଁ ଗଭୀର ଆତ୍ମନିରୀକ୍ଷଣ କରିବା ସମୟ ଆସିଛି । ଦେଶରେ ଶାସକବର୍ଗଙ୍କ ପ୍ରତୀକ ରୂପେ କାର୍ଯ୍ୟ କରୁଥିବା ସରକାରର ଏକମାତ୍ର କାମ ହେଲା ଯେ ସମାନତା ବିରୋଧୀ ଶକ୍ତିକୁ ଦୃଢ଼ୀଭୂତ କରିବା । ଏକଥା ମଧ୍ୟ ସ୍ୱୀକାର୍ଯ୍ୟ ଯେ ଜନଶକ୍ତି ତୁଳନାରେ ରାଜଶକ୍ତି ବର୍ତ୍ତମାନ ଅଧିକ ଶକ୍ତିଶାଳୀ । କିନ୍ତୁ ଯେଉଁମାନେ ସମାଜରୁ ଅନ୍ୟାୟ ଓ ଶୋଷଣର ଅନ୍ତ କରିବା ପାଇଁ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଦର୍ଶିତ ପଥର ପଥିକ ହେବାକୁ ବଦ୍ଧପରିକର, ସେମାନଙ୍କୁ ସାହସର ସହିତ ଆଗକୁ ଆଗେଇବାକୁ ହେବ । ତାହା ହେଲେ ରାଜଶକ୍ତି ଉପରେ ଜନଶକ୍ତିର ବିଜୟ ସୁନିଶ୍ଚିତ ।

ଦୁନିଆର ନିଷ୍ପେଷିତ ଜନତା ଗାନ୍ଧିଜୀଙ୍କ ବୈପ୍ଳବିକ ଚିନ୍ତାଧାରା ପ୍ରତି ଆକୃଷ୍ଟ ହେବା କଥା କାହାକୁ ଅବିଦିତ ନାହିଁ । ନୋବେଲ ପୁରସ୍କାର ବିଜେତା ସ୍ୱର୍ଗତ ମାର୍ଟିନ ଲୁଥର କିଙ୍ଗଙ୍କୁ ଆମେରିକାରେ କଳାଗୋରା ଭେଦଭାବ ଦୂର କରିବା ପାଇଁ ଗାନ୍ଧିଜୀଙ୍କ ସତ୍ୟାଗ୍ରହ ରାସ୍ତାକୁ ହିଁ ଅନୁଶୀଳନ କରିବାକୁ ପଡ଼ିଥିଲା । ସେଥିରେ ତାଙ୍କୁ ସଫଳତା ମଧ୍ୟ ମିଳିଥିଲା । ଗାନ୍ଧିଜୀ ସଦାବେଳେ କହିଥାନ୍ତି ଯେ ସତ୍ୟାଗ୍ରହରେ କସ୍ମିନକାଳେ ପରାଜୟର ସ୍ଥାନ ନାହିଁ । ସେଥିପାଇଁ ଦେଶ କାଳ ପାତ୍ର ଦୃଷ୍ଟିରୁ ତାଙ୍କ ଆଦର୍ଶକୁ ରାଜନୀତିକ. ଆର୍ଥିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ବୁଦ୍ଧିମତ୍ତା ସହ ଲାଗୁ କରିବା ଦ୍ୱାରାହିଁ ଆମେ ଏକ ସମତାବାଦୀ ଆଧୁନିକ ରାଷ୍ଟ୍ରରୂପେ ଦୁନିଆରେ ମୁଣ୍ଡଟେକି ଚାଲିପାରିବା, ଅନ୍ୟଥା ନୁହେଁ । ଯୀଶୁଖ୍ରୀଷ୍ଟ, ସକ୍ରେଟିସ୍ ଓ ଗୌତମ ବୁଦ୍ଧଙ୍କ ଭଳି ମହାମନୀଷୀମାନେ ମଣିଷ ସମାଜ ପାଇଁ ଅନ୍ଧକାର ରାତ୍ରିରେ ଆଲୋକବର୍ତ୍ତିକା ରୂପେ ନୂତନ ଆଲୋକ ଦେଇ ଆସିଛନ୍ତି । କିନ୍ତୁ ଗାନ୍ଧିଜୀ ସାଧାରଣ ମଣିଷକୁ ଅନ୍ୟାୟ ଓ ଶୋଷଣର ପ୍ରତିକାର କରିବା ପାଇଁ ଅସ୍ତ୍ରଶସ୍ତ୍ର ଦ୍ୱାରା ସୁସଜ୍ଜିତ ଆଧୁନିକ ରାଷ୍ଟ୍ର, ସମେତ ସମାଜର ଧନୀ ଓ ପ୍ରଭାବଶାଳୀ ଗୋଷ୍ଠୀ ବିରୁଦ୍ଧରେ ଅହିଂସାତ୍ମକ ଢଙ୍ଗରେ ଧାରାବାହିକ ରୂପେ ସଂଗ୍ରାମ କରିବାକୁ ପ୍ରେରଣା ଦେଇଥିବାରୁ ସେ ଅଧିକ ପ୍ରାସଙ୍ଗିକ । ସେ ବହୁ ଶତାବ୍ଦୀ ଧରି ଯେ କେବଳ ଦୁନିଆର ନିଷ୍ପେଷିତ ଓ ପଦଦଳିତ ସମାଜ ପାଇଁ ପ୍ରେରଣାର ଉତ୍ସ ହୋଇରହିବେ ତା ନୁହେଁ, ଏ କଥା ଆଶା କରିବା ସ୍ୱାଭାବିକ ଯେ ବହୁ ବିତ୍ତବଶାଳୀ

Digitized by srujanika@gmail.com

ରାଷ୍ଟ୍ର ଓ ବ୍ୟକ୍ତି ପ୍ରଚଳିତ ସଭ୍ୟତାର କୁପରିଣାମରେ ନିରାଶ ଓ ବିରସ୍ପୃହ ହୋଇ ଗାନ୍ଧୀ ରାସ୍ତା ଧରିବା ପାଇଁ ଅଧିକ ପରିମାଣରେ ଆଗ୍ରହ ପ୍ରକାଶ କରିବା ପାଇଁ ବାଧ ହେବେ ।

ଯେଉଁମାନେ ପ୍ରଚଳିତ ସ୍ଥିତାବସ୍ଥାର ସମର୍ଥକ, ସେମାନେ ବିଭିନ୍ନ ବିଚାର ମଧ୍ୟରେ ବାଦବିବାଦକୁ ସ୍ୱାଗତ କରିବା ପରିବର୍ତ୍ତେ ତା ମଧ୍ୟରେ ସାମଞ୍ଜସ୍ୟ ବା ସହମତ କାଏମ କରିବାରେ ବିଶ୍ୱାସ କରିବା ସ୍ୱାଭାବିକ । କିନ୍ତୁ ଆଜିକାଲି ଦେଖାଯାଉଛି ଯେ ସାମାଜିକ ବିପ୍ଲବରେ ବିଶ୍ୱାସ କରୁଥିବା ବହୁ ଉତ୍ସର୍ଗୀକୃତ ଜନସେବୀ ଓ ବୁଦ୍ଧିଜୀବୀ ମଧ୍ୟ ସେମାନଙ୍କ ପଦାଙ୍କ ଅନୁସରଣ କରି ମସ୍ତବଡ଼ ଭୁଲ କରିବସନ୍ତି । ମୋର ମନେହୁଏ ଯେ ଗାନ୍ଧିଜୀ ଓ ନେହେରୁଙ୍କ ଭିତରେ ଯେଉଁସବୁ ପତ୍ର ବିନିମୟ ହୋଇଛି ତାକୁ ଯେଉଁମାନେ ତଳେଇ କରି ଅଧ୍ୟୟନ କରିବେ, ସେମାନେ ନିଶ୍ଚୟ ଅନୁଭବ କରିବେ  ଯେ, ପଣ୍ଡିତ ନେହେରୁଙ୍କ ସହ ଗାନ୍ଧିଜୀଙ୍କ ରାଜନୀତିକ ସମ୍ପର୍କ ପ୍ରତିଷ୍ଠିତ ହେବା ଦିନଠାରୁ ତାଙ୍କ ମୃତ୍ୟୁପର୍ଯ୍ୟନ୍ତ କେତେକ ଅତି ମୌଳିକ ପ୍ରଶ୍ନ ଉପରେ ବାଦାନୁବାଦ କରିବାକୁ ପଣ୍ଡିତ ନେହେରୁଙ୍କୁ ସେ ପ୍ରବର୍ତ୍ତାଉ ଥିଲେ ଓ ସେସବୁକୁ ବିଧିବଦ୍ଧ  ରୂପେ ତାଙ୍କ ଦ୍ୱାରା ସମ୍ପାଦିତ 'ୟଙ୍ଗ ଇଣ୍ଡିଆ' ଓ 'ହରିଜନ'ରେ ମଧ୍ୟ ଜନସାଧରଣଙ୍କ ଗୋଚରାର୍ଥେ ପ୍ରକାଶିତ କରୁଥିଲେ । ସେଥିପାଇଁ ବିବଦମାନ ବିଚାର ଓ ଦୃଷ୍ଟିଭଙ୍ଗୀ ମଧ୍ୟରେ ସାମଞ୍ଜସ୍ୟ ବା ସହମତ (କନସିଏୟସ୍) କାଏମ କରିବା ପରିବର୍ତ୍ତେ ବାଦବିବାଦକୁ ପ୍ରୋତ୍ସାହିତ କରିବା ଦ୍ୱାରାହିଁ ଆମେ ଏକ ନ୍ୟାୟପୂର୍ଣ୍ଣ ଉପସଂହାରରେ ପହଞ୍ଚି ପାରିବା । ଏହିପରି ଆଲୋଚନା ଓ ପର୍ଯ୍ୟାଲୋଚନା ମାଧ୍ୟମରେ ଦେଶର ଜନସାଧାରଣ ଓ ବିଶେଷ କରି ଯୁବଶକ୍ତି ମନରେ କେତେକ ଜରୁରୀ ଓ ମୌଳିକ ବିଚାର ଉପରେ ଏକ ବିଚାର ମନ୍ଥନର ସୂତ୍ରପାତ କରିବା ହିଁ ଆମର ପ୍ରାଥମିକ କର୍ତ୍ତବ୍ୟହେବ ।



Digitized by srujanika@gmail.com

# ବିକାଶଧାରା ପାଇଁ ଓଡ଼ିଶାର ବାମପନ୍ଥୀ ରାଜନୀତି ବଦଳିବ କି ?

୧୯୮୦ ଓ ୧୯୯୦ ପର୍ଯ୍ୟନ୍ତ କଂଗ୍ରେସ ଶାସନରେ ଭ୍ରଷ୍ଟାଚାର ସୀମା ଟପିଥିଲା । ତାର ନେତୃତ୍ୱରେ ଥିଲେ ଜାନକୀ ପଟ୍ଟନାୟକ । ପୁଣି ଏକ ପରିବର୍ତ୍ତନ ପରେ ୧୯୯୦ରେ ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ହେଲେ ବିଜୁ ପଟ୍ଟନାୟକ ଯାହାଙ୍କ ସବୁଠାରୁ ଲମ୍ବା ବ୍ୟକ୍ତିତ୍ୱ । କିନ୍ତୁ କଲେ କ'ଣ ? କେବଳ ଦୁର୍ନୀତିଗ୍ରସ୍ତ ଅଫିସରଙ୍କୁ ମାଡ଼ମାର କହିବା ସାର ହେଲା । କିନ୍ତୁ ଭ୍ରଷ୍ଟାଚାର ପୁଣି ବର୍ଦ୍ଧିତ ହେଲା । ତାପରେ ପୁଣି କଂଗ୍ରେସ ଓ ବିଜେଡ଼ି-ବିଜେପି ମେଣ୍ଟ ସରକାର । ଏ ସରକାରମାନଙ୍କ ଦ୍ୱାରା ଓଡ଼ିଶାର ଋଣ ବଢ଼ି ବଢ଼ି ଚାଲିଥିବାବେଳେ ରାଜ୍ୟର ରାଜସ୍ୱ, ପ୍ରାକୃତିକ ସଂପଦର ଲୁଟକରଣ ମଧ୍ୟ ସୁଦୃଢ଼ ହୋଇ ଚାଲିଛି । ଦାରିଦ୍ର୍ୟ ମଧ୍ୟ ସେହି ପରିମାଣରେ ବୃଦ୍ଧି ହେବା ଏକ ସ୍ୱାଭାବିକ ପ୍ରକ୍ରିୟା ହୋଇସାରିଛି । ବିଜୁ ପଟ୍ଟନାୟକଙ୍କ ଦେହାନ୍ତପରେ ତାଙ୍କରି ନା'ରେ ରାଜନୀତି କରୁଥିବା ବ୍ୟକ୍ତିମାନେ କଂଗ୍ରେସ ଶାସନକୁ ହଟାଇବା ପାଇଁ ବିଜୁ ଜନତା ଦଳ ଗଠନ କରିଦେଲେ କିନ୍ତୁ ନେତୃତ୍ୱ ପାଇଁ ବିଜୁବାବୁଙ୍କ ପୁଅକୁ ଡାକି ଆଣିଲେ ଭୋଟ ପାଇବା ପାଇଁ । ଭୋଟ ବି ମିଳିଲା । ଯିଏ ଓଡ଼ିଆର ଅ ଆ ଜାଣି ନାହାନ୍ତି ସେ ହେଲେ ସର୍ବେସର୍ବା । ସ୍ୱଚ୍ଛ ଶାସନରେ ଋଣ ବଢ଼ିଲା ଓ ଲୁଟ ଚାଲିଲା । ଏହି ଲୁଟ ପ୍ରକରଣରେ ଆଉ ଏକ ରାଜନୀତି ଶକ୍ତି ଭାରତୀୟ ଜନତା ପାର୍ଟି ଓଡ଼ିଶା ଶାସନର ପ୍ରମୁଖ ଭାଗିଦାରୀ ହୋଇଛି । ଆଜି ବିଜୁ ଜନତା ଦଳର ପ୍ରମୁଖ ନେତାମାନେ ଦଳରୁ ବାହାରି ନବୀନଙ୍କୁ ହଟାଇବା ପାଇଁ କଂଗ୍ରେସର ସହଯୋଗୀ ହୋଇଛନ୍ତି । ବର୍ତ୍ତମାନ ଓଡ଼ିଶା ରାଜନୀତିରେ କ୍ଷମତାର ପ୍ରତିଦ୍ୱନ୍ଦୀଭାବେ ଦୁଇଟି ଶକ୍ତି ମଧ୍ୟରେ ଭୋଟରଙ୍କୁ ନିଷ୍ପତ୍ତି ନେବାକୁ ପଡୁଛି । ଗୋଟିଏ ବିଜେଡ଼ି-ବିଜେପି ମେଣ୍ଟ ଅନ୍ୟଟି କଂଗ୍ରେସ ଓ ଅନ୍ୟ ଦଳମାନଙ୍କ ମିଳିତ ଶକ୍ତି । ବର୍ତ୍ତମାନର ନିର୍ବାଚନରେ ଲୋକସଭା ପାଇଁ ଯେପରି ଦୁଇ ପକ୍ଷର ଦେଶପାଇଁ କୌଣସି ଆର୍ଥିକ ପ୍ରସଙ୍ଗ ନାହିଁ । ଯେହେତୁ କଂଗ୍ରେସ ଆଣିଥିବା ଗୋଲାମୀ ଅର୍ଥନୀତିକୁ ବିଜେପି ଓ ତାର ସହଯୋଗୀ ଦଳମାନେ ଅକ୍ଷରାଙ୍କେ କାର୍ଯ୍ୟକାରୀ କରିଥିଲେ । ବର୍ତ୍ତମାନ କଂଗ୍ରେସ ଆଉ ପାଦେ ଆଗକୁ ଯାଉଛି । କେବଳ ସାଂପ୍ରଦାୟିକ ରାଜନୀତି

Digitized by srujanika@gmail.com

ବିରୋଧରେ ଧର୍ମ ନିରପେକ୍ଷତାର ସୁରକ୍ଷା ପାଇଁ ରାଜନୈତିକ ସମୀକରଣ କୋଟି କୋଟି ଜନତାଙ୍କ ଆର୍ଥିକ ଓ ସାମାଜିକ ନ୍ୟାୟକୁ ଆଡେଇ ଦେଉଛି । ଯାହାର ଫାଇଦା ସାଂପ୍ରଦାୟିକ ଶକ୍ତିମାନେ ହିଁ ପାଇବେ ଆର୍ଥିକ ସାମ୍ରାଜ୍ୟବାଦୀମାନଙ୍କ ସହଯୋଗରେ । ଲୋକେ ନିର୍ବାଚନକୁ ନିଜର ଭାଗ୍ୟ ନିର୍ଦ୍ଧାରକ ରୂପେ ଗ୍ରହଣ କରିପାରିବେ ନାହିଁ ଯେହେତୁ ଯିଏ ଆସିଲେ ବି ସେମାନଙ୍କ ଜୀବନ ମାନଦଣ୍ଡରେ କୌଣସି ସରକାରାତ୍ମକ ପରିବର୍ତ୍ତନର ସମ୍ଭାବନା ନାହିଁ । ସେହିପରି ଓଡ଼ିଶାରେ ମଧ ପ୍ରସଙ୍ଗହୀନ ନିର୍ବାଚନ । ସେହି ଭୟ ଓଡ଼ିଶାର ବିଧାନସଭା ପାଇଁ ରହିବା ସହ ଆହୁରି ଅଧିକ ଭାବେ ଲୋକେ ନିରାଶ ଯେ ରାଜ୍ୟର ଚଳନ୍ତି ରାଜନୀତିରେ ମଧ କୌଣସି ସ୍ୱାଭିମାନର ଦୀପଶିଖାଟିଏ ଜଳିବାର ଆଶା ଦିଶୁ ନାହିଁ । ଯୋଜନା କମିସନଙ୍କ ତରଫରୁ ନବକୃଷ୍ଣ ଚୌଧୁରୀ ବିକାଶ ଅଧୟନ କେନ୍ଦ୍ର ଦ୍ୱାରା ପ୍ରସ୍ତୁତ ରିପୋର୍ଟରେ କୁହାଯାଇଛି ଯେ ଓଡ଼ିଶାରେ ୧୦୦ ଟଙ୍କାର ଉନ୍ନୟନ କାର୍ଯ୍ୟ କରିବାକୁ ହେଲେ ୪୨୫ ଟଙ୍କା ଋଣ ଆଣି ଖର୍ଚ୍ଚ କରିବାକୁ ପଡୁଛି । ଏହା ବିଗତ ୨୫ ବର୍ଷର ରାଜନୈତିକ ନେତୃତ୍ୱ ଓ ଶାସନର ପରିଣାମ । ଏହାର କାରଣ ଓ ନିରାକରଣ ପାଇଁ ଓଡ଼ିଶାର ଶାସକ ଦଳ କିମ୍ୱା ମୁଖ୍ୟ ବିରୋଧୀ କଂଗ୍ରେସ ଦଳ ମଧରେ ଗୁରୁତ୍ୱପୂର୍ଣ୍ଣ ବିଚାର ହୋଇନାହିଁ କିମ୍ୱା ଏଥିରୁ ମୁକ୍ତି ପାଇବା ପାଇଁ ବିକଳ୍ପ ରାସ୍ତା ପାଇଁ ଚିନ୍ତା ମଧ ହୋଇନାହିଁ । କେବଳ ଅଭିଯୋଗ ଓ ପ୍ରତି ଅଭିଯୋଗ ଜରିଆରେ ନିଜ ନିଜ ପ୍ରୌଢ଼ି ବାଖ୍ୟାନ ଚାଲିଛି । ଆତ୍ମସମୀକ୍ଷା ଏମାନଙ୍କ ଅଭିଧାନରେ ନାହିଁ ।

ଓଡ଼ିଶାର ଲୋକେ ଦାରିଦ୍ର୍ୟ ବେକାରୀ ଓ ଅସହାୟତା ମଧରେ ହିଁ ଚାଲିଥିବେ । ଶିକ୍ଷା, ସ୍ୱାସ୍ଥ୍ୟ ଓ ଜଳଯୋଗାଣ ବିପର୍ଯ୍ୟସ୍ତ । ସବୁକିଛି ଘରୋଇକରଣରେ ଚାଲିବ । କୃଷି ଉତ୍ପାଦନ କମିବାରେ ଲାଗିଛି ୧୯୯୩ ଠାରୁ । ଚାଷ ପାଇଁ ସଂକଟ ଠିଆ ହୋଇଛି । ଚାଷୀ ଫସଲର ଦାମ ପାଉନଥିବା ବେଳେ କୃଷି ଶ୍ରମିକ ଦାଦନ ହୋଇ ରାଜ୍ୟବାହାରେ ନିର୍ଯ୍ୟାତିତ । ଜଙ୍ଗଲରୁ ବନବାସୀଙ୍କୁ ଜୀବନ ଓ ଜୀବିକା ଅଧିକାରରୁ ବଞ୍ଚିତ କରାଯାଇ ରାଜ୍ୟର ପ୍ରାକୃତିକ ସଂପଦଗୁଡ଼ିକୁ କଂପାନୀମାନଙ୍କ ହାତରେ ଲୁଟ ପାଇଁ ସମର୍ପି ଦିଆଯାଉଛି । ବହୁରାଷ୍ଟ୍ରୀୟ କଂପାନୀମାନେ ଆସନ୍ତା ୨୦ ବର୍ଷ ମଧରେ ରାଜ୍ୟର ଖଣିଜ ସଂପଦକୁ ଶେଷ କରି ଦେବା ସହ ଜଳସଂପଦକୁ ନିଜ ମୁନାଫାର ବସ୍ତୁ କରି ରାଜ୍ୟକୁ ମରୁଭୂମିରେ ପରିଣତ କରିଦେବାର ସମ୍ଭାବନା ନିଶ୍ଚିତ ହେବାକୁ ଯାଉଛି ଆଜିର ଦୁଇ ମୁଖ୍ୟ ରାଜନୈତିକ ଶକ୍ତିମାନଙ୍କ ହାତରେ । ଓଡ଼ିଶା ପରି ରାଜ୍ୟର ବିକାଶ କୃଷି, ଜଙ୍ଗଲ ଓ ସାମୁଦ୍ରିକ ସମ୍ପଳକୁ କିପରି ଲୋକଙ୍କ ଦ୍ୱାରା ଓ ଲୋକଙ୍କ ପାଇଁ କରି ହେବ ତାହା ମଧ

Digitized by srujanika@gmail.com

କ୍ଷୁଦ୍ର ପୁଞ୍ଜି ଓ ମାନବସମ୍ବଳ ସଂପୂର୍ଣ୍ଣ ବିନିଯୋଗ କରି । ସେଥିପାଇଁ ବିଦେଶୀ ଋଣର ଆବଶ୍ୟକତା ନାହିଁ କିମ୍ବା ଡିଏଫ୍ଆଇଡ଼ି କିମ୍ବା ବିଶ୍ୱବ୍ୟାଙ୍କର ଦାଦାଗିରିକୁ ବରଦାସ୍ତ କରିବାର ଅବକାଶ ରହିବ ନାହିଁ । ଏଥିପାଇଁ ରାଜନୈତିକ ଇଚ୍ଛାଶକ୍ତି ଏକାନ୍ତ ଜରୁରୀ ଯାହା ଦ୍ୱାରା ଜନବାଦୀ ରାଜନୀତି ସମ୍ଭବପର ଓ ଲୋକଙ୍କ ପାଖରେ ବିଶ୍ୱସନୀୟତା ସୃଷ୍ଟି ହୋଇପାରିବ । ସଂଗଠିତ ଲୋକଶକ୍ତି ନିର୍ମାଣ ହୋଇପାରିବ । ଏସବୁ କାର୍ଯ୍ୟ କରିବ କିଏ ? କଂଗ୍ରେସ ଓ ବିଜେପି-ବିଜେଡ଼ି ବାହାରେ ଥିବା ରାଜନୈତିକ ସଂଗଠନ ଯିଏ ଯେତେ କ୍ଷୁଦ୍ରହେଲେ ବି ଯଦି ପ୍ରଚଳିତ ଗୋଲାମୀ ଅର୍ଥ ବ୍ୟବସ୍ଥା ତଥା ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣ ସମେତ ସାଂପ୍ରଦାୟିକ ରାଜନୀତିକୁ ବିରୋଧ କରୁଛନ୍ତି, ସେମାନେ କାହିଁକି ନ୍ୟୁନତମ କାର୍ଯ୍ୟକ୍ରମ ଓ ସହମତକୁ ବିଚାରକୁ ନେଇ ଏକାଠି ଏହି ଦୁଇ ଶକ୍ତିକୁ ମିଳିତ ବିରୋଧ କରିବେ ନାହିଁ ? ଦେଶ ଓ ଆମ ରାଜ୍ୟର ବରବାଦ ପାଇଁ କ'ଣ କଂଗ୍ରେସର କୁଶାସନ, ଆର୍ଥିକ ବିଷମତା, ଗରିବ ବିରୋଧୀ ଅର୍ଥନୀତି ଓ ଭୋଟ ପାଇଁ ସାଂପ୍ରଦାୟିକ ଶକ୍ତିମାନଙ୍କ ପାଖରେ ସାଲିସ ମୁଖ୍ୟ କାରଣ ନୁହଁକି ? ଗତଦିନର ବିଜେପି ନେତୃତ୍ୱାଧୀନ ସରକାରର କୁଶାସନ, ଧ୍ୱଂସକାରୀ ଆର୍ଥିକ ନୀତି ଓ ସର୍ବୋପରି ଅମାନବୀୟ ସାଂପ୍ରଦାୟିକ ମାନସିକତା ବିରୋଧରେ କଂଗ୍ରେସ ସଫଳ ଲଢ଼େଇ କରିପାରିଛିକି ? ଏହା ଅସମ୍ଭବ । କଂଗ୍ରେସକୁ ସମର୍ଥନ ଦେଇ ବିଜେପିକୁ କ୍ଷମତାଚ୍ୟୁତ କରିବା ପାଇଁ ସି.ପି.ଆଇ., ସି.ପି.ଏମ୍. ଦଳ ଯେଉଁ କୌଶଳଗତ ରାଜନୀତିକୁ ପ୍ରୟୋଗ କରୁଛନ୍ତି ତାହା ଏକ ସ୍ଥାୟୀ ସମାଧାନ ନୁହଁ । ବରଂ କଂଗ୍ରେସ ଓ ବିଜେପି ଦଳର ସହମତ ଆର୍ଥିକ ଏଜେଣ୍ଡାକୁ ଦୃଢ଼ୀଭୂତ କରାଯାଉଛି । ରାଜନୀତି ମୂଳତଃ ଆର୍ଥିକ ଓ ସାମାଜିକ ନୀତିକୁ ନେଇ ନିୟନ୍ତ୍ରିତ ଓ ପରିଚାଳିତ । କଂଗ୍ରେସ ଦଳର ଆର୍ଥିକ ନୀତିକୁ ବଦଳାଇବା ପାଇଁ ସି.ପି.ଆଇ.ଏମ୍., ସି.ପି.ଆଇ. ଦଳମାନେ କେବେ ସର୍ତ୍ତ ରଖିନାହାନ୍ତି କିମ୍ବା ସମର୍ଥ ହୋଇପାରିନାହାନ୍ତି । ଏପରିକି ଦେବଗୌଡ଼ା ଓ ଗୁଜରାଲ ଅଣ ବିଜେପି ଓ ଅଣ କଂଗ୍ରେସ ସରକାରର ଆର୍ଥିକନୀତିକୁ ବଦଳାଇବାକୁ ସମର୍ଥ ହେଲେ ନାହିଁ । ତେଣୁ ଅତୀତର ଶିକ୍ଷାକୁ ନେଇ ଆଜି ଦେଶରେ ଏକ ବିକଳ୍ପ ବିକାଶ ଧାରାର ପ୍ରବର୍ତ୍ତନ ପାଇଁ ରାଜନୈତିକ ଶକ୍ତି ଅନିବାର୍ଯ୍ୟ । ତାହା କିପରି ହେବ ? ସେଥିପାଇଁ ଆସନ୍ତା ୧୦ ବର୍ଷ ପାଇଁ ଏକ ଖସଡ଼ା ସହ ବିକଳ୍ପ ରାଜନୈତିକ ବାଟ ଖୋଜିବାକୁ ହେବ । ସେଥିପାଇଁ ସର୍ବଭାରତୀୟ ସ୍ତରରେ ହେବା ପୂର୍ବରୁ ଓଡ଼ିଶାରେ ଏକ ବିକଳ୍ପ ସମ୍ଭାବ୍ୟକୁ ଆମ ରାଜ୍ୟର ସମସ୍ତ ବାମପନ୍ଥୀ ଦଳ ନେତାମାନେ ଓ ବାମପନ୍ଥୀ ବିଚାରର ଗଣ ସଂଗଠନ ଓ ତାର ପ୍ରତିନିଧିମାନେ ବାସ୍ତବତା ପ୍ରତି ଦୃଷ୍ଟି ନିକ୍ଷେପ

Digitized by srujanika@gmail.com

କରିବେ କି ବାଟ ଖୋଜିବା ପାଇଁ ? ଅହଂକାର ଓ ଆତ୍ମବିଶ୍ୱାସହରା ମାନସିକତାରୁ ମୁକ୍ତ ରହି ଏକ ସଫଳ ପରୀକ୍ଷା ସହ ତାର ପ୍ରୟୋଗ ପାଇଁ ଉଦ୍ୟମ ଆରମ୍ଭ କରିବା ସମୟ ଆସିଯାଇଛି । ଏହାକୁ ଆଡ଼େଇ ଦେଲେ ସମୟ ଆଉ ସୁଯୋଗ ଦେବ ନାହିଁ । ଓଡ଼ିଶାର ଜନସାଧାରଣ ଏବେ ବି ଜାତିଆଣ, ସାଂପ୍ରଦାୟିକ ଶକ୍ତିମାନଙ୍କ ରାଜନୈତିକ ଅନୁଗାମୀ ହୋଇନାହାନ୍ତି ଯଦିଚ ସେଥିପାଇଁ ବିହନବୁଣା ଚାଲିଛି । ଓଡ଼ିଶାର ଚାଷୀ ଓ ଆଦିବାସୀଙ୍କ ଆର୍ଥିକ ଅନଗ୍ରସରତାକୁ ଆଧାର କରି ଏକ ବିକଳ୍ପ ବିକାଶର ଭିତ୍ତିଭୂମି ଓ ତାପାଇଁ ପ୍ରୟୋଗାତ୍ମକ ଅର୍ଥନୀତି ପ୍ରସ୍ତୁତ କରିବାକୁ ହେବ ଯାହାକୁ ଅସ୍ତ୍ରକରି ଜଗତୀକରଣ ଅର୍ଥ ବ୍ୟବସ୍ଥାକୁ ପ୍ରତିରୋଧ କରିହେବ । ଏଠି ବୃହତ୍‌ଶିଳ୍ପ କିମ୍ବା ବିଦେଶୀ ପୁଞ୍ଜି ଦ୍ୱାରା ବିକାଶ ନାମରେ ହେଉଥିବା ବିକାଶକୁ ବନ୍ଦ କରି ଏକ ବିକେନ୍ଦ୍ରିତ ଆର୍ଥିକ ବିକାଶକୁ ଅଗ୍ରାଧିକାର ଦେବାକୁ ହେବ । ଏଥିପାଇଁ ବାମପନ୍ଥୀ ଦଳମାନେ ନିଜ ନିଜ ଆର୍ଥିକ ବିଚାରକୁ ନୂଆ ଢଙ୍ଗରେ ଯୋଡ଼ିବାକୁ ହେବ । ଯେଉଁମାନେ ମାର୍କସବାଦୀ ଓ ଯେଉଁମାନେ ଗାନ୍ଧି ଓ ଲୋହିଆବାଦୀ ସେମାନଙ୍କୁ ଏକାଠି କେତେକ ଅସହମତକୁ ପଛରେ ପକାଇ ଅନେକ ସହମତକୁ ଆଗରେ ରଖି ବିଚାର ଓ ଆଲୋଚନାକୁ ଆଗେଇ ଆସିବା ଏକାନ୍ତ ଜରୁରୀ । ଏହା ରାଜ୍ୟରେ ଚାଲିଥିବା ଓ ଆସନ୍ତା ଦିନମାନଙ୍କରେ ହେବାକୁ ଥିବା ଜନ ଆନ୍ଦୋଳନମାନଙ୍କୁ ରାଜନୈତିକ ପ୍ରକରଣ ଭିତରକୁ ଆଣି ହେବ ଓ ବାମପନ୍ଥୀ ବିଚାର ଆଧାରିତ ରାଜନୈତିକ ଶକ୍ତି ଏକ ବିକଳ୍ପ ଶକ୍ତିରୂପେ ଲୋକଙ୍କ ପାଖରେ ଦୃଶ୍ୟମାନ ହୋଇପାରିବ । ଓଡ଼ିଶାର ଜନତାକୁ ନୂଆ ଜୀବନ ଦେବାପାଇଁ ଏପରି ଏକ ଉଦ୍ୟମର ଐତିହାସିକ ଆବଶ୍ୟକତା ରହିଛି । ଏହା ଯେ ବିନା ଗଣସଂଗ୍ରାମରେ କାର୍ଯ୍ୟକାରୀ ହେବା ଅସମ୍ଭବ ।

ଏହି ସମ୍ଭାବନାକୁ ଏକ ପାଦ ଆଗକୁ ନେବା ପାଇଁ ଆସନ୍ତା ନିର୍ବାଚନରେ ମତାନ୍ତର ଥିଲେ ବି ବିଭିନ୍ନ ବାମପନ୍ଥୀଦଳମାନେ ଏକାଠି ହୋଇ ମିଳିତ ପ୍ରାର୍ଥୀ ଦେଇ ନିର୍ବାଚନକୁ ସମ୍ମୁଖୀନ ହେବା ଏକାନ୍ତ ପ୍ରୟୋଜନ । ମିଳିତହେଲେ ବି ବିଧାନସଭାକୁ ଆଖିଦୃଶିଆ ସଂଖ୍ୟକ ନିର୍ବାଚିତ ହୋଇନପାରନ୍ତି । କିନ୍ତୁ ଲୋକଙ୍କୁ ଏକ ବିକଳ୍ପର ଆବଶ୍ୟକତା ପ୍ରତି ଦୃଷ୍ଟି ନିକ୍ଷେପ କରାଇବା ସହ ଦୁଇ ଜନ ବିରୋଧୀ ଶକ୍ତି ବିରୋଧରେ ଜନ ଜାଗରଣ ପାଇଁ ଏକ ସୁଯୋଗ ସୃଷ୍ଟି ହୋଇପାରନ୍ତା । ଏହା ଯେ ନିର୍ବାଚନ ପରେ ପୁଣି ମିଳିତ ଲଢ଼େଇ ପାଇଁ ରାସ୍ତା ଖୋଲି ଦିଅନ୍ତା । ଆସନ୍ତା ୫ ବର୍ଷ ମଧ୍ୟରେ ବିକଳ୍ପ ଶକ୍ତି ପାଇଁ ଆବଶ୍ୟକ ପ୍ରସ୍ତୁତି କାର୍ଯ୍ୟକ୍ରମ ଜରିଆରେ ଲୋକଙ୍କ ପାଖରେ ପହଞ୍ଚି ହୁଅନ୍ତା । ଏହାକୁ ଉପଲବ୍ଧ କରିବାକୁ ବିଭିନ୍ନ ବାମପନ୍ଥୀ ଦଳୀୟ

Digitized by srujanika@gmail.com

ନେତୃମଣ୍ଡଳୀ ଆଗେଇ ଆସିବେ କି ? ୧୯୯୫ରେ ବିଜୁ ପଟ୍ଟନାୟକଙ୍କ କୁଶାସନକୁ ଚାଲେଞ୍ଜ କରି ଓଡ଼ିଶାରେ କଂଗ୍ରେସ ଓ ଜନତା ଦଳର ବିକଳ୍ପ ଭାବେ ଏକ ନୂତନ ରାଜନୈତିକ ପ୍ରକ୍ରିୟା ତତ୍କାଳୀନ ବାମପନ୍ଥୀଦଳ ଓ ସମାଜବାଦରେ ବିଶ୍ୱାସ କରୁଥିବା ରାଜନୈତିକ ଦଳର ନେତୃମଣ୍ଡଳୀ ସାଧୁ ଉଦ୍ୟମ ଆରମ୍ଭ କରିଥିଲେ । କିନ୍ତୁ କଂଗ୍ରେସ କ୍ଷମତାକୁ ଆସିଯିବ ବୋଲି ସି.ପି.ଆଇ. ଓ ସି.ପି.ଏମ୍. ନିର୍ବାଚନ ସମୟରେ ଏହି ଉଦ୍ୟମରୁ ଦୂରେଇ ଗଲାପରେ ପ୍ରକ୍ରିୟାଟି ଦୁର୍ବଳ ହୋଇଗଲା । ଲେଖକ ନିଜେ ଏହି ପ୍ରକ୍ରିୟାରେ ଥିଲେ । ଫଳାଫଳ ସେହି କଂଗ୍ରେସ କ୍ଷମତାକୁ ଆସିଲା । ପୁଣି ୫ ବର୍ଷ ପରେ ବିଜୁବାବୁଙ୍କ ଉତ୍ତରାଧିକାରୀମାନେ ବିଜେପି ପାଖରେ ଆତ୍ମ ସମର୍ପଣ କରି ମିଳିତ ଶାସନ କଲେ । ବର୍ତ୍ତମାନ ସେଥିରୁ ଦଳେ କଂଗ୍ରେସ ଭିତରକୁ ଯାଇଛନ୍ତି । ଆଜି ପୁଣି ଯଦି ବିଜେପି ଆସିଯିବ ବୋଲି କଂଗ୍ରେସକୁ ସମର୍ଥନ ଦେବା ପାଇଁ ଯେଉଁ ବାମପନ୍ଥୀ ଦଳମାନେ ବାଧ୍ୟ ବୋଲି କହିବେ ସେମାନେ ପାଇବେ କ'ଣ ? ଓଡ଼ିଶା ବିଧାନସଭାକୁ କେତେଜଣ ଆସିପାରିବେ ? ତେଣୁ ବିଜେପି-ବିଜେଡ଼ି ଓ କଂଗ୍ରେସକୁ ସମଦୂରରେ ରଖି ଅନ୍ତତଃ ସି.ପି.ଆଇ., ସି.ପି.ଆଇ.ଏମ୍., ସି.ପି.ଆଇ.(ଏମ୍.ଏଲ୍. ଲିବରେସନ), ଏସ.ୟୁ.ସି.ଆଇ., ଅନ୍ୟ କମ୍ୟୁନିଷ୍ଟ ସଂଗଠନ ମାନେ ଓ ସମାଜବାଦୀ ଜନ ପରିଷଦ ଯେଉଁମାନେ ନିର୍ବାଚନରେ ଅଂଶଗ୍ରହଣ କରନ୍ତି, ସେମାନେ ଏକାଠି ହୋଇପାରିଲେ ସମାଜବାଦରେ ବିଶ୍ୱାସ କରୁଥିବା ଲୋକ ସଂଗଠନ ଓ କୃଷକ ସଂଗଠନ ଓ ଜନ ଆନ୍ଦୋଳନରେ ସମର୍ଥକମାନେ ବାମପନ୍ଥୀ ଶକ୍ତିମାନଙ୍କୁ ସହଯୋଗ ଓ ସମର୍ଥନ ଦେବାକୁ ଆଗେଇ ଆସନ୍ତେ । ଏପରି ଏକ ତତ୍କାଳ ନିଷ୍ପତ୍ତି ଗୋଟିଏ ନିର୍ବାଚନ ପରେ ଓଡ଼ିଶାରେ ନୂଆ ରାଜନୈତିକ ଶକ୍ତି ଗଠନରେ ସଫଳ ସହାୟକ ହୁଅନ୍ତା ଓ ଅନ୍ତତଃ ଆଉ ଏକ ପାଞ୍ଚବର୍ଷୀୟ ନିର୍ବାଚନ ବେଳକୁ ଓଡ଼ିଶା ବିଧାନସଭାରେ ଓଡ଼ିଶାର ରାଜନୀତିକୁ ନୂଆ ଦିଗଦର୍ଶନ ଦେବାପରି ଏକ ଶକ୍ତି ପ୍ରବେଶ କରିପାରନ୍ତେ । ଓଡ଼ିଶାର ଦାରିଦ୍ର୍ୟ ଓ ବେକାରୀ ହଟାଇବାକୁ ହେଲେ ପ୍ରଚଳିତ ଭ୍ରଷ୍ଟାଚାର ଓ କଳାଧନରେ ପରିଚାଳିତ ସାମ୍ରାଜ୍ୟବାଦ ଓ ସାଂପ୍ରଦାୟିକ ଶକ୍ତି ସମର୍ଥିତ ରାଜନୈତିକ ଶକ୍ତିମାନଙ୍କ ବିରୋଧରେ ଏକ ମିଳିତ ବିକଳ୍ପ ଜନଶକ୍ତି ଆଧାରିତ ରାଜନୈତିକ ପ୍ରକ୍ରିୟାର ଅନିବାର୍ଯ୍ୟତାକୁ ବାମପନ୍ଥୀ ଦଳର ନେତା ଓ କର୍ମୀମାନେ କିପରି ଗ୍ରହଣ କରୁଛନ୍ତି ତା ଉପରେ ରାଜ୍ୟ ଓ ସମାଜର ଭବିଷ୍ୟତ ନିର୍ଭର କରୁଛି ।



Digitized by srujanika@gmail.com

# ଖୁଚୁରା ଦୋକାନ ବି ବିଦେଶୀ ହାତରେ ରହିବ– ସତରେ ଆମେ ସ୍ୱାଧୀନ ?

ଜଗତୀକରଣ ଓ ଖୋଲା ବଜାର ଅର୍ଥ ବ୍ୟବସ୍ଥା ଜରିଆରେ ବିଦେଶୀ ପୁଞ୍ଜିନିବେଶକୁ ବିକାଶ ଯନ୍ତ୍ରର ମୁଖ୍ୟ ଜାଳେଣି ବା ଇନ୍ଧନ ବୋଲି କୁହାଯାଉଛି । କିନ୍ତୁ ବିକାଶ ନାମରେ ଯେଉଁଠି ବିନାଶ ଅନିବାର୍ଯ୍ୟ ସେଠି ଏହି ଜାଳେଣି ଧ୍ୱଂସର ନିଆଁ ହୁଳା ରୂପେ ଶୋଷଣର ମାଧ୍ୟମ ହୋଇଛି । ଆଜି ଆମ ଦେଶରେ ବିଦେଶୀ ପୁଞ୍ଜି ଓ ବିଦେଶୀ କଂପାନୀମାନଙ୍କୁ ନିମନ୍ତ୍ରଣ କରି ଆଣିବା ପରେ ଦେଶୀୟ କ୍ଷୁଦ୍ର ଓ କୁଟୀର ଶିଳ୍ପଗୁଡିକ କ୍ରମଶଃ ବନ୍ଦହୋଇ ଯିବା ସହ ପ୍ରାକୃତିକ ସଂପଦ ଗୁଡିକ ବିଦେଶୀ ଚାହିଦା ଓ ପୁଞ୍ଜିପତିଙ୍କ ମୁନାଫା ପାଇଁ ହିଁ ବ୍ୟବହୃତ ହେବାରେ ଲାଗିଛି । ରାଷ୍ଟ୍ରାୟତ୍ତ ଶିଳ୍ପ, ବ୍ୟାଙ୍କ ଓ ବୀମା ମଧ୍ୟକୁ ବିଦେଶୀଙ୍କ ପ୍ରବେଶ ରାଷ୍ଟ୍ରର ସାର୍ବଭୌମତ୍ୱ ଉପରେ ବିପଦ ସୃଷ୍ଟି କରିଛି । ବେକାରୀ ଓ ଦାରିଦ୍ର୍ୟ ନିମ୍ନମଧ୍ୟବିତ୍ତଙ୍କ ଠାରୁ ସବୁନଥିଲା ବାଲା ପର୍ଯ୍ୟନ୍ତ ବଢ଼ିବାରେ ଲାଗିଛି । ଏତିକିବେଳେ ଭାରତ ସରକାର ଆମ ଦେଶର ଖୁଚୁରା ବ୍ୟବସାୟରେ ମଧ୍ୟ ବିଦେଶୀ ପୁଞ୍ଜି ନିବେଶକୁ ନିମନ୍ତ୍ରଣ କରିବାକୁ ଯାଉଛନ୍ତି । ଏହାକଲା ପରେ ଆମ ଗାଁ–ସହରର ଦୋକାନ ବଜାର ସମେତ ହୋଟେଲ ଓ ଉଠା ଦୋକାନୀ, ଠେଲା ବିକାରେ ନିଯୋଜିତ କୋଟି କୋଟି ବ୍ୟକ୍ତି ଯିବେ କୁଆଡ଼େ ? ଏମାନଙ୍କ ଭାତ ପତରରେ ଧୂଳି ପକାଇ ବିକାଶର ଚକ ଗଡ଼ାଇଲେ ଲାଭ କାହାର ହେବ ?

ଦେଶର ତେଜରାତି ଦୋକାନ ଓ ଫେରିବାଲା ତଥା ଖୁଚୁରା ବ୍ୟବସାୟର ୯୮%, ଅସଂଗଠିତ କ୍ଷେତ୍ରରେ ରହିଛି । ଏହି ବ୍ୟବସାୟରେ ପ୍ରାୟ ୪ କୋଟି ୯୧ ଲକ୍ଷ ଲୋକ ରୋଜଗାର ପାଆନ୍ତି । ଘରୋଇ କ୍ଷେତ୍ରରେ ୩.୩୫ କୋଟି ଓ ରାଷ୍ଟ୍ରାୟତ୍ତ ଦୋକାନ ମାନଙ୍କରେ ୧.୫୬ କୋଟି ଲୋକଙ୍କ ଜୀବିକା ସଂପୃକ୍ତ । ଦେଶର ପ୍ରାୟ ୧୬ କୋଟି ଜୀବନ ଏହି ବ୍ୟବସାୟ ଉପରେ ନିର୍ଭରଶୀଳ । ଭାରତୀୟ ଶିଳ୍ପପତିମାନଙ୍କ ସଂଘ ଫିକି ଅନୁସାରେ ଦେଶର ମୋଟ ରୋଜଗାରରେ ଖୁଚୁରା ବ୍ୟବସାୟର ଅବଦାନ ୮%, ଯାହାକି ଆମେରିକାରେ ୧୬%, ପୋଲାଣ୍ଡରେ ୧୨%, ବ୍ରାଜିଲରେ ୧୫% ଓ ଚୀନରେ ୭% । ଭାରତରେ ଦୋକାନମାନଙ୍କ ଘନତା ଅନ୍ୟ ଦେଶମାନଙ୍କ ତୁଳନାରେ ସର୍ବାଧିକ । ଏହା ୧୦୦୦ ଜନସଂଖ୍ୟାରେ ୧୧ ଗୋଟି । ୨୦୦୪ରେ ମୋଟ

Digitized by srujanika@gmail.com

ଖୁଚୁରା ବ୍ୟବସାୟ ୧୧ ଲକ୍ଷ କୋଟି ଟଙ୍କାର ହୋଇଥିଲା ଯାହାକି ମୋଟ ଘରୋଇ ଉତ୍ପାଦନର ୪୦% । କେବଳ ଖାଦ୍ୟପଦାର୍ଥର ଖୁଚୁରା ବେପାର ପ୍ରାୟ ୪ ଲକ୍ଷ କୋଟି ଟଙ୍କା ।

ଏପରି ଏକ ଆର୍ଥିକ କ୍ଷେତ୍ରକୁ ଯଦି ବିଦେଶୀ ପୁଞ୍ଜି ଆସିଯାଏ ତାହାହେଲେ ଯେଉଁ ନୂଆ ନୂଆ ବିଦେଶୀ ମାଲିକାନାରେ ବିରାଟ ବିରାଟ ଚକମକ ଦୋକାନ ଖୋଲିବ ସେହି ସ୍ଥାନକୁ ପ୍ରାୟ ସମସ୍ତ ମଧ୍ୟବିତ୍ତ, ଉଚ୍ଚ ମଧ୍ୟବିତ୍ତ ଖାଉଟିମାନଙ୍କ ଧାଡ଼ି ବାନ୍ଧିବ । ସଙ୍ଗେ ସଙ୍ଗେ ଅନେକ ସ୍ଥାନୀୟ ଦୋକାନ ବନ୍ଦ ହେବାକୁ ବାଧ୍ୟ । ଯଦି ୧୦ ଲକ୍ଷ ଜନ ବସତି ସହରରେ ଆମେରିକାର ୱାଲ ମାର୍ଟ କଂପାନୀକୁ ସରକାର ଅନୁମତି ଦିଅନ୍ତି, ତାହାହେଲେ ପ୍ରାୟ ୪୫୦୦ଙ୍କ ରୋଜଗାର ଖତମ ହୋଇଯିବ । ଏହି କଂପାନୀ ଦ୍ୱାରା ନିର୍ମିତ ଏକ ଦୋକାନ ଘରର କ୍ଷେତ୍ରଫଳ ନ୍ୟୁନତମରେ ୮୫୦୦୦ ବର୍ଗ ଫୁଟ ଏବଂ ପ୍ରତି ଦୋକାନରେ ଏକ କୋଟି ଡ଼ଲାର ଅର୍ଥାତ ପ୍ରାୟ ୪୬ କୋଟି ଟଙ୍କାର ବ୍ୟବସାୟ ହୋଇଥାଏ । କିନ୍ତୁ ଭାରତରେ ମାତ୍ର ୩୩୩୦୦୦ ଟଙ୍କାର ବ୍ୟବସାୟ ହୋଇଥାଏ । ଭାରତରେ କେବଳ ପ୍ରାୟ ୪% ଦୋକାନର କ୍ଷେତ୍ରଫଳ ୫୦୦ ବର୍ଗ ଫୁଟରୁ ଅଧିକ । ତେଣୁ ବିଦେଶୀ କଂପାନୀମାନଙ୍କ ଦୋକାନ ଆଗରେ ସ୍ଥାନୀୟ ଦୋକାନୀମାନେ କୁଆଡ଼େ ହଜିଯିବେ ତାର ପତ୍ତା ମିଳିବ ନାହିଁ । କୋକାକୋଲା - ପେପ୍‌ସି ଆସିବା ପରେ ଗଡ଼ରେଜ ପରି ଏକଚାଟିଆ ଘରୋଇ କଂପାନୀର ମୃଦୁପାନୀୟ ଥମ୍‌ସଅପ୍ ତିଷ୍ଠିଲାନାହିଁ । ଏହି ବିଦେଶୀ ଦୋକାନୀମାନେ ଖାଉଟିଙ୍କୁ ଆକର୍ଷଣ କରିବାପାଇଁ ପ୍ରଥମେ ପ୍ରଥମେ ଚିକ୍କଣ ରଙ୍ଗିନ ବ୍ୟାଗ ଯୋଗାଇ ଜିନିଷ ଦେବାର ବ୍ୟବସ୍ଥା କରିପାରନ୍ତି । ଗୋଟିଏ ସ୍ଥାନରେ ସମସ୍ତ ପ୍ରକାର ଘରୋଇ ଆବଶ୍ୟକ ଜିନିଷ ଭଣ୍ଡାର କରି ରଖି ବିକିବେ । ସେହି ଦୋକାନମାନଙ୍କରୁ ଜିନିଷ କିଣିବାକୁ ଯିବା ମଧ୍ୟ ଏକ ଷ୍ଟାଟାସ୍ ସିମ୍‌ବଲ ହୋଇଯିବ । ଫାଷ୍ଟ ଫୁଡ୍ ନାମରେ ବି ଜିନିଷ ବିକ୍ରି ହେବ । ଏହାଦ୍ୱାରା ଆମ ସାହି, ବସ୍ତି, ରୋଡ୍ କଡ଼ର ଉଠାଦୋକାନୀ, ଫେରିବାଲାଙ୍କ ଜୀବିକା ଛଡ଼ାଇ ନିଆଯିବ । ଆମ ଦେଶର ଖୁଚୁରା ବ୍ୟବସାୟରେ ବାର୍ଷିକ ୩୦% ବୃଦ୍ଧି ଘଟୁଛି । ତେଣୁ ଏହି ବ୍ୟବସାୟକୁ ହାତକୁ ନେବାକୁ ବହୁରାଷ୍ଟ୍ରୀୟ କଂପାନୀ କିଙ୍ଗ ଫିଶର, ଅହୋଲଡ଼, ଟେସ୍କୋ, କେରଫୋର ଓ ୱାଲମାର୍ଟ ଲୋଲୁପ ଦୃଷ୍ଟି ପକାଇଛନ୍ତି । ଖୋଲା ବେପାରର ସମର୍ଥକ ଅଷ୍ଟ୍ରେଲିଆ, ଜାପାନ ଓ ଦକ୍ଷିଣ କୋରିଆରେ ବହୁରାଷ୍ଟ୍ରୀୟ କଂପାନୀ ଦ୍ୱାରା ଖୁଚୁରା ପେଟ୍ରୋଲ ବିକ୍ରିକୁ ନିଷିଧ କରାଯାଇଥିବା ସ୍ଥଳେ ଜର୍ମାନୀରେ ଏକ ଶହ ବର୍ଗମିଟରରୁ ଅଧିକ ସ୍ଥାନରେ ବିଦେଶୀଙ୍କୁ ଦୋକାନ ଖୋଲିବା ମନା । ଫ୍ରାନ୍‌ସରେ ବଡ଼ ବଡ଼ କଂପାନୀମାନଙ୍କ ଦ୍ୱାରା ଖୁଚୁରା ଦୋକାନ ଖୋଲିବା ପାଇଁ

Digitized by srujanika@gmail.com

ନିଷେଧ କରାଯାଇଛି । କିନ୍ତୁ ଆମ ଦେଶର ସରକାର କାହିଁକି ଖୁଚୁରା ବ୍ୟବସାୟରେ ବିଦେଶୀ ପୁଞ୍ଜିନିବେଶକୁ ସ୍ୱାଗତ କରୁଛି ତାହାର କାରଣ କ'ଣ ? ଏ ମଧ୍ୟରେ ବିଦେଶୀ କଂପାନୀମାନେ ସେମାନଙ୍କ ବ୍ରାଣ୍ଡେଡ୍ ଜିନିଷକୁ ନିଜ ନିଜର ଦୋକାନ କରି ବିକ୍ରି କରିବାକୁ ଅନୁମତି ଦେବାକୁ କେନ୍ଦ୍ର ସରକାରଙ୍କ ନିଷ୍ପତ୍ତିର ଫଳାଫଳ ଅତି ଭୟଙ୍କର ହେବ । ପେପ୍‌ସି ଓ କୋକାକୋଲା ପୁନଃ ଭାରତକୁ ଆସିଲା ପରେ ଭାରତୀୟ ମୃଦୁପାନୀୟ ବଜାରରୁ ଉଭେଇଗଲା । ଏପରିକି ବଡ଼ ବଡ଼ ଘରୋଇ କଂପାନୀମାନେ ପେପ୍‌ସି ଓ କୋକାକୋଲାର ପ୍ରତିଯୋଗିତା ଆଗରେ ଆତ୍ମସମର୍ପଣ କରିଗଲେ ।

ଯେଉଁମାନେ କହନ୍ତି ବିଦେଶୀଙ୍କ ଦୋକାନ ହେଲେ ଖାଉଟିମାନେ ଶସ୍ତା ଓ ଭଲ ଜିନିଷ ପାଇବେ । କିନ୍ତୁ କିଣିବା ଲୋକ କିଏ ? ପୁଣି ସେହି ଉଚ୍ଚ ମଧ୍ୟବିତ୍ତ ପରିବାର ଲୋକେ ବିଦେଶୀ ଦୋକାନୀ ପାଖରେ ହାଜର ହେବାକୁ ଏକ ଷ୍ଟେଟାସ ରୂପେ ନିଜକୁ ଧନ୍ୟ ମନେ କରିବେ । ପ୍ରଥମେ ଲକ୍ଷ ଲକ୍ଷ ସହରୀ ଦୋକାନ ବନ୍ଦ ହୋଇଯିବ । ତାପରେ ଗ୍ରାମାଞ୍ଚଳରେ ବି ବିଦେଶୀ ଏଜେଣ୍ଟଙ୍କ ଦୋକାନ ଖୋଲିବ । କୋଟି କୋଟି ଲୋକ ଜୀବିକାରୁ ବଞ୍ଚିତ ହେବେ । ଯେଉଁଦିନ ଆମ ସାହି ବସ୍ତିରେ ବାସକରୁଥିବା ଲୋକଟିର ଆଉ ଦୋକାନ ନଥିବ ସେତେବେଳେ ବିଦେଶୀ କଂପାନୀର ଦୋକାନରେ ଚଢ଼ାଦରରେ ଜିନିଷ ବିକ୍ରିହେବ । ନିମ୍ନମଧ୍ୟବିତ୍ତ ଓ ଗରିବ ଶ୍ରେଣୀ ପାଖରେ ଆୟ କମୁଥିବ । ସେତେବେଳେ କ୍ରୟ ଶକ୍ତି ମଧ୍ୟ ହ୍ରାସ ହେବ । ତାହାହେଲେ ଏସବୁ କାହିଁକି ଓ କ'ଣ ପାଇଁ ? ଏପରି ଏକ ଦେଶବିରୋଧୀ ନିଷ୍ପତ୍ତି ପଛରେ ରହିଛି ଭାରତପରି ୧୧୦ କୋଟି ଲୋକଙ୍କ ମଧ୍ୟରୁ ଅନ୍ତତଃ ୫୦ କୋଟି ଲୋକଙ୍କ ତେଲ ଲୁଣର ବଜାରକୁ ଅକ୍ତିଆର କରିବାର ଲକ୍ଷ୍ୟ ରହିଛି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ । ଆମ ଦେଶର ସରକାର ଓ ଅଧିକାଂଶ ନିର୍ବାଚିତ ସାସଂଦ ଓ ବିଧାୟକମାନେ ନିଜ ବିବେକକୁ ବନ୍ଧା ପକାଇ ଦଲାଲ ଭୂମିକାରେ ଏହାକୁ ବିକାଶ ବୋଲି ଡିଣ୍ଡିମ ପିଟୁଛନ୍ତି । ଫେରିବାଲା, ଠେଲାଗାଡିରେ ଘୁଗୁନି ବିକାଳି କିମ୍ବା ରାସ୍ତାକଡ଼ର ଇଡ଼ିଲି ଦୋକାନୀଙ୍କ କ'ଣ ସ୍ୱାଭିମାନର ସହ ବଞ୍ଚିବାର ଅଧିକାର ନାହିଁ ? ସେମାନଙ୍କ ପାଇଁ ସରକାରଙ୍କ ଯୋଜନା କିମ୍ବା ଉଦାରୀକରଣ ଅର୍ଥବ୍ୟବସ୍ଥାରେ ସ୍ଥାନ ନଥିଲାବେଳେ ଖୋଦ୍ ସରକାର ସେମାନଙ୍କ ଜିବୀକା ଛଡ଼ାଇ ନେବା ସମ୍ବିଧାନ ବିରୋଧୀ କାର୍ଯ୍ୟ । ୱାଲମାର୍ଟ, ରିଲାଏନ୍‌ସ ପରିବା ଦୋକାନ, ଢ଼ାବା, ତେଜରାତି ଦୋକାନ କରି ଛୁଞ୍ଚିରୁ ରେଫ୍ରିଜେରଟର ପର୍ଯ୍ୟନ୍ତ ବିକିବା ପରେ ଆମ ଠେଲା ଗାଡ଼ି ଓ ବୁଲା ବିକାଳି ଆତ୍ମହତ୍ୟା କରିବାକୁ ବାଧ୍ୟ ହେବେ ।

Digitized by srujanika@gmail.com

ଏସବୁ ଘଟିଗଲା ପରେ ଆଉ ରହିବ କ'ଣ ? ତାପରେ ଆମ ଅର୍ଥବ୍ୟବସ୍ଥା ବିଶ୍ୱକରଣୀୟ ହୋଇଯିବାର ଆତ୍ମସନ୍ତୋଷ କୋଟି କୋଟି ଲୋକଙ୍କୁ ଆତ୍ମହତ୍ୟା ଆଡ଼କୁ ଠେଲିବ । କେବଳ ବିଦେଶୀ ପୁଞ୍ଜି ପାଇଁ ପାଗଳ ରାଜନେତା ଓ ପ୍ରଶାସକମାନେ ନିଜ ନିଜ ସୌଖୀନ ଜୀବନର ଆବଶ୍ୟକତାଗୁଡ଼ିକୁ ରାଷ୍ଟ୍ରର ସମୃଦ୍ଧିରେ ପ୍ରାଥମିକ ସ୍ଥାନ ଦେଉଛନ୍ତି । ଏକ ଡ଼ଲାର ଆଣି ପୁଣି ବିଦେଶକୁ ଲାଭ ଆକାରରେ ୧୦୦ ଡ଼ଲାର ଦେବେ । ବିଦେଶୀଙ୍କ ଦୋକାନମାନଙ୍କରେ ସ୍ଥାନୀୟ ଶିଳ୍ପ ଓ କୃଷିଜାତ ପଦାର୍ଥଗୁଡ଼ିକୁ ବିକ୍ରି ପାଇଁ ପସନ୍ଦ ନକରିବା ଯଥେଷ୍ଟ ସମ୍ଭାବନା ରହିଛି । ବିଦେଶୀ ଜିନିଷର ଚାହିଦା ସୃଷ୍ଟି କରିବାରେ ସେମାନେ ଚେଷ୍ଟିତ ହେବେ । ପରିଣାମ ହେବ ଆମ ଦେଶର ଉତ୍ପାଦନ କମିବାକୁ ବାଧ୍ୟ ଓ ଲୋକଙ୍କ ଆୟ ହ୍ରାସ ହେବା ଅପରିହାର୍ଯ୍ୟ । ଆମର ବଜାର ସାମ୍ରାଜ୍ୟବାଦୀଙ୍କ ସଂପୂର୍ଣ୍ଣ ଅକ୍ତିଆରରେ ରହିବ ଏବଂ ଆମେ ଏକ ସ୍ୱାଧୀନ ରାଷ୍ଟ୍ରର ପରାଧୀନ ଖାଉଟି ହୋଇ ରହିବା । ତାପରେ ସ୍ୱାଧୀନତା ଦିବସ ଦିନ ଆମ ଇତିହାସକୁ ରାଜନେତାମାନେ ପୁରାଣ ପରି ପାଠ କରୁଥିବେ ଓ କହୁଥିବେ ଆମ ଦେଶ କେଡ଼େ ମହାନ୍ !



Digitized by srujanika@gmail.com

# ଅସଭ୍ୟର ପରିଚୟ ନେଇ ନୂଆ ସଭ୍ୟତା ଆସୁଛି

ନୂଆ ନୂଆ ବିକଶିତ ବୈଷୟିକ ଜ୍ଞାନକୌଶଳ ଦ୍ୱାରା ଅତ୍ୟାଧୁନିକ ବଜାର ଭିତ୍ତିକ ସମାଜ ଓ ସଂସ୍କୃତି ନିର୍ମାଣକୁ ସଭ୍ୟତାର ଚରମ ସଫଳତା ରୂପେ ବିବେଚନା କରିବା ଏକ ମିଥ୍ ଏବଂ ଏହି ମିଥ୍ ମୂଳରେ ରହିଛି ଅଲଗାବାଦ ବା ଭିନ୍ନ ହୋଇଯିବା ତତ୍ତ୍ୱ । ବାସ୍ତବତା ହେଲା ଏଥିରେ ସମୂହ ସମାଜର ଅଭିନ୍ନତା, ଐକ୍ୟ ଓ ବିବିଧତା ମଧ୍ୟରେ ଏକତା ତଥା ''ସର୍ବେ ଭବନ୍ତୁ ସୁଖିନଃ'' ବୈଚାରିକତାର ସ୍ଥାନ ନାହିଁ । ବରଂ ସମାଜର ଆଗ ଧାଡ଼ିରେ ପ୍ରତିଷ୍ଠିତ ଓ ବ୍ୟବସ୍ଥିତ ହୋଇ ରହିଥିବା ସବୁ ସଫଳତାର ସର୍ବଗ୍ରାସୀମାନେ ସଭ୍ୟତାର ସର୍ବେସର୍ବା ଓ ସେମାନଙ୍କ ଆର୍ଥିକ ସାମ୍ରାଜ୍ୟର ସଂପ୍ରସାରଣ ହିଁ ବିକାଶର ଏକମାତ୍ର ଲକ୍ଷ୍ୟ ରୂପେ ଧରି ନିଆଯାଉଛି । ଆଧୁନିକତାର ମାପକାଠି ସେହି ବ୍ୟକ୍ତିମାନଙ୍କ ହାତରେ ଯେଉଁମାନେ ନିୟନ୍ତକ ରୂପେ ବଜାର ସଭ୍ୟତାର ପୃଷ୍ଠପୋଷକତା କରୁଛନ୍ତି । ପରିବର୍ତ୍ତନ କହିଲେ ବ୍ୟବସ୍ଥାର ପରିବର୍ତ୍ତନ ଯେଉଁଠି ସମାନତା ଓ ସ୍ୱାଭିମାନ ବୈଷମ୍ୟ, ଅଭାବ, ଅନଟନ ଓ ଭୋକକୁ ଦୂର କରିବାକୁ ଭିତ୍ତି ପ୍ରସ୍ତର ହେବ ଏବଂ ଆର୍ଥିକ ଅଭିବୃଦ୍ଧିର ସଫଳତା ସମବଣ୍ଟିତ ହେବା ସହ ନିରନ୍ତର (ଶାଶ୍ୱତ) ବିକାଶ ଏକ ଜନବାଦୀ ଧାରାର ପ୍ରକ୍ରିୟାରେ ପରିଣତ ହେବ । ଏହି ପରିଣତିକୁ ବିକଳ୍ପର ଏକ ଫଳବଦ୍ଧ ଉପଲବ୍ଧି ରୂପେ କୁହାଯିବ । କିନ୍ତୁ ଏହି ପରିବର୍ତ୍ତନ ବଦଳରେ ସ୍ଥିତାବସ୍ଥାକୁ ରଙ୍ଗ ଦେଇ ଚେହେରା ବଦଳାଇ ପରିବର୍ତ୍ତନ ବୋଲି ଦାବି କରିବା ଆଜିର ଆଧୁନିକ ବଜାର ସଭ୍ୟତାର ଆଉ ଏକ ବିଲକ୍ଷଣ । ଏହି ରଙ୍ଗ ଲିପିବାର ତୁଳୀ ହୋଇଛି ତଥାକଥିତ ଟେକ୍‌ନୋଲଜି ଯାହାକୁ ତଥାକଥିତ ବିକାଶର ଜୀବନ ନାଟିକା ବୋଲି କୁହାଯାଉଛି । ରଙ୍ଗ ବେରଙ୍ଗରେ ବିକାଶର ପରିଭାଷା ବଦଳି ଯାଉଛି ଯେଉଁଠି ରାଷ୍ଟ୍ରର ଅଭିବୃଦ୍ଧି ବିଶ୍ୱସ୍ତରୀୟ ପ୍ରତିଯୋଗିତା ଓ ବିଶ୍ୱ ଗ୍ରାମ ନାମିତ ଶବ୍ଦମାନଙ୍କରେ ଉଚ୍ଚାରଣ ବାରମ୍ବାର ଗଣ ମାଧ୍ୟମରୁ ଆରମ୍ଭ କରି ବିଶ୍ୱାୟନର ପ୍ରବକ୍ତାମାନଙ୍କ ପ୍ରବଚନରେ ପ୍ରକମ୍ପିତ ହେଉଛି । ଏହି ପ୍ରକ୍ରିୟାରେ ଟେକ୍‌ନୋଲଜିର ଅତ୍ୟଧିକ ପ୍ରୟୋଗ ଓ ବିଜୟର ପ୍ରଲୋଭନରେ ପ୍ରକୃତି ଉପରେ ବାରମ୍ବାର ଆକ୍ରମଣର ପରିଣାମର ଭୟବହତାକୁ ସାମନାକୁ ଆଣିବାକୁ ଟେକନୋଲୋଜିର ପୃଷ୍ଠପୋଷକମାନେ ଚାହାଁନ୍ତି ନାହିଁ । କାରଣ ସତ୍ୟର ପରିପ୍ରକାଶ ହୋଇଗଲେ ଅନେକ ଅସତ୍ୟମାନଙ୍କ ମ୍ୟାଜିକ ସୁନା ଅଣ୍ଡା ତଳେ ପଡି ଫାଟିଯିବ । ସୁନା ଅଣ୍ଡାରୁ ସୁନା କୁକୁଡ଼ାର ସ୍ୱପ୍ନ ତ ଭାଙ୍ଗିଯିବ ତା ସହ ମାମୁଲି

Digitized by srujanika@gmail.com

କୃତ୍କୁତାଟିର ଜନ୍ମ ମଧ୍ୟ ଅସମ୍ଭବ ହୋଇପଡ଼ିବ । ଏହି ପରିଣତି ମଧ୍ୟ ଆଜିର ବଜାରୀ ସଭ୍ୟତାର ଶେଷ ଫଳାଫଳ ।

ବିଜ୍ଞାନ କୋଳରୁ ଜାତ ଟେକ୍‌ନୋଲଜି । ବିଜ୍ଞାନ ସତ୍ୟ ଉପରେ ଆଧାରିତ ଏବଂ ବିଜ୍ଞାନସମ୍ମତ ପ୍ରାକୃତ ନିୟମ ମଣିଷକୁ ଅନ୍ଧାରରୁ ମୁକ୍ତ କରିପାରିଛି । କିନ୍ତୁ ଟେକ୍‌ନୋଲଜିର ଅଣାୟତ ସୀମାହୀନ ବ୍ୟବହାର ଯୋଗୁଁ ଯନ୍ତ୍ରାୟନର ଉଗ୍ରତା ମାଟିର ମଣିଷମାନଙ୍କ ମୌଳିକ ଆବଶ୍ୟକତା ଗୁଡ଼ିକର ମୂଳ ଉତ୍ସଗୁଡ଼ିକୁ ବିନାଶ କରିଚାଲିଛି । ପ୍ରକୃତି ଉପରେ ବିଜୟ ଘୋଷଣା କରି ପ୍ରକୃତି ଦତ୍ତ ଉପାଦାନଗୁଡ଼ିକୁ ନିଃଶେଷ କରିଦେବା ପ୍ରଚଳିତ ବିକାଶଧାରାର ବର୍ବରତା ଓ ଅମାନବୀୟ ଚରିତ୍ର ରୂପେ ପ୍ରମାଣିତ ହେବାରେ ଲାଗିଛି । ଅନ୍ୟପକ୍ଷରେ ଟେକନୋଲଜି ଦ୍ୱାରା ପ୍ରାପ୍ତ ଅମାପ ମୁନାଫା ଓ ଶୋଷଣ ପୁଞ୍ଜିବାଦ ଅର୍ଥବ୍ୟବସ୍ଥାର ଚରମ ସଫଳତା ବୋଲି ଦାବି କରାଯାଉଛି । ଏହି ସଫଳତାର ହିତାଧିକାରୀମାନଙ୍କ ସଂଖ୍ୟା ଅତି କମ୍ ଯେଉଁମାନେ ସମାଜର ଆଗଧାଡ଼ିର ହର୍ତ୍ତାକର୍ତ୍ତା ଭାଗ୍ୟବିଧାତାମାନଙ୍କ ସମେତ ସେମାନଙ୍କ ଜାତିଲୋକମାନେ । ସଭ୍ୟତା କହିଲେ ସମସ୍ତଙ୍କର ନା ଗୋଟିଏ ଗୋଷ୍ଠିର ? ତାହାହେଲେ ଅତ୍ୟାଧୁନିକ ସଭ୍ୟତାର ମାପକାଠି କ'ଣ ? ଯେଉଁମାନେ ଉପଭୋକ୍ତାବାଦର ମାପକାଠିରେ ସେମାନଙ୍କ ନିଜ ନିଜର ସୁଖ ସମୃଦ୍ଧି ଓ ବିଳାସର ଇଚ୍ଛା ପୂରଣ କରିବା ସ୍ୱପ୍ନ ଦେଖନ୍ତି, ସେମାନଙ୍କ ସେହି ଇଚ୍ଛା ଆକାଂକ୍ଷା ଓ ସ୍ୱପ୍ନଗୁଡ଼ିକ ଉପଭୋକ୍ତାବାଦରୁ ସୃଷ୍ଟି । ଏସବୁରୁ ସକ୍ରିୟ ହୋଇ ଉଠିଥିବା ଉପଭୋକ୍ତାବାଦର ବଜାରୀ ସଂସ୍କୃତି ସମାଜ ଓ ପରିବାରରେ ବ୍ୟକ୍ତିବାଦକୁ ପ୍ରୋତ୍ସାହିତ କରିଥାଏ ଓ ସମାଜ ପାଇଁ ଏକ ସମୂହ ଭାବନାକୁ ହତ୍ୟା କରି ବ୍ୟକ୍ତିକୈନ୍ଦ୍ରିକ ଜୀବନଶୈଳୀର ରୁଚିକୁ ପରିଭାଷିତ କରେ । ବଜାରକୁ ସୁନ୍ଦର ଓ ରଙ୍ଗିନ୍ କରିବାକୁ ଯାଇ ମୁନାଫାର ଲାଳସାରେ ଦେଶୀ-ବିଦେଶୀ ପୁଞ୍ଜିନିବେଶର ସ୍ରୋତ ଚାଲିଛି । ଏହାକୁ ବିକାଶର ନାମ ଦେଇ ପ୍ରାକୃତିକ ସଂପଦର ଲୁଟ୍‌କରଣ ସହ ଯନ୍ତ୍ରାୟନ ଜରିଆରେ ଶ୍ରମ ଓ ଶ୍ରମଜାତ ଉତ୍ପାଦନକୁ ଅବାଞ୍ଛିତ କରାଇଦେବା ବି ବଜାର ଅର୍ଥନୀତିର ଏକ ସଫଳତା । ଏହାର ପରିଣାମରେ ସାଧାରଣ ମଣିଷଟି ସମ୍ବଳ ଉପରୁ ନିଜର ବଞ୍ଚିବାର ଅଧିକାର ହରାଇବା ସହ ମୌଳିକ ଆବଶ୍ୟକତାରୁ ବଞ୍ଚିତ ହେଉଛି ।

ବଞ୍ଚିତ ଶ୍ରେଣୀ ଯେ ସର୍ବଦା ନିରବ ରହିବେ କିମ୍ବା ସେମାନଙ୍କୁ ଚପାଇ ଦିଆଯାଇପାରିବ ତାହା ଏକ ଭୁଲ ପରିକଳ୍ପନା । ଲୋକେ ନିଜ ଅଧିକାର ପାଇଁ ସଂଗ୍ରାମ କରିବାକୁ ଜାଗ୍ରତ ହେଉଛନ୍ତି ଓ ଆସନ୍ତା ଦିନମାନଙ୍କରେ ଅଧିକ ଭାବରେ ହେବେ । ଯେତେବେଳେ ପ୍ରଯୁକ୍ତିବିଦ୍ୟାର କରାମତିରେ ନୂଆଁନୂଆଁ ବ୍ୟୋମଯାନ, ଶୟନକକ୍ଷ ଥାଇ ବିଳାସପୂର୍ଣ୍ଣ ମଟର ଗାଡ଼ି, କାନ୍ଥ ଟଙ୍ଗା ଘଡ଼ିରେ ଟେଲିଭିଜନ ସେଟ୍ ପରି ଅନେକ ପରୀଚାଇଜର ରଙ୍ଗିନ ସାମଗ୍ରୀ ବଜାରରେ ପହଞ୍ଚାଇବା ସଭ୍ୟତାର ସଫଳତା ବୋଲି

Digitized by srujanika@gmail.com

ଉତ୍ପାଦନାର ହୋ ହାଲ୍ଲା କରାଯାଉଛି – ସେତିକିବେଳେ ସେହି ଯନ୍ତ୍ରାୟନର ଚିମିନିରୁ ନିର୍ଗତ ଧୂଆଁ ବିଶ୍ୱ ତାପ ବୃଦ୍ଧି କରିବା ସହ ମାଟି, ପାଣିକୁ ବିଷାକ୍ତ କରି ଚାଲିଛି । ଜଳ ପ୍ରଦୂଷଣ ଦ୍ୱାରା ପ୍ରତିଦିନ ବିଶ୍ୱରେ ୪୦ ହଜାର ଶିଶୁଙ୍କ ମୃତ୍ୟୁ ଘଟୁଛି । ଆମ ଓଡ଼ିଶାରେ ଏକ ହଜାରରେ ୮୦ ଜଣ ଶିଶୁ ମରୁଛନ୍ତି କେବଳ ମା' ଓ ଶିଶୁ ପାଇଁ ପୁଷ୍ଟିକର ଖାଦ୍ୟ ଅଭାବରୁ । ମଣିଷ ଅଖାଦ୍ୟ ଖାଉଛି – ଆମ୍ବଟାକୁଆ, ସଲପ ଛାଲି ଗୁଣ୍ଡ ପାଉଡର ଜାଉ କରି ଓଡ଼ିଶାର ଭୋକିଲା ଆଦିବାସୀମାନେ ଖାଉଛନ୍ତି । ନବ ସଭ୍ୟତାର ଆରପାଖେ ଥିବା ନଥିଲାଙ୍କ ଦାରିଦ୍ର୍ୟକୁ କେଉଁ ସ୍କେଲରେ ମପାଯିବ ତାହା ଏକ ପ୍ରଶ୍ନବାଚୀ । ସ୍ୱାସ୍ଥ୍ୟ, ଶିକ୍ଷା, ପିଇବା ପାଣି ସେବା ଓ ଅନ୍ତତଃ ୬୦ ଟଙ୍କା ଦୈନିକ ମଜୁରୀ ପାଇଁ ୧୦୦ ଦିନର ଗ୍ୟାରେଣ୍ଟି ପାଉନଥିବା ମଣିଷମାନେ କେଉଁ ସଭ୍ୟତାର ତାଲିକାରେ ରହିବେ ? ଏହି ମଣିଷମାନେ ନିଜର ବଞ୍ଚିବାର ଅଧିକାର ପାଇଁ ସ୍ୱର ଉଠାଇଲେ ବନ୍ଧୁକରୁ ଗୁଳି ମିଳୁଛି । ଏସବୁ ପ୍ରଶ୍ନକଲେ ଜବାବ ମିଳୁଛି ବିକାଶକୁ କେହି ରୋକି ପାରିବ ନାହିଁ । ଭୋକିଲେ ଏପରି ଜବାବ ଦିଆଯିବ ସତରେ । ଏହି ରକ୍ତମୁଖା ସଭ୍ୟତା ସମାଜକୁ ନେଉଛି କୁଆଡକୁ ? ସାମ୍ରାଜ୍ୟବାଦୀ ନିର୍ଦ୍ଦେଶକୁ ମାନି ଚଳୁଥିବା ରାଷ୍ଟ୍ରର ପ୍ରତିନିଧିମାନେ ଦେଶକୁ ପରାଧୀନ କରିବା ପାଇଁ ଦଲାଲି ମୁଚାଲିକା ଲେଖି ଦେଇଛନ୍ତି କର୍ପୋରେଟ ମାଲିକମାନଙ୍କ ନିକଟରେ ନିଜ ସ୍ୱାର୍ଥକୁ ବୀମାଭୁକ୍ତ କରାଇ । ଜଗତୀକରଣ ସ୍ରୋତରେ ଗୋଲାମୀ ଅର୍ଥନୀତି ସାଧାରଣ ଜନଜୀବନକୁ ଅସ୍ତବ୍ୟସ୍ତ କରି ଦେବା ପରେ ଜନତା ବିଦ୍ରୋହ କରିବାକୁ ବାଧ । ଆଜି କଳିଙ୍ଗନଗରରେ ସେହିକଥା ଘଟିଲା । କିନ୍ତୁ ରାଷ୍ଟ୍ର ପ୍ରତିନିଧିମାନେ ଗୁଳି ଚଳାଇ ୧୩ଟି ଜୀବନ ନେଲେ । ସଂସଦରେ ବିକାଶ ପ୍ରକ୍ରିୟାର ରକ୍ତମୁଖା ଉପରେ ଆଲୋଚନା ପାଇଁ କେହି ପ୍ରାଥମିକତା ଦେଲେ ନାହିଁ । ବିଧାନସଭାରେ ବହୁବାଦ ବିବାଦପରେ ଆଲୋଚନା ହେଲା ଆଲୋଚନାର ସୀମା ରହିଲା କେବଳ କାହା ଶାସନରେ କେତେ ଗୁଳିକାଣ୍ଡରେ କେତେ ଜୀବନ ଯାଇଛି । ନିଜ ନାଗରିକମାନଙ୍କୁ ହତ୍ୟା କରିବା ଏକ ବର୍ବର ସଭ୍ୟତାର ପରିଚୟ, ଏକଥା କେହି କହିଲେ ନାହିଁ । ଏହି ବର୍ବରତାର ମୂଳରେ ରହିଛି ସେହି ଉପଭୋକ୍ତାବାଦର ଉଗ୍ର ଲକ୍ଷ୍ୟ ହାସଲ । ତେଣୁ ସଭ୍ୟତାର ଗତି ଅସଭ୍ୟତାର ପରିଚୟ ନେଇ ଚାଲିଛି ଅମାନବୀୟ ମୂଲ୍ୟବୋଧ ସୃଷ୍ଟିକରି । ତେଣୁ ଦୋଷ କାହାକୁ ଦେବା ? କେବଳ ମଣିଷଟା ଅମଣିଷ ହୋଇଯାଉଛି ଟେକ୍ନୋଲଜିର କରାମତିରେ । ଅସଭ୍ୟତା ଆଧୁନିକ ସଭ୍ୟତାର ପରିମାପ ।



Digitized by srujanika@gmail.com

# ବିଶ୍ୱ ତାପକରଣର ମୁଖ୍ୟ କାରଣ ଅନ୍ଧ ଯନ୍ତ୍ରାୟନ

ବିଶ୍ୱବିଖ୍ୟାତ ବୈଜ୍ଞାନିକମାନଙ୍କଠାରୁ ଆରମ୍ଭକରି ଗବେଷକ, ପ୍ରାକୃତିକ ସୁରକ୍ଷା ସଂଗଠନ ଓ ପ୍ରତିଷ୍ଠାନ ସମେତ ଅନେକ ଦେଶର ମୌସୁମୀ ତଥା ପାଣିପାଗ ବିଶେଷଜ୍ଞ ରିପୋର୍ଟମାନଙ୍କରେ ଗ୍ଲୋବାଲ୍ ୱାର୍ମିଂକୁ ନେଇ କୁହାଗଲାଣି ବିଭିନ୍ନ ଦେଶରେ ବାୟୁମଣ୍ଡଳୀୟ ପରିବର୍ତ୍ତନ, ହୀମ ମଣ୍ଡଳରେ ବରଫ ତରଳିବା ଓ ତାପବୃଦ୍ଧି ଯୋଗୁଁ ସମୁଦ୍ର ଜଳ ପତନର ବୃଦ୍ଧି ଘଟୁଛି । ଏସବୁ ହେତୁ ଉପକୂଳବର୍ତ୍ତୀ ଅଞ୍ଚଳ ସମୁଦ୍ର ଗର୍ଭରେ ଲୀନ ହେବା ସହ ସ୍ଥାନେ ସ୍ଥାନେ ବନ୍ୟା ଓ ମରୁଡି ପରିସ୍ଥିତି ସୃଷ୍ଟି ହେବ । ଏହି ବିଶ୍ୱ ତାପବୃଦ୍ଧି ତଥା ଗ୍ଲୋବାଲ୍ ୱାର୍ମିଂର ମୁଖ୍ୟ କାରଣ ଗ୍ରୀନ୍ ହାଉସ୍ ଗ୍ୟାସ୍ ନିର୍ଗିରଣ । ଏହି ସବୁଜ ଗୃହ ଗ୍ୟାସର ସର୍ବାଧିକ ଅଂଶ ହେଉଛି ଅଙ୍ଗାରକାମ୍ଳ ବା କାର୍ବନ ଡାଇଅକ୍ସାଇଡ୍ । ଉକ୍ତ ଗ୍ୟାସର ଏକ ସୀମା ପର୍ଯ୍ୟନ୍ତ ଆମ ଜୀବଜଗତ ପାଇଁ ଆବଶ୍ୟକ । ତାହା ମଧ୍ୟ ଏକ ପ୍ରାକୃତିକ ପ୍ରକ୍ରିୟା ମଧ୍ୟରେ ନିହିତ । ପ୍ରତ୍ୟେକ ପ୍ରାଣୀ ଅମ୍ଳଜାନ ଶ୍ୱାସରେ ନେଇ ଅଙ୍ଗାରକାମ୍ଳ ପରିତ୍ୟାଗ କରନ୍ତି ଯାହାଦ୍ୱାରା ଶରୀରର ରକ୍ତ ବିଶୋଧନ ହୁଏ । ଉକ୍ତ ଅଙ୍ଗାରକାମ୍ଳକୁ ବୃକ୍ଷ ଲତା ତଥା ଉଦ୍ଭିଦ ଜଗତ ଗ୍ରହଣକରି ତାର ଖାଦ୍ୟ ପ୍ରସ୍ତୁତି ପ୍ରକ୍ରିୟାରେ ବ୍ୟବହାର କରେ ଯାହାକୁ ଫଟୋସିଂଥାସିସ୍ ପ୍ରସେସ୍ କୁହାଯାଏ । ଜୀବଜଗତର ତଥା ପ୍ରକୃତିର ସନ୍ତୁଳନ ପାଇଁ ଏସବୁ ଗ୍ୟାସର ସୀମିତ ଆବଶ୍ୟକତା ରହିଆସିଛି । କିନ୍ତୁ ୧୭୫୦ ରୁ ଯାନ୍ତ୍ରିକ କାର୍ଯ୍ୟକଳାପ ତଥା ଶିଳ୍ପାୟନ ପ୍ରସାର ହେବା ପରେ ପରେ ଗ୍ରୀନ୍‌ହାଉସ୍ ଗ୍ୟାସ କ୍ରମଶଃ ବୃଦ୍ଧି ଘଟିଲା ୟୁରୋପୀୟ ଦେଶ ତଥା ପଶ୍ଚିମର ବିକଶିତ ଦେଶମାନଙ୍କରେ । ଏକବିଂଶ ଶତାବ୍ଦୀର ଆରମ୍ଭରେ ୟୁରୋପର ଶିଳ୍ପାୟନ ଦ୍ୱାରା ତୃତୀୟ ବିଶ୍ୱ ଦେଶମାନଙ୍କର ପ୍ରାକୃତିକ ସଂପଦ ଲୁଟ ହେବା ଆରମ୍ଭ ହେଲା ଔପନିବେଶିକ ଶାସନ ଜରିଆରେ । ଗୋଟିଏ ପଟେ କେତେକ ମୁଷ୍ଟିମେୟ ଦେଶମାନଙ୍କ ଆର୍ଥିକ ସମୃଦ୍ଧି ତଥା ବିଳାସବ୍ୟସନ ପାଇଁ ପ୍ରଦୂଷଣକାରୀ କଳକାରଖାନା ଗୁଡ଼ିକର ବହୁ ସଂଖ୍ୟାରେ ଆର୍ବିଭାବର ପରିଣାମରେ ଗ୍ରୀନ୍ ହାଉସ୍ ଗ୍ୟାସର ଜ୍ୟାମିତିକ କ୍ରମରେ ବୃଦ୍ଧି, ଅନ୍ୟପଟେ ଗରିବ ଦେଶମାନଙ୍କର ଜଙ୍ଗଲ ଓ ଜଳ ସ୍ରୋତର ଅମାପ କ୍ଷୟ ହୋଇ ଚାଲିଲା । ଏପରି ଏକ ଅସମତା, ବୈଷମ୍ୟ ଓ ପ୍ରାକୃତିକ ଅସନ୍ତୁଳନ ସୃଷ୍ଟି କରୁଥିବା ଯନ୍ତ୍ରାୟନ କାର୍ଯ୍ୟକଳାପକୁ ଆଧୁନିକ ବିକାଶର ମୋଡେ଼ଲ ବୋଲି କୁହାଯାଇ ଉକ୍ତ ପ୍ରକ୍ରିୟା ଦ୍ୱାରା ପ୍ରତ୍ୟେକ ଦେଶର ଜାତୀୟ ଓ ଆଞ୍ଚଳିକ ଅର୍ଥନୈତିକ ଅଭିବୃଦ୍ଧି ସମ୍ଭବପର

Digitized by srujanika@gmail.com

ବୋଲି ଆନ୍ତର୍ଜାତିକ ଆର୍ଥିକ ଅନୁଷ୍ଠାନ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଦ୍ୱାରା ପ୍ରଚାର ସହ ପ୍ରଭାବିତ ଓ ସୁପାରିଶ କରାଗଲା । ଏମାନେ ସମସ୍ତେ ସମୃଦ୍ଧଦେଶ ତଥା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଏଜେଣ୍ଟ ରୂପେ କାର୍ଯ୍ୟକରି ଆଖିବୁଜା ଶିଳ୍ପାୟନର ଅନ୍ଧାର ଦିଗଟିକୁ ଲୁଚାଇ ରଖିଲେ । ଏହି ପ୍ରକ୍ରିୟାରେ ଧନୀ ଦେଶମାନେ ନିଜ ସଂବଳ ଗୁଡ଼ିକୁ ସଂରକ୍ଷିତ ରଖିବା ପାଇଁ ବାଟ କାଢ଼ି ପୁଣି ତୃତୀୟ ବିଶ୍ୱ ଦେଶମାନଙ୍କ ପାଇଁ ପ୍ରଦୂଷଣକାରୀ ଶିଳ୍ପ ଗୁଡ଼ିକୁ ବିକାଶର ରୂପ ବୋଲିକହି ଗରିବ ତଥା ବିକାଶଶୀଳ ଦେଶମାନଙ୍କର ଶାସକଶ୍ରେଣୀ, ବୁଦ୍ଧିଜୀବୀ ଓ ପ୍ରଶାସକମାନଙ୍କୁ ଉପଭୋକ୍ତାବାଦ ସଂସ୍କୃତିରେ ଦୀକ୍ଷିତ କରି ପ୍ରଭାବିତ କରିବାକୁ ସଫଳ ହେଲେ । ଏବେ ଧନୀ ଓ ଗରିବ ଦେଶମାନଙ୍କର ଉଚ୍ଚ ମଧ୍ୟବିତ୍ତମାନେ ବିଶ୍ୱୀକରଣ, ବଜାରୀକରଣ ତଥା ଉଦାରୀକରଣ ପାଇଁ ପାଗଳ । କାରଣ ସେମାନଙ୍କ ଆୟ ବୃଦ୍ଧି ଆକାଶ ଛୁଆଁ ହେବାରେ ଲାଗିଛି । ମାସିକ ଦରମା ୨୫ ହଜାରରୁ ଆରମ୍ଭ ହୋଇ ୨୫ ଲକ୍ଷ ଓ ତଦୋର୍ଦ୍ଧ୍ୱ ହେବାପରେ ସୁଖ, ସମ୍ଭୋଗ ଓ ସୌଖୀନ ପାଇଁ ପ୍ରତି ମୁହୂର୍ତ୍ତରେ ଦ୍ରବ୍ୟର ରୁଚି ବଦଳୁଛି ଓ ଅନାବଶ୍ୟକ ଓ ଅବାଞ୍ଛିତ ଆବଶ୍ୟକତାର ସୀମା ଆଖି ପାଉନାହିଁ । ସେମାନଙ୍କ ପାଇଁ ଏକାଧିକ ହାଇଟେକ୍ ମଟର ଗାଡ଼ି, ଏକାଧିକ ଫ୍ରିଜ୍, ଏକାଧିକ ଶୀତତାପ ନିୟନ୍ତ୍ରିତ ଓ ସୁସଜ୍ଜିତ ଚମକୁଥିବା ଘର, ଆକାଶମାର୍ଗରେ ଅଫିସ ଗମନଠାରୁ ଆରମ୍ଭକରି ଶିଶୁର ପକେଟରେ ମୋବାଇଲ ଏପରି ଅନେକ ଦ୍ରବ୍ୟର ଉତ୍ପାଦନକୁ ଏବେ ବିଶ୍ୱବଜାରର ଚାହିଦା ବୋଲି ବଜାର ଅର୍ଥ ବ୍ୟବସ୍ଥାର ଆଧାର ରୂପେ ଧରି ନିଆଯାଇଛି । ଏସବୁର ଗ୍ରାହକ ଧନୀ ଦେଶମାନଙ୍କର ୮୦ ଭାଗ ଥିବାବେଳେ, ବିକାଶଶୀଳ ଦେଶମାନଙ୍କରେ ୧୫ ଭାଗ ଓ ଗରିବ ଦେଶମାନଙ୍କରେ ୫ ଭାଗ ଅଛନ୍ତି । ସମଗ୍ର ବିଶ୍ୱର ଧନୀକଶ୍ରେଣୀ ତଥା ତାଙ୍କରି ତଳ ପାହ୍ୟାର ଏକ ସଂପନ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକ ସଂଖ୍ୟା ସମଗ୍ର ବିଶ୍ୱର ମାତ୍ର ୩୦% । ଏହି ଏକ ତୃତୀୟାଂଶଙ୍କ ଅସୀମ ଓ ଅସୁର ଆହରଣ, ଭକ୍ଷଣ, ରକ୍ଷଣ ଓ ଅପହରଣ ପାଇଁ ଅତ୍ୟଧିକ ଅନିୟନ୍ତ୍ରିତ ଯନ୍ତ୍ରାୟନ ଦ୍ୱାରା ପ୍ରାକୃତିକ ସମ୍ବଳ ଗୁଡ଼ିକର ନିଃଶେଷ କରାଯାଉଥିବାବେଳେ ଜୀବାଶ୍ମଜାଳେଣି ଓ ରାସାୟନିକ ପ୍ରକ୍ରିୟା ଦ୍ୱାରା ଗ୍ରୀନ୍ ହାଉସ୍ ଗ୍ୟାସର ଗଠନରେ ବୃଦ୍ଧି ଘଟିବାରେ ଲାଗିଛି । ଏହାର ପ୍ରଭାବରେ ବିଶ୍ୱ ତାପକରଣରେ ତାପ ବୃଦ୍ଧି ଘଟିବା ଓ ବାୟୁମଣ୍ଡଳୀୟ ଅନିୟମିତ ଦେଖାଦେଉଛି ।

ସାଧାରଣତଃ ପୃଥିବୀର ତାପ ୧୫° ସେଲସିୟସ୍ ରହେ । ଗତ ୧୦୦ ବର୍ଷରେ ମାତ୍ର ୦.୫° ବୃଦ୍ଧି ବଢ଼ିଛି । ଅର୍ଥାତ୍ ପ୍ରତି ୧୦ ବର୍ଷରେ .୦୦୫° ବଢ଼ିବା କଥା । କିନ୍ତୁ ହଠାତ୍ ୧୯୯୮ ରେ ୦.୧୭° ବୃଦ୍ଧି ଘଟିବାର ଦେଖାଦେଲା । ଏପରି ଯଦି ହୁଏ ତାହାହେଲେ ଏକବିଂଶ ଶତାବ୍ଦୀର ଶେଷବେଳକୁ ବିଶ୍ୱ ତାପ ୩୨° ସେଲସିୟସ୍‌କୁ ବୃଦ୍ଧି ଘଟିସାରିଥାରେ । ସେତେବେଳେ ଚାନ୍ଦଳଗଡର ଛିଡ଼ି ଅଧମାଳ ହୋଇପଡିବ । କି...

Digitized by srujanika@gmail.com

ଜାତିସଂଘର ଇଣ୍ଟର ଗଭର୍ଣ୍ଣମେଣ୍ଟାଲ୍ ପ୍ୟାନେଲ୍ ଅନ କ୍ଲାଇମେଟ୍ ଚେଞ୍ଜ (ଆଇ.ପି.ସିସି) ର ରିପୋର୍ଟ ଅନୁଯାୟୀ ୨୦୫୦ ବେଳକୁ ଏକରୁ ତିନି ଡିଗ୍ରୀ ବଢ଼ିବ । ଏଥିରେ ଆତଙ୍କର ସୂଚନା ନଥିଲେ ବି ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହେବା ସମ୍ଭାବନା ଯଥେଷ୍ଟ । କାରଣ ଉତ୍ତାପ ବୃଦ୍ଧି ସାଙ୍ଗକୁ ଘଞ୍ଚ ଜଙ୍ଗଲ ନଷ୍ଟ ହେବ । ଜଳ ଶୁଖିଯିବ, ଚାଷ ଜମି ଅଣଚାଷରେ ପରିଣତ ହେବ । ବର୍ଷା କମିବ, ଶୀତ କମିବ । ବର୍ତ୍ତମାନର ଜଗତୀକରଣ ପ୍ରକ୍ରିୟାରେ ବିକାଶ ନାମରେ ଇସ୍ପାତ କାରଖାନା, ଆଲୁମିନିୟମ ଶିଳ୍ପ ତଥା ଖଣିଜ ଶିଳ୍ପର ବୃଦ୍ଧିରେ ତାପଜ ବିଦ୍ୟୁତ ପ୍ରକଳ୍ପ ମଧ୍ୟ ବଢ଼ିବ । ଯେଉଁ ମାଟିତଳେ ଲୁହାପଥର ଗଚ୍ଛିତ ଅଛି ତା ଉପରେ ବିରାଟ ଜଙ୍ଗଲ ରହି ଆସିଛି, ଯେଉଁଠି ଆଲୁମିନା ପାଇଁ ବକ୍ସାଇଟ୍ ଖଣିଅଛି ତାର ଚାରିପଟେ ଜଙ୍ଗଲ ସାଙ୍ଗକୁ ନିରନ୍ତର ଜଳସ୍ରୋତମାନ ରହିଛି । ଖଣିଖନନ ପ୍ରକ୍ରିୟାରେ ଜଙ୍ଗଲ ଧ୍ୱଂସ ହେବ, ଜଳାଧାର, ନଦୀ, ଝରଣା ଶୁଖିଯିବ । ଅଧିକ ବିଦ୍ୟୁତ ଆବଶ୍ୟକତା ପାଇଁ ଜଳଭଣ୍ଡାର ନିର୍ମାଣ ଓ କୋଇଲା ଖଣି ଖନନ ଦ୍ୱାରା ପୁଣି ଜଙ୍ଗଲ ଧ୍ୱଂସହେବ ଓ ପରିବେଶ ପ୍ରଦୂଷିତ ହେବ । ତାପ ବଢ଼ିବା ସହ ବାୟୁମଣ୍ଡଳକୁ ଫ୍ଲୋରାଇଡ୍ ଗ୍ୟାସ୍ ନିର୍ଗତ ହେବ । ଆପିସିସିର ୪ର୍ଥ ସମୀକ୍ଷା ରିପୋର୍ଟରେ କୁହାଯାଇଛି ଯେ ୨୦୦୦ ରୁ ୨୦୩୦ ମଧ୍ୟରେ ଉର୍ଜ୍ଜାର ବ୍ୟବହାର ଦ୍ୱାରା କାର୍ବନଡାଇ ଅକ୍ସାଇଡ୍ର ନିଗିରଣ ୪୫% ରୁ ୧୧୦% ବୃଦ୍ଧିହେବ ।

ଏହାର ଦୁଇ ତୃତୀୟାଂଶ କେବଳ ବିକାଶଶୀଳ ଦେଶମାନଙ୍କଠାରୁ ଆସିବ । ବର୍ତ୍ତମାନ ଆମ ଦେଶର ବିଭିନ୍ନ ସ୍ଥାନରେ ପ୍ରାକୃତିକ ବିପର୍ଯ୍ୟୟ ଦେଖାଦେଉଥିବାବେଳେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ଆରମ୍ଭକରି ତାଳଚେର, କେସିଙ୍ଗା, ଟିଟିଲାଗଡ଼, ଝାରସୁଗୁଡ଼ା, ରାଉରକେଲା ପର୍ଯ୍ୟନ୍ତ ମାର୍ଚ୍ଚମାସରୁ ଜୁନ୍ ମଧ୍ୟଭାଗ ପର୍ଯ୍ୟନ୍ତ ଯେପରି ହିଟ୍‌ୱେଭ ତଥା ତାପ ବୃଦ୍ଧିରେ ଜନଜୀବନ ଅସ୍ତବ୍ୟସ୍ତ ହୋଇପଡୁଛି, ଏହାର ମୂଳରେ ରହିଛି ରାଜ୍ୟର ଜଳ ଓ ଜଙ୍ଗଲ ସଂପଦର ଅତ୍ୟଧିକ ହ୍ରାସ ଓ ଜଳ ଉତ୍ସମାନଙ୍କରେ ଶୁଷ୍କତା । ୪୫ ଗୋଟି ଇସ୍ପାତ କାରଖାନା ଓ ୨୦ଟା ଆଲୁମିନା ଶିଳ୍ପପାଇଁ ଆବଶ୍ୟକ ଖଣିଜ ସଂପଦକୁ ବ୍ୟବହାର କରାଗଲେ କେନ୍ଦୁଝର, ସୁନ୍ଦରଗଡ଼, ଅବିଭାଜିତ କୋରାପୁଟ ଓ କଳାହାଣ୍ଡି ଜିଲ୍ଲାରେ ଆସନ୍ତା ୨୦ ବର୍ଷ ମଧ୍ୟରେ ପ୍ରାକୃତିକ ପରିବେଶର ସ୍ଥିତି କ'ଣ ହୋଇଥିବ ଏଥିପାଇଁ ରାଜ୍ୟ କିମ୍ବା କେନ୍ଦ୍ର ସରକାର ତଥା ପରିବେଶୀୟ ଓ ଜଙ୍ଗଲ ମନ୍ତ୍ରାଳୟ ଏକ ଅଧ୍ୟୟନ ରିପୋର୍ଟ ତିଆର କରିବାକୁ ପ୍ରସ୍ତୁତ ନୁହଁନ୍ତି । କାରଣ ବିକାଶର ଅସଲ ଚେହେରା (ବିନାଶର ରୂପ) ପରିପ୍ରକାଶ ହୋଇଯିବ । ବର୍ତ୍ତମାନ କୋରାପୁଟର ପଞ୍ଚପଟମାଳିରେ ନାଲ୍‌କୋଦ୍ୱାରା ବକ୍ସାଇଟ୍ ଖନନ ଚାଲିଛି ଦୀର୍ଘ ୨୦ ବର୍ଷ ଧରି । ଏହାଦ୍ୱାରା ଆମ ଜାତୀୟ ଆବଶ୍ୟକତା ପୂରଣ ହେଉଛି ଯଦିଚ ଅନେକ ସ୍ଥାନରେ ଜଳସ୍ରୋତ କମିବାରେ ଲାଗିଛି ଓ ଜଳ ପ୍ରଦୂଷିତ ହେଉଛି

Digitized by srujanika@gmail.com

ଏବେ କୋରାପୁଟ ଜିଲ୍ଲାର ଲକ୍ଷ୍ମୀପୁର ବ୍ଲକର ବିରଳା କଂପାନୀକୁ କୋଡିଙ୍ଗାମାଳିରେ ସିମିଳିଗୁଡ଼ା ବ୍ଲକର ମାଳିପର୍ବତରେ ଖଣି ଲିଜ୍ ଦିଆଯାଇଛି । କାଶୀପୁର ବାଫିଲମାଳିରେ ଉତ୍କଳ ଆଲୁମିନାକୁ, ସିଜିମାଳିରେ ଏଲ୍.ଏଣ୍ଡ.ଟି କୁ ଦିଆଯାଇଛି ଯେଉଁଠି ୧୨ ବର୍ଷ ଧରି ଖଣି ଓ ଆଲୁମିନା ଶିଳ୍ପର ପ୍ରତିରୋଧରେ ଗଣ ଆନ୍ଦୋଳନ ଚାଲିଛି । ପୁଣି ଏବେ ଦେଓମାଳି ପର୍ବତ ମାଳାରେ ଆଶାପୁର ମାଇନ୍ କେମକୁ ଦେବାକୁ ପ୍ରାୟ ୩ ହଜାର ହେକ୍ଟର ବକ୍ସାଇଟ୍ ଖଣି ଲିଜ୍ ଦେବାକୁ ଜମି ଅଧିଗ୍ରହଣ ପାଇଁ ସରକାର ପ୍ରସ୍ତୁତ ହେଲେଣି । କଳାହାଣ୍ଡିର ନିୟମଗିରି ବେଦାନ୍ତକୁ ଦେଇଦେବା ପାଇଁ ରାଜ୍ୟ ଓ କେନ୍ଦ୍ର ସରକାର ପରିବେଶ ଓ ଜଙ୍ଗଲ ସୁରକ୍ଷା ଆଇନକୁ ମାନିବାକୁ ମଧ ପ୍ରସ୍ତୁତ ନୁହଁନ୍ତି । ସେଥିପାଇଁ ସୁପ୍ରିମକୋର୍ଟରୁ ନ୍ୟାୟ କିଣି ନେବାକୁ କମ୍ପାନୀ ବ୍ୟବସ୍ଥା କରିସାରିଛି । ଏଠି ଦୁଇ ନଦୀ ନାଗାବଳୀ ଓ ବଂଶଧାରା ଅକାଳ ମୃତ୍ୟୁର ଶିକାର ହେବେ । ଅନ୍ୟ ଜିଲ୍ଲାମାନଙ୍କର ଇସ୍ପାତ ଶିଳ୍ପ ପାଇଁ ଲୁହାପଥର ଶେଷ ହୋଇଯିବ । କେନ୍ଦୁଝର ଓ ସୁନ୍ଦରଗଡ଼ରେ ଥିବା ଜଙ୍ଗଲର ଏକବଡ଼ ଅଂଶ ଧ୍ୱଂସହେବ, ଅନେକ ପ୍ରଜାତିର ଜୀବ ଓ ଉଦ୍ଭିଦ ନଷ୍ଟ ହେବାସହ ଜଳସ୍ରୋତ ଶୁଖିଯିବ । ଏସବୁର ପରିଣାମରେ କୃଷି କ୍ଷେତ୍ର ବିପର୍ଯ୍ୟସ୍ତ ହେବା ନିଶ୍ଚିତ । ଏଥିରୁ ନିର୍ଗତ କାର୍ବନଡାଇ ଅକ୍ସାଇଡ୍, ବର୍ଜ୍ୟବସ୍ତୁ ଓ ଏଥିପାଇଁ ବ୍ୟବହୃତ ବିଦ୍ୟୁତ ଉତ୍ପାଦନ ଯୋଗୁଁ ନିର୍ଗତ ଗ୍ରୀନ୍ହାଉସ୍ ଗ୍ୟାସ୍ ସମେତ ପାଉଁଶ, ଫୋରାଅକ୍ସାଇଡ୍ ଜନିତ ରାସାୟନିକ ଗ୍ୟାସ୍ ନିର୍ଗତ ହେବାପରେ ଓଡ଼ିଶା ଭୂଖଣ୍ଡ ନିଆଁ ଚୁଲିରେ ବସିବାପରି ବୋଧ ହେବନି କି ? ଏସବୁର ପରିଣାମରେ ବିପର୍ଯ୍ୟୟ ଭୋଗିବେ ଗରିବ ଜନତା ଯେଉଁମାନେ ଚାଷ, ବାସ ଓ ବୃତ୍ତି ହରାଇବେ ଏବଂ କୌଣସି ନିରାକରଣର ଅଭାବରେ ଓ ଆର୍ଥିକ ଅନଟନରେ ତତ୍କ୍ଷଣାତ ସାହାଯ୍ୟରୁ ମଧ ବଞ୍ଚିତ ହେବେ ।

ଭୂମଣ୍ଡଳର ତାପ ବଢ଼ିଗଲେ ବିଶ୍ୱର ସାତଟି ମହାଦ୍ୱୀପର ବିଭିନ୍ନ ସ୍ଥାନରେ ତାର ପ୍ରଭାବ ବେଶ୍ ଅନୁଭୂତ ହେବ । ଉତ୍ତର ଆମେରିକାରେ ଗରମ ହାଓ୍ୱା, ଜଳ ଲୁ ବହିବ, ଜଙ୍ଗଲରେ ଅଧିକ ନିଆଁ ଲାଗିବ, ଉପକୂଳ ଅଞ୍ଚଳରେ ବନ୍ୟା ହେବ । ୟୁରୋପରେ ମଧ ଲୁ ବହିବ, ଜଙ୍ଗଲ ଅଧିକ ଜଳିବ, ଖାଦ୍ୟାଭାବ ପଡ଼ିବ । ମଧପୂର୍ବ ୟୁରୋପରେ ବନ୍ୟାର ବିପଦ ଦେଖାଦେବ । ଦକ୍ଷିଣ ଓ ମଧ ଆମେରିକାରେ ବର୍ଷା କମହେବା ଦ୍ୱାରା ଜଙ୍ଗଲ ଦ୍ୱାରା ଅଙ୍ଗାରକାମ୍ଳର ଆତ୍ମସାତ କରଣ ମଧ ହ୍ରାସ ଘଟିବ । ଆଟଲାଣ୍ଟିକ ସମୁଦ୍ର ତଟରେ ବନ୍ୟା ଆସିବ, ଏସିଆ ମହାଦ୍ୱୀପରେ ହିମାଳୟର ଗ୍ଲ୍ୟାସିୟରୁ (ହିମସ୍ତର) ତରଳି ଯିବା ଦ୍ୱାରା ସମୁଦ୍ରର ଜଳସ୍ତର ବୃଦ୍ଧି ହେବ, ଅନେକ କ୍ଷେତ୍ର ଜଳରେ ବୁଡିଯିବ, ଏବଂ ଅପୂରଣୀୟ କ୍ଷତି ହେବ । ଅଷ୍ଟ୍ରେଲିଆ ଓ ନ୍ୟୁଜିଲ୍ୟାଣ୍ଡରେ ପାଣିର ସ୍ରୋତ କମିଯିବା ଦ୍ୱାରା ଜୀବ-ଜନ୍ତୁମାନଙ୍କ ପ୍ରାଣହାନି ଘଟିବ, ବାତ୍ୟା ସଂଘଟିତ ହେବ । ଏସବୁ ବିଘଟନର ସମ୍ଭାବନା

Digitized by srujanika@gmail.com

ଜାଣିବା ପରେ ବି ବିଶ୍ୱର ଅତି ସଭ୍ୟ ବୋଲାଉଥିବା ଆମେରିକା ଓ ତାର ସହଯୋଗୀ ବିକଶିତ ଦେଶମାନେ ପ୍ରାକୃତିକ ସଂପଦର ସୁରକ୍ଷା ପାଇଁ କାହିଁକି ଅତ୍ୟଧିକ ଅବାଞ୍ଛିତ ବିଳାସମୟ ବ୍ୟୟରୁ କ୍ଷାନ୍ତ ହେଉ ନାହାନ୍ତି ? କାରଣ, ସେମାନଙ୍କ ଅର୍ଥ ବ୍ୟବସ୍ଥା ଅନ୍ୟ ଗରିବ ଦେଶମାନଙ୍କ ସମ୍ବଳ ଶୋଷଣ କରି ଠିଆହୋଇଛି ଏବଂ ସୌଖୀନରୁ ଟିକିଏ ବଞ୍ଚିତ କରାଗଲେ ସରକାର ଭାଙ୍ଗିଯିବ । ତେଣୁ ରାଜନୀତି ସ୍ତରରେ ନିଜ କ୍ଷମତାସହ ସାମ୍ରାଜ୍ୟ ବାଦକୁ ଜାହିର କରି ଶୋଷଣ ପ୍ରକ୍ରିୟାକୁ ମଜବୁତ୍ କରିବାପାଇଁ ଏକ ଲୁକ୍‌କାୟିତ ଏଜେଣ୍ଡା ରଖିଛନ୍ତି । ତାହା ହେଲା ବିକଶିତ ଧନୀ ଦେଶର ଲୋକମାନଙ୍କ ଅଧିକ ସମୟ ସୁଖମୟ ଜୀବନ ପାଇଁ ଗରିବ ଦେଶର ଲୋକେ ଶିଘ୍ର ମରିଗଲେ କିଛି ଯାଏ ଆସେ ନାହିଁ । କାରଣ ଏହି ଅନଗ୍ରସର ଦେଶମାନଙ୍କ ନାଗରିକମାନଙ୍କ ଜୀବନର ମୂଲ୍ୟ ଅତି ଶସ୍ତା ହେତୁ ଭାରତ ସମେତ ଏସିଆ ଓ ଆଫ୍ରିକାର ଦେଶମାନଙ୍କରେ ପ୍ରଦୂଷଣକାରୀ ଶିଳ୍ପ ହେଉଛି, ସମ୍ବଳ ବି ଶେଷ ହେଉଛି । ଏହା ଏକ ଚକ୍ରାନ୍ତ, ଜଗତୀକରଣ ନାମରେ ବିଶ୍ୱବଜାରର ଚାହିଦା ପୂରଣ ହେବ ଯେଉଁଠି ଧନୀଙ୍କ ଉପଭୋକ୍ତାବାଦ ପ୍ରସାରିତ ହେବ । ସେମାନେ ଚାହାଁନ୍ତି ଅନ୍ୟ ସମସ୍ତେ ପରିବେଶର ଧ୍ୱଂସରେ ଭୋକିଲା ରହନ୍ତୁ, ବେରୋଜଗାରୀ ହୁଅନ୍ତୁ ।

ଏବେ ଗ୍ଲୋବାଲ ୱାର୍ମିଂର ନିରାକରଣ ନାମରେ ମଧ ବିଶ୍ୱ ରାଜନୀତି ଆରମ୍ଭ ହୋଇଗଲାଣି । ବର୍ତ୍ତମାନ ଗ୍ରୀନ୍‌ହାଉସ୍ କମାଇବା ନାମରେ କାର୍ବନ ବେପାର ଆରମ୍ଭ ହୋଇଗଲାଣି । ଧନୀଦେଶମାନେ କ୍ୱେଟ ବୁଝାମଣା ଅନୁଯାୟୀ ଗ୍ରୀନ୍‌ହାଉସ୍ ଗ୍ୟାସ କମାଇବା ପରିବର୍ତ୍ତେ ସେମାନେ ବଢ଼ାଇ ଚାଲିଥିବେ, ଅନ୍ୟପଟେ ଗରିବ ଦେଶମାନଙ୍କରେ ପୁଞ୍ଜିବିନିଯୋଗ କରି ଚାଷଜମିରେ ବନୀକରଣ କରିବା ପାଇଁ ସହଯୋଗ କରିବେ । ସେହି ବନୀକରଣ ବଜାର ଭିତ୍ତିକ ହେବ । ପୁଣି ଶିଳ୍ପର କଞ୍ଚାମାଲ ଆବଶ୍ୟକତା ଅନୁଯାୟୀ ବୃକ୍ଷରୋପଣ ହେବ । ଅର୍ଥାତ ଜଙ୍ଗଲ ବଦଳରେ କଂପାନୀ ପାଇଁ ଗଛ ଲାଗିବ । ବର୍ତ୍ତମାନ ଆମେରିକା ଓ ୟୁରୋପରେ ଫସିଲ ଫୁଏଲ୍ (ଜୀବାଶ୍ମ ଜାଳେଣି)ର ବ୍ୟବହାର ୨୦୨୦ ସୁଦ୍ଧା ୨୦% କମାଇବା ପାଇଁ ଜୈବିକ ଜାଳେଣି ବା ବାୟୋଫୁଏଲ୍ ବ୍ୟବହାର ହେବ । ତାହାମଧ ଆମ ଦେଶ ସମେତ ତୃତୀୟ ବିଶ୍ୱର ଜଙ୍ଗଲରେ ଓ ଚାଷ ଜମିରେ ଏହି ଜୈବିକ ତୈଳ ଉତ୍ପାଦନ ପାଇଁ ଜାଟ୍ରୋଫା, ସୋୟାବିନ୍ ଓ ଏପରି ଅନେକ ଫସଲ ଉତ୍ପାଦନପାଇଁ ବିଶ୍ୱବ୍ୟାଙ୍କ ଜରିଆରେ କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲାଣି । ପୁଣି ସେହି ଧନୀ ଦେଶମାନଙ୍କର ପ୍ରଦୂଷଣ କମାଇବାପାଇଁ ଗରିବ ଦେଶମାନଙ୍କ କୃଷି ଓ ଜଙ୍ଗଲକୁ ହ୍ରାସ କରାଯିବ । ଏହାଦ୍ୱାରା ମାଟିର ଉର୍ବରତା ନଷ୍ଟ ହେବ, ଅଧିକ ଜଳର ଆବଶ୍ୟକତା ରହିବ ଓ ପରିବେଶ ଧ୍ୱସଂହେବ କିନ୍ତୁ ବିଶ୍ୱ ତାପ କମାଇବା ପାଇଁ ଓ ପ୍ରାକୃତିକ ସମ୍ବଳର ସଂରକ୍ଷଣ ପାଇଁ ଧନୀଦେଶମାନେ ନିଜର ମଟର ଗାଡ଼ିର ବ୍ୟବହାରକୁ ସୀମିତ କରିବାକୁ ଉତ୍ପାଦନ କମାଇବେ ନାହିଁ ।

Digitized by srujanika@gmail.com

ଅନେକ ଅନାବଶ୍ୟକ ସୌଖୀନ ଦ୍ରବ୍ୟର ଉତ୍ପାଦନକୁ କମାଇ ନିଆଗଲେ ଅନେକ ପ୍ରଦୂଷଣ ଜନ୍ମଦାତା କାରଖାନାମାନଙ୍କ ସଂଖ୍ୟା ହ୍ରାସ ହୁଅନ୍ତା । କିନ୍ତୁ ନିଜର ସୁଖ ସମ୍ଭୋଗ ସାଙ୍ଗକୁ ପ୍ରଦୂଷଣମୁକ୍ତ ପରିବେଶ ପାଇଁ ଗରିବ ଲୋକଙ୍କ ଜୀବିକାର ଉତ୍ସ ପ୍ରାକୃତିକ ସଂପଦ ଗୁଡ଼ିକୁ ବିକାଶ ନାମରେ ବିନାଶ କରି ଚାଲିଥିବା ବଜାରୀକରଣ ତଥା ଜଗତୀକରଣ ଅର୍ଥନୀତିର ଲଗାମ୍ ଧରିଥିବା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ରାଜନୀତିକୁ ଯଦି ଆମେ ବୁଝିପାରିବାନାହିଁ, ତାହାହେଲେ ବିଶ୍ୱ ତାପକରଣ ସହ ଜଗତୀକରଣର ପ୍ରବାହରେ ଆତ୍ମହତ୍ୟା କଲାପରି ହେବ । ପୃଥିବୀରେ ହିମାଳୟ ବାହାରେ ବି ଏଗାର ଗୋଟି ପ୍ରାକୃତିକ ଆଶ୍ଚର୍ଯ୍ୟ ଭିତରେ ଆମଦେଶର ସୁନ୍ଦରବନ ଅନ୍ୟତମ ଯେଉଁଠି ବିଶ୍ୱର ସବୁଠାରୁ ଅଧିକ ବାଘ ବାସକରନ୍ତି । ଏହି ଗ୍ଲୋବଲୱାର୍ମିଂର ଶିକାର ହେବ ସୁନ୍ଦର ବନ । ୱାରଲ୍ଡ ୱାଇଲ୍ଡ୍ ଫଣ୍ଡର ରିପୋର୍ଟ ଅନୁଯାୟୀ ହିମାଳୟଠାରୁ ଆରମ୍ଭକରି ପୃଥିବୀ ବିଖ୍ୟାତ ଆମାଜାନ୍ ଜଙ୍ଗଲ ପର୍ଯ୍ୟନ୍ତ ଏହି ସମସ୍ତ ପ୍ରାକୃତିକ ଆଶ୍ଚର୍ଯ୍ୟ ଗୁଡ଼ିକ ଉକ୍ତ ବିପର୍ଯ୍ୟୟର ଶିକାର ହେବା ସମ୍ଭାବନା ରହିଛି । ଏହାର ପରିଣାମ ମଣିଷ ସଭ୍ୟତା ପ୍ରତି ବିପଦ । ଜୀବଜଗତର ଧ୍ୱଂସରେ ସବୁଠାରୁ ସଫଳତା ଅର୍ଜନ କରିଥିବା ମଣିଷ ନିଜର ସର୍ବସ୍ୱ ହରାଇବ, ନିଜର ସ୍ଥିତି ହରାଇବ । ଯେଉଁମାନେ ପୁଞ୍ଜିକୁ ଧରି ମସ୍ତହେଉଛନ୍ତି ସେମାନେ ହୁଏତ ଅଧିକ ସମୟ ବଞ୍ଚିବେ କିନ୍ତୁ ସେମାନଙ୍କ ମୃତ୍ୟୁମଧ ଅନିବାର୍ଯ୍ୟ । ସେତେବେଳକୁ ସେମାନଙ୍କ ଅସଲ ପରିଚୟଥିବ ଭସ୍ମାସୁର । ତେଣୁ ଆଜି ଆମେ ଯେଉଁମାନେ ମଣିଷ ସମାଜ କଥା ଓ ତାର ସାଧାରଣ ଜୀବନରେ ସରଳତା, ସ୍ୱାବଲମ୍ୱନ ଓ ସ୍ୱାଭିମାନ କଥା ଚିନ୍ତା କରୁଛେ ପ୍ରଥମେ ଆମ ପ୍ରାକୃତିକ ସଂପଦ ସୁରକ୍ଷିତ ଓ ସଂରକ୍ଷିତ ରହୁ । ତାହାର ବ୍ୟବହାରରେ ମିତବ୍ୟୟତା ସହ ନିରନ୍ତର ବିକାଶରେ କିପରି ଓ କେତେ ସାରିବା ତାପାଇଁ ବିଜ୍ଞାନ ସମ୍ମତ ଓ ଲୋକମତ ଅନୁସାରେ ନୀତି ନିର୍ଦ୍ଧାରଣ ହେଉ । ତାହାହିଁ ଗ୍ଲୋବାଲ ୱାର୍ମିଂ ତଥା ବିଶ୍ୱତାପକୁ ଅଟକାଇ ପାରିବ ।



Digitized by srujanika@gmail.com

# ଜୈବ ଇଂଧନ ବନାମ ଖାଦ୍ୟ ସୁରକ୍ଷା

ବିଶ୍ୱର ପ୍ରାକୃତିକ ପରିବେଶ ପ୍ରତି ତାଚ୍ଛଲ୍ୟ କରୁଥିବା ଶିଳ୍ପୋନ୍ନତ ଦେଶଗୁଡ଼ିକରେ ଯେତେବେଳେ ପ୍ରାକୃତିକ ବିପର୍ଯ୍ୟୟ ଓ ସମ୍ବଳର ଅଭାବ ପରିଲକ୍ଷିତ ହେଲା, ତା'ପରେ ପରେ ପରିବେଶ ସୁରକ୍ଷା ଓ ସମ୍ବଳର ସଂରକ୍ଷଣ ପାଇଁ ସେହିଦେଶମାନଙ୍କ ତରଫରୁ ଉଦ୍‌ବେଗ ପ୍ରକାଶ କରାଗଲା । ପୃଥିବୀର ସର୍ବତ୍ର ପ୍ରାକୃତିକ ସଂପଦର ଅତ୍ୟଧିକ ବ୍ୟବହାର ପରିବର୍ତ୍ତେ ନିଜ ଦେଶର ସଂପଦକୁ ଗଚ୍ଛିତ ରଖି ଗରିବ ଓ ବିକାଶଶୀଳ ଦେଶମାନଙ୍କ ସମ୍ବଳଗୁଡ଼ିକୁ କଞ୍ଚାମାଲରୂପେ ଅଧିକରୁ ଅଧିକ ବ୍ୟବହାର କରିବାପାଇଁ ବିକାଶନାମରେ ପୁଞ୍ଜିନିବେଶ କରାଇଲେ । ଅନ୍ତିମ ଲକ୍ଷ୍ୟ- ସେମାନଙ୍କ ଉପଭୋକ୍ତାବାଦ କାୟମ ରହିବ । ଅନ୍ୟପକ୍ଷରେ ସମ୍ବଳହୀନ ହୋଇପଡୁଥିବା ଦେଶ ଓ ଅଞ୍ଚଳ ଗୁଡ଼ିକର ସାଧାରଣ ଲୋକେ ଜୀବିକା ହରାଇ ପ୍ରାକୃତିକ ବିପର୍ଯ୍ୟୟର ଶିକାର ହେଉଥିବେ । ବିଶ୍ୱରେ ତାପବୃଦ୍ଧି ଏକ ଆଲୋଚ୍ୟ- ବିଷୟହୋଇ ସେଥିପାଇଁ ଆବଶ୍ୟକ, ଅଧ୍ୟୟନ ଓ ଗବେଷଣା ଚାଲିଛି । ଏହାର ମୂଳକାରଣ ସବୁଜଗୃହ ଗ୍ୟାସ'ର ବୃଦ୍ଧି । ଗ୍ଲୋବାଲ୍ ୱାର୍ମିଂ ଅବା ବିଶ୍ୱତାପ ଜରିଆରେ ବିଶ୍ୱବାସୀଙ୍କ ପ୍ରତି ଯେଉଁ ଅପରାଧ କରାଯାଉଛି ଏଥିର ମୁଖ୍ୟ ଅପରାଧୀ ଯୁକ୍ତରାଷ୍ଟ୍ର ଆମେରିକା ଓ ୟୁରୋପୀୟ ଧନୀ ରାଷ୍ଟ୍ରମାନେ ଯେଉଁଠି ଅତ୍ୟାଧୁନିକ ଯନ୍ତ୍ରାୟନ ଦ୍ୱାରା ବାୟୁମଣ୍ଡଳକୁ ବିଷାକ୍ତ କରାଯାଇ ଆସୁଛି । ଗ୍ରୀନ୍‌ହାଉସ୍ ଗ୍ୟାସର ପ୍ରଧାନ ଅଂଶ କାର୍ବୋନ ଡ଼ାଇଅକ୍‌ସାଇଡକୁ କମାଇବାପାଇଁ କାୟୋଟ୍ ସମ୍ମିଳନୀର ପ୍ରସ୍ତାବକୁ ମାନିବାକୁ ପ୍ରସ୍ତୁତ ନଥିବା ଆମେରିକା ଏବେ କହିଲାଣି ଯେ ୨୦୨୦ ସୁଦ୍ଧା ଜୀବାଂଶ ଜାଳେଣିର ୨୦ ପ୍ରତିଶତ କମାଇ ଜୈବିକ ଜାଳେଣି ତାର ବିକଳ୍ପ ସ୍ଥାନ ନେବ । ଆମେରିକା ନିଜ ଯନ୍ତ୍ରାୟନର ଗତିକୁ କମାଇବ ନାହିଁ, କିନ୍ତୁ ଯନ୍ତ୍ରାୟନର ଇନ୍ଧନ ତଥା ଜାଳେଣିକୁ ଜୈବିକ ସଂବଳରୁ ସଂଗ୍ରହ କରିବାକୁ ପ୍ରାଥମିକତା ଦେବ । ଏଥିପାଇଁ ନୂଆ ନୂଆ ପ୍ରକଳ୍ପର ଯୋଜନା ହୋଇପାରିଲାଣି । ଆମେରିକାକୁ ଜୈବିକ ଇନ୍ଧନ କିପରି ଆସିବ ତାର ବାଟ ମଧ ଖୋଲିବାରେ ଲାଗିଛି । ଏହି ଜୈବିକ ଇନ୍ଧନ ଏବେ ସୋୟାବିନ୍, ମକା, ଆଖୁ, ପାମତେଲ, ରେପ୍‌ସିଡ୍‌ରୁ ଉତ୍ପାଦନ ଆରମ୍ଭ ହୋଇଛି । ଏସବୁ ମୁଖ୍ୟତଃ ଖାଦ୍ୟ ଶସ୍ୟ । ଏତଦ୍ ବ୍ୟତୀତ ଜାଟ୍ରୋଫା ଚାଷ କରି ସେଥିରୁ ଉତ୍ପାଦିତ ଜଡ଼ାତେଲକୁ ମଧ ଜୈବିକ ତେଲରେ ପରିଣତ କରାଯାଉଛି । ଏବେ ଆମେରିକା ବ୍ରାଜିଲର ବିଶ୍ୱବିଖ୍ୟାତ ଆମାଜାନ ଜଙ୍ଗଲରେ ଲକ୍ଷ ଲକ୍ଷ ଏକର ସୋୟାବିନ ଚାଷକରିବାକୁ ଚୁକ୍ତିକରିଛି । ସେହି ସୋୟାବିନ ଯିବ ଆମେରିକାର

Digitized by srujanika@gmail.com

ଜୈବତେଲ ପାଇଁ । ଏବେ ପୃଥିବୀର ବିଭିନ୍ନ ଦେଶରୁ ଏହି ଖାଦ୍ୟ ଶସ୍ୟକୁ ବାୟୋଫୁଏଲ ବା ଜୈବ ଇନ୍ଧନ ରୂପେ ବ୍ୟବହାର କରାଗଲାପରେ ଖାଦ୍ୟ ପଦାର୍ଥର ଦାମ ବଢ଼ିବ ଯେହେତୁ ଏହାଦ୍ୱାରା ଖାଦ୍ୟର ଅଭାବ ପଡ଼ିବ । ଆଜି ଜଡ଼ାତେଲକୁ ଜାଳେଣିର ବ୍ୟବହାର କରିବା ନୂଆକଥା ନୁହେଁ । ବହୁ ପୁରାତନ କାଳରୁ ଏହାକୁ ଜଳାଇବା, ବିଭିନ୍ନ ଛୋଟ ଛୋଟ ଯନ୍ତ୍ରରେ ବ୍ୟବହାରକରିବା କାମରେ ଲୋକେ ଅଭ୍ୟସ୍ତଥିଲେ । କିନ୍ତୁ ଚାଷଜମିରେ କାଲ ବା ଜଡ଼ାତେଲ ଫଳ ଗଛ ଲଗାଯାଉନଥିଲା । ଆଜି ଯେତେବେଳେ ଲକ୍ଷ ଲକ୍ଷ ମଟର ଗାଡ଼ି ପାଇଁ, ମେସିନ୍ ପାଇଁ କିମ୍ବା ପରିବହନ ମାଲ ଗାଡ଼ିପାଇଁ ଆବଶ୍ୟକ ହେଉଛି କୋଟିକୋଟି ବ୍ୟାରେଲ୍, ତାହା ଯଦି ଏସବୁ ଖାଦ୍ୟ ଶସ୍ୟ ପ୍ରସ୍ତୁତ କ୍ଷେତ୍ର କୃଷିରୁ କରାଯିବ ତାହାହେଲେ ଲକ୍ଷ ଲକ୍ଷ ଏକର ଚାଷଜମିର ଆବଶ୍ୟକତା ରହିଛି । ଏହି ପ୍ରକ୍ରିୟା ଆରମ୍ଭ ହୋଇଗଲାଣି ବ୍ୟାବସାୟିକ ସୂତ୍ରରେ । ଆମଦେଶରେ ଜାଟ୍ରୋଫା ଚାଷପାଇଁ ବିଭିନ୍ନ ଘରୋଇ କମ୍ପାନୀମାନେ ଚାଷଜମି ଲିଜ୍‌ରେ ନେବା ଆରମ୍ଭ ହୋଇଗଲାଣି । ଏଥିପାଇଁ କେନ୍ଦ୍ରର ନିର୍ଦ୍ଦେଶରେ ରାଜ୍ୟମାନେ ଠିକାଚାଷପାଇଁ ଆଇନ ତିଆରି କରିସାରିଲେଣି । ଓଡ଼ିଶାରେ ମଧ୍ୟ କୃଷିଜାତ ପଦାର୍ଥ ବିପଣନ ଆଇନକୁ ପରିବର୍ତ୍ତନ କରି ଚାଷୀଙ୍କ ଜମିକୁ ଲିଜ୍‌ରେ ନେଇ ଠିକାଚାଷ ପାଇଁ ରାସ୍ତା ଖୋଲି ଦିଆଗଲାଣି । ଏହି ଆଇନ କାର୍ଯ୍ୟକାରୀ ହେବା ପୂର୍ବରୁ ବଲାଙ୍ଗିର ଜିଲ୍ଲାରେ ଛୋଟ ଚାଷୀମାନଙ୍କଠାରୁ ଜମି ଲିଜ୍‌ନେଇ ବିଭିନ୍ନ ଘରୋଇ କମ୍ପାନୀମାନେ ଜାଟ୍ରୋଫା ଚାଷ ଆରମ୍ଭ କଲେଣି । କେତେକ ଗାଁରେ ଚାଷୀ ଠକାମିର ଶିକାର ମଧ୍ୟ ହେଲେଣି । ସେମାନଙ୍କ ଜମି ଲିଜ୍ ବୋଲି କହି ବିକ୍ରି ଦଲିଲ ହୋଇଯାଇଛି । ପାଟଣାଗଡ଼ ବ୍ଲକର ଘୁମେରୁ ଗାଁରେ ଜମି ହରାଇଥିବା ଚାଷୀମାନଙ୍କ ମଧ୍ୟରୁ ଜଣେ ବୃଦ୍ଧଚାଷୀ ଲିଙ୍ଗରାଜ ସାହୁ ପାଗଳ ହୋଇଯାଇଛନ୍ତି । ୧୯୯୦ ରୁ ମାଲି ଦେଶରେ ଜାଟ୍ରୋଫା ଚାଷର ପ୍ରସାର ହୋଇ ତାହା ଆଞ୍ଚଳିକ ସ୍ତରରେ ରାନ୍ଧିବା ଓ ଆଲୋକପାଇଁ ବ୍ୟବହୃତହେଲା । ସେହି ଦେଶରେ ଏହା ଲୋକଙ୍କ ଜୀବିକାର ଉତ୍ସ ହେଲା । କିନ୍ତୁ ବର୍ତ୍ତମାନ ବିଶ୍ୱସ୍ତରରେ ଏହାର ବ୍ୟବହାରକୁ ନେଇ ଯେପରି ବ୍ୟାବସାୟିକ ମୁନାଫାପାଇଁ ପରିକଳ୍ପନା କରାଗଲାଣି ଓ ଧନୀ ରାଷ୍ଟ୍ରମାନେ ନିଜ ଦେଶର ପ୍ରଦୂଷଣକୁ କମାଇବା ଓ ବିଶ୍ୱସ୍ତରୀୟ ଚୁକ୍ତିନାମାକୁ କାର୍ଯ୍ୟକାରୀ କରିବାକୁଯାଇ ବାୟୋଫୁଏଲ୍ ଉତ୍ପାଦନପାଇଁ ପୁଞ୍ଜିନିବେଶ କରାଗଲାଣି, ତାହା ଆଉ ଏକ ନୂଆ ବିପଦ ସୃଷ୍ଟି କରିବାକୁ ଯାଉଛି । ତାହାହେଲା କୃଷି ଓ ଜଙ୍ଗଲର କ୍ଷୟ । ଏବେ କୃଷିକ୍ଷେତ୍ରରେ ଖାଦ୍ୟ ଓ ଇନ୍ଧନ ଉତ୍ପାଦନର ପ୍ରତିଯୋଗିତା ଚାଲିବ । ତାହାର ପରିଣାମର ବି ହିସାବ ଦରକାର ।

ସେଟଲାଇଟ୍ ଦ୍ୱାରା ମିଳିଥିବା ପରିସଂଖ୍ୟାନ କହେଯେ ବିଶ୍ୱରେ ଧରିତ୍ରୀର ୪୦ ଭାଗ ଜମି ଖାଦ୍ୟ ଉତ୍ପାଦନରେ ବ୍ୟବହୃତ ହୋଇସାରିଲାଣି । ଏଥିରୁ ଏକ ତୃତୀୟାଂଶ

Digitized by srujanika@gmail.com

ଇନ୍ଧନର କଞ୍ଚାମାଲ ଚାଷପାଇଁ ବ୍ୟବହାର କରାଗଲେବି ବିଭିନ୍ନ ଦେଶର ଘରୋଇ ପରିବହନପାଇଁ ଆବଶ୍ୟକ ହେଉଥିବା ତେଲର ମାତ୍ର ୧୦% ପୂରଣ କରିପାରିବ । ଏହାର ଉତ୍ପାଦନପାଇଁ ଖାଦ୍ୟ ଶସ୍ୟ ତୁଳନାରେ ଅଧିକ ଜଳର ଆବଶ୍ୟକତା ପଡ଼ିବ ।

ଆମେରିକାର କୃଷିବିଭାଗର ୨୦୦୬ ବର୍ଷର ରିପୋର୍ଟରେ କୁହାଯାଇଛିଯେ ବିଶ୍ୱରେ ଖାଦ୍ୟଶସ୍ୟର ଚାହିଦା ୨୦ ନିୟୁତ ଟନକୁ ବୃଦ୍ଧି ହେବ । ସେଥିରୁ ଆମେରିକାର ମଟରଗାଡ଼ିର ତେଲପାଇଁ ୧୪ ନିୟୁତ ଟନ୍ ବ୍ୟବହୃତ ହୋଇଯିବ । ଦକ୍ଷିଣ ଆଫ୍ରିକାରେ ଖାଦ୍ୟଶସ୍ୟର ଦାମ ବଢ଼ିଛି ୨୦୦୬ରେ । Earthlife Africa ପରି ସଂସ୍ଥାମାନେ ସତର୍କକରି- ଦେଲେଣି ଯେ- ଆଫ୍ରିକାର ଶସ୍ୟ ଯଦି ଜୈବଇନ୍ଧନ ପାଇଁ ଚାଲିଯାଏ, ସେଠାରେ ଖାଦ୍ୟର ଦାମ ଅଧିକ ବୃଦ୍ଧିହେବ । ମାଲେସିଆ ଓ ଇଣ୍ଡୋନେସିଆରେ ଅଧିକ ବୃଦ୍ଧିହେବ । ମାଲେସିଆର ଓ ଇଣ୍ଡୋନେସିଆର ୪୦% ପାମ୍‌ତେଲ ଯିବ ଜୈବିକ ଇନ୍ଧନ ପାଇଁ । ତାହାହେଲେ ଏହାଦ୍ୱାରା ଖାଇବା ତେଲର ଦାମ ବଢ଼ିବ । ଫଳରେ ଗରିବ ଲୋକଙ୍କ ପାଇଁ ଖାଦ୍ୟ ମହଙ୍ଗାହେବ । ପୁଣି କୁପୋଷଣ ଅଧିକ ହେବ ।

ଉକ୍ତ ଜୈବିକ ଜାଳେଣି ତେଲ ଉତ୍ପାଦନ କଲାବେଳେ ପୁଣି ଫସିଲ୍ ଫୁଏଲ ବ୍ୟବହୃତ ହେବ । ଗବେଷକମାନଙ୍କ ମତରେ ଏହାର ଫଳାଫଳ କେବଳ ୧-୨ ରୁ ୧-୮ ହେବ ଉତ୍ପାଦନରେ । ସୋୟାବିନ୍ ଚାଷରେ ରାଉଣ୍ଡଅପ ଭେର୍ବିସାଇ ଓ ବିହନ ଲାଗିବ, ଏହାଦ୍ୱାରା ସଂପୂର୍ଣ୍ଣଭାବେ ମାଟିର ଉର୍ବରତା ଖତମ୍ କରିବ । ଜେନେଟିକ୍ ମୋଡ଼ିଫାଇଡ୍ ଶସ୍ୟକୁ ଏହି ବାୟୋଫୁଏଲ୍ ଉଦ୍ଦେଶ୍ୟରେ ବିଶେଷଭାବେ ଉତ୍ପାଦନ କରାଯିବାର ସମ୍ଭାବନା ଅଛି । ଏହାଦ୍ୱାରା ଜମିରେ ଅନ୍ୟ ଶସ୍ୟମାନଙ୍କୁ ରୋଗାକ୍ରାନ୍ତ କରିବ ।

ଜଙ୍ଗଲ ଅଣ ଜଙ୍ଗଲରେ ପରିଣତହେବ । ଇଣ୍ଡୋନେସିଆରେ ପାମ୍‌ଅଏଲ ଉତ୍ପାଦନ ପାଇଁ ଗତ ୨୦ ବର୍ଷରେ ଜଙ୍ଗଲ ନଷ୍ଟ ହୋଇଛି । ଏବେ ଏହି ଜଙ୍ଗଲରେ ୧୫୦ ଲକ୍ଷ ଏକର ଜମିରେ ପାମ୍ ଓ ଆଉ ୧୫୦ ଲକ୍ଷ ଏକରରେ ଜାଟ୍ରୋଫା ଚାଷ କରିବାକୁ ନିଷ୍ପତ୍ତି କରିଛି ସେଠାର ସରକାର । ବ୍ରାଜିଲ୍, ବଲିଭିଆ, ଆର୍ଜେଣ୍ଟିନା ଓ ପାରାଗୁଏରେ ସୋୟାବିନ୍ ଚାଷଦ୍ୱାରା ୯୧ ନିୟୁତ ଏକର ଜଙ୍ଗଲ ନଷ୍ଟ ହୋଇଛି । ବର୍ତ୍ତମାନ ଆମେରିକା ତଥା ଅନ୍ୟ ବିଶ୍ୱବଜାର ଚାହିଦା ଦୃଷ୍ଟିରୁ ବ୍ରାଜିଲ୍ ଏକେଲା ୧୪୮୦ ଲକ୍ଷ ଏକର ଅଧିକ ଜଙ୍ଗଲ ଜମିରେ ଜୈବିକ ତୈଳବୀଜ ଉତ୍ପାଦନ କରିବ । ଭାରତରେ ଏହାର ଉତ୍ପାଦନ ପାଇଁ ରିହାତି ବ୍ୟବସ୍ଥା ହୋଇଯିବ । ଆମେରିକାରେ ପ୍ରତି ୧ ଲିଟର ଜୈବିକ ଡିଜେଲ ଓ ପ୍ରତି ୧ ଲିଟର ଏଥନଲ ଉତ୍ପାଦନରେ ଯଥାକ୍ରମେ ପ୍ରାୟ ୦.୫ ଓ ୦.୪ ଡ଼ଲାର ଅର୍ଥାତ୍ ୨୫ ଟଙ୍କା ଓ ୨୦ ଟଙ୍କା ରିହାତି ଦିଆଯାଉଛି ।

ଏହି ଉତ୍ପାଦନ ରପ୍ତାନୀ ଭିତ୍ତିକହେବ ଓ ସେହି ଉତ୍ତର ବିଶ୍ୱର ଶିଳ୍ପ ଓ ଯନ୍ତ୍ରାୟନ ସେବାରେ ଲାଗିବ । ବର୍ତ୍ତମାନ ବିକାଶ ନାମରେ ଏବେ ଆମଦେଶର ପ୍ରାକୃତିକ ସଂବଳ

Digitized by srujanika@gmail.com

ଲୁଟ ହେବାଦ୍ୱାରା କୋଟି କୋଟି ଚାଷୀ ଓ ଜଙ୍ଗଲବାସୀ ଜୀବିକାହରାଇ ବିସ୍ଥାପିତ ହେଉଥିବାବେଳେ ପୁଣି ବିକଶିତ ଦେଶମାନଙ୍କ ପାଇଁ ଆମଦେଶର ଜମି ଓ ଜଙ୍ଗଲ ସଂପଦକୁ ବ୍ୟବହାର କରି ଜୈବିକ ଇନ୍ଧନ ଉତ୍ପାଦନକରି ଯୋଗାଇ ଦିଆଯିବ । ଯେତିକି ପ୍ରାକୃତିକ ସଂପଦକୁ ନଷ୍ଟ କରିବା ତାହା– ପରିବେଶ ପ୍ରତି ବିପଦ । ୟୁରୋପୀୟ ସଂଘର ୨୦୦୪ ରିପୋର୍ଟରେ କୁହାଯାଇଛିଯେ ଫସିଲ ଫୁଏଲର ୫.୭୫% ବଦଳରେ ବାୟୋଫୁଏଲ ବା ଜୈବିକ ଇନ୍ଧନ ଉତ୍ପାଦନ କରିବାପାଇଁ ଚାଷଜମି ୧୪ ରୁ ୧୯% ପର୍ଯ୍ୟନ୍ତ ଆବଶ୍ୟକ ପଡୁଛି । ୟୁରୋପୀୟ ସଂଘର ୨ୟ ରିପୋର୍ଟରେ କୁହାଯାଇଛି ୬୦% ରେପସିଡ୍ ତେଲ ବାୟୋଡିଜେଲ ପ୍ରସ୍ତୁତ ପାଇଁ ବ୍ୟବହାର ହେବାଦ୍ୱାରା ରେପସିଡ୍ ତେଲ ଦର ପ୍ରାୟ ୬୦% ଦର ବୃଦ୍ଧି ହୋଇଗଲା । ଏହା ଖାଦ୍ୟ ପ୍ରକ୍ରିୟାକରଣ ଉପରେ ପ୍ରଭାବ ପକାଉଛି । ଏକ ଗବେଷଣା ପ୍ରବନ୍ଧରେ କୁହାଯାଇଛିଯେ ଆମେରିକାରେ ମୋଟ ମକା ଉତ୍ପାଦନର ୧୪ ପ୍ରତିଶତରୁ ୩୯୦ କୋଟି ଗ୍ୟାଲେନ ଇଥନଲ ପ୍ରସ୍ତୁତ ହେଲା ଯାହାକି ବର୍ତ୍ତମାନର ପେଟ୍ରୋଲାଇନର ୧.୭% ସହ ସମାନ । ମୋଟ ସୋୟାବିନ ଉତ୍ପାଦନର ୧.୫% ରୁ ୬୮୦ ଲକ୍ଷ ଗ୍ୟାଲେନ୍ ବାୟୋଡିଜେଲ ପ୍ରସ୍ତୁତ ହୋଇଥିଲା ଯାହାକି ବ୍ୟବହୃତ ୧%ର ଏକ ଦଶମାଂସରୁ କମ୍ । ଯଦି ଆମେରିକାର ସମସ୍ତ ଉତ୍ପାଦିତ ଶସ୍ୟକୁ ଇଥନଲ ପାଇଁ ବ୍ୟବହାର କରାଯିବ ତାହାହେଲେ ମୋଟ ବ୍ୟବହୃତର ୧୨% ବିକଳ୍ପ ଇନ୍ଧନ ମିଳିବ ଏବଂ ସମସ୍ତ ସୋୟାବିନରୁ ମୋଟ ବ୍ୟବହୃତ ଡିଜେଲର ମାତ୍ର ୬% ପ୍ରତିପୂରଣ କରିପାରିବ । ଉକ୍ତ ବିକଳ୍ପ ଜୈବଇନ୍ଧନ ଉତ୍ପାଦନ ପ୍ରକ୍ରିୟାରେ ୧୦ ୟୁନିଟ ଇଥନଲ୍ ପାଇଁ ୮ ୟୁନିଟ୍ ଗ୍ୟାସ ଏବଂ ୧୦ ୟୁନିଟ୍ ଜୈବିକ ଡିଜେଲ୍ ପାଇଁ ୫ ୟୁନିଟ୍ ଗ୍ୟାସ ଆବଶ୍ୟକ । ଅର୍ଥାତ୍ ସମସ୍ତ ସୋୟା ଓ ମକାଜାତୀୟ ଶସ୍ୟ ଡିଜେଲ ଓ ଗ୍ୟାସଲାଇନର ୩% ଆବଶ୍ୟକତା ପୂରଣ କରିପାରିବେ । Natural Resources Research ପତ୍ରିକାରେ ପ୍ରକାଶିତ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରୁ ଅଧ୍ୟୟନ ରିପୋର୍ଟ କହୁଛିଯେ– ହିସାବକଲେ ଜଣାଯାଉଛି ମକାଜାତୀୟ ଶସ୍ୟରୁ ଯେତିକି ଇଥନଲ ପ୍ରସ୍ତୁତିପାଇଁ ଫସିଲଫୁଏଲର ଆବଶ୍ୟକତା ପଡୁଛି ତାହା ପ୍ରସ୍ତୁତ ବାୟୋ ଫୁଏଲ୍‌ଠାରୁ ୪୨୯% ରୁ ଅଧିକ ଏବଂ ବୟୋଡ଼ିଜେଲ ପାଇଁ ଅଧିକ ୨୭% ଫାସିଲଫୁଏଲ ଖର୍ଚ୍ଚ ହେଉଛି । ପଡ଼ିଆଜମିରେ ସୁଇଚିଗ୍ରାସ ଚାଷକରି ଏଥିରୁ ଜୈବଶକ୍ତି ତିଆରି କରାଯାଇପାରିବ ଯାହାକି ଖାଦ୍ୟ ଉତ୍ପାଦନରେ ବାଧା ଦେବନାହିଁ । କିନ୍ତୁ ଏଥିପାଇଁ ଆବଶ୍ୟକ ଅଧିକ ୪୫% ଶକ୍ତି । ଉଡ୍ ବାୟୋମାସ (Wood Biomass) ପାଇଁ ୫୭% ଏବଂ ସୂର୍ଯ୍ୟମୁଖୀଫୁଲରୁ ନୂତନ ଉତ୍ପାଦନ ପାଇଁ ଏହାର ଦୁଇଗୁଣରୁ ଅଧିକ ଶକ୍ତି ବ୍ୟୟ ହୁଏ । ତେଣୁ ତରଳ ଇନ୍ଧନ ପ୍ରସ୍ତୁତପାଇ ବୃକ୍ଷ ବାୟୋମାସ ବ୍ୟବହାର ବ୍ୟୟ ଓ ଲାଭଦୃଷ୍ଟିରୁ ସମ୍ଭବପର ନୁହଁ । ଏପରି ମନ୍ତବ୍ୟ ଦେଇଛନ୍ତି Cornell University ର David Pimentel.

Digitized by srujanika@gmail.com

ବ୍ରାଜିଲର ଅନୁଭବରୁ ଜଣାଯାଇଛିଯେ ଆଖୁରୁ ଜୈବଇନ୍ଧନ ପ୍ରସ୍ତୁତ ସବୁଠାରୁ ଲାଭଦାୟକ । କିନ୍ତୁ ଏହାର ଉତ୍ପାଦନ ବୃଦ୍ଧିପାଇଁ ଆବଶ୍ୟକ ଜମି ଓ ଜଙ୍ଗଲ ମହଙ୍ଗା ପଡ଼ିବ । ବ୍ରାଜିଲରେ ସବୁଜ ଗୃହ ବାଷ୍ପ (Greenhouse gas) ର ୮୦% କାର, ଯାନବାହନ ଦ୍ୱାରା ନିର୍ଗତ ହେଉନାହିଁ ବରଂ ଜଙ୍ଗଲକ୍ଷୟ ଯୋଗୁଁ ହେଉଛି । ଜଙ୍ଗଲ କାଟି ଆଖୁ ଫସଲ ଓ ବାୟୋ ଫୁଏଲ ପାଇଁ ଆବଶ୍ୟକ ଚାଷ କରିବା ଦ୍ୱାରା ଗୋଟିଏ ହେକ୍ଟର ଜଙ୍ଗଲ ଧ୍ୱଂସ ପରେ ୨୦ ଟନ କାର୍ବନଡାଇଅକ୍ସାଇଡ୍ ବାୟୁମଣ୍ଡଳରୁ ଖାଲିକରିବା ପ୍ରକ୍ରିୟା ବନ୍ଦ । ସେହିଗୋଟିଏ ହେକ୍ଟର ଜମିରେ ଆଖୁ କରି ମାତ୍ର ୧୩ ଟନ କାର୍ବନ୍ ଡ଼ାଇଅକ୍ସାଇଡ୍ ନିର୍ଗତକୁ କମାଇ ଦିଆ ଯାଇପାରିବ । ଅର୍ଥାତ୍ ବାୟୁମଣ୍ଡଳରେ ଅଧିକ ୭ ଟନ ଅଙ୍ଗାରକାମ୍ଳ ରହିବ । କୃଷି ସଂକ୍ରାନ୍ତରେ ବାର୍ଷିକ ମୂଲ୍ୟାୟନରେ ଜାତିସଂଘ ତରଫରୁ କୁହାଯାଇଛିଯେ- ଆସନ୍ତା ଦଶ ବର୍ଷ ମଧ୍ୟରେ ଆଖୁ, ମକା, ତୈଳବୀଜର ଦୁଇଗୁଣ ଦାମ ବଢ଼ିଯିବ ଯେହେତୁ ଏଗୁଡ଼ିକ ଜୈବିକ ଇନ୍ଧନପାଇଁ ବ୍ୟବହୃତହେବ । ଖାଦ୍ୟଶସ୍ୟ ବଦଳରେ ଇନ୍ଧନ ଶସ୍ୟ ଉତ୍ପାଦନ ଦ୍ୱାରା ବହୁ କିସମର ଖାଦ୍ୟ ଶସ୍ୟର ଦାମ ବୃଦ୍ଧି ହେବାସହ ଖାଦ୍ୟ ଆମଦାନୀ ରାଷ୍ଟ୍ରମାନେ ଖାଦ୍ୟ ଅଭାବ ସମସ୍ୟାର ସାମନା କରିବେ । ଏପରି କୁହାଯାଇଛି ବିଶ୍ୱଖାଦ୍ୟ ସଂଗଠନ ଓ ଇସିଡିର ମିଳିତ ରିପୋର୍ଟରେ ।

କ୍ୟୁବାର ରାଷ୍ଟ୍ରପତି ଫିଡ଼ଲ କ୍ରାଷ୍ଟ୍ରୋ ପ୍ରଶ୍ନ କରିଛନ୍ତି ଯେ ବ୍ରାଜିଲ ପରି ବିଭିନ୍ନ ବିକାଶଶୀଳ ଓ ଗରିବ ଦେଶମାନଙ୍କର ଖାଦ୍ୟ ଶସ୍ୟ କାହାର ଜୈବିକ ଇନ୍ଧନ ପାଇଁ ଯିବ ? କିଏ ଚାଷକରିବ ଆଉ କିଏ ଭୋଗକରିବ ? ବ୍ରାଜିଲ୍ ପରି ବିଭିନ୍ନ ବିକାଶଶୀଳ ଓ ଗରିବ ଦେଶମାନଙ୍କର ଖାଦ୍ୟଶସ୍ୟକୁ ଆମେରିକା, ୟୁରୋପୀୟ ସଂଘ ତଥା ଧନୀ ରାଷ୍ଟ୍ରମାନେ ସେମାନଙ୍କ ବାୟୋଫୁଏଲର ଆବଶ୍ୟକତାକୁ ପୂରଣ କରିବାପାଇଁ ନିଜ ନିଜ ଆର୍ଥିକ ସାମ୍ରାଜ୍ୟବାଦକୁ ଜାହିର କରିବେ, ଏଥିପାଇଁ ବିଶ୍ୱବ୍ୟାଙ୍କ ଓ ଅନ୍ୟ ସମସ୍ତ ଆନ୍ତର୍ଜାତୀୟ ସଂସ୍ଥାମାନଙ୍କ ଜରିଆରେ କମ୍ପାନୀମାନେ ରିହାତିପାଇ ଚାଷକରିବେ ଓ ଜମି ମଧ୍ୟ ଦଖଲ କରିନେବେ । ତେଣୁ ସ୍ୱଚ୍ଛ ପରିବେଶରୁ ସୁରକ୍ଷାସହ ପ୍ରଦୂଷଣ ତଥା ଗ୍ରୀନ୍‌ହାଉସ୍‌ଗ୍ୟାସ କମାଇବାପାଇଁ ପ୍ରଥମ ପଦକ୍ଷେପ ହେବା ଉଚିତ । ବର୍ତ୍ତମାନ ଯେଉଁ ବେଗରେ ମଟରକାର, ପ୍ରଦୂଷଣକାରୀ ଶିଳ୍ପ ଓ ଅନାବଶ୍ୟକ ସୌଖୀନ ଜିନିଷ ପାଇଁ ଯନ୍ତ୍ରାୟନ ଚାଲିଛି, ତାହାକୁ କମାଇ ଦିଆଯିବା ଏକାନ୍ତ ଜରୁରୀ । ପ୍ରାକୃତିକ ସଂବଳକୁ ମନଇଚ୍ଛା ଧନୀ ଦେଶ ଓ ଧନୀ ବ୍ୟକ୍ତିଙ୍କ ସୁଖ ଓ ମୁନାଫାପାଇଁ ସାରିଦେବା ଉପରେ ପ୍ରତିବନ୍ଧକ ଲାଗୁ କରାଯାଉ । ତାହାହେଲେ ଫସିଲ ଫୁଏଲର ଆବଶ୍ୟକତା କମିଯିବା ସହ ଜଳ, ଜମି, ଜଙ୍ଗଲ ସୁରକ୍ଷିତ ରହିବ ।

---

Digitized by srujanika@gmail.com

ମେକ୍ସିକୋରେ ଜୈବ ତେଲ ପ୍ରସ୍ତୁତ ପାଇଁ ସେଠାର ମୁଖ୍ୟ ଖାଦ୍ୟ ଶସ୍ୟକୁ ବ୍ୟବହାର କରାଯିବାରୁ ବଜାରରେ ଖାଦ୍ୟଶସ୍ୟର ଦାମ ୫୦% ବଢ଼ିଗଲା । ଖାଉଟିମାନେ ରାସ୍ତାକୁ ଆସି ପ୍ରତିବାଦ କଲେ । ଆମେରିକା ରାଷ୍ଟ୍ରପତି ବୁଶ୍ ଯେଉଁଦିନ ଘୋଷଣାକଲେ ଯେ ୨୦୧୭ ସୁଦ୍ଧା ଆମେରିକା ୧୬୦୦୦ କୋଟି ଲିଟର ଜୈବିକ ଇନ୍ଧନ ଉତ୍ପାଦନ କରିବ, ସେହିଦିନଠାରୁ ମେକ୍ସିକୋରୁ ଶସ୍ୟ ବା କର୍ନ ରପ୍ତାନି ହେଲା । ଏବେ ସେଠାରେ ଅଧିକ ୧୦ ଲକ୍ଷ ହେକ୍ଟର ଜମିରେ ଉକ୍ତ ଶସ୍ୟ ଉତ୍ପାଦନ ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହେଲା । ଫଳରେ ସେଠାର ଜନତାଙ୍କ ଦ୍ୱିତୀୟ ମୁଖ୍ୟ ଖାଦ୍ୟ ବିନ୍ସ ଉତ୍ପାଦିତ ହେଉଥିବା ଜମି ଏଥିରେ ବ୍ୟବହୃତ ହେବ । ବିନ୍ସ ଦାମ ବଢ଼ିବ ଉତ୍ପାଦନ କମିବା ପରେ । ଶେଷରେ ମୋଟ ଖାଦ୍ୟ ଅଭାବ ପଡ଼ିବ । ତେଣୁ ମେକ୍ସିକୋରେ 'ଖାଦ୍ୟ ନାହିଁ ତ ଦେଶ ନାହିଁ ଅଭିଯାନ' ଆରମ୍ଭ ହୋଇଛି ।

କଲୋମ୍ବିଆରେ ପାମ୍ ତେଲରୁ ଜୈବ ଇନ୍ଧନ ପ୍ରସ୍ତୁତ କରିବା ପାଇଁ କମ୍ପାନୀମାନେ ଚାଷୀଙ୍କୁ ଜମିରୁ ହଟାଇ ନିଜେ ଦଖଲ କରୁଛନ୍ତି ଏବଂ ଏହି ଦେଶର ମିଲିଟାରୀ ଶାସନ କଂପାନୀମାନଙ୍କୁ ସହଯୋଗ କରୁଛି । ଏହି ଜୈବତେଲର ଅସଲ ଉପଭୋକ୍ତା ଆମେରିକା ଯେଉଁଠି ନିଜ ଦେଶରେ କାର୍ବନ୍ କମାଇବା ପାଇଁ ଅନ୍ୟ ଦେଶରୁ ସବୁଜ ଇନ୍ଧନ ନେବା ଆରମ୍ଭ ହୋଇଛି । ସେହିପରି ଆମ ଦେଶରେ ଜୈବ ତେଲ ପାଇଁ ଜାଟ୍ରୋଫା ଚାଷ ନାମରେ କମ୍ପାନୀମାନଙ୍କ ଜମି ଦଖଲ ଆରମ୍ଭ ହୋଇଗଲାଣି । ଏହା ଖାଦ୍ୟସୁରକ୍ଷା ପ୍ରତି ବିପଦ ।

ସବୁଜ ଇନ୍ଧନ ପାଇଁ ଖାଦ୍ୟ ଶସ୍ୟରୁ ଇନ୍ଧନ ଉତ୍ପାଦନ ବଦଳରେ ସୌରଶକ୍ତିରୁ ଶସ୍ତାରେ ଶକ୍ତି ସଂଗ୍ରହ କରିବାପାଇଁ ବ୍ୟାପକ ଗବେଷଣା କରାଯାଉ । ଚାଷଜମି ଓ ଜଙ୍ଗଲ ବଦଳରେ ପଡ଼ିଆ ଜମିରେ ନିଜ ନିଜ ଦେଶପାଇଁ ଜୈବିକ ଇନ୍ଧନ ପାଇଁ କେତୋଟି ନିର୍ଦ୍ଦିଷ୍ଟ ଫସଲ କରାଯାଉ ଯେଉଁଥିରୁ ବାୟୋଫୁଏଲପ୍ରସ୍ତୁତବେଳେ କମ୍ ଶକ୍ତି ଖର୍ଚ୍ଚ ହେବ ଓ ଖାଦ୍ୟ ସୁରକ୍ଷା ସୁରକ୍ଷିତ ରହିବ ।



Digitized by srujanika@gmail.com

# ଗଣତନ୍ତ୍ରର କବର ଉପରେ ବିକାଶ କାହାପାଇଁ ?

## ଆଜି ଅଧିକାର ଛଡ଼ାଇ ନେଲେ କାଲିକି ସ୍ୱାଧୀନତା ମହଙ୍ଗା ପଡ଼ିବ

ସରକାର, ଶିଳ୍ପପତି, କୋଟିପତି, ଭୋଟ ବ୍ୟାଙ୍କର ସୌଦାଗର ଦଳପତିମାନଙ୍କ ସମେତ ଜ୍ଞାନପତିମାନେ ଏକ ସ୍ୱରରେ କହି ଚାଲିଛନ୍ତି ଶିଳ୍ପାୟନ ଦ୍ୱାରା ଦେଶ ସମୃଦ୍ଧହୋଇ ଚାଲିଛି, ଏବେ ବାର୍ଷିକ ଆର୍ଥିକ ଅଭିବୃଦ୍ଧି ୯% । ବିଦେଶୀ ମୁଦ୍ରା ଭଣ୍ଡାର ଏକ ସହସ୍ରକୋଟି ଡ଼ଲାର ଅର୍ଥାତ୍ ୪ ଲକ୍ଷ ଟଙ୍କାରୁ ଅଧିକ । ପ୍ରତିଦିନ ବିଦେଶୀ କମ୍ପାନୀମାନେ କିପରି ଆମଦେଶକୁ ଆସିବେ, ପୁଞ୍ଜିଖଟାଇ ଆମ କଞ୍ଚାମାଲ ତଥା ପ୍ରାକୃତିକ ସଂବଳକୁ ଉଠାଇ ନେବେ ଏବଂ ଆମ ବ୍ୟବସାୟର ମାଲିକ ହେବେ ସେଥିପାଇଁ କେନ୍ଦ୍ର ସରକାର ସମସ୍ତ ବ୍ୟବସ୍ଥାପକ ଆଇନ କରିଚାଲିଛନ୍ତି । ରାଜ୍ୟ ସରକାରମାନେ ଆଖିବୁଜି କମ୍ପାନୀମାନଙ୍କ ସହ ଚୁକ୍ତିନାମାକରି ଜମି, ଜଙ୍ଗଲ ଓ ଜମି ଦଖଲକରିବାକୁ ଦିନରାତି କାର୍ଯ୍ୟକରୁଛନ୍ତି । କୁହାଯାଉଛି ପ୍ରାକୃତିକ ସଂପଦ ଗୁଡ଼ିକ କ'ଣ ସାଇତିବାପାଇଁ ? ଭୋକରେ ଲୋକ ମରୁଥିବେ ଅଥଚ ଆମ ଲୁହାପଥର, ବକ୍ସାଇଟ, ମାଙ୍ଗାନିଜ୍, କ୍ରୋମ୍ ମାଟିତଳେ ପଡ଼ିରହିଥିବ ? ଚାଷ ଚାଷ ଚାଷ .... । ଧାନ ଗହମ ଗଣ୍ଡେ ପଚେଇ କ'ଣ ପେଟ ପୋଷିବା ସମ୍ଭବପର ? ଏବେ ମୋବାଇଲଫୋନ୍, ବାଇକ୍, ଟେଲିଭିଜନ୍, ଫାଷ୍ଟଫୁଡ୍ ଏସବୁ ବଜାରର ଖାଉଟିଦ୍ରବ୍ୟ । କେବଳ ଖାଦ୍ୟ ଉତ୍ପାଦନ ଦ୍ୱାରା ଦେଶ ସବୁବେଳେ ପଛରେ ରହିଥିବ ? ଏବେ ରେଳଭଡ଼ା, ଉଡ଼ାଜାହାଜ ଭଡ଼ା ପାଖାପାଖି ହୋଇଗଲାଣି । ତେଣୁ ବିମାନ ସଂଖ୍ୟା ବଢ଼ୁଛି । ଓଡ଼ିଶାର ପିଲାମାନେ କାନଡ଼ା, ଇଂଲଣ୍ଡ, ଆମେରିକା ଯାଇ କାମକଲେଣି । ଏବେ ବଡ଼ ବଡ଼ ଶିଳ୍ପ ସୁଯୋଗ ଆଣିଦେବ, ଆମପିଲାମାନେ ମାସିକ ୫୦ ହଜାରରୁ ୫ ଲକ୍ଷ ଟଙ୍କାର ଦରମା ପାଇବେ । ସରକାର ପାଖରେ ପଇସା ନାହିଁ । ବିକାଶ ହେବ କିପରି ? ତେଣୁ କାରଖାନା ବସିଲେ ପକ୍କାରାସ୍ତାହେବ, ସହରହେବ, ହୋଟେଲ୍ ହେବ, ବିମାନ ସେବା, ଗାଡ଼ି ଘୋଡ଼ା ବଢ଼ିବ । ଏହାକେବଳ ଯୁକ୍ତିକରାଯାଉନି, ଏହାକୁ ପ୍ରଚାରରେ ପରିଣତ କରାଗଲାଣି । ଏଥିପାଇଁ ପଇସାଦେଇ ବଡ଼ ବଡ଼ ଖବର କାଗଜରେ ଆର୍ଟିକଲ୍ ଲେଖାଯାଉଛି । ବିଜ୍ଞାପନରେ ବିକାଶର ଦିବା ସ୍ୱପ୍ନ ତିଆରି କରାଯାଉଛି । ଯିଏ କିଛି ବି ପାଇବାର ନାହିଁ ସେ କି ସ୍ୱପ୍ନ ଦେଖୁଛି, ଏସବୁ ଆସିଗଲେ ତାକୁ ନିଯୁକ୍ତିଟିଏ ମିଳିଯିବ, ଆୟ ବଢ଼ିଯିବ, କର୍ପୋରେଟ୍ ଜାତିରେ ସାମିଲ ହୋଇଯିବ ।

Digitized by srujanika@gmail.com

କିନ୍ତୁ ଯାଦୁକର ସ୍ୱପ୍ନର ସୌଦାଗରମାନଙ୍କ ଚଳନ୍ତି ଗାଡ଼ିର ଚକତଳେ ଅନେକଙ୍କ ଘରସଂସାର, ପେଟପାଟଣା, ମାଟିର ମଣିଷମାନେ ନିଜ ଶକ୍ତି ଓ ସମ୍ବଳକୁ ନେଇ ଦେଖୁଥିବା ବାସ୍ତବ ଆଶା ସ୍ୱପ୍ନଗୁଡ଼ିକ ଚୂରମାର ହୋଇଯାଉଛି । ସେମାନେ ଯେତେବେଳେ କହୁଛନ୍ତି "ତୁମେ ଯେତେବଡ଼ ନଭଶ୍ଚୁମ୍ବୀ ପ୍ରାସାଦ ତିଆର କର, ଆମର ଯାଏ ଆସେନାହିଁ କିନ୍ତୁ ତୁମ ଅଟ୍ଟାଳିକା ଆମ ଚାଳ ଛପର ଭିଟାମାଟିର କବର ଉପରେ ଠିଆ ନହେଉ । ଆମ ଗାଁର, କିମ୍ବା ଜଙ୍ଗଲର ବସତିଟି ଉଜୁଡ଼ିଗଲେ ଆମ ଜୀବନର ସବୁତକ ସାମାଜିକ ଓ ଆର୍ଥିକ ସୁରକ୍ଷା ଧୂଳିସାତ୍ ହୋଇଯିବ । ଆମର ଜୀବନ ଜୀବିକାର ଦୀପ ଲିଭିଯିବ ଯେବେ ଆମ ଚାଷରେ, ନଦୀରେ, ସମୁଦ୍ରରେ ଓ ଜଙ୍ଗଲରେ ତୁମର ଅତିକ୍ରମଣ ଜାରି ରହିବ ।" ଏକଥା ଘଟୁଛି କୋରାପୁଟ, ରାୟଗଡ଼, କଳାହାଣ୍ଡି, କେନ୍ଦୁଝରରେ, ସୁନ୍ଦରଗଡ଼ରେ ଓ ଦେଶର ଅନେକ ସ୍ଥାନରେ –

ଆଜି ଜଗତସିଂହପୁରରେ କୁଜଙ୍ଗ ଅଞ୍ଚଳର ଧାନ, ପାନ ଓ ମୀନ ଉପରେ ନିର୍ଭରଶୀଳ ୨୦ ହଜାର ଜନତାଙ୍କ ୬ ହଜାର ଏକର ଚାଷଜମି ଓ ସମୁଦ୍ରକୂଳକୁ ଆମେରିକା ସାମ୍ରାଜ୍ୟବାଦର ଏଜେଣ୍ଟ ରୂପେ ପରିଚିତ ପୋସ୍କୁକୁ ଦିଆଯାଉଛି । ପୋସ୍କୋ ହଟାଅ ଅଭିଯାନ କେବଳ ଜମି ଯାଉଥିବା ଗାଁ ଲୋକଙ୍କ ଆନ୍ଦୋଳନ ନହୋଇ ଏହା ରାଜ୍ୟର ସଂବଳ ସୁରକ୍ଷା ଜନଆନ୍ଦୋଳନରେ ପରିଣତ ହୋଇସାରିଲାଣି । ୪ ହଜାର ଏକର ଷ୍ଟିଲ୍‌ପ୍ଲାଣ୍ଟ ପାଇଁ, ଆଉ ଦୁଇହଜାର ଏକର କମ୍ପାନୀର ନିଜସ୍ୱ ଘରୋଇ ବନ୍ଦର ପାଇଁ ଚାଷଜମି ଅଧିଗ୍ରହଣ ବିରୋଧରେ ଚାଷୀ ପ୍ରତିରୋଧ କରିବା କ'ଣ ନିଜ ମୌଳିକ ଅଧିକାର ଭୁକ୍ତ ନୁହଁ କି ? ସରକାର ଓ ଶାସକଦଳ ତରଫରୁ ବାରଂବାର କୁହାଯାଉଛି ପୋସ୍କୋ ହଟିବ ନାହିଁ । ତାହାହେଲେ ଲୋକଙ୍କ ଅଧିକାର ରହିଛି ପୋସ୍କୁକୁ ହଟାଇବା ପାଇଁ । ଦକ୍ଷିଣ କୋରିଆର କମ୍ପାନୀ ଯେଉଁଥିରେ ଯୁକ୍ତରାଷ୍ଟ୍ର ଆମେରିକାର ପୁଞ୍ଜି ବିନିଯୋଗ ହୋଇଛି ୪୪% ଆମ ରାଜ୍ୟକୁ ଆସି ଚିହ୍ନଟ କରିଦେଲା ଅମୁକ ଭୂଖଣ୍ଡ ତାର ଦରକାର । ଆମ ରାଜ୍ୟର ନିର୍ବାଚିତ ଲୋକପ୍ରିୟ ସରକାର କହିଦେଲେ 'ହଁ ହଜୁର, ତଥାସ୍ତୁ' । ସେହି ଜମି କାହାର ? ସେଠାର ଜନତାଙ୍କ ମତ କ'ଣ ? ପୁଣି ଆମ ପାରାଦ୍ୱୀପ ବନ୍ଦର ପାଖରେ ଏକ ବିଦେଶୀ ଘରୋଇ ବନ୍ଦର ପାଇଁ ଅନୁମତି । ଜଟାଧାର ମୁହାଣ ଖୋଲା ହୋଇଗଲେ ଚାଷୀଙ୍କ ଚାଷର ଅବସ୍ଥା କ'ଣ ହେବ ଏବଂ ପୁଣି ମହାବାତ୍ୟା ଆସିଲେ କି ବିପଦ ରହିଛି ତାର ପରିଣତି କ'ଣ ହେବ । ଏସବୁ ଆଶଙ୍କା ଗୁଡ଼ିକର ସମୀକ୍ଷା ଓ ଅଧ୍ୟୟନକରି ରାଜ୍ୟ ଓ କେନ୍ଦ୍ରସରକାର ଜନତାଙ୍କ ସହ ଆଲୋଚନା କରିବା କ'ଣ ଏକ ସମ୍ବିଧାନିକ ଦାୟିତ୍ୱ ଓ ନୈତିକ କର୍ତ୍ତବ୍ୟ ନୁହଁକି ? ଯେତେବେଳେ ଲୋକଙ୍କ ଉପରେ ଆଣି ଥୋପି ଦିଆଯାଉଛି,

Digitized by srujanika@gmail.com

ଲୋକେ ନିଜର ବଞ୍ଚିବା ଅଧିକାରଟିକୁ ସୁରକ୍ଷିତରଖିବା ପାଇଁ ଯେତେବଡ଼ ବିକାଶ କୁହା ଯାଉନା କାହିଁକି ତାକୁ ବିରୋଧ କରିବେ । ଏକଥା ଇତିହାସରେ ଘଟିଛି । ଏବେ ବି ବିଶ୍ୱର ଅନେକ ସ୍ଥାନରେ ଦେଖିବାକୁ ମିଳୁଛି । ଆମେରିକାରେ ୟୁରୋପର ଗୋରାମାନେ ଲୋହିତ ଭାରତୀୟଙ୍କ ଜମି ଓ ଜଳ କବ୍‌ଜା କଲାବେଳେ ପ୍ରତିରୋଧକୁ ଦମନ କରାଯାଇ ସେମାନଙ୍କୁ ନିପାତ କରାଯାଇଥିଲା । ଲାଟିନ୍ ଆମେରିକାର ଜମି ଓ ତେଲଖଣିକୁ ଆମେରିକାର କମ୍ପାନୀମାନେ ବଳପ୍ରୟୋଗକରି ଶୋଷଣ କରି ଆସୁଥିଲେ । ଏବେ ପୁଣି ସେହି ଦେଶମାନଙ୍କରେ ଜନତା ବିଦ୍ରୋହକରି ନିଜ ଜମି, ଖଣି ମୁକ୍ତ କରୁଛନ୍ତି । ତାହା ଘଟିଛି ଭେନ୍‌ଜୁଏଲା, ବୋଲଭିଆ, ଆର୍ଜେଣ୍ଟିନାପରି ଦେଶମାନଙ୍କରେ । ଏବେ ଚୀନରେ ବି କୃଷକ ଓ ଗାଁଲୋକେ କମ୍ପାନୀର ପ୍ରଦୂଷଣ ଓ ଜମି ଅଧିଗ୍ରହଣକୁ ପୋଲିସ ଦମନର ସମ୍ମୁଖୀନ ହୋଇ ପ୍ରତିରୋଧ କରୁଛନ୍ତି । ଆମ ଦେଶର ମହାରାଷ୍ଟ୍ରର ରାୟଗଡ଼ ଜିଲ୍ଲାରେ ବିଶେଷ ଆର୍ଥିକ ଅଞ୍ଚଳ ନାମରେ ଜମି ଅଧିଗ୍ରହଣ ବିରୋଧରେ, ଛତିଶଗଡ଼ ରାଜ୍ୟର ଜିନ୍ଦଲ କମ୍ପାନୀ ବିରୋଧରେ, ଝାଡ଼ଖଣ୍ଡରେ ଜମି ବିରୋଧରେ, ଆନ୍ଧ୍ରପ୍ରଦେଶର ବକ୍‌ସାଇଟ ଖଣି ବିରୋଧରେ, ପଶ୍ଚିମବଙ୍ଗର ସିଙ୍ଗୁର ଓ ନନ୍ଦିଗ୍ରାମରେ ଚାଷଜମି, ଜଙ୍ଗଲ ଓ ଜଳ ସ୍ରୋତକୁ କବରଦେଇ ତା' ଉପରେ ବିକାଶର ସୌଧ ନିର୍ମାଣକୁ ପ୍ରତିରୋଧ କରିବାପାଇଁ ଚାଷୀ ଆଦିବାସୀ ଜୀବନ ଦେଇ ସଂଗ୍ରାମ କରୁଛନ୍ତି । ଆମ ରାଜ୍ୟରେ ବହୁ ଆଗରୁ ଏହି ପ୍ରତିରୋଧର ମୂଳଦୁଆ ପକାଇଛି ବାଲିଆପାଳ ଯୁଦ୍ଧଘାଟି ଓ ଗନ୍ଧମାର୍ଦ୍ଦନରେ ବକ୍‌ସାଇଟ୍ ଖଣି ଓ ଆଲୁମିନା କାରଖାନା ବିରୋଧରେ ସଫଳ ଜନଆନ୍ଦୋଳନ । ଚିଲିକାରୁ ଟାଟାର ଚିଙ୍ଗୁଡ଼ି ଚାଷ ଓ ଗୋପାଳପୁରରୁ ଷ୍ଟିଲ୍ ପ୍ଲାଣ୍ଟକୁ ହଟାଇବା ମୂଳରେ ଥିଲା ହଜାର ହଜାର ପରିବାରର ଜୀବନ ଓ ଜୀବିକାର ସ୍ରୋତ ପ୍ରକୃତିର ଦାନ ହ୍ରଦ, ନଦୀ ଓ ଜମିର ସଂରକ୍ଷଣ । କାଶୀପୁରଠାରୁ କଳିଙ୍ଗନଗର ପର୍ଯ୍ୟନ୍ତ ଆଦିବାସୀ ପୋଲିସ ଗୁଳିରେ ଜୀବନଦେଇ ବି ଜମି, ଜଙ୍ଗଲ ଓ ଜଳସ୍ରୋତର ସୁରକ୍ଷାପାଇଁ ସଂଗ୍ରାମ କରୁଛନ୍ତି । ଏସବୁ ସତ୍ତ୍ୱେ ସରକାରମାନେ କଂପାନୀମାନଙ୍କୁ ଡାକି ଆଣି ଜବରଦସ୍ତ ବିସ୍ଥାପନ କରିବାକୁ ଯୁଦ୍ଧ ଘୋଷଣା କରୁଛନ୍ତି । ଏହାଦ୍ୱାରା ଦେଶକୁ ପରାଧୀନ କରିବାପାଇଁ ବାଟ ଖୋଲାଯାଉଛି । ରାଷ୍ଟ୍ରର ସାର୍ବଭୌମତ୍ୱକୁ ସାଲିସ୍ କରି ସାମ୍ରାଜ୍ୟବାଦୀ ଶକ୍ତିର ନିର୍ଦ୍ଦେଶକୁ ପାଳନ କରୁଥିବା ଦିଲ୍ଲୀ ଓ ରାଜ୍ୟର ସରକାରମାନେ ନିଜ ନିଜ ଦଳୀୟ କ୍ଷମତା ରାଜନୀତିପାଇଁ କମ୍ପାନୀମାନଙ୍କଠାରୁ କୋଟି କୋଟି ଟଙ୍କାର ଫଣ୍ଡ ପାଇ ଉଚ୍ଚମଧ୍ୟବିତ୍ତ ଶ୍ରେଣୀର ଭୋଗବାଦ ଅର୍ଥ ବ୍ୟବସ୍ଥାକୁ ମଜବୁତ୍ କରୁଛନ୍ତି । ସେମାନଙ୍କ ଦ୍ୱାରା ନିୟନ୍ତ୍ରିତ ଗଣମାଧ୍ୟମ, ଖବର କାଗଜ, ବଜାର ବ୍ୟବସ୍ଥାର ସମର୍ଥକ ବୁଦ୍ଧିଜୀବୀଙ୍କ ସମ୍ମତି ପାଇଗଲାପରେ ଆଉବାକି ସାଧାରଣ ଲୋକଙ୍କ ସ୍ୱାଧୀନତା

Digitized by srujanika@gmail.com

ଉପରେ ଆକ୍ରମଣ କରିବାକୁ କୁଣ୍ଠାବୋଧ କରୁନାହାନ୍ତି । ଇତିହାସ ମୂକ ସାକ୍ଷୀ । ଅତୀତରେ ଏପରି ଘଟିଥିଲା । ଶାସକମାନେ ନିଜ ନିଜ ଭୋଗବିଳାସ ଓ ପରସ୍ପର ଲଢ଼େଇରେ ସାଧାରଣ ଲୋକଙ୍କୁ ଭୁଲିଯାଇଥିଲେ । ଏପରି ସମୟ ଆସିଲା, କେତେକ ନିଜ ସ୍ୱାର୍ଥ ପାଇଁ ବିଦେଶୀ ଆକ୍ରମଣକାରୀଙ୍କ ସହ ସାଲିସକଲେ ଓ ଆଉ ଯେଉଁମାନେ ଯୁଦ୍ଧକଲେ ସେମାନଙ୍କଠାରେ ଗରିବ, ଶୋଷିତ ଜନତା ଦେଶୀ-ବିଦେଶୀ ଶୋଷକମାନଙ୍କ ମଧ୍ୟରେ କିଛି ଫରକ୍ ନଦେଖି ଦୂରରେ ନୀରବ ରହିଲେ । ଏହି ଶୋଷଣମୂଳରେ ବି ରହିଥିଲା ଭୟଙ୍କର ଜାତିବାଦ । ଶହ ଶହ ବର୍ଷପରେ ୧୮୫୭ ରେ ବିଦ୍ରୋହର ବୀଜ ପଡ଼ିଥିଲା ଏବଂ ପରେ ବିଂଶ ଶତାବ୍ଦୀରେ ସଂଗଠିତ ସ୍ୱାଧୀନତା ଆନ୍ଦୋଳନ ଦେଶକୁ ମୁକ୍ତ କରିଥିଲା । ପୁଣି ଏବର ଶାସକଶ୍ରେଣୀ ଇତିହାସକୁ ପଦାଘାତ କରି ଯେପରି ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ଅଗଣତାନ୍ତ୍ରିକ ବାଟରେ କଂପାନୀରାଜକୁ ପ୍ରବେଶ କରାଉଛି ତାହା ଦ୍ୱାରା ଦେଶରେ ବୌଦ୍ଧିକସ୍ତରରେ ପରାଧୀନ ମାନସିକତାକୁ ବ୍ୟବସ୍ଥିତ କରାଯାଉଛି । କାରଣ, ବିକାଶର ସଜ୍ଞାକୁନେଇ ଯେପରି ଏକପାଖିଆ ତର୍କ କରାଯାଉଛି, ସେଠାରେ ବିତର୍କର ସ୍ଥାନ ରହୁନି । ସ୍ୱାଭିମାନ, ସାର୍ବଭୌମତ୍ୱ ଓ ସ୍ୱାଧୀନତାର ମୂଲ୍ୟରେ ପ୍ରଗତିକୁ ସ୍ୱାଗତ କରାଯାଉଛି ।

ଏବେ ବିକାଶର ସଫଳତା ଷ୍ଟକମାର୍କେଟର ସୂଚାଂକ । ସେଠାରେ ପୁଞ୍ଜିନିବେଶ କାହାର ? ସେହି ଦେଶୀ-ବିଦେଶୀ ଧନୀକ ଶ୍ରେଣୀର । ପୁଣି ଘରୋଇ ଉତ୍ପାଦନ ଅଭିବୃଦ୍ଧି ୯% । ଏହା ମଧ୍ୟ ଶିଳ୍ପ ଓ ସେବାକ୍ଷେତ୍ରର ୮୦% । ଏହି ଅଭିବୃଦ୍ଧିରେ ବିଶ୍ୱର ଲକ୍ଷାଧିକ କୋଟି ଟଙ୍କାର କୋଟିପତିର ତାଲିକାରେ ଅନ୍ତର୍ଭୁକ୍ତ ମୁକେଶ ଅମ୍ବାନୀ, ଅନୀଲ ଅମ୍ବାନୀ, ଟାଟା ସମେତ ସହସ୍ରାଧିକ କୋଟିପତିମାନଙ୍କ ଆୟ ବି ସାମିଲ ହୋଇଛି । ବିଶ୍ୱର ସର୍ବୋଚ୍ଚ ଧନୀ ମୁକେଶ ଅମ୍ବାନୀ ତାଙ୍କ ସ୍ତ୍ରୀଙ୍କୁ ଜନ୍ମଦିନର ଉପହାର ଜେଟ୍ ବିମାନ ଦେବା ଓ ୪ ହଜାର କୋଟି ଟଙ୍କାରେ ନିଜର ପ୍ରାସାଦ ନିର୍ମାଣ ଭାରତୀୟ ଖବର କାଗଜର ପ୍ରମୁଖ ଖବର ଏକ ସମୃଦ୍ଧ ଇଣ୍ଡିଆର ଚିତ୍ର ହୋଇପାରେ । ଓଡ଼ିଶାର ଦାଦନ ଶ୍ରମିକ, ଭୋକିଲା ମାର ପିଲା ବିକ୍ରି, ଅଖାଦ୍ୟ ଭକ୍ଷଣରୁ ମହାମାରୀ ଓ ଆମ୍ବକୋଇଲି ଟାକୁଆ ଖାଇ ଅନାହାର ମୃତ୍ୟୁ ଏବଂ ମହାରାଷ୍ଟ୍ରର ବିଦର୍ଭରୁ ଆନ୍ଧ୍ର ପର୍ଯ୍ୟନ୍ତ କୃଷକ ଆତ୍ମହତ୍ୟା ଖବର କାଗଜର କୌଣସି କୋଣରେ କାଁ ଭାଁ ସ୍ଥାନପାଇବା ଏକ ପରାଧୀନ ଭାରତର ନମୁନା । ଏବେ ଅମ୍ବାନୀ ସମେତ ବିଦେଶୀ କମ୍ପାନୀମାନେ ଖୁଚୁରା ବେପାରୀଙ୍କ ଜୀବିକାମାରି ଶାଗ, ମାଛ, ଛୁଞ୍ଚି ସୂତା ମଧ୍ୟ ବିକିବାକୁ ଖୋଲିଦେଲେଣି ଦୋକାନ, ତାର ନାମ ମଲ୍ । ବିକାଶ କାହାପାଇଁ ବୋଲି ପ୍ରଶ୍ନ କଲେ ଉତ୍ତରରେ କୁହାଯାଉଛି-ଦାରିଦ୍ର୍ୟ ବିଲୋପ ପାଇଁ । ପ୍ରକୃତରେ ଏହି ବିକାଶରେ ଦାଦନର, ଆଦିବାସୀର, ଦଳିତର, ଗରିବ ଓ ନିମ୍ନମଧ୍ୟବିତ୍ତ ସାଧାରଣ ଚାଷୀ

Digitized by srujanika@gmail.com

ଓ କୃଷିଶ୍ରମିକ ତଥା ସେହି ପରିବାରର ଶିକ୍ଷିତ ଯୁବକ-ଯୁବତୀଙ୍କ ସ୍ଥାନ ଅଛିକି ? ଅଛି କେତେକ ବୈଷୟିକ ଶିକ୍ଷା ପ୍ରାପ୍ତଙ୍କ ପାଇଁ । ସଂଖ୍ୟା କେତେ ? ଯେଉଁମାନେ ୨୦ ଲକ୍ଷ ଟଙ୍କାରୁ ଉର୍ଦ୍ଧ ବ୍ୟୟ କରିପାରୁଥିବା ବାପାମା'ଙ୍କ ସେହି ସନ୍ତାନମାନଙ୍କ ପାଇଁ । ବିକାଶର ଫଳ ଭୁଂଜିବେ ମାତ୍ର ଅଳ୍ପ ସଂଖ୍ୟକ ଗୋଷ୍ଠୀ । ତାହାର ୮୦ ଭାଗ ଯିବ ଶିଳ୍ପପତିକୁ । ପୋସ୍କୋ ପାଇଁ ୬ ହଜାର ଏକର ଚାଷ ଜମିକୁ ଜବରଦସ୍ତ ଛଡାଇ ନେବା ପରେ ପ୍ରାୟ ୨୦ ହଜାର ଲୋକ ସବୁଦିନ ପାଇଁ ଜୀବିକାରୁ ବଞ୍ଚିତ ହେବେ । ଏହା ଦ୍ୱାରା ଧାନ, ପାନ ଓ ମୀନରୁ ବାର୍ଷିକ ପ୍ରାୟ ୫୦ କୋଟିରୁ ଅଧିକ ଟଙ୍କାର ଉତ୍ପାଦନ ସବୁଦିନ ପାଇଁ ବନ୍ଦ ହେବ । ଘରୋଇବନ୍ଦର ଦ୍ୱାରା ବନ୍ୟାରେ ଚାଷର କ୍ଷତିହେବ ଓ ସମୁଦ୍ରରେ ମାଛମାରିବା ଅଧିକାର ଚାଲିଯିବ । ୬୦୦ ନିୟୁତ ଲୁହାପଥରରୁ ସରକାର ପାଇବେ ୧୦୦୦ କୋଟି ଟଙ୍କା କିନ୍ତୁ କମ୍ପାନୀର ପ୍ରତ୍ୟକ୍ଷ ଲାଭ ୧୫୦ ହଜାର କୋଟି ଟଙ୍କା । ପୁଣି ଲୁହାପଥର ଖନନଦ୍ୱାରା ଖଣ୍ଡାଧାର ଘଞ୍ଚଜଙ୍ଗଲ ଧ୍ୱଂସହେବ ଓ ଜଳ ପ୍ରପାତ ମଧ୍ୟ ନଷ୍ଟ ହେବ । ଶହ ଶହ ଆଦିବାସୀ ଜୀବିକା ହରାଇବେ ଓ ସୁନ୍ଦରଗଡ଼ ଜିଲ୍ଲାରେ ପାଣିର ଅଭାବ ହେବ । ଏସବୁ ଆର୍ଥିକ କ୍ଷତିର ହିସାବ ସରକାର କରିଛନ୍ତି କି ? କିନ୍ତୁ ବହୁଜନଙ୍କ ଦ୍ୱାରା ଉତ୍ପାଦନ, ବହୁଜନଙ୍କପାଇଁ ଉତ୍ପାଦନ କୃଷି ଓ ଜଙ୍ଗଲକୁ ନ୍ୟୁନ କରିବା ଓ ତା' ଉପରେ ଆକ୍ରମଣ କରିବା ଦ୍ୱାରା ବିକାଶର ପରିଭାଷା ବଦଳିଯାଉଛି । ଯେଉଁଠି ଖାଲି ଜମି ପଡ଼ିଛି, ତାକୁ ଚାଷୋପଯୋଗୀ ଜମିରେ ପରିଣତ କରାଯାଇ ଜମିହୀନ କୃଷିଶ୍ରମିକଙ୍କୁ ଜମି ଦିଆଯାଉ ବୋଲି ଦାବି ହୋଇଆସୁଛି । ସେହି ଜମିରେ ଡ଼ାଲି, ତୈଳବୀଜ ଓ ବିଭିନ୍ନ ମିଲେଟ ଉତ୍ପାଦିତ ହୋଇପାରନ୍ତା ଯେଉଁଥିପାଇଁ ଅତ୍ୟଧିକ ଜଳର ଆବଶ୍ୟକତା ପଡ଼େନାହିଁ; କିନ୍ତୁ ଏବେ ଶିଳ୍ପାୟନ ତଥା ବିକାଶ ନାମରେ ଉର୍ବରଚାଷଜମି, ଜଳସେଚିତ ଅଞ୍ଚଳ, ସମୁଦ୍ରତଟ ଏବଂ ଜଳସ୍ରୋତର ଜନ୍ମସ୍ଥାନମାନଙ୍କରେ ଜମି ଓ ଜଙ୍ଗଲ ଛଡ଼ାଇ ନେବାର ପ୍ରକ୍ରିୟା ଜୋରଦାର ହେଉଛି । ସେଥିରେ ପୁଣି ରାଷ୍ଟ୍ର ତାର ପୋଲିସ୍ ତଥା ମିଲିଟାରୀ ଶକ୍ତିକୁ ବ୍ୟବହାର କରୁଛି । ଜନ ପ୍ରତିରୋଧକୁ ଦମନ କରିବାପାଇଁ ପୋଲିସକୁ ପଛରେ ରଖି ସରକାରୀଦଳ ନିଜ ସମର୍ଥକଙ୍କୁ ସଂଗଠିତ କରି ଭଡ଼ାଟିଆ ଗୁଣ୍ଡାବାହିନୀ ଦ୍ୱାରା ଆନ୍ଦୋଳନକାରୀଙ୍କ ଉପରେ ଆକ୍ରମଣ କରିବା ନନ୍ଦିଗ୍ରାମ ପୁନରାବୃତ୍ତି ହେବାର ଆରମ୍ଭ ହେଲାଣି । ୨୦୦୭ ନଭେମ୍ବର ୨୯ ତାରିଖ ଦିନ ଆମ ରାଜ୍ୟରେ ଓଡ଼ିଶାର ଏକ ଶାସକଦଳ ଏ କାର୍ଯ୍ୟ କରାଇଛି । ପୋସ୍କୋ ପ୍ରତିରୋଧ ସଂଗ୍ରାମ ସମିତି ତରଫରୁ ୬୦ ଦିନ ଧରି ବାଲିତୁଠ ରାସ୍ତାରେ ଗଣ ଧାରଣା ଦିଆଯାଇ କଂପାନୀର ପ୍ରବେଶକୁ ପ୍ରତିରୋଧ କରୁଥିଲେ । ଶାସକଦଳର ବିଧାୟକଙ୍କ ନିର୍ଦ୍ଦେଶରେ ଭଡ଼ାଟିଆ ଗୁଣ୍ଡାବାହିନୀ ନେଇ ଦଳୀୟ କର୍ମୀମାନେ ବୋମାପକାଇ ଆକ୍ରମଣ

Digitized by srujanika@gmail.com

କଲେ । ଧାରଣା ସ୍ଥଳର ତମ୍ବୁ ପୋଡ଼ିଦିଆଗଲା । ୪୦ ଜଣ ଆହତ ହେଲେ, ତାପରେ ପୋଲିସ ଆସି ଗୁଣ୍ଡାଙ୍କୁ ଜବତ କରିବା ପରିବର୍ତ୍ତେ ଧାରଣା ସ୍ଥଳକୁ କବ୍‌ଜା କରି ଜନ ଆନ୍ଦୋଳନକୁ ଦମନକରି ଲୋକଙ୍କୁ ନିଜ ଗାଁରୁ ହଟାଇବାପାଇଁ ଏବେ ପୋଲିସ୍ ଓ ଗୁଣ୍ଡାବାହିନୀର ମିଳିତ ଶକ୍ତି କାମକରୁଛି । ଅର୍ଥ ଯୋଗାଉଛି କମ୍ପାନୀ । ଯେଉଁଠି ନିଜର ଅଧିକାର ପାଇଁ ନିଜର ଜୀବନ ଜୀବିକାର ସୁରକ୍ଷା ପାଇଁ ଗଣତାନ୍ତ୍ରିକ ପ୍ରତିବାଦ କରିବା ଅଧିକାର ରହିବ ନାହିଁ, ସେଠି ଗଣତନ୍ତ୍ରର ମୃତ୍ୟୁ ହୋଇଛି ବୋଲି କହିବା ଏକାନ୍ତ ସତ୍ୟ । ସେଠି ନାଗରିକ ସ୍ୱାଧୀନତା ହରାଇଛି । ଯେତେବେଳେ ରାଷ୍ଟ୍ର ଏକ ବିଦେଶୀ କମ୍ପାନୀକୁ ସମସ୍ତ ସୁରକ୍ଷା ସହ ତାର ନାଗରିକକୁ ଦମନ କରୁଛି, ସେ ଦେଶ ସ୍ୱାଧୀନତା ହରାଇବା ବାଟ ଖୋଲୁଛି । ଆସନ୍ତାକାଲି ଶିକ୍ଷକ ହୁଅନ୍ତୁ, କର୍ମଚାରୀ ହୁଅନ୍ତୁ, ଚାଷୀ ହୁଅନ୍ତୁ, ଯେଉଁମାନେ ସରକାର ବିରୋଧରେ ଆନ୍ଦୋଳନ କରିବେ ସେମାନଙ୍କ ଆନ୍ଦୋଳନ ଗୁଣ୍ଡାବାହିନୀ ଓ ପୋଲିସ ଜରିଆରେ ଶେଷ କରିଦେବା ପ୍ରକ୍ରିୟା ଚାଲିବ । ତାପରେ କିଏ କାହାପାଇଁ କହିବ ? ଆଜି ବିକାଶ କାହାପାଇଁ ଓ ଏହାକୁ କିଏ ଆଣୁଛି ତାର ମୂଲ୍ୟାୟାନ ହେବା ଜରୁରୀ । ସେଥିପାଇଁ ଗଣତାନ୍ତ୍ରିକ ଅଧିକାରକୁ ସୁରକ୍ଷିତ ରଖିବା ସର୍ବାଧିକ ଆବଶ୍ୟକ, ନଚେତ ଆଧୁନିକତା ଓ ବିକାଶ ତଥା ବଜାର ନାମରେ ବର୍ବରତା ଭୟଙ୍କର ସ୍ଥିତି ସୃଷ୍ଟି କରିବ । ଯେଉଁମାନଙ୍କ ଜମି ଯାଉଛି ସେମାନେ ତାଙ୍କର ଚାଷ ଓ ଜୀବିକା ହରାଇବାକୁ ଚାହୁଁନାହାନ୍ତି । ସରକାର ବିଦେଶୀ କମ୍ପାନୀମାନଙ୍କୁ ଆଣୁଛି । ଲୋକେ ବିନାଅସ୍ତ୍ରରେ ପ୍ରତିବାଦ କରିଆସୁଛନ୍ତି ଗଣତାନ୍ତ୍ରିକ ଜନଆନ୍ଦୋଳନ ଜରିଆରେ । ଏଥିରେ ରାଜ୍ୟ ଓ ଦେଶର ବିଭିନ୍ନ ଲୋକସଂଗଠନ, ସୀମିତ ରାଜନୈତିକ ସଂଗଠନ ଓ ଜନବାଦୀ ବୁଦ୍ଧିଜୀବୀ ପ୍ରତ୍ୟକ୍ଷ ସମର୍ଥନ ବି କରୁଛନ୍ତି ଓ ଏହା ପୁଞ୍ଜିବାଦ ଶକ୍ତିମାନଙ୍କ ଶୋଷଣ ବ୍ୟବସ୍ଥା ବୋଲି ବିତର୍କ ଠିଆ କରାଇଛନ୍ତି । ସରକାରଟି ଗଣତାନ୍ତ୍ରିକ ବ୍ୟବସ୍ଥାଦ୍ୱାରା ଗଠିତ । ଶାସକମାନେ ଲୋକ ପ୍ରତିନିଧି । ସେମାନେ କାହିଁକି ଅଗଣତାନ୍ତ୍ରିକ ବାଟରେ ଲୋକଙ୍କ ଉପରେ ଜବରଦସ୍ତ ଥୋପିବେ ବିକାଶ ନାମରେ ବିନାଶକୁ ? କେହି କହିପାରେ, ହଜାର ହଜାର କୋଟି ଟଙ୍କାର ପୁଞ୍ଜି ଆସୁଛି ତାକୁ ହାତଛଡ଼ା କରିବାର ନାହିଁ । ତାହା ଲୋକଙ୍କ ପାଇଁ ନୁହଁ, ନିଜ ଶିଳ୍ପ ସାମ୍ରାଜ୍ୟ ପାଇଁ ପୁଞ୍ଜିପତି ଧରି ଆସୁଛି । ମୋର ଭିଟାମାଟି, ପ୍ରାକୃତିକ ସଂବଳ ଓ ଜମି ଉପରେ ମୋର ଅଧିକାରକୁ ଛଡ଼ାଇ ନେବାକୁ ଆସୁଥିବା କଂପାନୀକୁ ବିରୋଧ କରିବା ମୋର ଜନ୍ମଗତ ଅଧିକାର । ଆଇନ ରହିଛି, ଏହି ଅଧିକାରକୁ ସୁରକ୍ଷା ଦେବାପାଇଁ, କିନ୍ତୁ ଯେତେବେଳେ ରାଷ୍ଟ୍ର ତଥା ତାର ପ୍ରତିନିଧି ନିର୍ବାଚିତ ସରକାର ନିଜ ଦାୟିତ୍ୱରୁ ପଳାତକ ହୋଇ ଓଲଟା ଗଣତାନ୍ତ୍ରିକ ଅଧିକାର ଉପରେ ଚଢ଼ାଉ କରୁଛି ତାର ପ୍ରତିରୋଧ ଅପରିହାର୍ଯ୍ୟ ।

Digitized by srujanika@gmail.com

ସାଧାରଣତଃ ନିରସ୍ତ୍ରଜନତା ସଂଗଠିତ ହୋଇ ପ୍ରତିବାଦ କରିବାପାଇଁ ଗାନ୍ଧୀଜୀ ସତ୍ୟାଗ୍ରହ ବା ଆଇନ ଅମାନ୍ୟ ଆନ୍ଦୋଳନର ବାଟ ଦେଖାଇଛନ୍ତି, କିନ୍ତୁ ଏହିବାଟର ଆଉ ଏକ ସମାନ୍ତରାଳ ଧାରା ରହିଛି ରାଷ୍ଟ୍ରର ସନ୍ତ୍ରାସବାଦ ବିରୋଧରେ ସଶସ୍ତ୍ର ବିପ୍ଳବ । ଯେତେବେଳେ ମଣିଷ ପ୍ରତିବାଦର ସମସ୍ତ ଶାନ୍ତିପୂର୍ଣ୍ଣ ରାସ୍ତାରେ ଯାଇ ବାରଂବାର ରାଷ୍ଟ୍ରର ପୋଲିସ ଓ କମ୍ପାନୀ ଗୁଣ୍ଡା ଦ୍ୱାରା ଆକ୍ରମିତ ହେଉଥିବ, ସେତିକିବେଳେ ସେ ନିଶ୍ଚିତ ଆତ୍ମରକ୍ଷା ପାଇଁ ଏବଂ ଶତ୍ରୁର ନିପାତ ପାଇଁ ଅସ୍ତ୍ର ଧରିବାକୁ ବାଧହେବ । ତାକୁ କିଏ ଓ କେତେବେଳେ ଅସ୍ତ୍ର ଧରାଇବ ଏ ପ୍ରଶ୍ନରେ ଉତ୍ତର ଆବଶ୍ୟକତା ନାହିଁ । ବିଦ୍ରୋହୀ ତାର ରାସ୍ତା ତିଆରି କରିଚାଲେ ।

ଓଡ଼ିଶାରେ ମା' ମାଟିର ସୁରକ୍ଷା ପାଇଁ ତଥା ଜମି, ଜଙ୍ଗଲରୁ ବିସ୍ଥାପନ ବିରୋଧରେ କାଶୀପୁର, ରାଇଘର, ନିୟମଗିରି, କଳିଙ୍ଗନଗର, ଢ଼ିଙ୍କିଆ ପର୍ଯ୍ୟନ୍ତ ଜନ ଆନ୍ଦୋଳନମାନଙ୍କର ନେତୃତ୍ୱ ଓ ସଂଗଠନ ଆଜି ପର୍ଯ୍ୟନ୍ତ ନିଜ ଆଡୁ ହିଂସା ପ୍ରୟୋଗ କରିନାହିଁ ବରଂ ଜନତା ରାଷ୍ଟ୍ର ତଥା ସରକାରୀ ହିଂସାର ଶିକାର ହୋଇଛନ୍ତି, ପୋଲିସ ଗୁଳିରେ ଶହୀଦ ହୋଇଛନ୍ତି । ଏବେ ଅଧିକରୁ ଅଧିକ ଜମି ଓ ଜଙ୍ଗଲ ଛଡ଼ାଇ ନିଆଯିବ ବିକାଶ ନାମରେ । ଅଧିକରୁ ଅଧିକ ପ୍ରତିରୋଧ ଆନ୍ଦୋଳନ ଠିଆହେବ । ଲୋକେ ରାସ୍ତାକୁ ଆସିବେ । ଯଦି ସରକାର ଓ ସରକାରୀ ଦଳମାନେ କଂପାନୀ ପଇସାରେ ଗୁଣ୍ଡାଗିରି କରି ଚାଲିବେ, ତାହାହେଲେ ଜନତା ଯେତେବେଳେ ହିଂସାର ଜବାବ ପ୍ରତିହିଂସାରେ ଦେବ, ସେଠି ସରକାର ସମ୍ଭାଳି ପାରିବତ ? କ୍ଷମତା ରହିବତ ? ଆଜି ସରକାର କୋଟି କୋଟି ଟଙ୍କା ଖର୍ଚ୍ଚକରୁଛି ନକ୍ସଲ ଦମନ ନାମରେ । ଶାସକ ଦଳମାନେ କାହିଁକି ଯାଉନାହାନ୍ତି ନକ୍ସଲଙ୍କ ସାମନାକରିବାକୁ ଯଦି ସେମାନଙ୍କ ଏତେ ବପୁ ଅଛି ? ସମୟ ଆସିବ ଦିଲ୍ଲୀରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଆଜିର ଶାସକଦଳ ହୁଏତ କାଲିକି ୩ ନମ୍ବର ବିରୋଧୀ ଦଳରେ ଥିବେ । ସେମାନେ ବି ଗଣତନ୍ତ୍ର କଥା କହିବେ କାରଣ ପ୍ରଚଳିତ ବ୍ୟବସ୍ଥାରେ ସେତେବେଳେ ଯିଏ ସରକାରରେ ଥିବ ସେ ଆଜିଠାରୁ ଅଧିକ ହିଂସ୍ରକ ହେବ । ଆଜିର ରାଜନେତାମାନେ ଯେପରି ସାମ୍ରାଜ୍ୟବାଦ ଶକ୍ତି ଓ କର୍ପୋରେଟ୍ ଶକ୍ତିମାନଙ୍କ ନିୟନ୍ତ୍ରଣରେ ରାଜନୀତି କରୁଛନ୍ତି, ସେହି ରାଜନୀତି ଏପରି ଚେରମାଡି ଯାଇଥିବ ଯେ, ତାର ବୃକ୍ଷରେ କେବଳ ବିଷାକ୍ତ ଫଳ ଫଳୁଥିବ । ସେତେବେଳକୁ ଯୁବକ ଯୁବତୀଙ୍କ ସ୍ୱପ୍ନସବୁ ଭାଙ୍ଗିଯାଇଥିବ । ତା'ପରେ ଗୋଟିଏ ପଟୁ ବଞ୍ଚିବାର ଅଧିକାର ନେଇ ଅମ୍ବାନୀଠାରୁ ଆରମ୍ଭ କରି ଧନବାନ୍ ରାଜନେତାମାନଙ୍କ ସଂପତ୍ତିକୁ କବ୍ଜା କରିବାକୁ ବଞ୍ଚିତମାନେ ରାସ୍ତାକୁ ଉଗ୍ରରୂପରେ ଆସୁଥିବେ, ଅନ୍ୟପଟରେ ଶାସନର ଅରାଜକତାରେ ରାଷ୍ଟ୍ର ନିଜର ପରିଚୟ ହରାଉଥିବ । ସେତେବେଳେ ଗଣତନ୍ତ୍ରଟି କେଉଁଠିଥିବ

Digitized by srujanika@gmail.com

ଖୋଜିବାକୁ ପଡ଼ିବ । ଖୋଜିବ ବା କିଏ ? ଯିଏ ଆଜି ଗଣତାନ୍ତ୍ରିକ ବ୍ୟବସ୍ଥାଟିରେ ଥିବା ବାଟଟିରେ ନିଜ କଥା କହିବାକୁ ଡରୁଛି କିମ୍ବା ମିଛ ବିଜ୍ଞାପନର ଚାକଚକ୍ୟରେ ବିକାଶର ବିନାଶ ରୂପଟିକୁ ଦେଖିବାକୁ ଉଦ୍ୟମ କରୁନାହିଁ ସେ ଆସନ୍ତାକାଲି ବିପଦର ସାମନା କରିବ କିପରି ? କେବଳ ଭୟର ରାଜୁତି ଚାଲିବ ।

ହଠାତ୍ ଦିନେ ଜଣେ ଉଚ୍ଚଶିକ୍ଷିତ ବଡ଼ ଦରମାପ୍ରାପ୍ତ ବ୍ୟକ୍ତି (ଅଚିହ୍ନା ନ ହେଲେବି ବ୍ୟକ୍ତିଗତ ସଂପର୍କ ନାହିଁ) ମତେ ପ୍ରଶ୍ନ କଲେ, ଆପଣ ପୋସ୍କ ବିରୋଧରେ ଲାଗିଛନ୍ତି ନା ? ମୁଁ ଉତ୍ତର ଦେଲି ଗତକାଲି ପୋସ୍କ ପାଇଁ ପ୍ରସ୍ତାବିତ ବନ୍ଦର ବିରୋଧୀ ସଭାରେ ଯୋଗଦେଇ ଆସିଲି । ପୁଣି ପ୍ରଶ୍ନ, ତାହାହେଲେ ଆପଣମାନେ ଓଡ଼ିଶାରେ କିଛି କରାଇ ଦେବେନି ? ଆପଣଙ୍କୁ ଟି.ଭି.ରେ ଦେଖୁଛି ଆପଣ ସବୁଠି ବିରୋଧ କରୁଛନ୍ତି । ସେ ଏପରି ଯୁକ୍ତିକରି କହୁଥିଲେ, ସତେ ଯେପରି ମୁଁ ତାଙ୍କର ଲକ୍ଷ ଲକ୍ଷ ଟଙ୍କା କ୍ଷତିକରିଦେଉଛି ।'' ମୁଁ ଉତ୍ତର ଦେଲି : ''କାହାପାଇଁ ଆପଣ କହୁଛନ୍ତି ? ଯିଏ ମାସିକ ୫୦ ହଜାର ଟଙ୍କାରୁ ୨ ଲକ୍ଷ ଟଙ୍କାର ଚାକିରୀପାଇବେ, ବଡ଼ ବଡ଼ ହୋଟେଲ୍ ହେବ, ଇସ୍ପାତ, ଆଲୁମିନା ବିଦେଶକୁ ଯିବ ଆଉ ଆମ ଗାଁ ସ୍କୁଲର ଶିକ୍ଷକଙ୍କୁ ୧୫୦୦ ଟଙ୍କାରେ ଠିକାରେ ରଖାହେବ ଏବଂ ୫ ଜଣକ ସ୍ଥାନରେ ଜଣେ ପଢ଼ାଇବେ । ପଇସାବାଲାଙ୍କ ପବ୍ଲିକସ୍କୁଲ ଚାଲିବ, ଧନୀ ପିଲାପାଇଁ ମାସିକ ଖର୍ଚ୍ଚ ବ୍ରହ୍ମପୁରରେ ଦୁଇ ହଜାର ଟଙ୍କାରୁ ଦିଲ୍ଲୀରେ ୧୦ ହଜାର ପର୍ଯ୍ୟନ୍ତ । ଶିଶୁ ଶିକ୍ଷାଶ୍ରେଣୀ ପାଇଁ ଡ଼ୋନେସନ୍ ଦୁଇଲକ୍ଷ ଟଙ୍କା ପର୍ଯ୍ୟନ୍ତ । ଏପଟେ ଗାଁ ପିଲା ଲଙ୍ଗଳା । ଚାଷୀର ଧାନକୁ ଦାମ୍ ନାହିଁ କି ତା' ଜମିକୁ ପାଣିନାହିଁ । ଚାଷୀ, ଆଦିବାସୀଙ୍କ ଜୀବନ ଓ ଜୀବିକା ରହିଛି ଜମି ଓ ଜଙ୍ଗଲରେ । ତାକୁ କାହାରି ମୁନାଫା, କାହାରି ଉପଭୋଗ ସାମଗ୍ରୀ ପାଇଁ ଛଡ଼ାଇ ନିଆଯିବ ଓ ସେ ପାଟିକଲେ ତାକୁ ଗୁଳିକରାଯିବ, ଜେଲରେ ରଖାଯିବ । ତାପାଇଁ କହୁଥିବା ଲୋକଙ୍କୁ ଦେଶଦ୍ରୋହୀ, ବିକାଶର ବିରୋଧୀ ବୋଲି କୁହାଯିବ । ମଣିଷ ବିରୋଧୀ ତଥା ଭ୍ରଷ୍ଟାଚାରର ପୃଷ୍ଠପୋଷକମାନଙ୍କୁ ଦେଶସେବକ ବୋଲି ଫୁଲମାଳ ପିନ୍ଧାଉଥିବ, ଏପରି ସବୁବେଳେ ଚାଲିପାରିବ ନାହିଁ । ସମୟ ଆସୁଛି, ଲୋକେ ରାସ୍ତାରେ ଚଲାଇ ଦେବେ ନାହିଁ ତଥାକଥିତ ବିକାଶର ପ୍ରବକ୍ତାମାନଙ୍କୁ ।'' ଏତକକହି ମୁଁ ପଚାରିଲି ମୁଁ କି ଦୋଷ କଲି ? ''ଆମ ଦେଶରେ ହତ୍ୟାକାରୀ, ଧର୍ଷଣକାରୀ ଓ ଡ଼କାୟତ ତଥା ଟିକସଫାଙ୍କିବା ବ୍ୟକ୍ତିମାନଙ୍କ ମକଦ୍ଦମା ଲଢ଼ି ଖଲାସ କରାଇ ପାରୁଥିବା ଓକିଲମାନେ ପ୍ରତିଷ୍ଠିତ ବ୍ୟକ୍ତିରୂପେ ମାନ୍ୟତା ପାଆନ୍ତି । ତାହା ସେମାନଙ୍କ ଆଇନସମ୍ମତ ପ୍ରଫେସନର ଏକ ସଫଳତା ବୋଲି ଧରି ନିଆଯାଏ । ସେମାନଙ୍କ ମଧ୍ୟରୁ ହାଇକୋର୍ଟ ଓ ସୁପ୍ରିମ୍‌କୋର୍ଟ ବିଚାରପତି ରୂପେ ମନୋନୀତ ହୁଅନ୍ତି, ଆଡ଼ଭୋକେଟ୍ ଜେନେରାଲ୍ ବି ହୁଅନ୍ତି । ଆଇନସମ୍ମତ ପ୍ରଚୁର ଅର୍ଥ ଉପାର୍ଜନ ବି କରନ୍ତି । କାହାର ଜମି ଚାଲିଯାଉଥିବାବେଳେ,

Digitized by srujanika@gmail.com

କାହାର ଗାଁକୁ ଭାଙ୍ଗି ଦିଆଯାଉଥିବାବେଳେ, ସେମାନେ ଗଣତାନ୍ତ୍ରିକ ଅଧିକାରକୁ ସାବ୍ୟସ୍ତକରି ପ୍ରତିବାଦ କଲାବେଳେ ମୋ' ପରି ବ୍ୟକ୍ତିମାନେ ଜେଲଯିବାକୁ ପ୍ରସ୍ତୁତରହି ସେମାନଙ୍କୁ ସହଯୋଗ ଦେବା କିମ୍ବା ତାଙ୍କ ପାଇଁ କଥା କହିବା କ'ଣ ଏକ ଅପରାଧ ? ଦେଶଦ୍ରୋହ, ବିକାଶର ବିରୋଧୀ ବୋଲି ତୁମପରି ବ୍ୟକ୍ତିମାନେ ଗାଳି ଦେଉଛ ଓ ସରକାର ମିଥ୍ୟା ମୋକଦ୍ଦମା କରାଉଛି । ଏହା କେଉଁ ସଭ୍ୟ ସମାଜର ଚରିତ୍ର ?'' ତାର ଉତ୍ତର ମୁଁ ପାଇନଥିଲି । ମୁଁ କହିଲି ଏ ରାଜ୍ୟର ସମସ୍ତ ବେକାରଙ୍କ ପାଇଁ ମାସିକ ଅନ୍ତତଃ ୫ ହଜାର ଟଙ୍କାର ଆୟର ବ୍ୟବସ୍ଥା କରି ଦିଆଯାଉନି କାହିଁକି ବିକାଶର ପ୍ରକ୍ରିୟାରେ । ଆସନ୍ତା ୫ ବର୍ଷରେ ହୋଇପାରିବ ବୋଲି କେହି ଗ୍ୟାରେଣ୍ଟି ଦେଇପାରିବ କି ?

ଏବେ ବି ଦେଶରେ ୪୦ କୋଟି ଲୋକ ଦାରିଦ୍ର୍ୟର ସୀମାରେଖାତଳେ ଅଛନ୍ତି ଓ ଏମାନଙ୍କ ମଧ୍ୟରୁ ୯୦ ଭାଗ ଲୋକଙ୍କ ଆୟ ଦୈନିକ ୨୦ ଟଙ୍କାରୁ ବି କମ୍ । ଓଡ଼ିଶାରେ ଆଦିବାସୀ ୨୪%, ଦଳିତ ୧୬% ଏମାନଙ୍କ ମଧ୍ୟରୁ ୯୦ ଭାଗ ଅତି ଗରିବ ଏବଂ ଏମାନଙ୍କ ବ୍ୟତୀତ ଅନ୍ୟ ସମସ୍ତେ କୃଷି ଉପରେ ନିର୍ଭରଶୀଳ ଲୋକଙ୍କ ମଧ୍ୟରୁ ୬୦ ଭାଗ ଗରିବ ଯେଉଁମାନେ ନାମମାତ୍ର ଚାଷୀ ଓ କୃଷିଶ୍ରମିକ । ଏହି ହିସାବକୁ ଦେଖିଲେ ଓଡ଼ିଶାର ପ୍ରାୟ ୪ କୋଟି ଲୋକଙ୍କ ମଧ୍ୟରୁ ୨ କୋଟି ୯୦ ଲକ୍ଷ ଲୋକଙ୍କ ଜୀବନ ମାନଦଣ୍ଡ ଅତି ନିମ୍ନରେ ଯାହାପାଇଁ ଅନ୍ତତଃ ଦୈନିକ ୧୦୦ ଟଙ୍କାର ମଜୁରୀ ହେଉ କିମ୍ବା ଉପାର୍ଜନର ଗ୍ୟାରେଣ୍ଟି ରହିବା ଆବଶ୍ୟକ । ଏମାନଙ୍କ ଜୀବିକା ତଥା ଉପାର୍ଜନ ପାଇଁ ବିକାଶର ପନ୍ଥା ଏକମାତ୍ର ଜମି ଓ ଜଙ୍ଗଲକୁ କେନ୍ଦ୍ରକରି ଉତ୍ପାଦନ ବୃଦ୍ଧି ଓ କ୍ଷୁଦ୍ର ଶିଳ୍ପ ଜରିଆରେ କର୍ମନିଯୁକ୍ତି ସୃଷ୍ଟି କରିବା । ତା ସହ ସେହି ଉତ୍ପାଦନ ସଂସ୍ଥା ଉପରେ ସେମାନଙ୍କ ମାଲିକାନାକୁ ସ୍ୱୀକୃତି ଦେବାକୁ ହେବ ଏଥିପାଇଁ ବିକଳ୍ପ ବିକାଶ ମୋଡେଲ୍ ଭିତରେ ସେହି ବହୁଜନଙ୍କୁ ଶିକ୍ଷା, ସ୍ୱାସ୍ଥ୍ୟ ସେବାର ଉପଲବ୍ଧି ହୋଇ ପାରିଲେ ଯାଇ ସାମଗ୍ରୀକଭାବେ ଏକ ସମୃଦ୍ଧ ଅର୍ଥବ୍ୟବସ୍ଥା ଲୋକଙ୍କର ଓ ଲୋକଙ୍କ ପାଇଁ ହୋଇପାରିବ । ଏକଥା ନକରି ମାତ୍ର ଏକ କୋଟି ଲୋକଙ୍କୁ ଦିବା ସ୍ୱପ୍ନ ଦେଖାଇ ସେମାନଙ୍କ ମଧ୍ୟରୁ ଏକ ଲକ୍ଷରୁ ୨ ଲକ୍ଷ ପର୍ଯ୍ୟନ୍ତ ନିଯୁକ୍ତି ସୃଷ୍ଟି ସମ୍ଭାବନାକୁ ନେଇ ପ୍ରଚଳିତ ବିକାଶର ଡିଣ୍ଡିମ ପିଟା ଯାଉଛି । ତାହାମଧ୍ୟ ଆସନ୍ତା ୨୫ ବର୍ଷ ମଧ୍ୟରେ । ୨୫ ବର୍ଷପରେ ଶିକ୍ଷିତ ବେକାରଙ୍କ ସଂଖ୍ୟା କେତେଗୁଣ ବଢ଼ିଯାଇଥିବ ହିସାବ କରିବା ଉଚିତ୍ ।

ଆମେ ପୃଥିବୀର ସବୁଠାରୁ ବଡ଼ ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ଅଛୁ ବୋଲି ଦାବି କରନ୍ତି ଆମ ସରକାର ଓ ତାର ପ୍ରତିନିଧିମାନେ । ଏହି ବ୍ୟବସ୍ଥାରେ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ସାଂସଦ ଓ ବିଧାନ ସଭାମାନ ଅଛି । ନିର୍ବାଚିତ ଲୋକପ୍ରତିନିଧିମାନେ ଅଛନ୍ତି । ଏମାନଙ୍କ ବାହାରେ ବିଚାରାଳୟ ଅଛି । ଏକଦା ସମୟଥିଲା – ସରକାର

Digitized by srujanika@gmail.com

ହସପିଟାଲ, ସ୍କୁଲ, ରୋଡ଼ କରିବାପାଇଁ ଜମି ଦରକାର କଲାବେଳେ ଗାଁର ଲୋକେ ମିଳିତ ହୋଇ ସହଯୋଗ କରୁଥିଲେ । କାରଣ ଏହାଥିଲା ସାଧାରଣ ଲୋକଙ୍କ ସେବାରେ । ଏପରିକି ଯଦି କୌଣସି ବ୍ୟକ୍ତିର ବିଶେଷ ଅସୁବିଧା ହେଉଥିଲା, ଗାଁଲୋକେ ତାପାଇଁ ବିକଳ୍ପ ବ୍ୟବସ୍ଥା କରୁଥିଲେ, କିନ୍ତୁ ସମୟାନୁକ୍ରମେ ବଡ଼ ବଡ଼ ଡ୍ୟାମ୍, ବଡ଼ ବଡ଼ ପ୍ରକଳ୍ପ ନାମରେ ସରକାର ହଜାର ହଜାର ଲୋକଙ୍କୁ ବିସ୍ଥାପନ କରି ସେମାନଙ୍କୁ ରାସ୍ତାକୁ ଠେଲିଦେଲେ । ଏବେବି – ହୀରାକୁଦ, ରେଙ୍ଗାଲି, ଅପରକୋଲାବ, ଇନ୍ଦ୍ରାବତୀ, ସୁନାବେଢ଼ାର ବିସ୍ଥାପିତମାନଙ୍କ ମଧ୍ୟରୁ ବହୁପରିବାର ବାରବୁଲା ହୋଇ ଯାଇଛନ୍ତି । କାହାରିକୁ କହିବେ ଗୁହାରି ? କେହିତ ତାଙ୍କ ପାଖରେ ନ୍ୟାୟ ପହଞ୍ଚାଇ ପାରିଲାନାହିଁ । ଏବେ ଜଗତୀକରଣ ନାମରେ ପୁଞ୍ଜିର ଖେଳ ଚାଲିଛି, ସେହି ଖେଳର ଲକ୍ଷ୍ୟ ମୁନାଫା ଓ ଆଉ ବର୍ଦ୍ଧିତ ଅଭିବୃଦ୍ଧି ହାର । ଦେଶୀ–ବିଦେଶୀ କମ୍ପାନୀମାନଙ୍କ ପାଇଁ ବି ଜବରଦସ୍ତ ଜମି ଅଧିଗ୍ରହଣ । ଏଥିପାଇଁ ବିଧାନସଭା ଲୋକସଭାରେ ପ୍ରତିବାଦର ସ୍ୱର ଅତିକ୍ଷୀଣ । କାରଣ ସମସ୍ତ ଶାସକଦଳ (ରାଜ୍ୟ ଓ କେନ୍ଦ୍ରର) କମ୍ପାନୀ ସପକ୍ଷରେ, ପୁଞ୍ଜିର ଖେଳ ସପକ୍ଷରେ । ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀମାନେ ଭିନ୍ନ ଭିନ୍ନ ଦଳର ହେଲେବି କମ୍ପାନୀମାନଙ୍କ ପାଇଁ ସୁରକ୍ଷାର ବଳୟ ତିଆର କରୁଛନ୍ତି । ସାଂବିଧାନିକ ଦାୟିତ୍ୱରୁ ଓହରି କୃଷି, ପ୍ରାକୃତିକ ସଂବଳର ସୁରକ୍ଷା ପାଇଁ ଥିବା ଆଇନଗୁଡ଼ିକୁ ଗୋଇଠାମାରି ନୂଆ ନୂଆ ଆଇନ ତିଆରି କରିଛନ୍ତି କମ୍ପାନୀମାନଙ୍କ ହାତରେ ଆମ ସଂବଳ ଗୁଡ଼ିକୁ ଟେକିଦେବାପାଇଁ । ଗାଁ ସଭାରେ ଲୋକଙ୍କ ମତ ନେବାକୁ, ଜଙ୍ଗଲରେ ଜନବାସୀଙ୍କୁ ଅଧିକାରଦେବାକୁ, କୃଷିଜମିକୁ ଅଣକୃଷିରେ ପରିଣତ ନ କରିବାକୁ ନୂଆଁ ନୂଆଁ ଆଇନ ତିଆରି ହେଉଥିବାବେଳେ ଅନ୍ୟପଟେ ଜମି ଅଧିଗ୍ରହଣ ଆଇନ (୧୮୯୪) କୁ ଅଧିକ ଶକ୍ତିଶାଳୀ କରି ଚାଷୀଙ୍କ ଜମି ଛଡ଼ାଇନେବାର କ୍ଷମତା ଜିଲ୍ଲାପାଳଙ୍କୁ ଦିଆଯାଉଛି, ସେଇ୍ ଆଇନ ଦ୍ୱାରା ଜମି ଜଙ୍ଗଲ ଅଧିଗ୍ରହଣକରି ଦେଶଭିତରେ ବିଦେଶୀ ଭୂଖଣ୍ଡର ମାନ୍ୟତା ଦିଆଯାଉଛି । ସର୍ବତ୍ର ପ୍ରତିବାଦର ସ୍ୱର ଗଣପ୍ରତିରୋଧରେ ପରିଣତ ହେବାରେ ଲାଗିଛି । ପ୍ରତିରୋଧର ତଣ୍ଟି ଚିପିଦେବାପାଇଁ ପୋଲିସ୍ ଓ ଗୁଣ୍ଡା ଦ୍ୱାରା ବନ୍ଧୁକ ଓ ବୋମା ବ୍ୟବହାର କରାଯାଉଛି । ଦଳୀୟ ବିଧାୟକ, ସାଂସଦମାନଙ୍କ ପାଟି ବନ୍ଦ । ଜଣେ ଅଧେ ବ୍ୟକ୍ତିଙ୍କ ସଂବେଦନଶୀଳ ହୋଇ ବି ଦଳ ଭିତରେ ପ୍ରଶ୍ନକରିବା ସାହସ ନାହିଁ କିମ୍ବା ସୁଯୋଗ ନାହିଁ । ଦଳର ଦଳପତିମାନଙ୍କ ହାତରେ ନିର୍ବାଚନପାଇଁ ଟିକେଟ ଆଉ ଅର୍ଥ । ଏବେ କର୍ପୋରେଟ ଅର୍ଥ ଗୋଟିଏ ସ୍ଥାନରୁ ଅନେକ ରାଜନୈତିକ ଦଳମାନଙ୍କ ପାଖରେ ପହଞ୍ଚୁଯାଉଛି ଯେଉଁମାନେ ନିଜ ନିଜ ଦଳର ସରକାର କିମ୍ବା ସରକାରର ସହଯୋଗୀ ହୋଇ ବିଦେଶୀ ପୁଞ୍ଜି, ଘରୋଇକରଣ, ଉଦାରୀକରଣକୁ ସ୍ୱୀକାର କରିସାରିଲେଣି । ଅନ୍ୟପଟେ ବିଚାରାଳୟଠାରୁ ସାଧାରଣ ମଣିଷ କେବେ ଆଶାକରିନଥାଏ । ତଥାପି ଏକ ଭ୍ରମଥାଏ ଯେ ନ୍ୟାୟପତିମାନେ ଅନ୍ତତଃ ଆଇନର ତର୍ଜମା ଭିତରେ କିଛି ନ୍ୟାୟ ବାଣ୍ଟିପାରନ୍ତି

Digitized by srujanika@gmail.com

ଭୋକିଲାମାନଙ୍କୁ ପଂକ୍ତି ଭୋଜନ ଦେଲାପରି । କିନ୍ତୁ ଯେଉଁଠି କର୍ପୋରେଟ୍ ଓ ସରକାର ଏକାଠି ଥା'ନ୍ତି, ସେଠାରେ ବିଚାରାଳୟରୁ ସାଧାରଣ ଲୋକ ତଥାକଥିତ ବିକାଶକୁ ବିରୋଧକରି ନିଜ ଭିଟାମାଟିର ଅଧିକାର ପାଇଁ ନ୍ୟାୟପାଇବା ଲଙ୍କାରେ ହରିଣଛ ପରି । ବିଚାରପତିମାନେ ମଧ୍ୟ ଯାଇଛନ୍ତି ସେହି ପରିବେଶରୁ ଯେଉଁଠି ଉଚ୍ଚ ମଧ୍ୟବିତ୍ତମାନେ ବିନାଶର ଖେଳ ଖେଳୁଥିବା ବିକାଶର ପୃଷ୍ଠପୋଷକ ଓ ପ୍ରବକ୍ତା ରୂପେ ପରିଚିତ ।

ନର୍ମଦା ବଞ୍ଚାଅ ଆନ୍ଦୋଳନଠାରୁ ଆରମ୍ଭକରି ଅନେକ କ୍ଷେତ୍ରରେ ସାଧାରଣ ଲୋକଙ୍କ ବିସ୍ଥାପନର ପ୍ରତିବାଦ ସ୍ୱରକୁ ମଂଜୁର କରିଛନ୍ତି ସୁପ୍ରିମକୋର୍ଟ । ଏପରିକି କିଛି ନ୍ୟାୟଦେବା ନାମରେ ଜମି ବଦଳରେ ଜମି ଦେବାକୁ ହେବ ବୋଲି ଦେଇଥିବା ରାୟକୁ ରାଜ୍ୟସରକାରମାନେ ମାନିବାକୁ ପ୍ରସ୍ତୁତ ନଥିବାବେଳେ କୋର୍ଟ ନୀରବ । ଓଡ଼ିଶାରେ ସାଧାରଣତଃ ଜମି, ଜଳ, ଜଙ୍ଗଲର ସୁରକ୍ଷାପାଇଁ ଆନ୍ଦୋଳନରତ ଜନତା କେବେ କୋର୍ଟପାଖକୁ ଯାଇନାହାନ୍ତି । ନିୟମଗିରିକୁ ସୁରକ୍ଷା ଦେବାପାଇଁ ସୁପ୍ରିମକୋର୍ଟ ଦ୍ୱାରା ଗଠିତ ଏକ ପରିବେଶ ବିଶେଷଜ୍ଞ କମିଟି ଆଗରେ ମୋର ଏକ ଆବେଦନ ଥିଲା । ଉକ୍ତ କମିଟି ସରକାର, କମ୍ପାନୀ, ସାଧାରଣ ଜନତା ତଥା ନିୟମଗିରିର ଆଦିବାସୀମାନଙ୍କ ଠାରୁ ଶୁଣି ଅନୁଧ୍ୟାନ କଲାପରେ ସୁପ୍ରିମ କୋର୍ଟକୁ ସୁପାରିଶକଲେ– ନିୟମଗିରିରେ ବକ୍ସାଇଟ୍ ଖଣି ଖନନ ନିଷେଧ କରିବାକୁ ଏବଂ ବେଆଇନଭାବେ ବେଦାନ୍ତ କଂପାନୀ କରୁଥିବା ଆଲୁମିନା ପ୍ଲାଣ୍ଟ ନିର୍ମାଣକୁ ବନ୍ଦ କରିବାକୁ । ଆଶା କରାଯାଉଥିଲା, ସୁପ୍ରିମ୍‌କୋର୍ଟ ନିଜ କମିଟିର ସୁପାରିଶକୁ ଆଧାରକରି ଶେଷ ଶୁଣାଣୀ ଓ ରାୟ ପର୍ଯ୍ୟନ୍ତ ନିର୍ମାଣକାର୍ଯ୍ୟ ବନ୍ଦ କରିବାକୁ ନିର୍ଦ୍ଦେଶ ଦେବେ ବୋଲି । କିନ୍ତୁ ତାହା ନ ହେବାରୁ ଅନୁଭବକରି ହେଉଥିଲା କର୍ପୋରେଟ କମ୍ପାନୀମାନଙ୍କ ରାସ୍ତା ସଫା କରିବାପାଇ କୋର୍ଟ ପ୍ରକ୍ରିୟାମଧ୍ୟ ସହାୟକ ହେଉଛି । ଦୁଇ ବର୍ଷପରେ ସୁପ୍ରିମ୍‌କୋର୍ଟରେ ଶୁଣାଣି କରୁଥିବା ବିଚାରପତିମାନେ ନିୟମଗିରିର ଡ଼ଙ୍ଗରିଆ ଆଦିବାସୀମାନଙ୍କ କଥା କହିବାକୁ ଏକ ସ୍ୱତନ୍ତ୍ର ପିଟିସନ୍‌କୁ ଗ୍ରହଣ କରିବାପରେ ବି ସେଥିପାଇଁ ଯୁକ୍ତିକରିବାକୁ ଠିଆ ହୋଇଥିବା ଆଡ଼ଭୋକେଟଙ୍କୁ କହିବାକୁ ଅନୁମତି ଦେଇନଥିଲେ । ଏପରିକି ଜଣେ ବିଚାରପତିଙ୍କ ବ୍ୟବହାର ଓ ମନ୍ତବ୍ୟରୁ ସ୍ପଷ୍ଟ ଭାବେ ସୂଚନା ମିଳୁଥିଲା ନିୟମଗିରିକୁ ହତ୍ୟାକରିବା ପାଇଁ ବେଦାନ୍ତ କମ୍ପାନୀକୁ କଂସେଇର ଲାଇସେନ୍‌ସ ମିଳିଯିବ । କିନ୍ତୁ ଏକମାସପରେ ସୁପ୍ରିମ୍‌କୋର୍ଟଙ୍କ ରାୟରେ ବେଦାନ୍ତ କମ୍ପାନୀକୁ ଖଣିଖନନ ଲାଇସେନ୍‌ସ ଦିଆଯାଇପାରିବ ନାହିଁ ବୋଲି କୁହାଯାଇଥିଲାବେଳେ ଷ୍ଟେର ଲାଇଟ୍ କମ୍ପାନୀ ଚାହିଁଲେ କେତେକ ସର୍ତ୍ତପାଳନ କରି ନୂତନଭାବେ କୋର୍ଟଙ୍କ ଦ୍ୱାରସ୍ଥ ହୋଇପାରିବ ଖଣି ଖୋଳିବା ପାଇଁ । ଏହି ରାୟ ପଢ଼ିବାବେଳେ ମୁଁ ଜଣେ ଆବେଦନକାରୀ ରୂପେ ଖୋଜୁଛି ମୋ' ସମେତ ୩ ଜଣ ଆବେଦନକାରୀଙ୍କ ଆବେଦନର ସୂଚନା କେଉଁଠି ବି ପଦେ ବି ଉଲ୍ଲେଖନାହିଁ । ପୁଣି ଆବେଦନ ଗୁଡ଼ିକର ଶୁଣାଣି କରି ସିଇସି ଦେଇଥିବା

Digitized by srujanika@gmail.com

ସୁପାରିଶକୁ ଚାଲେଞ୍ଜ କରିଛନ୍ତି କମ୍ପାନୀ ଓ ସରକାର । ଆମ ଆବେଦନରେ ଦୁଇଟି ମୂଳ ପ୍ରସଙ୍ଗ ଥିଲା । ଗୋଟିଏ, ନିୟମଗିରିରେ ବକ୍ସାଇଟ୍ ଖଣି ଖନନକୁ ନିଷେଧ କରାଯାଉ ଓ ଅନ୍ୟଟି ବେଦାନ୍ତକମ୍ପାନୀକୁ ଆଲୁମିନାପ୍ଲାଣ୍ଟ ପାଇଁ ଯେଉଁ ପରିବେଶଗତ ଅନୁମତି ମିଳିଛି ତାହା ବେଆଇନ ଓ ଫରେଷ୍ଟ ଆଇନକୁ ବିରୋଧ କରୁଛି ଓ ରାଜ୍ୟସରକାର ମିଥ୍ୟା ତଥ୍ୟ ଦେଇ ସୁପାରିଶ କରିଛନ୍ତି ଏହାକୁ ରଦ୍ଦ କରାଯାଉ। ସୁପ୍ରିମ୍‌କୋର୍ଟଙ୍କ କମିଟି ଆମର ଏହି ଦୁଇଟିକୁ ଗ୍ରହଣ କରି ପ୍ରମାଣସହ ପ୍ରତିପାଦିତ କରିଛନ୍ତି ଯେ ସମସ୍ତ ପରିବେଶ ଓ ଜଙ୍ଗଲ ସୁରକ୍ଷା ଆଇନ ଉଲଂଘନ କରାଯାଇଛି, ରାଜ୍ୟ ସରକାର ଅଯଥା କମ୍ପାନୀକୁ ଅନୁଗ୍ରହ ଦେଖାଉଛନ୍ତି, କେନ୍ଦ୍ର ପରିବେଶ ମନ୍ତ୍ରଣାଳୟ ଦେଇଥିବା ଅନୁମତି ମଧ୍ୟ ବେଆଇନ ଓ ଏହାକୁ ପ୍ରତ୍ୟାହାର କରାଯିବାକୁ ସୁପାରିଶ୍ କରାଯାଇଥିଲା । ଅତିମୂଲ୍ୟବାନ ଜୈବିବବିବିଧତାରେ ପରିପୂର୍ଣ୍ଣ, ଜଳସ୍ରୋତର ଉତ୍ସ ଓ ଆଦିବାସୀଙ୍କ ଜୀବନ ଓ ଜୀବିକାର କ୍ଷେତ୍ର ନିୟମଗିରିରେ ଖଣିଖନନ ହେଲେ ଏସବୁ ଧ୍ୱଂସ ହୋଇଯିବ । ତେଣୁ ଖଣିଖନନ ନିଷେଧ କରାଯିବାକୁ ସୁପାରିଶ କରାଗଲା । ଏହି କମିଟିର ରିପୋର୍ଟକୁ ଅକାମୀ କରିଦେବାପାଇଁ କମ୍ପାନୀ ଓ ରାଜ୍ୟସରକାର ଚାହିଁଲେ ଆଉ ଗୋଟିଏ କମିଟି ଜରିଆରେ ବନ୍ୟଜନ୍ତୁଙ୍କ ଉପରେ ତଥ୍ୟଭିତ୍ତିକ ଅନୁଧ୍ୟାନ କରାଯାଉ । ସୁପ୍ରିମକୋର୍ଟ ଏହାକୁ ଗ୍ରହଣକରି ପୁଣି କେନ୍ଦ୍ର ପରିବେଶ ମନ୍ତ୍ରଣାଳୟକୁ ନିର୍ଦ୍ଦେଶ ଦେଲେ ଯାହାଫଳରେ ଡେରାଡୁନସ୍ଥିତ "ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ୱାଇଲ୍ଡ ଲାଇଫ୍"ର ଦୁଇଜଣ ବିଶେଷଜ୍ଞ ନିୟମଗିରି ଅନୁଧ୍ୟାନକରି ଖଣିଖନନ ନିଷେଧକୁ ସମର୍ଥନକରି ଜୈବବିବିଧତା ତଥା ବିରଳ ପ୍ରଜାତିମାନଙ୍କ ଅବସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ନିୟମଗିରିର ସଂରକ୍ଷଣ ପ୍ରତି ଅଧିକ ପ୍ରାଧାନ୍ୟଦେବାକୁ ରିପୋର୍ଟରେ କହିଲେ । ଏହି ରିପୋର୍ଟର ସାରାଂଶ ଓଡ଼ିଶାରୁ ପ୍ରକାଶିତ ଦି ଷ୍ଟେଟ୍‌ସମ୍ୟାନରେ ପ୍ରକାଶିତ ହେବାପରେ ସୁପ୍ରିମକୋର୍ଟରେ ଉପସ୍ଥାପନ କାହିଁକି କରାଯାଉ ନାହିଁ ବୋଲି ଦୃଷ୍ଟି ଆକର୍ଷଣ କରିବାରୁ ଜଣେ ବିଚାରପତି ରିପୋର୍ଟକୁ ଉପସ୍ଥାପନା ବିଳମ୍ବ କାହିଁକି ପଚାରିବା ପରିବର୍ତ୍ତେ ସଂବାଦପତ୍ରକୁ କିପରି ଗଲାବୋଲି ପ୍ରଶ୍ନ କରିଥିଲେ । ଏହି ରିପୋର୍ଟକୁ ପୁଣି କଂପାନୀ ସପକ୍ଷରେ କିଛି ରାସ୍ତା ଖୋଲିବାପାଇଁ ପରବର୍ତ୍ତୀ ସମୟରେ ଆଉ ଏକ ସପ୍ଲିମେଣ୍ଟାରୀ ରିପୋର୍ଟ ଆଣିବା ବ୍ୟବସ୍ଥା କରାଗଲା ପରିବେଶ ମନ୍ତ୍ରଣାଳୟର ନିର୍ଦ୍ଦେଶରେ । ଏଥିରେ ମାଇନିଂହେଲେ ଆପତ୍ତି ନାହିଁ ବୋଲି କୁହାଗଲା । ତାହାମଧ୍ୟ ରାଜ୍ୟସରକାରଙ୍କ ଜଙ୍ଗଲ ବିଭାଗର ମତାମତକୁ ଆଧାରକରି । କିନ୍ତୁ ପ୍ରଥମ ରିପୋର୍ଟରେ ଲେଖାଯାଇଥିବା ତଥ୍ୟ ଓ ସୁପାରିଶକୁ ପ୍ରତ୍ୟାହାର କରାଯାଇନଥିଲା । ଏହି ପ୍ରକ୍ରିୟାରେ କମ୍ପାନୀ ସପକ୍ଷରେ ବିଶ୍ୱାସଯୋଗ୍ୟ ବାଟ ମିଳିବା ସହଜ ନ ହେବାରୁ ପୁଣି ଓଡ଼ିଶା ସରକାରଙ୍କ ଜଙ୍ଗଲ ବିଭାଗକୁ କୁହାଗଲା ଖଣିଖନନର ପ୍ରଭାବ ସଂକ୍ରାନ୍ତରେ ଏକ ରିପୋର୍ଟ ଦାଖଲ କରିବାକୁ । ଏହା ଯେଉଁ ରାଜ୍ୟସରକାରଙ୍କ କମ୍ପାନୀ ପ୍ରତି କାର୍ଯ୍ୟକଳାପ ଓ ଜଙ୍ଗଲ ବିଭାଗର ମିଥ୍ୟା ତଥ୍ୟ ଆଧାର ଉପରେ କମ୍ପାନୀକୁ

Digitized by srujanika@gmail.com

ନିୟମ ବହିର୍ଭୂତ ପରିବେଶଗତ ଅନୁମତି ଦିଆଯାଇଥିଲା ସେହି ସରକାରଙ୍କ ଜଙ୍ଗଲ ବିଭାଗ କିପରି ନିରପେକ୍ଷ ରିପୋର୍ଟ ଦେଇପାରିବ ? ଏ ପ୍ରଶ୍ନ ମଧ୍ୟ ଉଚ୍ଚତମ ନ୍ୟାୟାଳୟର ଖଣ୍ଡ ପୀଠରେ ବସିଥିବା ବିଚାରପତିମାନଙ୍କ ବିଚାରକୁ ଛୁଇଁଲା ନାହିଁ । ଏହି ପ୍ରକ୍ରିୟା ଭିତରେ ବେଦାନ୍ତ କମ୍ପାନୀ ପ୍ରସ୍ତୁତ ହୋଇ ରହିଥାଏ ସୁପ୍ରିମକୋର୍ଟଙ୍କ ରାୟ ପ୍ରକାଶ ଦିନ ବିଜୟ ଉତ୍ସବ ମନେଇବ । ଏହି ଅବସରରେ ନରୱେ ସରକାରଙ୍କ ବେଦାନ୍ତ କମ୍ପାନୀରୁ ନିଜଦେଶର ପେନସନ୍ ଫଣ୍ଡ ପୁଞ୍ଜି ନିବେଶକୁ ପ୍ରତ୍ୟାହାର କରିନେଇ କମ୍ପାନୀକୁ କଳା ତାଲିକାଭୁକ୍ତ କରିବା ରିପୋର୍ଟ ଆମଦେଶର ଖବର କାଗଜରେ ପ୍ରକାଶିତ ହେଲା । ନରୱେଦେଶର ଅର୍ଥମନ୍ତ୍ରଣାଳୟର ଏହି ନିଷ୍ପତ୍ତି ପାଇଁ ଆମଦେଶର ସୁପ୍ରିମକୋର୍ଟଙ୍କ ଦ୍ୱାରା ଗଠିତ କେନ୍ଦ୍ରୀୟକ୍ଷମତାସଂପନ୍ନ କମିଟି (ସି.ଇ.ସି)ଙ୍କ ନିୟମଗିରି ଓ ବେଦାନ୍ତ କମ୍ପାନୀକୁ କେନ୍ଦ୍ରକରି ଦିଆଯାଇଥିବା ସୁପାରିଶ ରିପୋର୍ଟ ଏକ ପ୍ରମୁଖ କାରଣ । ଏହାସହ ବେଦାନ୍ତର ଅନ୍ୟ ସହଯୋଗୀ ଷ୍ଟେରଲାଇଟ୍ କମ୍ପାନୀ ଆମଦେଶ ଓ ଅନ୍ୟ ଦେଶମାନଙ୍କରେ ମାନବିକ ଅଧିକାର ଉଲଂଘନ, ଆଦିବାସୀମାନଙ୍କ ଜୀବିକା ଛଡ଼ାଇନେବା ଓ ପରିବେଶ ଧ୍ୱଂସ କରିବା ତଥ୍ୟ ସଂଗ୍ରହ କରାଯାଇ ଜନବିରୋଧୀ, ପରିବେଶ ବିରୋଧୀ ଓ ଲାଞ୍ଚମିଛକୁ ଆଶ୍ରୟକରି ଜନମତକୁ ବିଭ୍ରାନ୍ତ କରୁଥିବା ବେଦାନ୍ତ-ଷ୍ଟେରଲାଇଟ୍ କମ୍ପାନୀରେ ନରୱେ ଦେଶର ଜନତାଙ୍କ ପୁଞ୍ଜିନିବେଶ ତାଙ୍କରି ଦେଶ ପକ୍ଷରେ ନୀତିହୀନକାର୍ଯ୍ୟ ବୋଲି କୁହାଯାଇଛି । ସେହି ରିପୋର୍ଟକୁ ଆଧାର କରି 'ଟାଇମସ୍ ଅଫ୍ ଇଣ୍ଡିଆ'ର ପ୍ରଥମ ପୃଷ୍ଠାରେ ଖବର ପ୍ରକାଶିତ ହେଲା ''ନରୱେପାଇଁ ଖରାପ, ଓଡ଼ିଶା ପାଇଁ ଉତ୍ତମ'' ଶିରୋନାମରେ । ନିୟମଗିରିକୁ କମ୍ପାନୀ-ରାକ୍ଷସ ହାତରୁ ବଞ୍ଚାଇବାପାଇଁ ମୋ' ସମେତ ନିୟମଗିରିବାସୀ ଡଙ୍ଗରିଆ ଆଦିବାସୀ ପ୍ରତିନିଧିମାନେ ଦିଲ୍ଲୀ ସାଂବାଦିକ ସମ୍ମିଳନୀରେ ଏ କଥାକୁ ଉଠାଇଥିଲୁ । ତାପରଦିନ ୧୭-୧୧-୦୭ର ଦା ହିନ୍ଦୁସ୍ତାନ୍ ଟାଇମ୍‌ସ ଏକ ସଂପାଦକୀୟରେ ବି ନରୱେଦେଶର ଏହି ନିଷ୍ପତ୍ତିକୁ ଉଲ୍ଲେଖକରି ଆମଦେଶରେ ଏପରି କମ୍ପାନୀମାନଙ୍କ ହାତରୁ ପ୍ରାକୃତିକ ସଂବଳକୁ ରକ୍ଷାକରିବାପାଇଁ ଲେଖାଯାଇଛି । ଠିକ୍ ଏକ ସପ୍ତାହପରେ ସୁପ୍ରିମ୍‌କୋର୍ଟଙ୍କ ରାୟରେ ବେଦାନ୍ତ କମ୍ପାନୀ ପ୍ରତି ଅବିଶ୍ୱସନୀୟତା ପ୍ରକାଶକରି ନିୟମଗିରିରେ ଖଣିଖନନ ଅନୁମତି ଦେବାକୁ ମନା କରିଦିଆଗଲା । ସେହି କମ୍ପାନୀ ଉପରେ ଅବିଶ୍ୱାସ ପ୍ରକାଶ କରାଯାଇଛି ଏବଂ ନିୟମଗିରିର ମୂଲ୍ୟବାନ ଜୈବିବିବିଧତା ଓ ଜଙ୍ଗଲ ଓ ଜଳ ସଂପଦକୁ ପ୍ରମୁଖ ଜାତୀୟ ସଂବଳ ରୂପେ ସ୍ୱୀକାର କରାଯାଇଛି । କିନ୍ତୁ ଏହି ଜାତୀୟ ସପଂଦକୁ ଗର୍ଭରେ ଧରିଥିବା ନିୟମଗିରିକୁ ହତ୍ୟା କରିବାପାଇଁ ବେଦାନ୍ତ କମ୍ପାନୀକୁ କଂସେଇ ଲାଇସେନସ୍ ଦିଆନଯାଇ ଷ୍ଟେର୍‌ଲାଇଟ୍ କମ୍ପାନୀକୁ ଦେବାପାଇଁ ସୁପ୍ରିମ୍‌କୋର୍ଟଙ୍କ ରାୟରେ ବାଟଖୋଲି ଦିଆଯାଇଛି । ବେଦାନ୍ତ ଓ ଷ୍ଟେରଲାଇଟ୍‌ର ମୁଖ୍ୟ ମାଲିକ ହେଉଛନ୍ତି ଜଣେ । ସେ ଅନୀଲ ଅଗ୍ରୱାଲା ନାମରେ ପରିଚିତ । ଷ୍ଟେର୍‌ଲାଇଟର ବିଭିନ୍ନ ପ୍ରକଳ୍ପରେ ୭୦ ରୁ ୮୦% ଅଂଶଧନ

Digitized by srujanika@gmail.com

ବେଦାନ୍ତର । ବେଦାନ୍ତ ବଦଳରେ ଷ୍ଟେର୍‌ଲାଇଟକୁ ଅନୁମତି ଦେବାପାଇଁ ସବୁଜ ସଂକେତ ଦେବା ଅର୍ଥ ଧର୍ମକୁ ଆଖି ଠାରିବା । ନିୟମଗିରିରେ ଖଣିଖନନକୁ ନିଷେଧ କରିବାପାଇଁ ନିଜ ବିଶେଷଜ୍ଞ କମିଟିର ସୁପାରିଶକୁ ଏଡ଼ାଇଦେଇ ସୁପ୍ରିମ୍‌କୋର୍ଟଙ୍କ ଖଣ୍ଡପୀଠ ନୀତିଗତ ଭାବେ ଖଣିଖନନକୁ ମନା କରୁନାହାନ୍ତି ବୋଲି କହିବା ନ୍ୟାୟ ତୁଳିର କେଉଁ ମାପଦଣ୍ଡ ନିର୍ଦ୍ଧାରିତ କରୁଛି ? ପୁଣି ଯେଉଁ କମ୍ପାନୀ ବିରୋଧରେ ଅଭିଯୋଗ କରାଯାଇଛି, ତାକୁ ମନାକଲାପରେ ତାର ଅନ୍ୟ ନାମରେ ଥିବା କଂପାନୀକୁ ଦେବାକୁ ପ୍ରସ୍ତାବ କରିବା ନ୍ୟାୟାଳୟ ପକ୍ଷେ ପ୍ରାସଙ୍ଗିକ କି ? ଏ ପ୍ରଶ୍ନ ଜଣେ ଆବେଦନକାରୀ ରୂପେ ପଚାରିବା ଅଧିକାର ଅଛି । ଏପରି ଏକ ରାୟ ଦେଶକୁ ଆର୍ଥିକ ସାମ୍ରାଜ୍ୟବାଦ ଓ ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କ ଔପନିବେଶିକ ଜାଲ ଭିତରକୁ ଠେଲି ଦେବାରେ ସହାୟକ ହେବ । ନ୍ୟାୟାଳୟର ନିଷ୍ପତ୍ତି କମ୍ପାନୀ ସେବାରେ ନିୟୋଜିତ ହେବ । ପ୍ରାକୃତିକ ସଂବଳର ମାଲିକ ଜନତା ସରକାର ଏକ ପ୍ରତିନିଧି, ମାଲିକ ନୁହଁ । ତେଣୁ ନିୟମଗିରିକୁ କଂସେଇ ହାତରୁ ରକ୍ଷାକରିବା ଦାୟିତ୍ୱ ଲୋକଙ୍କର । ଲୋକେ ନିଜ ଅଧିକାରକୁ ସାବ୍ୟସ୍ତ କଲାବେଳେ ଅଧିକାର ଗୁଡ଼ିକୁ ସୁରକ୍ଷାଦେଇ ପାରୁନଥିବା ସାଂବିଧାନିକ ବ୍ୟବସ୍ଥାଗୁଡ଼ିକୁ ମଧ ମାନିବାକୁ ପ୍ରସ୍ତୁତ ନ ହୋଇ ପାରନ୍ତି ।

ଏହି ଘଟଣାକୁ ଉଲ୍ଲେଖ କରିବା ଉଦ୍ଦେଶ୍ୟ ହେଲା– ଆମଦେଶର ସମସ୍ତ ଗଣତାନ୍ତ୍ରିକ ବ୍ୟବସ୍ଥାଗୁଡ଼ିକ ଲୋକଙ୍କ ପାଇଁ, ଲୋକଙ୍କର ହୋଇପାରୁ ନାହାନ୍ତି । ବରଂ ଲୋକଙ୍କନାମରେ, ଦେଶର ପ୍ରଗତି ନାମରେ ଏବେ ବିଦେଶୀ–ଦେଶୀ କମ୍ପାନୀମାନଙ୍କ ମୁନାଫାପାଇଁ ବିକାଶର ଢ଼ାଞ୍ଚାକୁ ନୀତିଗତଭାବେ ଗ୍ରହଣ କରାଯାଉଛି । ଏପରି ଚିନ୍ତନ ଓ ମାନସିକତା ଗଣତାନ୍ତ୍ରିକ ମୂଲ୍ୟବୋଧର ପରିପନ୍ଥୀ । ତେଣୁ ଜନବିଦ୍ରୋହ ଅପରିହାର୍ଯ୍ୟ । ଏବେ ଲୋକଙ୍କ ନିଜ ବଞ୍ଚିବା ଅଧିକାର, ସାମାନ୍ୟତମ ନିଜର ଭିଟାମାଟିର ସୁରକ୍ଷାପାଇଁ କଥା କହିବାର ଅଧିକାର ଯଦି ରହିବ ନାହିଁ, ତାହାହେଲେ ଲୋକଙ୍କ ଶବ ଉପରେ ବିକାଶର ଅଟ୍ଟାଳିକା ନିର୍ମିତ ହେବାପରେ ଆଉ ଆମେ ଗଣତାନ୍ତ୍ରିକ, ସାର୍ବଭୌମ ରାଷ୍ଟ୍ର ବୋଲି କହିପାରିବା କି ? ବିରୋଧୀ ସମର୍ଥକ ମଧ୍ୟରେ ଏ ଲଢ଼େଇ ନୁହେଁ । ରାଷ୍ଟ୍ରର ଦାୟିତ୍ୱ ପ୍ରତ୍ୟେକ ମଣିଷର ବଞ୍ଚିବାର ସୁରକ୍ଷା କରିବ ନା ପୁଞ୍ଜିପତି ସାମ୍ରାଜ୍ୟବାଦ ତଥା ମୁନାଫାକାରୀ ଶିଳ୍ପପତିମାନଙ୍କ ପାଇଁ ଗଣତନ୍ତ୍ରର କବର ଉପରେ ଠିଆ ହୋଇ ବିକାଶର ଧ୍ୱଜା ଉଡ଼ାଇବ ? ସ୍ୱାଧୀନତା, ସାର୍ବଭୌମତ୍ୱ ଓ ସମାଜ ବଦଳରେ ବିକାଶ କାହାପାଇଁ ?



Digitized by srujanika@gmail.com

# ସଭ୍ୟତାର ଅନ୍ଧ ଦିଗନ୍ତ

ପୃଥିବୀର ଯେକୌଣସି ଅଞ୍ଚଳର ମଣିଷ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସ୍ୱାଧୀନ ନାଗରିକ ଭାବରେ ବଞ୍ଚି ରହିବାକୁ ଚାହେଁ । ସ୍ୱାଭାବିକ ଜୀବନର ସର୍ବୋଚ୍ଚ କାମନା ହେଉଛି ତା' ସ୍ୱାଭିମାନ ସୁରକ୍ଷିତ ରହୁ । ଯାହାର ସ୍ୱାଭିମାନ ହଜିଯାଇଛି ବା ଭୂଲୁଣ୍ଠିତ ହୋଇଛି, ତାକୁ ପୁନଃ ଫେରିପାଇବାର ଆକାଂକ୍ଷା ପ୍ରତିଫଳିତ ହେଉଥାଏ ନିଜ କର୍ମମୟ ଜୀବନରେ । ବ୍ୟକ୍ତିଗତ ଜୀବନରେ ସ୍ୱାଭିମାନର ପ୍ରତିଷ୍ଠା ହିଁ ନିଜ ଜାତି ତଥା ଦେଶର ସ୍ୱାଭିମାନ ପାଇଁ ଚେତନା ସୃଷ୍ଟିକରେ । ସ୍ୱାଭିମାନର ଅର୍ଥ ବ୍ୟକ୍ତିଗତ ପ୍ରତିଷ୍ଠା ଠାରୁ ଯଥେଷ୍ଟ ଭିନ୍ନ । କାରଣ ସ୍ୱାଭିମାନୀ ମଣିଷ କିମ୍ବା ଜାତିର ପ୍ରାଣ ସ୍ପନ୍ଦନରେ ସଚ୍ଚୋଟତା, ସହୃଦୟତା ସହ ନିର୍ଭୀକତା ପ୍ରତିଫଳିତ ହେଉଥାଏ ଯେଉଁଥିପାଇଁ ସେ ସର୍ବସ୍ୱ ତ୍ୟାଗ କରିବାକୁ ପ୍ରସ୍ତୁତ, କିନ୍ତୁ ସ୍ୱାଭିମାନକୁ ତୁଚ୍ଛ କରି ମଣିଷମାନଙ୍କ ମଧ୍ୟରେ ପଲେ ଅମଣିଷ ଆଧିପତ୍ୟ ବିସ୍ତାର କରିଥାନ୍ତି ଶୋଷଣର ଜାଲ ବିଛାଇ । ଶୋଷଣକୁ ବିଶ୍ୱ ସ୍ତରରେ ଅଧିକରୁ ଅଧିକ ତ୍ୱରାନ୍ୱିତ କରୁଛି ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟାର ଯାଦୁ । ଆଜି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ନିୟନ୍ତ୍ରଣ ସାମ୍ରାଜ୍ୟବାଦ ଶକ୍ତି ହାତରେ । ଜଗତୀକରଣ ନାମରେ ବିକାଶକୁ ଏପରି ଏକ ଅବସ୍ଥାକୁ ନିଆ ଯାଇଛି ଯେ, ଜଣେ ସାଧାରଣ ମଣିଷର ସ୍ୱାଭିମାନ ଦିଗଟିକୁ ସମ୍ପୂର୍ଣ୍ଣ ଭାବେ ଅନ୍ଧାର ଭିତରକୁ ଠେଲି ଦିଆଯାଉଛି । ଯିଏ ଶୋଷଣହୀନ ସମାଜ ଓ ସଭ୍ୟତାର ପରିଚୟ ଦେବାକୁ ଯାଇ ସ୍ୱଳ୍ପରେହିଁ ସନ୍ତୁଷ୍ଟ ହୋଇଯାଏ ଏବଂ ଏକ ସରଳ ଜୀବନ ସହ ନିଜ ସ୍ୱାଭିମାନ ପ୍ରତି ଗର୍ବିତ, ତାକୁ ଯାଦୁଗରୀ ପ୍ରଯୁକ୍ତି ବିଦ୍ୟାର ସଫଳତା ପରାଧୀନତା ଆଡ଼କୁ ଠେଲି ଦେଇ ଚାଲିଛି । ଫଳରେ ଅନେକ ଜାତି, ଦେଶ ନିଜ ସ୍ୱାଭିମାନର ପୁନରୁଦ୍ଧାର ପାଇଁ ବିକଳ୍ପର ସନ୍ଧାନରେ ଛଟପଟ ହେଉଛନ୍ତି ଯଦିଚ ସେମାନଙ୍କ ଦ୍ୱାରା ନିର୍ବାଚିତ ସରକାରମାନେ ବିଶ୍ୱାସଘାତକତା କରି ଚାଲିଛନ୍ତି ।

ନିଜ ସ୍ଥିତିରେ ରହି ଯଦି ଜଣେ ନିମ୍ନକୁ ଚାହିଁବ, ତେବେ ସର୍ବନିମ୍ନରେ ପଡ଼ିରହିଥିବା ମଣିଷର ମନ ଭିତରକୁ ଯାଇ ପଢ଼ିବାକୁ ଚେଷ୍ଟା କଲେ ବୁଝିହେବ, ସେ ମଧ୍ୟ ସନ୍ତୁଳିତ ହେଉଛି ତା' ସ୍ୱାଭିମାନୀ ଜୀବନଟିକୁ ଫେରିପାଇବା ପାଇଁ । ସେ କାହାର ଦୟାର ପାତ୍ର ହେବାକୁ ଚାହେଁନା, ଯଦିଚ ଅତୀତର ତାଡ଼ନାରେ ସେ ହାତପାତି ମାଗିବାକୁ ବାଧ

Digitized by srujanika@gmail.com

ହେଉଛି ବଞ୍ଚିବାପାଇଁ । କିନ୍ତୁ ସେୟା କ'ଣ ତା'ର ଜୀବନ ? ତାହା ତା'ର ଜୀବନ ନୁହେଁ । ଏହି ଅନୁଭବକୁ ଜଣେ ସ୍ୱାଭିମାନୀ ମଣିଷର ଦୃଷ୍ଟିଭଙ୍ଗୀରେ ମାଟିର ମଣିଷ ନିଜ ଜୀବନ ଓ ଜୀବିକାର ଅଧିକାର ପାଇଁ କରୁଥିବା ସଂଗ୍ରାମକୁ ତନ୍ନତନ୍ନ କରି ନିରୀକ୍ଷଣ କରିପାରିବ ।

## ସ୍ୱାଭିମାନର ସ୍ୱରରେ ସଭ୍ୟତାର ପରିଚୟ

ଜାତି, ବର୍ଣ୍ଣ, ଲିଙ୍ଗ, ଧନୀ, ଦରିଦ୍ର **ଶିକ୍ଷିତ ଓ ଅଶିକ୍ଷିତ** ନିର୍ବିଶେଷରେ ମଣିଷ ନିଜ ଅବଚେତନ ମନରେ ବି ଆତ୍ମସମ୍ମାନର ଅଧିକାରୀ ହେବାପାଇଁ ସର୍ବଦା ଇଚ୍ଛୁକ । ଏହା ପ୍ରକୃତି ଓ ପ୍ରବୃତ୍ତିର ଏକ ସ୍ୱାଭାବିକ ଚିନ୍ତନ ପ୍ରକ୍ରିୟାର ଅନ୍ତର୍ନିହିତ ସ୍ୱଭାବ । ଏପରି ଏକ ଚିରନ୍ତନ ସ୍ୱାଧିକାର ଯେତେବେଳେ ଯେ କୌଣସି କାରଣରୁ ଅବକ୍ଷୟ ହୁଏ, ସେତିକିବେଳେ ମଣିଷର ମହତ୍ ଆକାଂକ୍ଷା ଉପରେ ପ୍ରଚଣ୍ଡ ଆକ୍ରମଣ ସ୍ୱରୂପ ନିଜ ଅସ୍ମିତାର ଉଦୟ ବାଧାପ୍ରାପ୍ତ ହୁଏ । ଫଳରେ ରାକ୍ଷସ ଶକ୍ତିର ଭିନ୍ନ ଭିନ୍ନ ରୂପ ପ୍ରବୃତ୍ତି ଭିତରେ ଆତ୍ମପ୍ରକାଶ କରି ମଣିଷ ଆଉ ଏକ ମଣିଷ ଉପରେ ଶାରୀରିକ ଓ ମାନସିକ ସ୍ତରରେ ଆଧିପତ୍ୟ ବିସ୍ତାରକରେ । ଏପରି ଏକ ଅଭ୍ୟାସ ଯେତେବେଳେ ଗୋଷ୍ଠୀଗତ, କିମ୍ବା ବଂଶଗତ ପରମ୍ପରାରେ ପରିଣତ ହୋଇଯାଏ, ଇତିହାସ ପୃଷ୍ଠାରେ ତାହା ସାମାଜିକ ବ୍ୟବସ୍ଥାର ଏକ ଅଙ୍ଗ ହୋଇଯାଏ । ଯାହାକୁ ପରବର୍ତ୍ତୀ ସମୟରେ ଭାଙ୍ଗି ଫୋପାଡ଼ି ଐତିହାସିକ ପୁରୁଷମାନେ ପରିବର୍ତ୍ତନ ପାଇଁ ଆହ୍ୱାନ କରିଥାନ୍ତି ।

ପରିବର୍ତ୍ତନର ଯଥାର୍ଥତାକୁ ଗ୍ରହଣ କରୁଥିଲେ ମଧ ଅନେକେ ସେହି ପରିବର୍ତ୍ତନ ପାଇଁ ଆବଶ୍ୟକ ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । ଅନ୍ୟ ପକ୍ଷରେ ପରିବର୍ତ୍ତନର ଦିଗକୁ ଏପରି ଭାବରେ ମୋଡ଼ନ୍ତି, ଯେଉଁଠେ ତ୍ୟାଗବଦଳରେ ଭୋଗର ଆକାଂକ୍ଷା ଚରିତାର୍ଥ ହୁଏ । ସେପରି ପରିବର୍ତ୍ତନକୁ ଖୁବ୍ ପ୍ରଗତିଶୀଳ ରୂପଦେଇ ସଭ୍ୟତାର ମାପକାଠି ବୋଲି ଅଭିହିତ କରାଇବାରେ ସଫଳ ହୋଇଥା'ନ୍ତି । ଫଳରେ ଆଲୋକିତ ପରିସର ମଧ୍ୟରେ ବି ଅନ୍ଧକାର ପରିବେଶରୁ ମୁକ୍ତି ମିଳେ ନାହିଁ ।

ଆଜି ସଭ୍ୟତାର ପ୍ରତୀକ ଆଧୁନିକତାର ଆଲୋକ ପାଇଁ ବିଶ୍ୱର ପ୍ରାୟ ଦୁଇ ତୃତୀୟାଂଶ ଜନତା ନୈରାଶ୍ୟ ଓ ହତାଶ ମଧ୍ୟରେ ସଂଘର୍ଷରତ ଥିଲାବେଳେ ଅତ୍ୟାଧୁନିକତାର ଭୋଗବିଳାସର ପ୍ରତିଯୋଗିତା ଧନୀ ଓ ଗରିବ ରାଷ୍ଟ୍ର, ରାଷ୍ଟ୍ର ଭିତରେ ଧନୀ ଓ ଦରିଦ୍ର ଏବଂ ଆଞ୍ଚଳିକ ସ୍ତରରେ ଉନ୍ନତ ଓ ଅନୁନ୍ନତ ଶ୍ରେଣୀ ମଧ୍ୟରେ ଅସମତାର ମାତ୍ରା ବୃଦ୍ଧି କରିବା ସହ ମଣିଷ-ମଣିଷ ମଧ୍ୟରେ ଭିନ୍ନ ଭିନ୍ନ ଦୃଷ୍ଟି ଭଙ୍ଗୀର ବିରାଟ ପ୍ରାଚୀର ସୃଷ୍ଟି କରି ଚାଲିଛି । ଏହା ସମଗ୍ର ମାନବ ଜାତିର ସ୍ଥିତି ପାଇଁ ମୁଖ୍ୟ ସଂକଟରେ ପରିଣତ ହୋଇଛି । ଆଜି ସେଥିପାଇଁ ନ୍ୟୁୟର୍କ, ଲଣ୍ଡନ ପରି ସହର ଭୋଗର ସ୍ୱର୍ଗରୂପେ ଠିଆ ହୋଇଥିଲାବେଳେ

Digitized by srujanika@gmail.com

ଆଫ୍ରିକାର ସୋମାଲିଆ, ଇଥୋପିଆରେ ନରକଙ୍କାଳର ଭୋକିଲା ଚିତ୍କାର ମଧ୍ୟରେ କ୍ଷମତାର ଲଢ଼େଇ ଚାଲିଛି । ଭାରତ ପରି ପାଞ୍ଚ ହଜାର ବର୍ଷର ସଂସ୍କୃତି-ସଂପନ୍ନ ମାଟିରେ ଆଜି ବି ଓଡ଼ିଶାର ଦାରିଦ୍ର୍ୟର ମାପକାଠି ଭୋକିଲା ଶିଶୁ ବିକ୍ରି । ଫୁଲବାଣୀ, କୋରାପୁଟ ପାହାଡ଼ୀ ଗାଁ ମାନଙ୍କର ଅଭାବର ସଂକେତ ଅଖାଦ୍ୟ ଭକ୍ଷଣରେ ଆଦିବାସୀଙ୍କ ଅପମୃତ୍ୟୁକୁ ରୋକିବା ପାଇଁ ସଫଳ ହୋଇନଥିବାବେଳେ ଲୋକ ସଂସ୍କୃତିର ମାଟି ଓଡ଼ିଶାର ବେଳାଭୂମିରେ ପଞ୍ଚ ତାରକା ସଂସ୍କୃତିର ପୃଷ୍ଠପୋଷକତା କରାଯାଉଛି ଏବଂ ବିଶ୍ୱୀକରଣ ଭଣ୍ଡାମିର ପ୍ରତିଧ୍ୱନିରେ ହଜିଯାଇଥିବା ସ୍ୱାଭିମାନକୁ ବଞ୍ଚାଇବା ବଦଳରେ ହତ୍ୟା କରାଯାଉଛି । ଆଜି ବି ପୃଥିବୀର ଅନେକ ଗୋରାଙ୍କ ଆଧିପତ୍ୟରୁ ବହୁକଳାଲୋକ ମୁକ୍ତିର ସୂର୍ଯ୍ୟୋଦୟ ପାଇଁ ଚେଇଁ ବସିଛନ୍ତି । ଇସଲାମ ରାଷ୍ଟ୍ରମାନଙ୍କରେ ବୁର୍ଖାର ଆଢୁଆଳରେ ନିଷ୍ପେଷିତା ନାରୀର ମୁକ୍ତିପାଇଁ ଆଧୁନିକ ବିଶ୍ୱନୀରବ । ଏବେବି **"ବସୁଧୈବ କୁଟୁମ୍ବକମ୍"** ଦର୍ଶନର ପ୍ରତିନିଧିତ୍ୱ କରୁଥିବା ମାତୃଭୂମି ଭାରତବର୍ଷରେ ଧର୍ମ ଓ ଜାତିଗତ ଅସମତାର ଦୁର୍ଗନ୍ଧ ଅଳିଆ ଭିତରେ ଦଳେ ମଣିଷ ଅଛୁଆଁ ଥିଲାବେଳେ, ଆଉଦଳେ ଲଙ୍ଗଳା ଯେଉଁମାନେ ଏକ ସଭ୍ୟ ସମାଜର ମୌଳିକ ଅଧିକାରରୁ ବହୁ ଦୂରରେ । ମଣିଷ, ଆଉଏକ ମଣିଷ ପାଖରେ ହୀନ ଓ ଶୋଷଣର ଶିକାର ହେଲାବେଳେ କିଏ କାହାକୁ ନେଇ ଗର୍ବାନ୍ୱିତ ହେବ ? ମଣିଷକୁ ନେଇ ସମାଜ ଓ ସମାଜକୁ ନେଇ ରାଷ୍ଟ୍ର । ମଣିଷ ସମାଜ ଭିତରେ ଅମଣିଷମାନଙ୍କ ରାଜତ୍ୱ ସମାଜକୁ ପଙ୍ଗୁ କରିଦିଏ । ଏକ ପଂଗୁ ସମାଜ ରାଷ୍ଟ୍ରର ଏକତାକୁ ସମାଧି ଦିଏ । ଏକ ସଭ୍ୟ ସମାଜ ସମତା ଓ ପ୍ରକୃତ ନ୍ୟାୟ ଉପରେ ଠିଆ ହୋଇଥାଏ । ସଭ୍ୟତାର ପ୍ରତିଫଳନରେ ରାଷ୍ଟ୍ରୀୟ ଜୀବନ ସରସ ସୁନ୍ଦର ହୁଏ ଏବଂ ସଭ୍ୟ ନାଗରିକମାନଙ୍କ ଐକ୍ୟର ପ୍ରତୀକ ଏକ ସାର୍ବଭୌମ ରାଷ୍ଟ୍ର ସଭ୍ୟତାର ବିକାଶ ଓ ବିକିରଣ କରାଏ । ଯଦି ରାଷ୍ଟ୍ର ଏକ ବର୍ବର ଓ ଅମାନୁଷିକ କ୍ଷମତାର କେନ୍ଦ୍ର ହୋଇଯାଏ ଫଳରେ କ୍ଷମତାଲିପ୍ସୁ ଶାସକମାନଙ୍କ ହାତରେ, ରାଷ୍ଟ୍ର ଶକ୍ତି ସମାଜକୁ ଭାଙ୍ଗିଦିଏ । ସମାଜ ଭାଙ୍ଗିଗଲେ ସଭ୍ୟତା ହଜିଯାଏ । ପୁଣି ମଣିଷ ସଂଗ୍ରାମକରେ ନୂଆ ସମାଜ ନିର୍ମାଣ ପାଇଁ । ସମାଜ ଓ ସଭ୍ୟତା ସବୁବେଳେ ପରିପୂରକ । ତେଣୁ ସମାଜର ଚରିତ୍ର ସଭ୍ୟତାର ଭିନ୍ନ ଭିନ୍ନ ଦିଗନ୍ତ ସୃଷ୍ଟିକରେ ଏବଂ ସଭ୍ୟତାର ନୂଆଁ ନୂଆଁ ଦର୍ଶନଗୁଡ଼ିକ ସମାଜକୁ ପରିପୂର୍ଣ୍ଣ କରେ ।

ଆଜି ସେଇଥିପାଇଁ ଆତ୍ମ ପ୍ରତ୍ୟୟର ଆହ୍ୱାନକୁ ଗ୍ରହଣ କରି ଅନ୍ଧାରର ଘିଟାବଘାକୁ ଭାଙ୍ଗିଦେଇ ବ୍ୟକ୍ତିଗତ ଭାବେ ପ୍ରତ୍ୟେକମଣିଷ ନିର୍ଜ୍ଜ ଚିନ୍ତନ ପ୍ରକ୍ରିୟାକୁ ପ୍ରଜ୍ୱଳିତ କରୁ । ଆତ୍ମ ସମ୍ମାନର ଅଧିକାରୀ ହେବାର ମହତ୍ ଆକାଂକ୍ଷାକୁ ପୁନଃସ୍ଥାପନା କରିବାର ଆବଶ୍ୟକତା ଏକାନ୍ତ ବାଞ୍ଛନୀୟ । ଆତ୍ମ ସମ୍ମାନର ଅଭାବରୁ ମଣିଷ ହୀନମନ୍ୟତାର ଶିକାର ହୋଇଛି । ଅସମତା ନିଜ ଭାଗ୍ୟର ଦୋଷବୋଲି ଭ୍ରାନ୍ତ ଧାରଣାରୁ ଏପର୍ଯ୍ୟନ୍ତ ନିଜକୁ ମୁକ୍ତକରି

Digitized by srujanika@gmail.com

ପାରିନାହିଁ । ଫଳରେ ଖୁବ୍ ଦୁର୍ବଳ, ହୀନ ଚରିତ୍ର ଓ କ୍ଷୁଦ୍ରମନା ଅହଂକାରୀମାନେ ନିଜ ନିଜ ସାମ୍ରାଜ୍ୟ ବିସ୍ତାରକରି ଚାଲିଛନ୍ତି ନୂଆ ନୂଆ ମାରାତ୍ମକ ଅସମତା ସୂତ୍ରପାତ କରି । ଆତ୍ମସମ୍ମାନ ସମ୍ପନ୍ନପର ଅସମତାର ବିଷବଳୟରୁ ମୁକ୍ତି ମିଳିବାପରେ ।

ସେହି ଆତ୍ମ ସମ୍ମାନର ଅନ୍ୟନାମ ସ୍ୱାଭିମାନ । ମଣିଷ, ମଣିଷ ପରି ବଞ୍ଚିବାର ବାଟପାଇଁ ଗୌତମ ବୁଦ୍ଧଙ୍କର ସାଧନା, କାର୍ଲମାର୍କସ୍‌ଙ୍କ ଶ୍ରେଣୀହୀନ ସମାଜର ଚେତନା ଓ ମହାତ୍ମା ଗାନ୍ଧୀଙ୍କର ସ୍ୱରାଜର ମୂଲ୍ୟବୋଧ ଆମପାଇଁ ଅମୂଲ୍ୟ ଅବଦାନ । ସ୍ୱାବଲମ୍ବନଶୀଳ ଆର୍ଥିକ ଓ ସାମାଜିକ ବିକାଶରେ ହିଁ ସ୍ୱାଭିମାନର ଭିତ୍ତି ସୃଷ୍ଟିହୁଏ । ସ୍ୱାମୀ ବିବେକାନନ୍ଦ ମଣିଷ ସମାଜରେ ମିଥ୍ୟା ଅସମତାକୁ ହଟାଇବା ପାଇଁ ଆଧ୍ୟାତ୍ମିକତାବାଦକୁ ବ୍ୟବହାର କରିଥିଲେ । ସେଇଥିପାଇଁ ନିଜ ସାଧନାଦ୍ୱ ଜଣେ ଧର୍ମଯାଜକ ଅପେକ୍ଷା ସମାଜ ସଂସ୍କାରକ ରୂପେ ପ୍ରତିପାଦିତ କରିଥିଲେ । ଜ୍ଞାନ ଓ କଳାର ପ୍ରତୀକ କୋଣାର୍କ ମନ୍ଦିର ନିର୍ମାତା ଧର୍ମପଦ ଓ ସ୍ୱାଧୀନତା ସଂଗ୍ରାମର ଶହୀଦ ବାଳକ ବାଜିରାଉତ ସ୍ୱାଭିମାନର ଜୀବନ୍ତ ନିଶାନ ହୋଇ ରହିଛନ୍ତି । ଉତ୍କଳ ଗୌରବ ମଧୁବାବୁଙ୍କ ବ୍ୟାକୁଳତାରେ ରାଜ୍ୟର ସ୍ୱାଭିମାନ ପ୍ରଥମ ସ୍ଥାନ ଅଧିକାର କରିଥିଲା । ଉତ୍କଳମଣି ଗୋପବନ୍ଧୁଙ୍କ ନିଃସ୍ୱାର୍ଥପର ସେବା ଜରିଆରେ ଦାରିଦ୍ର୍ୟର ତାଡନାରେ ନିଜକୁ ସାମିଲକରି ସମସ୍ତ ନିଃସହାୟ ମଣିଷଙ୍କ ସ୍ୱାଭିମାନକୁ ଫେରାଇ ଆଣିବାକୁ ଉଦ୍ୟମ କରିଥିଲେ ।

ସେପରି ଆନ୍ତରିକ ଉଦ୍ୟମର ଅଭାବରେ ଆଜି ଯୁବକ କ'ଣ ଦିଗହରା ? ଯୁବକକୁ ତା'ଜୀବନରେ ମୌଳିକ ପ୍ରଶ୍ନ ପଚାରିଲେ ତା'ଠାରୁ ଉତ୍ତର ମିଳୁନାହିଁ । ସବୁରି ମୁହଁରେ ନୈରାଶ୍ୟ ଓ ହତାଶ । ... ଅନେକଙ୍କ ଭାଷାରେ ପ୍ରାଣ ନଥାଏ, କହିପକାଏ "ମୋର ଅର୍ଥନାହିଁ କି ପଛରେ କ୍ଷମତା ନାହିଁ । ଚାକିରୀ ମିଳିବ କିପରି ?" ସତେଯେପରିକି ଅର୍ଥ ଓ କ୍ଷମତାର ପ୍ରଭାବରେ ଖଣ୍ଡିଏ ଚାକିରୀ ତା'ର ସର୍ବାଙ୍ଗ ବିକାଶର ମାପକାଠି ! କିନ୍ତୁ ତା ସମସ୍ୟାର ମୂଳ କାରଣ ଶୋଷଣ, ଭ୍ରଷ୍ଟାଚାର ଓ ଅନ୍ୟାୟର ସାମନା କରିବାକୁ ପଡ଼ିଲେ ସେ ପଳାତକ ରୂପେ କାହାରି ଦୟା କିମ୍ବା ମିଥ୍ୟା ଭରସାର ଅନ୍ଧ ଅନୁଗାମୀ ହୋଇ ଶେଷରେ ହତାଶ ହେବାକୁ ବାଧ୍ୟ ହୁଏ । ନିଜ ମୌଳିକ ଅଧିକାରକୁ ସାବ୍ୟସ୍ତ କରିବାକୁ ନିଜର ତେଜସ୍ୱୀତାକୁ ଭୁଲିଯାଇଛି । ମୋ' "ଦେଶ ... ମୋ' ରାଜ୍ୟ, ମୋ' ଗାଁରେ ମୋର ଆବଶ୍ୟକତା" ପ୍ରତି ଆଖି ବୁଜି ଦେଇ ନିଜ ଗୋଡ଼ରେ ଠିଆ ହେବାର ପ୍ରତିଜ୍ଞା ଓ ଇଚ୍ଛାଶକ୍ତିକୁ ହରାଇ ବସିଛି ।' ବିଦେଶୀ ଜିନ୍‌ଜନାର ପେଣ୍ଟ ପିନ୍ଧି ପାନ ଦୋକାନ ପାଖରେ ପେପ୍‌ସି ବୋତଲ ଧରି ଦଳେ ଦଳେ ଯୁବକ ଅର୍ଥହୀନ ଗପ କରୁଥିବା ବେଳେ ସେମାନଙ୍କ ଚେହେରାରୁ ପ୍ରତିଫଳନ ହୁଏ – ଏକ ଅନ୍ଧକାର ଭବିଷ୍ୟତ ଯେଉଁଠାରେ ସ୍ୱାଭିମାନର ସ୍ୱପ୍ନ ବି ଦେଖି ହୁଏନି ।

Digitized by srujanika@gmail.com

ବ୍ୟକ୍ତିଗତ ଓ ସାମୂହିକ ଜୀବନରେ ସ୍ୱାଭିମାନ ଏକାନ୍ତ କାମ୍ୟ । ଏକ ଜାତିର ସ୍ୱାଭିମାନ ସେହି ଜାତିର ତଥା ଦେଶ ଓ ରାଜ୍ୟର ନାଗରିକ ମାନଙ୍କର ଆତ୍ମସମ୍ମାନ ଓ ଗଣତାନ୍ତ୍ରିକ ଅନୁଷ୍ଠାନମାନଙ୍କର ସ୍ୱାଭିମାନ ଉପରେ ନିର୍ଭର କରେ । ଗୋଟିଏ ପକ୍ଷରେ ଆଧୁନିକତାର ଅଂଧ ଦିଗନ୍ତର ପଥିକ ହୋଇ ମଣିଷ ଦିନକୁ ଦିନ ଭୀରୁ ହେବାରେ ପ୍ରତୀୟମାନ ହେଉଛି । ସାମୟିକ ଦୟା କିମ୍ବା ଲାଭର ବଶବର୍ତ୍ତୀ ହୋଇ ସ୍ପଷ୍ଟବାଦୀ ହେବାକୁ ପଛେଇ ଯାଉଛି । ଫଳରେ ଭ୍ରଷ୍ଟାଚାର, ଅତ୍ୟାଚାର ଓ ପ୍ରବଂଚନାର ଶିକାର ହୋଇ ଦାରିଦ୍ର୍ୟ ଓ ବେକାରୀକୁ ଅଙ୍ଗେ ଲିଭାଉଛି । ପରିଣାମ ସ୍ୱରୂପ ସାମୂହିକ ଜୀବନ କ୍ଷତ ବିକ୍ଷତ ହୋଇପଡ଼ିଛି । କଳୁଷିତ ରାଜନୀତି ଦ୍ୱାରା ଆର୍ଥିକ ଓ ସାମାଜିକ ବିକାଶ କ୍ରୁଶବିଦ୍ଧ । ସ୍ୱାଧୀନତା ଓ ସାର୍ବଭୌମତ୍ୱର ସୁରକ୍ଷା ସନ୍ଦିହାନ । ଏକ ସ୍ୱାଭିମାନ ସ୍ୱାବଲମ୍ବନଶୀଳ ଅର୍ଥ ବ୍ୟବସ୍ଥାର ବିକଳ୍ପ ପାଇଁ ସମାଜରେ ବିଦ୍ରୋହ ଅପରିହାର୍ଯ୍ୟ ଯେଉଁଥିରୁ ସଭ୍ୟତାର ନୂଆ ଦିଗନ୍ତ ଆବିର୍ଭାବ ହେବ ।

ସ୍ୱାଭିମାନର ପୁନରୁଦ୍ଧାର ପାଇଁ ସାମାଜିକ ପରିବର୍ତ୍ତନରେ ଜାତିଭେଦ କଳଙ୍କର ଅବସାନ ଅପରିହାର୍ଯ୍ୟ । ସାମାଜିକ ସହାବସ୍ଥାନରେ ହିଁ ମଣିଷ ସମାଜର ସମ୍ଭବପର । ସେଇଥିପାଇଁ ଧର୍ମନିରପେକ୍ଷତାର ସୁରକ୍ଷା ଏକାନ୍ତ କାମ୍ୟ । ସାମାଜିକ ବ୍ୟବସ୍ଥାରେ ସ୍ଥିରତା ଆଣିବାକୁ ହେଲେ ନାରୀ ପୁରୁଷ ମଧ୍ୟରେ କୃତ୍ରିମ ଅସମତାର ପୂର୍ଣ୍ଣଚ୍ଛେଦ ଟାଣିବାକୁ ହେବ । ଏକ ସୁସ୍ଥ ଓ ସବଳ ମଣିଷସମାଜ ପାଇଁ ପ୍ରତ୍ୟେକଙ୍କ ପାଖରେ ମୌଳିକ ଆବଶ୍ୟକତା ପହଞ୍ଚାଇ ଦେଲାପରି ଏକ ସ୍ୱାବଲମ୍ବନ ଅର୍ଥନୀତି ସାଙ୍ଗକୁ ପ୍ରାକୃତିକ ସଂପଦର ସଦ୍ ଉପଯୋଗ ଓ ତାର ସୁରକ୍ଷା ଆବଶ୍ୟକ । ଯେଉଁଠି ସ୍ୱାଭିମାନ ମରିଯାଏ, ସେଠାରେ ସଭ୍ୟତା ଦିଗହରା ହୋଇଯାଏ । ତେଣୁ ଏକ ସଭ୍ୟ ସମାଜର ମୌଳିକ ଚରିତ୍ର ହେଉଛି ସ୍ୱାଭିମାନ, ଭିତ୍ତିଭୂମି ହେଉଛି ସମତା ଓ ସ୍ୱାଧୀନତା ଯେଉଁଠି ଭୟ ଓ ଶୋଷଣର ବିଲୋପ ହୋଇଥାଏ ।

## ସଭ୍ୟତାର ରଙ୍ଗ ବୋଲି ଅସଭ୍ୟତାର ଅଭ୍ୟାସ

ଆମଦେଶର ସଭ୍ୟତା ଓ ସଂସ୍କୃତି ତ୍ୟାଗ ଓ କର୍ମର ପ୍ରତୀକ ବୋଲି କୁହାଯାଇଥାଏ । ସ୍ୱାଧୀନତା ଆନ୍ଦୋଳନବେଳେ କୁହାଗଲା, ବିଦେଶୀ ଆକ୍ରମଣ ଆମ ସମାଜର ଆର୍ଥିକ ସ୍ୱାବଲମ୍ବନକୁ ହତ୍ୟାକରି ଆମ ସମ୍ବଳକୁ ଲୁଟ କରାଯାଇ ପରାଧୀନତା ଲଦିଦିଆଗଲା । ଆମ ସଭ୍ୟତା ଓ ସଂସ୍କୃତି ଉପରେ ମଧ୍ୟ ଅତିକ୍ରମଣ ହୋଇଛି ବିଦେଶୀ ଶାସନ ଦ୍ୱାରା । ଆମ ସମାଜରେ କୃଷି ଓ କୁଟୀର ଶିଳ୍ପର ଆର୍ଥିକ ଭିତ୍ତିଭୂମି ଖୁବ୍ ସୁସ୍ଥ ଓ ସବଳ ଥିଲା । ସ୍ୱାଧୀନତା ଆନ୍ଦୋଳନର ଲକ୍ଷ୍ୟବି ଥିଲା ସେହି ଲୁଣ୍ଠିତ ସ୍ୱାଧୀନତା ଓ ସ୍ୱାଭିମାନକୁ ଫେରାଇ ଆଣିବା ସହ ଏକ ସୁସ୍ଥ ଶୋଷଣହୀନ ସ୍ୱାବଲମ୍ବନଶୀଳ ଆର୍ଥିକ ବ୍ୟବସ୍ଥାର ସ୍ଥାପନା କରାଯିବ ଯେଉଁଠି ଆର୍ଥିକ ନ୍ୟାୟ ସହ ସାମାଜିକ ନ୍ୟାୟ ଜରିଆରେ

Digitized by srujanika@gmail.com

ଅନ୍ଧବିଶ୍ୱାସ, ଜାତିଭେଦ ଓ ଦାରିଦ୍ର୍ୟ ଦୂରୀଭୂତ ହୋଇପାରିବ । ନୂଆ ସଭ୍ୟତା ଆଡ଼କୁ ଆମେଯିବା ବିଜ୍ଞାନରୁ ଆସିଥିବା ଆଧୁନିକତାର ଆଲୋକକୁ ପାଥେୟକରି ! କିନ୍ତୁ ସ୍ୱାଧୀନତାର ୬୦ ବର୍ଷପରେ ବିକାଶ ଓ ବିକାଶର ଧାରା ଓ ଫଳାଫଳରୁ ଜନ୍ମ ନେଇଥିବା ବଜାର ସଂସ୍କୃତି ଆମ ସଭ୍ୟତାକୁ କୁଆଡ଼କୁ ନେଇଚାଲିଛି ତାହା ଏକ ଅଧ୍ୟୟନ । ଏବେ ବିଶ୍ୱର ସର୍ବୋଚ୍ଚ ଧନୀ ତାଲିକାରେ ଭାରତର ୩୬ ଜଣ ଆରବ ପତି ତାଲିକାଭୁକ୍ତ ହୋଇପାରିଛନ୍ତି । ସେଥିପାଇଁ ଏହାକୁ ବିକାଶର ସଫଳତା ରୂପେ ଆମ ଖବର କାଗଜମାନେ ଦେଶର ଗର୍ବ ଓ ଗୌରବ ବୋଲି ଉପସ୍ଥାପିତ କରିଛନ୍ତି । ଏମାନଙ୍କ ସଂପତ୍ତିର ମୂଲ୍ୟ ୧୯୧୦୦ କୋଟି ଡ଼ଲାର । ଅର୍ଥାତ୍ ପ୍ରାୟ ୯ ଲକ୍ଷ କୋଟିଟଙ୍କା ଯାହାକି ଦେଶର ମୋଟ ଘରୋଇ ଆୟର ଏକ ଚତୁର୍ଥାଂଶ । ଏହି ଆରବପତିମାନଙ୍କ ଦ୍ୱାରା ପରିଚାଳିତ ବଜାରର ଆଗଧାଡ଼ିର ସଂଖ୍ୟା ପ୍ରାୟ ୧୫ କୋଟି ଯାହାର ବାର୍ଷିକ ଆୟ ୨ ଲକ୍ଷରୁ ୧୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ । ଏମାନଙ୍କ ପରେ ୨ କୋଟି ଧନୀ ଶ୍ରେଣୀର ଅନ୍ତର୍ଭୁକ୍ତ ଯାହାର ଆୟ ୧୦ ଲକ୍ଷ ଟଙ୍କାରୁ ଅଧିକ । ୧୧୦ ରୁ ଏପରି ୨୦ କୋଟି ଲୋକଙ୍କ ବାହାରେ ବାକି ୯୦ କୋଟିମାଧରୁ ୫୦ କୋଟି ଲୋକଙ୍କ ପାଖେରେ ସ୍କୁଲ ନାହିଁ, ହସ୍‌ପିଟାଲ ନାହିଁ, ସ୍ୱଚ୍ଛ ପିଇବା ପାଣିନାହିଁ, ଜୀବିକାର ଗ୍ୟାରେଣ୍ଟି ନାହିଁ । ଏମାନଙ୍କ ମଧ୍ୟରୁ ସମସ୍ତେ ଦୁଇଓଳା ପୁଷ୍ଟିକର ଖାଦ୍ୟ ଖାଇପାରନ୍ତି ନାହିଁ ବୋଲି ୮୦ ପ୍ରତିଶତ ଶିଶୁ (୬ରୁ ୩୫ ମାସ ବୟସ) ୫୬% ବିବାହିତ ମହିଳା (୧୫-୪୯ ବର୍ଷ ବୟସ), ୨୫% ପୁରୁଷ ରକ୍ତହୀନ ଅବସ୍ଥାରେ ଦେଖିବାକୁ ମିଳେ । ୩୦ କୋଟି ଜନତାଙ୍କ ପରିବାରରେ ଦୈନିକ ଆୟ ୫୦ ଟଙ୍କାରୁ କମ୍ । ତାହା ପ୍ରତିଦିନ ନଥାଏ । ୪୦ କୋଟି ଲୋକଙ୍କ ପାଇଁ ଦୁଇବଖରା ଘର ବି ନାହିଁ । ଅଥଚ ଏ ଦେଶର ଆରବପତି ମୁକେଶ ଅମ୍ବାନୀ ୪୦୦୦ କୋଟି ଟଙ୍କାରେ ନିଜ ପାଇଁ ଏକ ବିରାଟ ଘର ତିଆରି କରିବେ । ଯେଉଁଠି ଏପରି ବିଳାସ ହୋଟେଲର ରହିଛି ଯେଉଁଠାରେ ଏ ଦେଶର କେତେକ ବ୍ୟକ୍ତି ଦିନକୁ ଲକ୍ଷାଧିକ ଟଙ୍କା ଭଡ଼ାଦେଇ ରହିପାରନ୍ତି ଅଥଚ କୋଟି କୋଟି ମା' ପୁଷ୍ଟିକର ଖାଦ୍ୟ ପାଆନ୍ତି ନାହିଁ କି ସେମାନଙ୍କ ସନ୍ତାନକୁ ଦେଇପାରନ୍ତି ନାହିଁ । ସଦ୍ୟଜାତ ପିଲା ମା' ସ୍ତନପାନ୍ୟରୁ ଯଥେଷ୍ଟ ଖାଦ୍ୟ ପାଏନାହିଁ ବୋଲି ଏକ ହଜାରରେ ୮୦ ଜଣ ଶିଶୁ ବଞ୍ଚିପାରନ୍ତି ନାହିଁ । କୃଷିଉପରେ ୬୦ ଭାଗ ଦେଶବାସୀ ନିର୍ଭରଶୀଳ ହେଉଥିଲେ ବି କୃଷକ ହଜାର ହଜାର ସଂଖ୍ୟାରେ ଆତ୍ମହତ୍ୟା କରୁଥିବାବେଳେ ଆମ ସଭ୍ୟ ଶାସକମାନେ କହନ୍ତି ଚାଷ ଛାଡ଼ି କମ୍ପ୍ୟୁଟରକୁ ଧର । ଏକଦା ଫ୍ରାନ୍ସର ରାଜା ଲୁଇସ୍ - ୧୬ ଭୋକିଲାଙ୍କ ପ୍ରତି ମନ୍ତବ୍ୟଥିଲା- **"ରୋଟି ନ ମିଳିଲେ କେକ୍ ଖାଅ ।"** ଏହିପରି ଶାସକ ବିରୁଦ୍ଧରେ ଫ୍ରାନ୍ସରେ ବିପ୍ଳବ ହେଲା, ନୂଆ ସଭ୍ୟତା ଜନ୍ମ ନେଲା ଯେଉଁଥିରେ ମଣିଷର ଅଧିକାର, ଚିନ୍ତନ ଏବଂ ପ୍ରତିବାଦର ସ୍ୱର ସଭ୍ୟତାର ନୂଆ ଦିଗନ୍ତ ସୃଷ୍ଟିକଲା । ଆଜି ଜଗତୀକରଣର ପ୍ରବାହରେ ସାମ୍ରାଜ୍ୟବାଦୀ ବ୍ୟକ୍ତିମାନଙ୍କ ଔପନିବେଶିକ

Digitized by srujanika@gmail.com

ଆର୍ଥିକ ଓ ସାଂସ୍କୃତିକ ଆଧିପତ୍ୟ ଜରିଆରେ ମଣିଷର ସ୍ୱାଭାବିକ ଓ ପ୍ରାକୃତ ସଭ୍ୟତାର ଦିଗନ୍ତ ଗୁଡ଼ିକୁ ମାରି ଚାଲିଛି । ନୂଆ ନୂଆ ବଜାର ସଂସ୍କୃତିର ଚାକଚକ୍ୟରେ ମାଟି, ପବନ, ଜଳ ଆଉ ଆକାଶ ତଥା ପ୍ରକୃତିକୁ ନେଇ ମଣିଷର ସାମାଜିକ ଓ ସାଂସ୍କୃତିକ ଜୀବନରୁ ବିକଶିତ ବସୁଧୈବ କୁଟୁମ୍ବକମ୍ ସଭ୍ୟତାର ସଜ୍ଞାକୁ ଅପଭ୍ରଂଶ କରି ଏବେ ବିଶ୍ୱୀକରଣ ମନ୍ତ୍ରରେ ମଣିଷକୁ ତାର ଜୀବନକୁ ସଉଦା କରାଚାଲିଛି । ଏବେ ଏହି ବିଶ୍ୱୀକରଣର ଚରମ ଲକ୍ଷ୍ୟ କୁଆଡ଼େ ପୃଥିବୀ ଏକ ଗାଁ (Globalvillage) ଯେଉଁଠି ବିଶ୍ୱର ସମସ୍ତ ଧନପତିମାନଙ୍କ ଗୋଟିଏ ବିଶ୍ୱସମାଜ ରହିବ ଯାହାର ସଂସ୍କୃତି ବି ଏକପ୍ରକାର ହେବ । ତାର ନାମ ଉପଭୋକ୍ତାବାଦ୍ ସଂସ୍କୃତି । ଏହି ସଂସ୍କୃତି ସମାଜର, ପ୍ରକୃତିର ବିବିଧତା ଉପରେ ବିଶ୍ୱାସ କରେନାହିଁ । ବିବିଧତାକୁ ଖତମକରି ଏକକ ସଂସ୍କୃତିସଂପନ୍ନ ସଭ୍ୟତାର ଦିଗ ନିର୍ଦ୍ଧାରିତ କଲାଣି । ସେହି ଦିଗଗୁଡ଼ାକରେ କେବଳ ଅର୍ଥର ତାଣ୍ଡବ ଲୀଳା ହେଉଥିବ । କିଏ ଦେହ ବିକୁ, ଶ୍ରମ ବିକୁ, ଜ୍ଞାନ ବିକୁ, ଇଜ୍ଜତ୍ ବିକୁ କିମ୍ବା ସ୍ୱାଧୀନତା ଓ ସ୍ୱାଭିମାନ ବିକୁ ସମସ୍ତଙ୍କୁ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡ଼ିବ କେବଳ ପଇସା ପାଇଁ । ଏହି ପ୍ରତିଯୋଗିତାରେ ଶସ୍ତାକରି ବିକିବାକୁ ହେବ । ପରିଶେଷରେ ମଣିଷ ବିକ୍ରି ହୋଇଗଲେ ବି ତାର ପେଟ ପୂରିବ ନାହିଁ । କାରଣ ପୁଣି ସେ ଦାସତ୍ୱର ଶିକୁଳିରେ ବାନ୍ଧି ହୋଇଯିବ । ଆରପାଖରେ ପ୍ରତିଦ୍ୱନ୍ଦିତା ଚାଲିବ କିଏ କେତେ ପୁଞ୍ଜିଖଟାଇ ଟେକ୍‌ନୋଲୋଜିର ସାମର୍ଥ୍ୟକୁ ମୁନାଫାପାଇଁ, ଶୋଷଣ ପାଇଁ ସଫଳ ବ୍ୟବହାର କରି ଦେହ, ଜ୍ଞାନ, ଶ୍ରମ, ଇଜ୍ଜତ ଓ ସ୍ୱାଧୀନତାକୁ କିଣିପାରିବ । ଏହି ଦୁଇ ପ୍ରତିଦ୍ୱନ୍ଦ ଭିନ୍ନ ଭିନ୍ନ ବିପରୀତ ଦିଗରେ ।

**ପରିଣାମ :** ବିଜ୍ଞାପନର ରଙ୍ଗିନ୍ ପରଦାରେ ନାରୀର ଦେହକୁ ନିଲାମ କରା ଚାଲିଥିବ ଖାଉଟି ତଥା ଉପଭୋକ୍ତା ସଂସ୍କୃତି ପ୍ରଚାର ଓ ପ୍ରସାର ପାଇଁ । ଅନ୍ୟ ପଟେ ମଣିଷ ଶୋଷିତ ହୋଇ ଭୋକିଲାର ଆମ୍ବଟାକୁଆ ଚୂନାକରି ଖାଉଥିବ ଆଉ ବି.ପି.ଏଲ୍ କାର୍ଡ ପାଇଁ ଧାଡ଼ି ବାନ୍ଧି ଠିଆ ହେଉଥିବ । ଗଣତାନ୍ତ୍ରିକ ବ୍ୟବସ୍ଥାର ମୁଖ୍ୟ ପରିଚାଳକମାନଙ୍କ ସମ୍ମୁଖରେ କହୁଥିବ "ଆମ ଗରିବର ମାପକାଠି ବି. ପି. ଏଲ୍ ତାଲିକାରେ ମୋ' ନାଁଟି ଲେଖିଦେବେନି ?" କାର୍ଡ ନ ମିଳୁ ଡେରି ହୋଇଗଲେ ପିଲାକୁ ବିକ୍ରିକରି ମା' ଅନ୍ତତଃ ନିଜ କୋଳରେ ନିଜ ଶିଶୁର ମୃତ୍ୟୁକୁ ନ ଦେଖିବାକୁ ଉଦ୍ୟମ କରୁଥାଉ । ଆମ ସଂସ୍କୃତି, ଆମ ବିଚାର ଓ ଶୋଷଣର ଜାଲ ଆମ ସଭ୍ୟତାକୁ କେଉଁ ଦିଗକୁ ନେଉଛି ଏକଥା ବିଚାର କରିବା ଓ ଆତ୍ମ ନିରୀକ୍ଷଣ କରିବା ଏକାନ୍ତ କାମ୍ୟ । ଆଉ ଏହି ବିଶ୍ୱ ସଂସ୍କୃତି, ବିଶ୍ୱ ସଭ୍ୟତାର ଗର୍ଭ ଭିତରେ ଅନେକ ଦେଶମାନଙ୍କର ସ୍ୱାଧୀନତା ଓ ସାର୍ବଭୌମତ୍ୱ ଯେ ବିଲୀନ ହୋଇଯାଇଥିବ ଯାହାକୁ ସାମ୍ରାଜ୍ୟବାଦୀ ଶକ୍ତିର ଲକ୍ଷ୍ୟ ତଥା ବିଜୟବୋଲି ଧାର୍ଯ୍ୟ ହୋଇଛି ।



Digitized by srujanika@gmail.com

# ଦେଶ ଭିତରେ ବିଦେଶ
# ସ୍ୱତନ୍ତ୍ର ଅର୍ଥନୈତିକ ଅଞ୍ଚଳ (ସେଜ୍)

ସ୍ପେସାଲ ଇକୋନୋମିକ ଜୋନ୍‌ର ଅର୍ଥ "ସ୍ୱତନ୍ତ୍ର ଅର୍ଥନୈତିକ ଭୂଖଣ୍ଡ" କିନ୍ତୁ ଏହାକୁ ନେଇ ଯେଉଁ ଆଇନ ହୋଇଛି, ସେଥିରେ ତାର ଲକ୍ଷ୍ୟକୁ ଆକ୍ଷରିକ ଅର୍ଥରେ ମଧ ପରିଭାଷିତ କରାଯାଇଛି । "ଦି ସ୍ପେସାଲ୍ ଇକୋନୋମିକ ଜୋନ୍ ଆକ୍ଟ ୨୦୦୫" ଅନୁଯାୟୀ ଏହି ଅଞ୍ଚଳ ଗୁଡ଼ିକ ଶିଳ୍ପସେବା ଓ ବାଣିଜ୍ୟ କାରବାର ପାଇଁ ଶୁଳ୍କ ମୁକ୍ତ ପରଦେଶ ଅଞ୍ଚଳ ରୂପେ ବିବେଚିତ ହେବେ । ଏହି 'ପରଦେଶ' ଅର୍ଥ କେନ୍ଦ୍ରର ବିଜେପି ନେତୃତ୍ୱାଧୀନ ସରକାର ଦ୍ୱାରା ନିର୍ଦ୍ଧାରିତ ବାଣିଜ୍ୟନୀତି ୨୦୦୧-୦୨ ର ନବମ ପରିଚ୍ଛେଦରେ ବ୍ୟବହୃତ ହୋଇଛି । ଧାରା ୧-୨ ରେ କୁହାଯାଇଛି । ଦେଶଭିତରେ ଏହି ସ୍ୱତନ୍ତ୍ର ମୁକ୍ତ ଅଞ୍ଚଳ ଗୁଡ଼ିକ ବେପାର ବଣିଜ ପାଇଁ "ବିଦେଶୀ ଅଞ୍ଚଳ" ରୂପେ ସ୍ୱୀକାର କରାଯାଇଛି । ଆକ୍ଟ ୨୦୦୫ ର ଧାରା ୫୩ ଉପଧାରା ୧ ଅନୁଯାୟୀ ଏହା ଦେଶର ସୀମା ଶୁଳ୍କ ଅଞ୍ଚଳ ବାହାରେ ଅବସ୍ଥିତ । (A Special Economic Zone shall, on and from the appointed day be deemed to be a territory outside the cutomes territory of India for the purposes of undertaking authorised operations) । ଭାରତ ସରକାରଙ୍କର ଏକ୍ସିମ୍ ପଲିସି ୨୦୦୧-୦୨ (Exim Policy 2001-02)ର ନବମ ପରିଚ୍ଛେଦ (Chapter 9A) ର ପ୍ରଥମ ଅନୁଚ୍ଛେଦରେ କୁହାଯାଇଛି ସ୍ପେଶିଆଲ ଇକୋନୋମିକ ଜୋନ ଏକ ବିଶେଷ ଭାବରେ ଚିହ୍ନିତ ପରରାଜ୍ୟ ଘେରା ଶୁଳ୍କ ମୁକ୍ତ ଅଞ୍ଚଳ ଯାହା ବେପାର ବଣିଜ, ଶିଳ୍ପ ଓ ପ୍ରଶାସନିକ ଦୃଷ୍ଟିରୁ ବିଦେଶୀ ଅଞ୍ଚଳ ଭାବେ ବିବେଚିତ ହେବ । (Special Economic Zone is specifically delineated duty free enclave and shall be deemed to be a foreign territory for the purposes of trade operations and duties and tariffs) ଓଡ଼ିଶା ସରକାରଙ୍କର ଏସ୍.ଇ.ଜେଡ୍. ନୀତି ଯାହା ୧୦ ନଭେମ୍ବର ୨୦୦୩ରେ ଅଧିସୂଚିତ ହୋଇଥିଲା - ସେଥିରେ ଏହି ପରିଭାଷାକୁ ହିଁ ଗ୍ରହଣ କରାଯାଇଛି ଅଧିକ ବ୍ୟାଖ୍ୟାର ସହିତ (ଧାରା ୧-୨) । କୁହାଯାଇଛି - ସ୍ପେଶିଆଲ ଇକୋନୋମିକ ଜୋନଗୁଡ଼ିକ ବିଶେଷ ଭାବେ ଚିହ୍ନିତ ପରରାଜ୍ୟ ଘେରା

Digitized by srujanika@gmail.com

ଶୁଳ୍କମୁକ୍ତ ଅଞ୍ଚଳ ଯାହା ଶିଳ୍ପ ସେବା ଏବଂ ବେପାର ବଣିଜକୁ ବିଭିନ୍ନ କିସମର ରିହାତି ଏବଂ ଏକ ଅଧିକ ଉଦାର ଶାସନ ବ୍ୟବସ୍ଥା ଉପଲବ୍ଧ କରାଇବା ଦୃଷ୍ଟିରୁ ଏକ ବିଦେଶୀ ଅଂଚଳ ଭାବେ ଗଣ୍ୟ ହେବ । ଘରୋଇ ବିନିୟମ, କଟକଣା ଏବଂ ଭିତ୍ତିଭୂମିର ଅଭାବକୁ ଏହି ଅଂଚଳକୁ ଦୂର କରାଯିବ । (Special Economic Zones are Specifically delineated duty free enclaves treated as foreign territory for the purpose of industrial service and trade operations with exemption from customers duties and a more liberal regime in respect of other levies, foreign investment and other transactions, domestric relgulations, restrictions and infrastructure indequacies are sought to be ellminated in the SEZs for creating a house free environment).

ଏହି ଆକ୍ଟର ଧାରା ୪୯ (୧) ଏହି ଅନୁଯାୟୀ ଭୂଖଣ୍ଡରେ ଦେଶର ଶ୍ରମ ଆଇନ, ବାଣିଜ୍ୟ, ପେନସନ୍, ନିଯୁକ୍ତି, ମହିଳା କର୍ମଚାରୀଙ୍କ ବିଭିନ୍ନ ସୁବିଧାଜନିତ ଆଇନ ଲାଗୁ ହୋଇପାରିବ ନାହିଁ । ଏହି ଏସ.ଇ.ଜେଡ୍– ଭୂଖଣ୍ଡ ସୀମା ବାହାରେ ଥିବା ଦେଶ ଭିତର ଅଞ୍ଚଳକୁ କଂପାନୀପାଇଁ ବିଦେଶ ବୋଲି ଧରାଯିବ । ଏହି ଅଞ୍ଚଳ ଭିତରକୁ ବିଦେଶରୁ ଓ ଆମ ଦେଶର ଶୁଳ୍କ ଲାଗୁହୋଇଥିବା ଅଞ୍ଚଳରୁ ଯେ କୌଣସି କଞ୍ଚାମାଲ କିମ୍ବା ସେବା ଆମଦାନୀ ହେଲେ ତା ଉପରେ କୌଣସି କର ଧାର୍ଯ୍ୟହେବନାହିଁ କିମ୍ବା ଏହି ଅଞ୍ଚଳରୁ ରପ୍ତାନୀହେଲେ ମଧ୍ୟ ସମ୍ପୂର୍ଣ୍ଣ କରମୁକ୍ତ ହେବ । ଏହାର ଅର୍ଥ ଭାରତର ଏହି "ସ୍ୱତନ୍ତ୍ର ବିଦେଶୀ ଅଞ୍ଚଳ"ରୁ ଯେତେବେଳେ ଯେଉଁ କରମୁକ୍ତ ଉତ୍ପାଦିତ ପଦାର୍ଥ ଦେଶୀୟ ବଜାରରେ ପହଞ୍ଚିବ, ସେତେବେଳେ ଆଉ ବାକି ଦେଶୀୟ ଉତ୍ପାଦନ ପ୍ରତିଯୋଗିତା କରିପାରିବେ ନାହିଁ । ଏହି ଏସ.ଇ.ଜେଡ୍‌ରେ ଥିବା କମ୍ପାନୀମାନଙ୍କୁ ଆୟକର, ବିକ୍ରିକର, ସୀମାଶୁଳ୍କ, ଅବକାରୀ ଶୁଳ୍କ ସବୁ କିଛି ଛାଡ୍ ସଂପୂର୍ଣ୍ଣ ଭାବେ ୫ ବର୍ଷ ପାଇଁ । ପୁଣି ୫୦% ଆଉ ପାଞ୍ଚବର୍ଷପାଇଁ । ପୁଣି ସରକାର ଚାହିଁଲେ ସମୟ ବୃଦ୍ଧିକରିପାରିବେ । ସେହି ଅଞ୍ଚଳରେ କେତେକ ଅପରାଧ ଜନିତ ଘଟଣାରେ ପୋଲିସ ମଧ୍ୟ ବିନା ଅନୁମତିରେ ପ୍ରବେଶ କରିପାରିବ ନାହିଁ । କମ୍ପାନୀମାନଙ୍କ ନିଜ ସୁରକ୍ଷା କର୍ମଚାରୀମାନଙ୍କୁ ପୋଲିସ କ୍ଷମତା ଦିଆଯାଇଛି । ଯାଞ୍ଚକାରୀ ଅଧିକାରୀମାନେ ମଧ୍ୟ ସ୍ୱାଧୀନଭାବେ ଯାଞ୍ଚକରିବାକୁ ଯାଇପାରିବେ ନାହିଁ । ଏସବୁର ପରିଣାମ ସଂକ୍ରାନ୍ତରେ ଦଳମତ ନିର୍ବିଶେଷରେ ଶାସକ ଶ୍ରେଣୀ ତଥା– ସରକାର ମାନଙ୍କର ଚିନ୍ତା କରିବା ସାମର୍ଥ୍ୟ ନାହିଁ । କାରଣ ଏମାନେ ଜଗତୀକରଣର ପ୍ରବାହରେ ବଜାର ନିଶାରେ ବିବେକ ହରାଇ ସାରିଲେଣି । ଦେଶକୁ ବିଦେଶ ରୂପେ ପ୍ରତିପାଦିତ କରିବା ବିକାଶ ଏ ସଂକେତ ବୋଲି ଯେଉଁ ରାଜନୈତିକ ଦଳ ଓ ନେତାମାନେ ଆଇନ କରିପାରନ୍ତି

Digitized by srujanika@gmail.com

ଓ ସରକାର ବାହାରେ ଥାଇ ସମର୍ଥନ କରିପାରନ୍ତି ସେମାନଙ୍କଠାରୁ ଭବିଷ୍ୟତ ସୁରକ୍ଷା ପାଇଁ ଆଶା କରିବା ବ୍ୟର୍ଥହୀନ । ସାଧାରଣ ଜନତା ହିଁ ଏହାର ପରିଣାମକୁ ଆକଳନ କରିପାରେ ।

ଓଡ଼ିଶାର ୧୪ ସମେତ ଦେଶରେ ୩୬୦ ଟି ସ୍ୱତନ୍ତ୍ର ଆର୍ଥିକ ଅଞ୍ଚଳକୁ ଅନୁମୋଦିତ କରିଦିଆଗଲାଣି । ଏହାଦ୍ୱାରା ଏନ.ଆଇ.ପି.ଏଫ ର ଅଧ୍ୟୟନକୁ ଆଧାରକରି ରିଜର୍ଭବ୍ୟାଙ୍କ ହିସାବ କରିଛି ଯେ ଆସନ୍ତା ୫ ବର୍ଷ ମଧ୍ୟରେ ଏକଲକ୍ଷ ସତୁରୀ ହଜାର କୋଟି ଟଙ୍କାର ରାଜସ୍ୱ ହରାଇବାକୁ ପଡ଼ିବ ।

ଏହି ଏସ୍.ଇ.ଜେଡ୍‌ର ଅନ୍ତର୍ଭୁକ୍ତ ହେବାପାଇଁ କମ୍ପାନୀମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା । କାରଣ ଏହା ଏପରି ଏକ ଅସ୍ତ୍ର, ତାକୁ କଂପାନୀମାନେ ବ୍ୟବହାର କରିପାରି ଭବିଷ୍ୟତକୁ ନିଜର ଶୋଷଣ କେନ୍ଦ୍ରରୂପେ ସଂରକ୍ଷିତ ରଖିପାରିବେ । ଉଦାହରଣ ସ୍ୱରୂପ, ବେଦାନ୍ତ କମ୍ପାନୀର ନିୟମଗିରିରେ ବକ୍‌ସାଇଟ ଖଣି ପାଇଁ ଅନୁମତି ମିଳିନଥିବାବେଳେ ସେହି କଂପାନୀର ତୃତୀୟ ସ୍ତରରେ ଆଲୁମିନିୟମ ଉତ୍ପାଦନ ପାଇଁ ସ୍ମେଲ୍‌ଟର ପ୍ଲାଣ୍ଟକୁ ଝାରସୁଗୁଡ଼ାଠାରେ ଅନୁମତି ଦିଆଯାଇ ଏସ୍.ଇ.ଜେଡ୍ ଘୋଷିତ କରିଦିଆଗଲାଣି । ଏକ ଅନିଶ୍ଚିତ ପ୍ରକଳ୍ପ ପାଇଁ ସମସ୍ତ ସୁବିଧା ଓ ରିହାତି ନିଶ୍ଚିତ କରିଦିଆଗଲାଣି । ସେହିପରି ଦକ୍ଷିଣ କୋରିଆର 'ପୋସ୍କ' କୁ ଖଣି ଲିଜ୍ ସଂକ୍ରାନ୍ତରେ କୌଣସି ନିଷ୍ପତ୍ତି ନିଆଯାଇନାହିଁ । ଖଣିକୁ କେନ୍ଦ୍ର କରି ପୋସ୍କ ଅତିକମରେ ବର୍ତ୍ତମାନ ବଜାର ଦରରେ କେବଳ ଲୁହାପଥରରୁ ଏକ ଲକ୍ଷ ୨୦ ହଜାର କୋଟି ଟଙ୍କା ମୁନାଫା ପାଇବ ଯଦି ଲିଜ୍‌ରେ ୬୦୦ ନିୟୁତ ମେଟ୍ରିକ ଟନ୍ ଦିଆଯାଏ । ଧାନ ପାନ, ମୀନ ପରି ଜୀବିକାର ମୂଳ ସ୍ରୋତକୁ ରକ୍ଷା କରିବାପାଇଁ ଜନ ଆନ୍ଦୋଳନ ଚାଲିଛି । ଏହାସବୁ ସତ୍ତ୍ୱେ ପୋସ୍କକୁ ଏସ୍.ଇ.ଜାଡ୍ ଅନୁମତି ଦିଆଯାଇ ଏକ ବିଦେଶୀ କମ୍ପାନୀର ଶିଳ୍ପାଞ୍ଚଳ ଓ ନିଜସ୍ୱ ଘରୋଇ ବନ୍ଦର ଅଞ୍ଚଳକୁ ବିଦେଶୀ ଅଞ୍ଚଳ ରୂପେ ଘୋଷିତ କରିଦିଆଗଲା । ଫଳରେ ଆରମ୍ଭରେ ରାଜ୍ୟ ଓ କେନ୍ଦ୍ର ସରକାର ଆସନ୍ତା ୨୦ ବର୍ଷରେ ଏକଲକ୍ଷ କୋଟି ଟଙ୍କା ରାଜସ୍ୱପାଇବେ ବୋଲି ଯୁକ୍ତି କରିବା ଆଜି ନିରର୍ଥକ ହୋଇଯାଇଛି । କାରଣ ପୋସ୍କ ଏହି ଏକଲକ୍ଷ କୋଟି ଟଙ୍କାରୁ ୧୫ ବର୍ଷ ମଧ୍ୟରେ ପ୍ରାୟ ୮୦ ହଜାର କୋଟି ଟଙ୍କାର କର ଛାଡ଼ ପାଇବ । ସେହିପରି ଅନ୍ୟ କମ୍ପାନୀମାନେ ପ୍ରଚୁର ଫାଇଦା ନେବେ । କାରଣ ରାଜ୍ୟ ସରକାର ଓ କେନ୍ଦ୍ରସରକାର କୋଳାକୋଳି ହୋଇ ଦେଶୀ–ବିଦେଶୀ କମ୍ପାନୀମାନଙ୍କ ପାଇଁ ଆମ ଦେଶ ଭିତରେ ଅନେକ ବିଦେଶୀ ଭୂଖଣ୍ଡ ତିଆରି କରି ଦେବାକୁ ଯାଉଛନ୍ତି । ଏହାପରେ ଆମ ସ୍ୱାଧୀନତା ଓ ସାର୍ବଭୌମତ୍ୱ ସୁରକ୍ଷିତ ରହିବ ବୋଲି ଯଦି କୌଣସି ରାଷ୍ଟ୍ର ପରିଚାଳକମାନେ କହନ୍ତି ସେମାନେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଚାଟୁକାର ଦଲାଲ ରୂପେ କାର୍ଯ୍ୟ କରୁଛନ୍ତି ବୋଲି

Digitized by srujanika@gmail.com

ଧରିନେବା ଠିକ୍ ହେବ । ଇତିହାସରେ ମାତ୍ର ଜଣେ କ୍ଲାଇବ ଦୋକାନ କରିବ ବୋଲି ଆସି ଶେଷରେ ଦେଶକୁ ଆକ୍ରମଣ କରିପାରିଲା ମାତ୍ର ୧୨ ଶହ ସୈନିକ ବଳରେ । କାରଣ ସେତେବେଳେ ଦେଶର ଶାସକମାନେ ଦୁର୍ବଳ ଓ ସ୍ୱାର୍ଥପର ହୋଇଯାଇଥିଲେ । ଦେଶର ସ୍ୱାଧୀନତା ପରେ ଅନେକ ରାଜା ମହାରାଜାମାନେ ନିଜ ଗଡ଼ଜାତ ଅଞ୍ଚଳକୁ ଦେଶ ଭିତରେ ନିଜ ନିଜ ସ୍ୱାଧୀନ ଦେଶରୂପେ ରଖିବାକୁ ଚାହିଁଲେ । ଶେଷରେ ସ୍ୱରାଷ୍ଟ୍ର ମନ୍ତ୍ରୀ ବଲ୍ଲଭଭାଇ ପଟେଲଙ୍କ ଧମକପରେ ଦେଶୀୟ ରଜାମାନେ ଆତ୍ମ ସମର୍ପଣ କରିଥିଲେ । ଏସବୁ ଥିଲା ଦେଶର ଏକତା ଓ ସୁରକ୍ଷା ପାଇଁ । ଆଜି ପୁଣି ସ୍ୱାଧୀନ ଦେଶରେ ବିଦେଶୀ କମ୍ପାନୀମାନଙ୍କ ପାଇଁ ସ୍ୱତନ୍ତ୍ର ପରଦେଶୀ ଅଞ୍ଚଳ'' ଆଇନ କରି ସୃଷ୍ଟି କରିବା ଦେଶର ପରାଧିନତାକୁ ଡାକି ଆଣିବା ପରି ନୁହଁକି ? ଏହି ''ସ୍ୱତନ୍ତ୍ର ବିଦେଶୀ ଅଞ୍ଚଳ'' ପାଇଁ ବର୍ତ୍ତମାନ ସୁଦ୍ଧା ଚାଷଜମି ଏକଲକ୍ଷ ୫୦ ହଜାର ଏକର କର୍ପୋରେଟ ମାଲିକମାନଙ୍କ ପାଖକୁ ଚାଲିଗଲାଣି । କେବଳ ରିଲାଏନ୍ସ କମ୍ପାନୀ ପାଇଁ ମହାରାଷ୍ଟ୍ରର ୩୫ ହଜାର ଓ ହରିଆନାର ୨୫ ହଜାର ଏକର ଜମି ଅଧିଗ୍ରହଣ କରାଗଲାଣି । ୟୁନିଟେକ୍ ପାଇଁ ୨୫ ହଜାର, ସାହାରା ପାଇଁ ୨୦ ହଜାର ଓ ମହେନ୍ଦ୍ର କମ୍ପାନୀ ପାଇଁ ୧୦ ହଜାର ଏପରି ଅନେକଙ୍କ ପାଇଁ ହଜାର ହଜାର ଏକର ଚାଷଜମି ଚାଲିଯିବ । ଓଡ଼ିଶାକୁ ରିଲାଏନ୍ସ ଆସିବ ବିଦ୍ୟୁତ ପାଇଁ । ଏଥିପାଇଁ ୨୦ ହଜାର ଏକର ଜମି ଯିବ, ବିଦ୍ୟୁତ୍ ଉତ୍ପାଦନ ଓ ବିକ୍ରି ପାଇଁ ଟିକସ ଛାଡ଼ ହେବ । ଥରେ ଏସ୍.ଇ.ଜାଡ଼ ହୋଇଯିବାପରେ ସବୁ ଛାଡ଼ । ବର୍ତ୍ତମାନ ଆଇ.ଟି କମ୍ପାନୀମାନେ ଏହି ସୁବିଧା ନେବାକୁ ଧାଡ଼ି ବାନ୍ଧିଛନ୍ତି । କାରଣ ବର୍ତ୍ତମାନ ଆଇନ ଅନୁଯାୟୀ ୨୦୦୯ ପର୍ଯ୍ୟନ୍ତ ସେମାନଙ୍କୁ ଆୟକର ମୁକ୍ତ କରାଯାଇଛି । କିନ୍ତୁ ଏସ.ଇ.ଜାଡ଼ ର ନିୟମ ଅନୁଯାୟୀ ୩୦ ବର୍ଷ ପର୍ଯ୍ୟନ୍ତ ଏହା ଲାଗୁହେବ । ତାହାହେଲେ ଆମ ଦେଶରେ ଶିଳ୍ପର ବନ୍ୟାରେ ଦେଶର ବିକାଶ ହେବ ବୋଲି କୁହାଯାଉଛି, ତାର ହିତାଧିକାରୀ କିଏ ? ପ୍ରତ୍ୟକ୍ଷ ନିଯୁକ୍ତି ନାହିଁ ଏକଥା ସରକାର ଓ କଂପାନୀ କହିଲେଣି । କେବଳ ପରୋକ୍ଷ ନିଯୁକ୍ତି ହଜାର ହଜାର ସଂଖ୍ୟା ବୋଲି କୁହାଯାଉଛି । କୋକାକୋଲା ଓ ପେପ୍‌ସି ମଧ କହନ୍ତି, ଦେଶର ଯେତେ ପାନ ଦୋକାନ ହୋଇଛି ସେହି କମ୍ପାନୀମାନଙ୍କ ପରୋକ୍ଷ ନିଯୁକ୍ତି । ଏପରି ସମସ୍ତେ କହିବେ ।

ସବୁଠାରୁ ବଡ଼ ବିପଦ ଚାଷ ଉପରେ । କୃଷି କ୍ଷେତ୍ର ଅଣ କୃଷିରେ ପରିଣତ ହେବାସହ କର୍ପୋରେଟ ମାଲିକାନା ହାତକୁ ଚାଲିଯିବ । ଛୋଟ ଚାଷୀ ଓ କୃଷି ଶ୍ରମିକ ଲକ୍ଷ ଲକ୍ଷ ସଂଖ୍ୟାରେ ଜୀବିକା ହରାଇବାବେଳେ ଦେଶୀ ବିଦେଶୀକଂପାନୀମାନେ ଜମି ମାଲିକ ହୋଇଯିବେ । ଖାଦ୍ୟ ଉତ୍ପାଦନ ବଦଳରେ ବିଶ୍ୱ ବଜାର ସଉଦା ପାଇଁ ଅର୍ଥକରୀ ଫସଲ ହେବ ଯାହାଦ୍ୱାରା ଜମି ନଷ୍ଟହେବ, ପରିବେଶ ଧ୍ୱଂସହେବ ଏବଂ ଖାଦ୍ୟ ଅଭାବ ଘଟିବ ।

Digitized by srujanika@gmail.com

ଏହି ''ସ୍ୱତନ୍ତ୍ର ଆର୍ଥିକ କ୍ଷେତ୍ର'' ପାଇଁ ହୋଇଥିବା ଆଇନରେ ବ୍ୟବସ୍ଥା ଅଛି ଯେଉଁ କଂପାନୀ ଜମିନେବ ତାର ତିନି ଚତୁର୍ଥାଂଶ ସେ ଅନ୍ୟ ବ୍ୟବସାୟ, ଉତ୍ପାଦନ କିମ୍ବା ଲାଭ ପାଇଁ ବ୍ୟବହାର କରିପାରିବ । ଫୁଲ ଚାଷ, ପଶୁପାଳନ, ଉଦ୍ୟାନ ମତ୍ସ୍ୟଚାଷ, ସିଲ୍କ ଚାଷ ପ୍ରଭୃତି ପାଇଁ ମଧ୍ୟ ଏହି ଅଞ୍ଚଳ ଲାଗୁହେବ । କମ୍ପାନୀ ନିଜ ଶିଳ୍ପ ପାଇଁ ବ୍ୟବହାର କରିବାକୁ ସେ ଅନ୍ୟକୁ ଭଡ଼ାରେ କିମ୍ବା ବିଭିନ୍ନ ଇଷ୍ଟେଟ୍ ନିର୍ମାଣ ପାଇଁ ଲିଜ୍ ଦେଇ ପାରିବ । ଏସବୁର ଫାଇଦାନେବେ ଯେଉଁମାନେ ପ୍ରତ୍ୟକ୍ଷ ବିଦେଶୀ ପୁଞ୍ଜି ଆଣିବେ ଏବଂ ଆମ ରାଷ୍ଟ୍ରାୟତ୍ତ ବ୍ୟାଙ୍କରୁ ଏହି ଅଞ୍ଚଳକୁ ଦେଖାଇ ଶହ ଶହକୋଟି ଟଙ୍କା କମ୍ ସୁଧରେ ପୁଞ୍ଜି ପାଇପାରିବେ । ଦେଶ ଭିତରେ ସୁରକ୍ଷିତ ବିଦେଶ-ପରିସରରେ କ୍ଷମତାଶୀଳ ବଜାରମାନ ଦୃଶ୍ୟମାନ ହେବେ ଆମ ଦେଶରେ ।

ଏପରିକି ୱାଲମାର୍ଟ ପରି ବିଦେଶୀ କମ୍ପାନୀମାନେ ବଡ଼ ବଡ଼ ଖୁଚୁରା ଦୋକାନ କରି ଏସ.ଇ.ଜାଡ଼. ଅନ୍ତର୍ଭୁକ୍ତ ହୋଇପାରିବେ । ବଜାରୀ ଅର୍ଥ ବ୍ୟବସ୍ଥାର ସମର୍ଥକ ଆମଦେଶୀୟ ରାଜନୈତିକ ଦଳପତିମାନେ ଏହି ''ବିଦେଶୀ ବଜାର'' ପାଖରେ ଧାଡ଼ିବାନ୍ଧୁ ଥିବେ ପ୍ରଚୁର ନିର୍ବାଚନ ଖର୍ଚ୍ଚ ଉଠାଇବାପାଇଁ । ତାପରେ ଶାସକ ଓ ପରଦେଶୀ ଅତିଥିମାନେ ଦୁହେଁ ଦୁହିଁଙ୍କ ପାଇଁ ସେବାରେ ମସ୍ତ ରହିବେ । ଦେଶର ସୁରକ୍ଷା, ସାର୍ବଭୌମତ୍ୱ, ସ୍ୱାଧୀନତା କୁଆଡ଼କୁ ଯାଉ ସେମାନଙ୍କ ଯାଏ ଆସେ ନାହିଁ । ଚୀନର ଉଦାହରଣ ଦିଆଯାଉଛି । ଚୀନ ପ୍ରଥମେ ଅଣକୃଷି କ୍ଷେତ୍ର ପାଇଁ ରିହାତିଦେଇ 'ସ୍ୱତନ୍ତ୍ର ଅର୍ଥନୈତିକ ଅଞ୍ଚଳ' କରିଥିଲା । କିନ୍ତୁ କଂପାନୀମାନେ କୃଷି ଅଞ୍ଚଳକୁ ବି ପ୍ରବେଶ କଲେ । ଆଜି ଚୀନରେ ମଧ୍ୟ ଚାଷୀ ବିଦ୍ରୋହ କରୁଛି । ଚୀନରେ ସର୍ବମୋଟ ୭ଟି ଏସ୍.ଇ.ଜାଡ୍ ହୋଇଛି ବିଗତ ୩୦ ବର୍ଷ ମଧ୍ୟରେ ତାହା ମଧ୍ୟ ସରକାରଙ୍କ ନିୟନ୍ତ୍ରଣାଧୀନ । କିନ୍ତୁ ଆମ ଦେଶରେ ଶହ ଶହ ଓ ତାହା ଘରୋଇ କଂପାନୀ ନିୟନ୍ତ୍ରଣରେ । ଚୀନର ବଜାରୀ କମ୍ୟୁନିଷ୍ଟ ପାର୍ଟି ନିଜର ସାମ୍ୟବାଦୀ ଚରିତ୍ର ହରାଇଥିଲେ ବି ଏକଛତ୍ରବାଦକୁ ଛାଡ଼ିନାହିଁ ବୋଲି ସେଠାର ସମ୍ବାଦ ବାହାରକୁ ଆସୁନାହିଁ । ଯେଉଁମାନେ ବର୍ତ୍ତମାନ ଚୀନକୁ କମ୍ୟୁନିଷ୍ଟ ବୋଲି କହନ୍ତି, ସେମାନେ ନିଜ ସାମ୍ୟବାଦୀ ମୁଖାର ସୁରକ୍ଷାପାଇଁ କହନ୍ତି ।

ଅନେକ ଶିଳ୍ପପତି ନିଜର ଚାଲୁଥିବା ଶିଳ୍ପକୁ ସ୍ଥାନାନ୍ତରିତ କରି କିମ୍ବା ସଂପ୍ରସାରଣ ନାମରେ ଏସ.ଇ.ଜାଡର ଫାଇଦା ନେଇପାରିବେ । ବର୍ତ୍ତମାନ କରଦାତା କରମୁକ୍ତ ହୋଇଯିବା ଫଳରେ ଦେଶର ରାଜସ୍ୱ ଆଦାୟ ଏକ ଭୟାନକ ପରିସ୍ଥିତିରେ ପହଞ୍ଚିବ । ଗରିବ ଲୋକଙ୍କ ପାଇଁ ସରକାର ଠାରୁ ପଇସାକର ରାଷ୍ଟ୍ରୀୟ ସହାୟତା ଆଉ ମିଳିବ ନାହିଁ । ଆମ ସମ୍ବିଧାନରେ ଥିବା ରାଷ୍ଟ୍ରୀୟନୀତି ନିର୍ଦ୍ଦେଶାବଳୀ ଓ ମୌଳିକ ଅଧିକାର ଜନିତ ରାଷ୍ଟ୍ରର ଦାୟିତ୍ୱ ଗୁଡ଼ିକ ଏସ୍‌ଇଜାଡ଼ ବ୍ୟବସ୍ଥା ଦ୍ୱାରା ନିର୍ବାସିତ ହୋଇଯିବେ ।

Digitized by srujanika@gmail.com

ଏ ସମସ୍ତ ଯୟ କ୍ଷତି ଓ ତ୍ୟାଗ ସତ୍ତ୍ୱେ ଯେଉଁ ଶିଳ୍ପ ଓ ବଜାର ହେବ ସେଥିରେ ଉତ୍ପାଦକ କେଉଁ ଶ୍ରେଣୀ ପାଇଁ ଓ ଆମଦେଶର କେତେ ଭାଗ ଲୋକଙ୍କ ପାଇଁ ? ବିଶ୍ୱ ବଜାରର ଚାହିଦା ପୂରଣ ପାଇଁ ଆମର କଞ୍ଚାମାଲ ଓ ପ୍ରାକୃତିକ ସଂବଳ ଗୁଡ଼ିକୁ ଶେଷ କରି ଦିଆଯିବ । ଏ ସବୁର ଉପଭୋକ୍ତା ବିଶ୍ୱର ବିକଶିତ ଦେଶମାନଙ୍କ ଧନୀକ ଶ୍ରେଣୀ । ଆମର ଦେଶରେ ସେହି ଶ୍ରେଣୀ ମାତ୍ର ୧୦ ପ୍ରତିଶତ । ଏମାନଙ୍କୁ ନେଇ ସବୁକିଛି ବିକାଶ ? ତାହା ହେଲେ ଏହାକୁ ବହୁଜନଙ୍କ ବିନାଶ ରୂପେ ପ୍ରତିରୋଧକରିବା ପ୍ରତ୍ୟେକ ଦେଶପ୍ରେମୀଙ୍କ କର୍ତ୍ତବ୍ୟ । କାଶୀପୁର, କଳିଙ୍ଗ ନଗର ନନ୍ଦିଗ୍ରାମ ଜନ ଆନ୍ଦୋଳନ ଦେଶର ସର୍ବତ୍ର ଅପରିହାର୍ଯ୍ୟ ।

ତେଣୁ ଆଜି ଏହି ''ସ୍ୱତନ୍ତ୍ର ଅର୍ଥନୈତିକ ଅଞ୍ଚଳ'' କୁ ''ସ୍ୱତନ୍ତ୍ର ଶୋଷଣ ଅଞ୍ଚଳ'' Special Exploitation Zone (SEZ) ବୋଲି କହିଲେ ଯଥାର୍ଥ ହେବ । ଏହି ଆଇନ ଦ୍ୱାରା ପୁଞ୍ଜିପତିମାନେ ଗୋଟିଏ ବାଟୁଳିରେ ଅନେକ ପକ୍ଷୀ ଶିକାର କରିପାରିବେ । ଶିଳ୍ପନାମରେ ସମସ୍ତ ରିହାତିପାଇ ଜମିକୁ ବିଭିନ୍ନ ଦିଗରେ ବ୍ୟବହାର କରି ବିଭିନ୍ନ ସମୟରେ ସରକାରଠାରୁ ରିହାତି ପାଇଚାଲିଥିବେ । ଦେଶରେ ଜମିର ସିଂଲିଂ ଆଇନ ପରିବର୍ତ୍ତନ ନକରି ମଧ୍ୟ ଚାଷୀଠାରୁ ଜମି ଚାଲି ଯାଇପାରିବ କମ୍ପାନୀମାନଙ୍କ ପାଖକୁ । ଛୋଟଚାଷୀ ଓ ପାରମ୍ପରିକ ଚାଷୀକୁ ଖତମ କରି ଦିଆଯିବ । କର୍ପୋରେଟ୍ ଚାଷ ରହିବ, ପୁଞ୍ଜିପତି ରହିବେ, ବିଦେଶୀ ସାହୁକାର ଓ ସରକାର ବାହାଦୂରମାନେ ମଧ୍ୟ ରହିବେ । ଆଉ ବାକି ସମସ୍ତେ କୁଆଡ଼େ ଯିବେ ତାହା କିଏ କହିବ ? ସରକାରୀ ବାହାଦୂର ମାନଙ୍କୁ ପଚରାଯାଉ ।

## ସେଜ୍‌ର ଏକ ସମୀକ୍ଷା

ପ୍ରଥମେ ଏହି ବିଶେଷ ଆର୍ଥିକ ଅଞ୍ଚଳକୁ ଏକ ବିଦେଶୀ ଅଞ୍ଚଳ ରୂପେ ମାନ୍ୟତାଦେବା ଦ୍ୱାରା ଆମ ଦେଶ ଭିତରେ ଆଉ ଏକ ବିଦେଶୀ ଭୂଖଣ୍ଡକୁ ସ୍ୱୀକୃତି ଦିଆଯାଇଛି । ଏପରି ଏକ ଆଇନ ଦ୍ୱାରା ଆମ ଦେଶର ସ୍ୱାର୍ବଭୌମ ଓ ସ୍ୱାଧୀନତା ପ୍ରତି କୁଠାରଘାତ ଓ ଦେଶବାସୀଙ୍କ ପ୍ରତି ବିଶ୍ୱାସଘାତକତା କରାଯାଇଛି ।

ପୁଣି ଉକ୍ତ ଅଞ୍ଚଳ ଭିତରେ ଶ୍ରମିକର ଅଧିକାର ସାବ୍ୟସ୍ତ ହୋଇପାରିବ ନାହିଁ । ଶ୍ରମିକ ସଂଗଠନ ଗଠନ ହୋଇପାରିବ ନାହିଁ । ଶିଶୁ ଶ୍ରମିକ ନିଷିଦ୍ଧ ଆଇନର ଖିଲାପ କିମ୍ବା କୌଣସି ଫୌଜଦାରୀ ମାମଲାରେ ସଙ୍ଗେ ସଙ୍ଗେ ଅପରାଧୀ ବିରୋଧରେ କାର୍ଯ୍ୟ ଅନୁଷ୍ଠାନ ହୋଇପାରିବ ନାହିଁ । ପୋଲିସର ମଧ୍ୟ କ୍ଷମତା ସେହି ଅଞ୍ଚଳରେ ସୀମିତ । କାରଣ ଉକ୍ତ ବିଦେଶୀ ଭୂଖଣ୍ଡରେ କୌଣସି ବିବାଦ ଓ ଦେଶ ତଥା ରାଜ୍ୟର ସର୍ବସାଧାରଣଙ୍କ ପାଇଁ ଥିବା ବିଚାରାଳୟକୁ ଆସିପାରିବ ନାହିଁ । କେବଳ ହାଇକୋର୍ଟ ମୁଖ୍ୟ ବିଚାରପତିଙ୍କ ଅନୁମତି କ୍ରମେ କୌଣସି ଏକ ବା ଏକାଧିକ ନିର୍ଦ୍ଧାରିତ କୋର୍ଟ ଦ୍ୱାରା ବିଚାର ହୋଇପାରିବ ।

Digitized by srujanika@gmail.com

ଏହି ସେଜ୍ ଆଇନ ଦ୍ୱାରା ଲକ୍ଷ ଲକ୍ଷ ଏକର ଚାଷୀଙ୍କଠାରୁ କମ୍ପାନୀକୁ ଚାଲିଯିବ ଓ ସେଠାରେ କମ୍ପାନୀଚାଷ ଆରମ୍ଭ ହୋଇଯିବ । ସେହି ଜମିରେ ଖାଦ୍ୟ ଉତ୍ପାଦନ ବଦଳରେ ଆନ୍ତର୍ଜ୍ୟାତିକ ବଜାର ଚାହିଦାପୂରଣ ପାଇଁ ବିଭିନ୍ନ ଅର୍ଥକରୀ ଫସଲ, ଫୁଲଚାଷ ଓ ଜୈବ ତେଲ ପାଇଁ ଜମିକୁ ସବୁଦିନ ପାଇଁ ନଷ୍ଟକରି ଦିଆଯିବାର ସମ୍ଭାବନା ବେଶୀ । କାରଣ କମ୍ପାନୀର ସ୍ୱାର୍ଥପାଇଁ ଯାହାକିଛି କରିପାରିବ ।

ବର୍ଷ ବର୍ଷ ଧରି ଆୟକର ମଧ ଛାଡ଼ ହେବ ଏବଂ ପ୍ରଥମ ୫ ବର୍ଷ ଧରି ଶୂନ ଟିକସ ଲାଗୁହେବ ଏବଂ ଆଉ ୨ ବର୍ଷ ପାଇଁ ୫୦% ଟିକସ ଛାଡ଼ ହେବ, ଉକ୍ତକର ଛାଡ଼ର ସାତବର୍ଷପରେ ସମୀକ୍ଷାରୁ ଯଦି ଜଣାପଡ଼ିବ, କମ୍ପାନୀର କ୍ଷତିହେଲେ ପୁଣି ଟିକସ ରିହାତି ଲାଗୁକରାଯିବ । କମ୍ପାନୀମାନଙ୍କ ପ୍ରତି ଏପରି ରିହାତି ଦ୍ୱାରା କେନ୍ଦ୍ର ସରକାର ଆସନ୍ତା ୫ ବର୍ଷରେ ପ୍ରାୟ ଲକ୍ଷେକୋଟି ଟଙ୍କା ରାଜସ୍ୱ ହରାଇବେ ଓ ରାଜ୍ୟ ସରକାରମାନେ ମଧ ରାଜ୍ୟ ରାଜସ୍ୱ ହରାଇବେ । ଆସନ୍ତା ୧୦ ବର୍ଷରେ ଶହ ଶହ ସେଜ୍ ଅନୁମୋଦନକରି ଲକ୍ଷ ଲକ୍ଷ କୋଟି ଟଙ୍କାର ରାଜସ୍ୱ ହରାଇବାକୁ ପଡ଼ିବ ।

ଚାଷ ଜମିକୁ ଅଣଚାଷରେ ପରିଣତ କରିଦିଆଗଲାପରେ ଲକ୍ଷ ଲକ୍ଷ ଚାଷୀ ଜୀବିକା ହରାଇବା ସହ ଦେଶରେ ଖାଦ୍ୟ ଅଭାବ ଆସନ୍ନ ହୋଇଯିବ । ହରିଆନାରେ କେବଳ ରିଲାଏନ୍ସ କମ୍ପାନୀକୁ ୨୫ ହଜାର ଏକର ଚାଷଜମି ଦିଆଯାଉଛି ବିଶେଷ ଆର୍ଥିକ ଅଞ୍ଚଳ ଅନୁମୋଦନ କରି । ଉକ୍ତଜମିରେ ଖାଦ୍ୟ ଉତ୍ପାଦନର ଏକ ହିସାବ ଦିଲ୍ଲୀର ନବଦାନ୍ୟ ଦ୍ୱାରା କରାଯାଇଛି ।

୨୫ ହଜାର ହେକ୍ଟର = ୬୨ ହଜାର ଏକର

୧ ଏକରରେ ଗହମ ଉତ୍ପାଦନ = ୧୫ କ୍ୱିଣ୍ଟାଲ

କ) ୬୨୦୦୦ X ୧୫ = ୯୩୦୦୦୦କ୍ୱିଣ୍ଟାଲ୍

= ୯୩୦୦୦୦ ୦୦ କେ.ଜି.

ଖ) ଚାଉଳ – ୧ ଏକରରେ ଉତ୍ପାଦନ ୧୦ କ୍ୱିଣ୍ଟାଲ୍

୬୨୦୦୦ X ୧୦= ୬୨୦୦୦୦ କ୍ୱିଣ୍ଟାଲ୍

= ୬୨୦୦୦୦୦୦ କେ.ଜି.

(ହରିଆନାର ଦୁଇ ଫସଲଜମି) କ + ଖ = ୧୫୫୦୦୦୦୦ କେ.ଜି.

ଜଣେ ବ୍ୟକ୍ତିପାଇଁ ଖାଦ୍ୟ ପ୍ରତିଦିନ ୫୦୦ ଗ୍ରାମ

ବର୍ଷକୁ ପ୍ରାୟ – ୨୦୦ କେ.ଜି.

Digitized by srujanika@gmail.com

୧୫୫୦୦୦୦୦୦୦
୨୦୦ = ୭୭୫୦୦୦ ଜଣଙ୍କ ପାଇଁ ଖାଦ୍ୟ ମିଳେ ।

କେବଳ ଏକ ଫସଲି ଜମିରେ – ୩୩୭୫୦୦ ଲୋକଙ୍କପାଇଁ ଖାଦ୍ୟ ମିଳିବ । ଏହି ଜମି ଚାଲିଯିବାପରେ ଉକ୍ତ ପରିମାଣର ଖାଦ୍ୟ ଉତ୍ପାଦନ କମିଯିବ । କେବଳ ସେହିପରି ପଶ୍ଚିମ ବଙ୍ଗଳାରେ ୧୪୦୦୦୦ ଏକର ଜମି କମ୍ପାନୀମାନଙ୍କ ପାଇଁ ଅଧିଗ୍ରହଣ ହେବାକୁ ଯାଉଛି । ଏହାଦ୍ୱାରା ଏକଲକ୍ଷ ୫୦ ହଜାର ଟନ୍ ଖାଦ୍ୟ ଉତ୍ପାଦନ କମିଯିବ ଯାହାଦ୍ୱାରା ଏକ ଲକ୍ଷ ପରିବାରର ଜୀବିକା ଚାଲିଯିବ ।

**ସେଜ୍ ଦ୍ୱାରା ଲୋକେ ପାଇବେ କ'ଣ ?**

ଓଡ଼ିଶାରେ ଦକ୍ଷିଣ କୋରିଆରୁ ଆସିଥିବା ପୋସ୍କ ପାଇଁ ସେଜ୍ ଅନୁମୋଦିତ ହୋଇ ସାରିଲାଣି । ଏଥିପାଇଁ ଓଡ଼ିଶାର ବିଜେଡି ଓ ବିଜେପି ସରକାର ଓ କେନ୍ଦ୍ରର କଂଗ୍ରେସ୍ ନେତୃତ୍ୱାଧୀନ ମିଳିତ ସରକାର ଦିନ ରାତି ପୋସ୍କର ସେବାପାଇଁ ତତ୍ପର ।

ପ୍ରଥମେ କୁହାଗଲା ପୋସ୍କର ଷ୍ଟିଲ୍‌ପ୍ଲାଣ୍ଟ ହେଲେ କେନ୍ଦ୍ର ସରକାର ୩୦ ବର୍ଷରେ ରାଜସ୍ୱ ପାଇବେ ୮୭ ହଜାର କୋଟି ଟଙ୍କା ଓ ରାଜ୍ୟ ସରକାର ପାଇବେ ୨୨ ହଜାର କୋଟି ଟଙ୍କା । ବର୍ତ୍ତମାନ ସେଜ୍ ଘୋଷଣା ହୋଇଗଲାପରେ ପ୍ରଥମ ୫ ବର୍ଷ ଶୂନ କର । ଅର୍ଥାତ୍ ସଂପୂର୍ଣ୍ଣଭାବେ କେନ୍ଦ୍ର ଓ ରାଜ୍ୟର ବିଭିନ୍ନ ଟିକସ, କରରୁ ମୁକ୍ତ । ନିର୍ମାଣ କାର୍ଯ୍ୟ ପାଇଁ ବିଦେଶରୁ କିମ୍ବା ଦେଶର ଯେକୌଣସି ଅଞ୍ଚଳରୁ ଟେକ୍‌ନୋଲୋଜି, ମେସିନ୍ ଓ ଅନ୍ୟ ସମସ୍ତ ପଦାର୍ଥ ଓ ସେବା ଅଣାଗଲେ ତା' ଉପରେ ବିକ୍ରିକରଠାରୁ ଆରମ୍ଭକରି ବହିଃଶୁଳ୍କ ଓ ଅବକାରୀ ଟିକସ ଲାଗୁହେବ ନାହିଁ ।

ଉତ୍ପାଦନ ହେଲାପରେ ମଧ୍ୟ ପ୍ରଥମ ପାଞ୍ଚବର୍ଷ ରପ୍ତାନି ଓ ଆମଦାନୀ ଉପରେ କୌଣସି ଟିକସ ବସିବ ନାହିଁ । ତାପର ଦୁଇବର୍ଷ ୫୦% ଛାଡ଼ । ପୁଣି ସମୀକ୍ଷା କରାଯାଇ ଲାଭ କ୍ଷତିକୁ ହିସାବ କରିବାପରେ ପୁଣି ଟିକସ ଛଡ଼ା ଯାଇପାରିବ । ବର୍ତ୍ତମାନ ଯେପରି କେନ୍ଦ୍ର ଓ ରାଜ୍ୟର ଶାସକଦଳମାନେ ସେଜ୍ ଅନୁମୋଦନ ଓ ସୁପାରିଶ ପାଇଁ କୋଟି କୋଟି ଟଙ୍କା କମିସନ ଆଦାୟ କରୁଛନ୍ତି ଓ ନିଜ ଦେଶକୁ ବିକ୍ରିକରିବାପାଇଁ କୁଣ୍ଠାବୋଧ କରୁନାହାନ୍ତି, ସେହି ଦଳମାନଙ୍କ ମଧ୍ୟରେ ଆଜି ଯିଏ ବିରୋଧୀ ଦଳରେ ଅଛନ୍ତି ସେମାନେ ପୁଣି କ୍ଷମତାକୁ ଗଲେ କମ୍ପାନୀମାନଙ୍କ ପାଖରେ ମୂଲଚାଲ କରି ନିଜ ନିଜ ଦଳୀୟ ପାଣ୍ଠିର ଭଣ୍ଡାର ପୂର୍ଣ୍ଣକରିବା ପାଇଁ ଏହି ରିହାତି ପ୍ରକ୍ରିୟା ଚାଲୁ ରଖିବେ ।

ପୁଣି ୪ ହଜାର ଏକର ଧାନ ପାନ ଉତ୍ପାଦନ କରୁଥିବା ଚାଷ ଜମି ଯିବ ପୋସ୍କ ପ୍ଲାଣ୍ଟ ପାଇଁ । ପୁଣି ୨ ହଜାର ଏକର ଜମି ନିଜସ୍ୱ ଘରୋଇ ବନ୍ଦର ପାଇଁ । ଏହି ଜମିର ଉତ୍ପାଦନରେ ପ୍ରାୟ ୨୦ ହଜାର ଗ୍ରାମବାସୀ ଜୀବିକା ଚଳାଇ ବଞ୍ଚୁଛନ୍ତି । ସରକାର ବାରଂବାର କହୁଛନ୍ତି ମାତ୍ର ୪୦୦ ଏକର ଲୋକଙ୍କର, ଆଉ ବାକି ସରକାରୀ ଜମି । କିନ୍ତୁ ଶହ ଶହ

Digitized by srujanika@gmail.com

ବର୍ଷ ଧରି ସେହି ସରକାରୀ ଜମିରେ ଚାଷ କରି ଆସୁଥିବା ଢେଙ୍କିଆ, ଗୋବିନ୍ଦପୁର ଓ ନୂଆଁଗାଁ ପରି ବିଭିନ୍ନ ଗ୍ରାମର ଶହ ଶହ ଚାଷୀଙ୍କ ଅଧିକାର ରହିବ ନାହିଁ ଅଥଚ ଏକ ବିଦେଶୀ କମ୍ପାନୀକୁ ମାଗଣା ଦିଆଯିବ ଓ ତା' ପାଇଁ ଷ୍ଟାମ୍ପ ଖର୍ଚ୍ଚ ମଧ ଛାଡ଼ ହେବ । ସେହି ଜମି ପୁଣି ଏକ ବିଦେଶୀ ଭୂଖଣ୍ଡ ରୂପେ ପରିଗଣିତ ହେବ । ସ୍ୱାଧୀନ ଦେଶର ଚାଷୀ ନିଜ ଜମିରୁ ଉଚ୍ଛେଦହୋଇ ପୁଣି ସେ ଭିତରକୁ ଆଉ ପ୍ରବେଶ କରିପାରିବ ନାହିଁ । ପୁଣି ଜଟାଧାର ମୁହାଣରେ ପ୍ରଥମଥର ପାଇଁ ଦେଶରେ ପୋସ୍କର ଘରୋଇ ବନ୍ଦର ପାଇଁ ମଧ ଅନୁମତି ମିଳିଗଲାଣି । ସେଥିପାଇଁ ଆବଶ୍ୟକ ପରିବେଶ ମଂଜୁରୀ ଜନଶୁଣାଣୀ ପ୍ରକ୍ରିୟାକୁ ପ୍ରହସନରେ ପରିଣତକରି ମାତ୍ର ୧୫ ଦିନ ଭିତରେ ଦିଆଯାଇଛି । ଏଥିପାଇଁ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ବିଦେଶୀ ପ୍ରୀତି କେତେ ପରିମାଣ, ହିସାବ କରିବା ଏକାନ୍ତ ଜରୁରୀ । ଏହି ବନ୍ଦର ମଧ ସେଜ୍ ଅର୍ଥାତ୍ ବିଦେଶୀ ଭୂଖଣ୍ଡର ଅନ୍ତର୍ଭୁକ୍ତ । ଏହି ଅଞ୍ଚଳରେ ଆମ ରାଜ୍ୟ ଓ ଦେଶର ଅନେକ ଆଇନ ଲାଗୁହେବନାହିଁ । ଏହି ବନ୍ଦର ଜରିଆରେ ବିଦେଶରୁ କ'ଣ ଆସିଲା ଓ କେତେକ ଆସିଲା ତାର ହିସାବ ସରକାରଙ୍କ ପାଖରେ ରହିବ ନାହିଁ । କେହି ଯାଞ୍ଚକରି ପାରିବେ ନାହିଁ । ଏହି ବନ୍ଦରରୁ ୧୦ କି.ମି. ଦୂରରେ ଆମ ଦେଶର ଏକ ମୁଖ୍ୟ ବନ୍ଦର ପାରାଦୀପଠାରେ ଅଛି । ଏହି ବନ୍ଦରର ବ୍ୟବସାୟରେ କ୍ଷତି କରାଇବ । ପୋସ୍କର ଘରୋଇ ବନ୍ଦର ଜରିଆରେ ବିଭିନ୍ନ ବିଦେଶୀ କମ୍ପାନୀ ମାଲପରିବହନ କରିବେ । ପୋସ୍କ ଦକ୍ଷିଣକୋରିଆର ଏକ ବହୁରାଷ୍ଟ୍ରୀୟ କମ୍ପାନୀ, ଯିଏକି ଆମେରିକା- ସାମ୍ରାଜ୍ୟବାଦର ଏକ ଅଂଶ । ଏହି କମ୍ପାନୀର ଅନ୍ୟତମ ପୁଞ୍ଜି ନିବେଶକ ଏକ ଆମେରିକୀୟ ବ୍ୟାଙ୍କ । ପୋସ୍କୋ କମ୍ପାନୀ ଭାରତର ରାଜନୈତିକ ସ୍ତରରେ ସମର୍ଥନ ହାସଲ କରିବାପାଇଁ ଏକ Tribal Trust ଗଠନ କରିଛି ନ୍ୟୁୟର୍କ ସହରରେ । ଆମେରିକାର ସି.ଆଇ.ଏ ସମେତ ଅନ୍ୟ ବିଦେଶୀ ସଂସ୍ଥା ଆମ ଦେଶରୁ ଗୁପ୍ତ ତଥ୍ୟ ସଂଗ୍ରହ କରିବା ବାଟ ମଧ ଏହି ବନ୍ଦର ଦେଇ ସମ୍ଭବପର ହେବ । ଆମଦେଶର ସୁରକ୍ଷା ପ୍ରତି ବିପଦର ଆଶଂକା ରହିଛି ଯେହେତୁ ଏହି ବନ୍ଦରଠାରୁ ଅଳ୍ପଦୂର ଉତ୍ତରରେ ଚାନ୍ଦିପୁର କ୍ଷେପଣାସ୍ତ୍ର ଘାଟି, ଦକ୍ଷିଣରେ ଗୋପାଳପୁର ସମୁଦ୍ରତଟସ୍ଥ ଗୋଳାବନ୍ଧଠାରେ ଆର୍ମି କ୍ୟାଣ୍ଟନମେଣ୍ଟ ଓ କଟକର ଚାରବାଟିଆରେ ଆକାଶବାହିନୀର ଯୁଦ୍ଧ ଜାହାଜ ଘାଟି ରହିଛି । ଏପରି ଆଶଙ୍କା କେବଳ ପୋସ୍କ କମ୍ପାନୀର ବିରୋଧୀଙ୍କ ମଧରେ ନାହିଁ, ଦେଶର ଦେଶରକ୍ଷା ବିଭାଗ ତରଫରୁ ମଧ କେନ୍ଦ୍ରସରକାରଙ୍କ ପାଖରେ ଉପସ୍ଥାପନ କରାଯାଇଛି ବୋଲି ଟେଲିଗ୍ରାଫ ଖବର କାଗଜରେ ଖବର ପ୍ରକାଶିତ ହୋଇଛି । ତଥାପି ଏଥିପ୍ରତି ତିଳେ ମାତ୍ର ଭୃକ୍ଷେପନକରି ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ପୋସ୍କ କମ୍ପାନୀକୁ ସେବା ଯୋଗାଇଦେବା ପାଇଁ ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ଖୋଲାଯାଇଛି । ଏହି ବନ୍ଦର ସମେତ ପ୍ଲାଣ୍ଟ ଅଞ୍ଚଳ ସ୍ପେସାଲ୍ ଇକନାମିକ୍ ଜୋନ୍‌ରେ ପରିଣତ ହେଲାପରେ ଆମ ସ୍ୱାଧୀନ ଦେଶର ନାଗରିକମାନେ ଛାତ୍ର ଛାତ୍ରୀ ବହି ପୃଷ୍ଠାରୁ ପଢୁଥିବା ଐତିହାସିକ

Digitized by srujanika@gmail.com

ଘଟଣା ଗୁଡ଼ିକୁ ବେଶ୍ ତୁଳନାକରି ଉପଲବ୍ଧି କରିପାରିବେ ଦେଶକୁ କିପରି ଗୋଲାମ କରାଯାଇଥିଲା ଇଷ୍ଟଇଣ୍ଡିଆ କମ୍ପାନୀର ପ୍ରବେଶପରେ ।

ଏସବୁ ରିହାତି ପରେ ବି ପୋସ୍କୋ ପାଇଁ ଲୁହାପଥର ମାଗଣାରେ ଦିଆଯିବ । ରୟାଲଟି ଟନ୍ ପିଛା ମାତ୍ର ୨୫ ଟଙ୍କା ସରକାର ପାଇବେ ଯାହାର ବଜାର ଦର ୨୮୦୦ ଟଙ୍କାରୁ ୩୦୦୦ ଟଙ୍କା । ୬୦୦ ନିୟୁତ ଟନ୍ ଲୁହାପଥରରୁ ରାଜ୍ୟ ସରକାର ଯୋଗାଇ ପାରିବେ ମାତ୍ର ୧୫୦୦୦ କୋଟି ଟଙ୍କାରେ । କମ୍ପାନୀର ନେଟ୍‌ମୁନାଫା ହେବ ଏକଲକ୍ଷ ୩୨ ହଜାର କୋଟି ଟଙ୍କା କେବଳ ଲୁହାପଥରରୁ । ଯେତେବେଳେ ବଜାର ଦର ବୃଦ୍ଧି ହୋଇ ଚାଲିଥିବ ଏହି ପରିମାଣ ବଢ଼ି ବଢ଼ି ଚାଲିଥିବ । ପୁଣି ଇସ୍ପାତରୁ ଲାଭ ଅଲଗା, ପୁଣି ଯେତିକି ଟିକସ ଓ ଭିତ୍ତିଭୂମି ଗଠନରୁ ରିହାତି ପାଇବ, ତାର ହିସାବ କଲେ ୩୦ ବର୍ଷରେ ୧୦ ଲକ୍ଷ କୋଟି ଟଙ୍କାକୁ ଟପିବ । ଆମକୁ କୁହାଯାଉଛି ପୋସ୍କୋ ୫୦ ହଜାର କୋଟି ଟଙ୍କାର ପୁଞ୍ଜି ବିନିଯୋଗ କରିବ । ମାତ୍ର ୩୦ ବର୍ଷରେ ୧୩ ହଜାର ଲୋକଙ୍କୁ ନିଯୁକ୍ତି ଦେବ ବୋଲି କହୁଛି ତାହା ମଧ୍ୟ ସମଗ୍ର ଦେଶରୁ । ଅନ୍ୟଦିଗରେ କମ୍ପାନୀପାଇଁ ଜମିହରାଇ ବିନିଯୁକ୍ତ ହେବେ ୨୦ ହଜାର ଲୋକ କୃଷି ଓ ମତ୍ସ୍ୟ ଜୀବିକାରୁ; ଆଉ ୨୦ ହଜାରରୁ ଅଧିକ ଆଦିବାସୀ ଜଳ ଓ ଜଙ୍ଗଲରୁ ବଞ୍ଚିତ ହେବେ ଲୁହାପଥର ଖନନ ହେବାପରେ । ଏପରି ୪୦ ହଜାର ଚାଷୀ କୃଷି, ଜଳ ଓ ଜଙ୍ଗଲରୁ ବଞ୍ଚିତହେବେ ଖଣ୍ଡାଧାର ଜଙ୍ଗଲରୁ ଆରମ୍ଭକରି ଜଗତସିଂହପୁର ପର୍ଯ୍ୟନ୍ତ । କମ୍ପାନୀପାଇଁ ମହାନଦୀରୁ ଜଳ ଯିବ ଓ କମ୍ପାନୀ ପାଇଁ ଖଣି ଖନନ ହେବାପରେ ଜଳ ସ୍ରୋତ ଓ ଜଙ୍ଗଲ ଧ୍ୱଂସ ହେବ । ଏଥିରେ କୃଷି ବ୍ୟବସ୍ଥା ବିପର୍ଯ୍ୟସ୍ତ ହେବ । ବର୍ତ୍ତମାନ ଆମେ ହିସାବ କରିବା କି ଆମେ କେତେ ପାଇବା, କେତେ ହରାଇବା ? ପୁଣି ପୋସ୍କୋପାଇଁ ଲୁହାପଥର ପରିବହନ କରିବାକୁ ଜାତୀୟ ରାଜପଥ ନିର୍ମାଣ ହେବ । ତାର ନାମ ରହିବ ପୋସ୍କୋ ରାଜପଥ । ଏ ଦେଶ କାହାର ହେବ ଅନୁମାନ କରିହେଉଛି ।

ଆଉ ଏକ ଉଦାହରଣ :– ଝାରସୁଗୁଡ଼ାଠାରେ ବେଦାନ୍ତ କମ୍ପାନୀର ଆଲୁମିନିୟମ ସ୍ମେଲଟର ପ୍ଲାଣ୍ଟକୁ ସେଜ୍ ଅନୁମୋଦିତ କରିଦିଆଗଲାଣି । ଏହି ପ୍ରକଳ୍ପ ସେଜ୍ ଆଇନ୍ ହେବା ପୂର୍ବରୁ ଆସିଛି । କିନ୍ତୁ ସେଜ୍‌ର ସୁବିଧା ହାସଲ କରିବା ମଧ୍ୟ ବିକାଶ ରାଜନୀତିର ଏକ ଖୋଲା ଚରିତ୍ର । ଏହି ପ୍ଲାଣ୍ଟର କଞ୍ଚାମାଲ ଆସିବ ଲାଞ୍ଜିଗଡ଼ ଆଲୁମିନା ପ୍ଲାଣ୍ଟରୁ । ଲାଞ୍ଜିଗଡ଼ର ଆଲୁମିନାପାଇଁ କଞ୍ଚାମାଲ ବକ୍‌ସାଇଟ୍ ଆସିବ ସଂରକ୍ଷିତ ଜଙ୍ଗଲ ନିୟମଗିରିରୁ । ଏହି ଦୁଇ ପ୍ରକଳ୍ପ ବିରୋଧରେ ଜନ ଆନ୍ଦୋଳନ ଚାଲିଛି । ପ୍ରକଳ୍ପର ପ୍ରଥମ ପର୍ଯ୍ୟାୟ ଖନନକୁ ସୁପ୍ରିମକୋର୍ଟଙ୍କ ବିଶେଷଜ୍ଞ କମିଟି ସିଇସି ନିଷେଧ କରିବାକୁ ସୁପାରିଶ କରିଛି । ଏହାକୁ କମ୍ପାନୀ ଚାଲେଞ୍ଜ କରିଛି । ସୁପ୍ରିମକୋର୍ଟରେ କୌଣସି ଫଇସଲା ହେବାପୂର୍ବରୁ

Digitized by srujanika@gmail.com

ଶେଷ ପର୍ଯ୍ୟାୟ ଆଲୁମିନିୟମ ପ୍ଲାଣ୍ଟକୁ ଅନୁମତିଦେବା ଓ ତାକୁ ପୁଣି ସେଜ୍ ଅନ୍ତର୍ଭୁକ୍ତ କରିବା ପଛରେ ବେଦାନ୍ତ କମ୍ପାନୀ ପାଖରେ ରାଜ୍ୟ ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ରର ମନ୍ତ୍ରୀମାନେ କେତେ ଆଜ୍ଞାଧୀନ ସେବକ ରୂପେ ପରିଚିତ ତାହା ଉପଲବ୍ଧି କରିହେଉଛି । ଏବେ ବେଦାନ୍ତଠୁ ଯାହା କିଛି ରାଜସ୍ୱ ମିଳିଥାନ୍ତା ତାହା ଆଉ ସମ୍ଭବପର ହେବନାହିଁ । କାରଣ ଲାଞ୍ଜିଗଡ଼ରୁ ଆଲୁମିନା କଞ୍ଚାମାଲରୂପେ ଝାରସୁଗୁଡ଼ା ସ୍ମେଲ୍ଟର ପ୍ଲାଣ୍ଟକୁ ଯିବ ଆଲୁମିନିୟମ୍ ଉତ୍ପାଦନ ପାଇଁ । ଅର୍ଥାତ୍ ଏହା ଉପରେ ଆଉ କୌଣସିରାଜ୍ୟ ଅନ୍ୟ କେନ୍ଦ୍ରୀୟ ଟିକସ ଲାଗୁହେବନାହିଁ । ଝାରସୁଗୁଡ଼ା ପ୍ଲାଣ୍ଟରୁ ଶେଷ ଉତ୍ପାଦନ ଆଲୁମିନା ଯିବ ଦେଶୀୟ ଓ ବିଦେଶୀ ବଜାରକୁ । ତାହା ମଧ୍ୟ ଟିକସରୁ ମୁକ୍ତ ହେବ । ଏହି ସ୍ମେଲଟ୍‌ର ପ୍ଲାଣ୍ଟ ପାଇଁ ଏକ ପାୱାର ପ୍ଲାଣ୍ଟ ପାଇଁ ମଧ୍ୟ ଅନୁମତି ଦିଆଯାଇଛି । ସେଥିରୁ ସେ ବ୍ୟବହାରକରି ବଳକା ବିକ୍ରିକଲେ ବି ତା ଉପରେ କୌଣସି ଟିକସ ଲାଗୁହେବନାହିଁ । ବରଂ ସରକାର ଜଳ ଯୋଗାଣ ସମେତ ଅନ୍ୟ ସୁବିଧା ଯୋଗାଇଦେବେ । କୋଇଲା ମଧ୍ୟ ରିହାତିରେ ମିଳିବ ଏବଂ ଟିକସ ଲାଗୁ ମଧ୍ୟ ହେବନାହିଁ । ସେସ୍ ମଧ୍ୟ ଆଦାୟ ହେବନାହିଁ । ସେଜ୍‌ର କରାମତି ଏଥିରୁ ବୁଝି ହୋଇଯାଉଛି ।

ତାପରେ ଓଡ଼ିଶାର ଗୋପାଳପୁର ପାଖରେ ୧୦ ବର୍ଷ ପୂର୍ବରୁ ଜବରଦସ୍ତ ଅଧିଗ୍ରହଣ କରାଯାଇଥିବା ୩୫୦୦ ଏକର ଚାଷ ଜମି ଟାଟା କମ୍ପାନୀ ପାଖରେ ବେଆଇନ ଭାବେ ରହିଛି । କାରଣ ଏହି ଜମି ଅଧିଗ୍ରହଣ ଇସ୍ପାତ କାରଖାନାପାଇଁ ହୋଇଥିଲା । ଜନ ଆନ୍ଦୋଳନ ବାଧକଲା କମ୍ପାନୀ ହଟିଯିବାକୁ । କିନ୍ତୁ ଏହି ଜମି ଏପର୍ଯ୍ୟନ୍ତ ରହିଛି ଯାହାକି ଆଇନ ସମ୍ମତ ନୁହଁ । ସେଜ୍ ଆଇନକୁ ନିଜ ସ୍ୱାର୍ଥପାଇଁ ବ୍ୟବହାର କରିବାକୁ ଯାଇ ଟାଟା କମ୍ପାନୀ ଜମି ନିଜ ଜବ୍‌ଜାରେ ରଖିବାକୁ ଏବେ- ସଫଳ ହୋଇଛି । କାରଣ ଟାଟା ପାଇଁ ରାଜ୍ୟ, କେନ୍ଦ୍ର ସରକାର ଓ ମୁଖ୍ୟ ବିରୋଧୀ ଦଳମାନେ ମଧ୍ୟ ଦରଦୀ । ଏବେ ଗୋପାଳପୁରର ଏହି କୃଷି ଜମିରେ ଟାଟାର ନାମଫଳକ ଲାଗିଗଲାପରେ ଏଠି ବଡ଼ ବଡ଼ ଦୋଠା ଓ ଦୋକାନଘର ହେବ । ଟାଟା କମ୍ପାନୀ ଅନ୍ୟ କମ୍ପାନୀମାନଙ୍କୁ ଲିଜ୍‌ଦେବ ଓ ନିଜର କମ୍ପାନୀକୁ କେନ୍ଦ୍ର ବିଭିନ୍ନ ସାମଗ୍ରୀ ଏହି ଅଞ୍ଚଳରୁ କାରବାର ହେଲାପରି ଦେଖାଇ ରାଜ୍ୟ ଓ କେନ୍ଦ୍ରଠାରୁ ଟିକସ ରିହାତି ହାସଲ କରିବ । ଏହି ଜମିର ଦାମ ଆକାଶ ଛୁଆଁ ହୋଇଯିବ । ଥରେ ଚାଷୀ ହାତରୁ ଜମି ଚାଲିଗଲାପରେ କର୍ପୋରେଟ ମାଲିକାନାର ଜମିର ଦାମ ଏକ ହଜାର ଗୁଣ ହୋଇଯାଉଛି ।

ଏବେ ସେଜ୍ ଆଇନ ନାମରେ ସରକାରମାନେ ବିକାଶ ପାଇଁ ଯେତେ ଓକିଲାତି କଲେ ବି ସାଧାରଣ ଚାଷୀ, କୃଷିଶ୍ରମିକ, ଆଦିବାସୀ ଓ ଦଳିତ ଜମିକୁ ରକ୍ଷାକରିବା ପାଇଁ ସଂଘର୍ଷରତ । ପଶ୍ଚିମ ବଙ୍ଗର ନନ୍ଦିଗ୍ରାମରେ ପୋଲିସ୍ ଓ ଶାସକ ଦଳର ହିଂସାର ଶିକାର ହୋଇ ୧୮ ଜଣ ଶହୀଦ ହେଲାପରେ ସରକାର ବାଧ ହେଲେ ସେଜ୍ ଲାଗୁ ନ କରିବାକୁ

Digitized by srujanika@gmail.com

ଓ ଜମି ଅଧିଗ୍ରହଣ ବନ୍ଦହେଲା । ମହାରାଷ୍ଟ୍ରର ରାୟଗଡ ଜିଲ୍ଲାରେ ରିଲାଏନ୍ସକୁ ୩୫ ହଜାର ଏକର ଜମି ଦିଆଯିବାକୁ ନିଷ୍ପତ୍ତି ହୋଇଛି । ଜମିର ସୁରକ୍ଷା ପାଇଁ ସେଠାରେ ଚାଷୀ ସଂଗ୍ରାମରତ ।

ଗୁଜରାଟରେ ସେଜ୍ ପାଇଁ ୨୦୦୪ ରେ ଆଇନ ତିଆରି ହୋଇଛି । 'ମୁନ୍ଦ୍ରା' ଦେଶର ପ୍ରଥମ ସେଜ୍ । ଗୁଜରାଟ ସରକାରଙ୍କ ସୁପାରିଶରେ 'ଅଦ୍ୱାଣୀ' ନାମକ ଏକ ବହୁମୁଖୀ-ଉତ୍ପାଦନ କ୍ଷେତ୍ରକୁ କେନ୍ଦ୍ର ସରକାର ୨୦୦୪ ଫେବୃଆରୀ ୧୨ ତାରିଖ ଦିନ ମଂଜୁରୀ ଦେଇଦେଲେ । ଏହି କମ୍ପାନୀକୁ ଗୁଜରାଟ ସରକାର ୧୯୭୬ ଏକର ଜମି ଦେଇ ରାଜ୍ୟର ସର୍ବୋଚ୍ଚ ଭୂସ୍ୱାମୀ କରିଦେଲେ । ଏହା କଚ୍ଛ ଅଞ୍ଚଳର ସମୁଦ୍ରତଟ, ଏଠିଥିବା ୯ କୋଟି ଟଙ୍କାର ମତ୍ସ୍ୟ ପାଳନ ଉଦ୍ୟୋଗ ବିସ୍ଥାପିତ ହେବାକୁ ଯାଉଛି ।

ତାମିଲନାଡୁର ଚେନ୍ନାଇ ନିକଟସ୍ଥ ବୈଣ୍ଡୁଲରେ ଏକ 'ସେଟ୍ ଲାଇଟ ଟାଉନ୍ ପାଇଁ ୩୦ ହଜାର ଏକର ଜମି ଅଧିଗ୍ରହଣ କରାଯାଇଛି ଯାହାକୁ ଚାଷୀ ଏବେ ବି ବିରୋଧ କରୁଛନ୍ତି ।

ଏହିପରି ସମଗ୍ର ଦେଶରେ ଚାଷ ଜମିକୁ କମ୍ପାନୀମାନଙ୍କ ହାତରେ ଟେକିଦେବା ଆର୍ଥିକ ବ୍ୟବସ୍ଥା ଦେଶର କୃଷି ବ୍ୟବସ୍ଥାକୁ ଧ୍ୱଂସ କୃଷକମାନଙ୍କ ଜୀବିକା ଛଡ଼ାଇ ନେଉଥିବାବେଳେ ଏପରି ଜନବିରୋଧୀ ପ୍ରକ୍ରିୟାକୁ ପ୍ରତିରୋଧ କରିବା ଏକ ଦେଶପ୍ରେମୀ କାର୍ଯ୍ୟ ।

ସେଜ୍ ସପକ୍ଷରେ ଯୁକ୍ତି କରିବାବେଳେ କେତେକ ପ୍ରବକ୍ତା ଚୀନ ଦେଶର ସଫଳତାକୁ ଉଲ୍ଲେଖ କରୁଛନ୍ତି । କିନ୍ତୁ ସତ୍ୟକୁ ଅର୍ଦ୍ଧସତ୍ୟରେ ପରିଣତ କରାଯାଉଛି । ଚୀନରେ ସେଜ୍ ୧୯୭୮ ରୁ ଆରମ୍ଭ ହୋଇଛି । ସର୍ବମୋଟ ସଂଖ୍ୟା ୭ଟି, ଏଥିରୁ ୨ଟି ବନ୍ଦ ହୋଇ ଗଲାଣି । କିନ୍ତୁ ଏହି ଅଞ୍ଚଳ ଗୁଡ଼ିକ ପ୍ରଥମେ ଜମି ଚାଷ ହେଉନଥିବା ଜମି ଓ ସଂପୂର୍ଣ୍ଣଭାବେ ଅବହେଳିତ ଅଞ୍ଚଳ । ଚୀନ ସରକାରଙ୍କ ଅଧୀନରେ ଜମି ରହିଲା ଓ ସରକାର ସେଗୁଡ଼ିକର ଭିତ୍ତିଭୂମିର ବିକାଶ କଲାପରେ ବିଦେଶୀ ପୁଞ୍ଜିକୁ ଡ଼ାକିଲେ, କିନ୍ତୁ ତାହା ବିଦେଶୀ ଅଞ୍ଚଳ ରୂପେ ପରିଗଣିତ ହେଲାନାହିଁ । ତାହା ସରକାରଙ୍କ ଅଧୀନରେ ଜମି ରହିଲା, କେବଳ ବିଦେଶକୁ ରପ୍ତାନୀ ପାଇଁ ଉତ୍ପାଦନ ହେଲା । କିନ୍ତୁ ସେଠାରେ ମଧ୍ୟ କ୍ରମଶଃ ଲୋକଙ୍କୁ ରୋଜଗାର ମିଳିଲାନାହିଁ ଓ ଚାଷଜମି ମଧ୍ୟ ସେଜ୍ ଅନ୍ତର୍ଭୁକ୍ତ ହେବାପରେ ଚାଷୀମାନଙ୍କ ବିଦ୍ରୋହ ସଂଗଠିତ ହେଲା । ହଜାର ହଜାର ପ୍ରତିବାଦ ହେଉଛି ଘରୋଇକରଣ ବିରୋଧରେ, କିନ୍ତୁ ଖବରକୁ ଚାପିଦିଆଯାଉଛି । ଆଉ ଏକ ସତ୍ୟତାକୁ ଲୁଚାଇ ଦିଆଯାଉଛି । ତାହାହେଲା ମାଓସେତୁଙ୍ଗଙ୍କ ନେତୃତ୍ୱରେ ଚୀନର କୃଷି ବ୍ୟବସ୍ଥାକୁ ସୁଦୃଢ଼ କରି ଦିଆଯାଇଥିବା ଯୋଗୁଁ ମୂଳ ଅର୍ଥବ୍ୟବସ୍ଥା ଆମ ଦେଶ ତୁଳନାରେ ସାମର୍ଥ୍ୟ ହାସଲ କରିଥିଲା । ତେଣୁ ଏଠି ଚୀନ ଦେଶର ତଥ୍ୟକୁ ଠିକ୍ ଭାବରେ ଉପସ୍ଥାପନା କରାନଯାଇ ରାତି ପାହିଲେ ଆମ

Digitized by srujanika@gmail.com

ଦେଶରେ ଗଣ୍ଡା ଗଣ୍ଡା 'ସେଜ' ଅନୁମୋଦିତ ହେଉଛି । ଏହାଦ୍ୱାରା କେବଳ କମ୍ପାନୀ ରାଜର ପ୍ରଭୁତ୍ୱକୁ ଜାହିର କରାଯାଉଛି । ଚୀନ ମଧ୍ୟ କମ୍ୟୁନିଷ୍ଟ ଆଦର୍ଶବାଦରୁ କ୍ରମଶଃ ବଜାର ସମାଜବାଦ ନାମରେ ପୁଞ୍ଜିବାଦ ଅର୍ଥନୀତିକୁ ଗ୍ରହଣ କରି ନେଉଥିବାଯୋଗୁଁ ସେହି ଦେଶରେ କୃଷିର ସଂକଟ ଦେଖାଦେବା ସହ ବେରୋଜଗାର ସୃଷ୍ଟି ହୋଇଛି । ତେଣୁ ବହୁ ବିଦ୍ରୋହ ସଂଗଠିତ ହେଉଛି, କେବଳ ୨୦୦୫ ରେ ପ୍ରାୟ ୮୦ ହଜାର ସଂଗଠିତ ପ୍ରତିବାଦ ଘଟିଛି ।

ସ୍ପେସାଲ୍ ଇକନାମିକ ଜୋନ ଆଇନ ପୂର୍ବରୁ ଆମଦେଶରେ ଏକ୍ସପୋର୍ଟ ପ୍ରମୋସନ ଜୋନ୍ କାନୁନ୍ ରହିଛି । ଏହାର ଲକ୍ଷ୍ୟ ଥିଲା ବିଦେଶୀ ମୁଦ୍ରା ଅର୍ଜନ । ୧୯୯୬-୯୭ ର ହିସାବ ଅନୁଯାୟୀ ବିଗତ ୫ ବର୍ଷ ମଧ୍ୟରେ ଆମଦାନୀ ଉପରେ ବ୍ୟୟ ଓ କରଛାଡ଼ ୧୬୪୬୧ କୋଟି ୫୮ ଲକ୍ଷ ଟଙ୍କା ଥିବାବେଳେ ରପ୍ତାନିର ଆୟ କେବଳ ୧୩୫୬୩ କୋଟି ୮୭ ଲକ୍ଷ ଟଙ୍କା ଥିଲା । ଅଗଷ୍ଟ ୧୯୯୬ ରୁ ଜୁଲାଇ ୧୯୯୭ ମଧ୍ୟରେ କାର୍ଯ୍ୟକାରୀ ହୋଇଥିବା କ୍ଷେତ୍ରରୁ ଦେଖାଗଲାଯେ ୨୩୩୩ ଟି ଇମିଜାଡ଼ ମଧ୍ୟରୁ ମାତ୍ର ୫୧୩ ଟି କାମ କରୁଛି । ୧୩୫୧ ଟି ଅନୁମତି ପତ୍ର ରଦ୍ଦ କରିଦିଆ ଯାଇଥିଲା । ୧୯୯୮ରେ ଜଣେ ଅଧିକାରଙ୍କ ହିସାବ ଅନୁଯାୟୀ ୪୭୦୦ କୋଟି ଟଙ୍କାର ବିଦେଶୀ ମୁଦ୍ରା ଅର୍ଜନ କରିବାକୁ ଯାଇ ଆମଦାନୀ ଶୁଳ୍କ ୭୫୦୦ କୋଟିଟଙ୍କା ଛାଡ଼ କରାଯାଇଛି । ୨୦୦୨ ରେ ରପ୍ତାନିରେ ଇ.ପି.ଜାଡ଼ର ଭାଗିଦାର ମାତ୍ର ୨% ଥିଲା । କେନ୍ଦ୍ରଦ୍ୱାରା ଏ ମଧ୍ୟରେ ରପ୍ତାନୀ ସମୃଦ୍ଧି ଅଞ୍ଚଳ ତଥା ଇପିଜାଡ଼ପାଇଁ ୯୦ ହଜାର କୋଟି ଟଙ୍କାର କର ଛାଡ଼ କରାଯାଇଛି ।

ଅତୀତର ଅନୁଭୂତି 'ସେଜ୍' ଦ୍ୱାରା ଉଦ୍ୟୋଗୀକରଣ ବଦଳରେ ଉଦ୍ୟୋଗ ବନ୍ଦ କରଣରେ ପରିଣତ ହେବ । ଯେଉଁ କମ୍ପାନୀମାନେ ସେଜ୍ ସୁବିଧାରୁ ବଞ୍ଚିତ ହେବେ ସେମାନଙ୍କ ଉତ୍ପାଦନ ବଜାରରେ ପ୍ରତିଯୋଗିତା କରିପାରିବେ ନାହିଁ । ସବୁଠାରୁ ବଡ଼ ଅସୁବିଧାର ସମ୍ମୁଖୀନ ହେବେ ଛୋଟ ଓ ମଧ୍ୟମ ଶିଳ୍ପଗୋଷ୍ଠୀ । ଏହି ପ୍ରକଳ୍ପ ଗୁଡ଼ିକ ଅପମୃତ୍ୟୁର ଶିକାର ହୋଇଛନ୍ତି ଜଗତୀକରଣ ଓ ଉଦାରୀକରଣ ଯୋଗୁଁ, ଏବେ 'ସେଜ୍' ଦ୍ୱାରା ସଂପୂର୍ଣ୍ଣ କବର ଖାନାକୁ ଚାଲିଯିବେ । ଅନ୍ୟପକ୍ଷରେ ଅନେକ ଲାଭରେ ଚାଲୁଥିବା ଶିଳ୍ପ 'ସେଜ୍' ଅନ୍ତର୍ଭୁକ୍ତ ହେବାକୁ ରାଜନୈତିକ ଚାପ ସୃଷ୍ଟି କରିବେ ଓ ଅର୍ଥ ପ୍ରଲୋଭନ ଜରିଆରେ ମଧ୍ୟ ହାସଲ କରିବେ ।

## ଦେଶ ଚଳାଉଛି କିଏ ?

ଏବେ 'ସେଜ୍'କୁ ନେଇ ଏହି ପ୍ରଶ୍ନ ଅତି ପ୍ରାସଙ୍ଗିକ । କେନ୍ଦ୍ର ବାଣିଜ୍ୟ ଓ ଶିଳ୍ପ ମନ୍ତ୍ରଣାଳୟ 'ସେଜ୍' ଆଇନ ହୋଇଯିବାରେ ଦେଶର ଶିଳ୍ପାୟନ ଓ ରପ୍ତାନିର ସମୃଦ୍ଧି ପାଇଁ ଗୋଟିଏ ପରେ ଗୋଟିଏ ଦେଶର ବିଭିନ୍ନ ରାଜ୍ୟରେ ବିଶେଷ ଆର୍ଥିକ ଅଞ୍ଚଳ ଅନୁମୋଦନ କରି ଚାଲିଥିବାବେଳେ ଆରମ୍ଭରେ କେନ୍ଦ୍ର ଅର୍ଥମନ୍ତ୍ରାଳୟ ଏହି ପ୍ରକ୍ରିୟା ଦ୍ୱାରା ଦେଶର

Digitized by srujanika@gmail.com

ରାଜସ୍ୱ ଆୟରେ ବିପୁଳହାନି ହେବ ବୋଲି ମତ ପ୍ରକାଶ କରିଥିଲା । ୨୦୧୦ ମଧ୍ୟରେ ୧୬୦୦୦୦ କୋଟି ଟଙ୍କାର କର ଛାଡ଼ ହେବ ଯାହାକି ଦେଶର ଲୋକଙ୍କ ବିକାଶରେ ଲାଗିଥାନ୍ତା ।

ରିଜର୍ଭବ୍ୟାଙ୍କର ୨୦୦୬ ବାର୍ଷିକ ରିପୋର୍ଟରେ ମଧ୍ୟ 'ସେଜ୍' ପାଇଁ କରଛାଡ଼ ପ୍ରତି ସତର୍କ କରାଇ ଦିଆଯାଇଥିଲା । ବ୍ୟାଙ୍କ ଗଭର୍ନର ଓ୍ୱାଇ. ଭି. ରେଡି 'ସେଜ୍' ଏକ ସାଧାରଣ ଜମି ଇଷ୍ଟେଟ ବ୍ୟବସାୟ ଆଖ୍ୟାଦେଇ ଟିପ୍ପଣୀ କରିଥିଲେ । ନିକଟରେ 'ସେଜ୍'କୁ 'ବିଦେଶୀ ଅଞ୍ଚଳ' ରୂପେ ବ୍ୟବହାର କରିବା ଓ ଉପକୂଳ ଅଞ୍ଚଳରେ ବିଦେଶୀ କମ୍ପାନୀମାନଙ୍କୁ ସେଜ୍ ଅନ୍ତର୍ଭୁକ୍ତ କରିବାକୁ ନେଇ- ପ୍ରତିରକ୍ଷା ମନ୍ତ୍ରାଳୟ ମଧ୍ୟ ଆପତ୍ତି କରିଥିବା ଖବର ପ୍ରକାଶ ପାଇଛି । ଏସବୁ ସତ୍ୱେ ସେଜ୍ ଦେଶର ବିକାଶ ପାଇଁ ଅନିବାର୍ଯ୍ୟବୋଲି ପ୍ରଧାନମନ୍ତ୍ରୀ, ବାଣିଜ୍ୟମନ୍ତ୍ରୀ କହି ଚାଲିଛନ୍ତି ।

ଆମ ଦେଶର ଶାସନ ବ୍ୟବସ୍ଥା ପ୍ରଧାନମନ୍ତ୍ରୀଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଦ୍ୱାରା ପରିଚାଳିତ ଓ ସଂସଦ ପାଖରେ ଉତ୍ତରଦାୟୀ । ଦେଶର ସୁରକ୍ଷା ଓ ଜାତୀୟ ସ୍ୱାର୍ଥପାଇଁ ସରକାରଙ୍କ ନୀତିଗତ ନିଷ୍ପତ୍ତି ସାମୂହିକ ହୋଇଥାଏ । ବିଶେଷକରି କ୍ୟାବିନେଟ୍ ନିଷ୍ପତ୍ତି ନେଇଥାଏ । 'ସେଜ୍' ଆଇନ ସଂସଦରେ ଗୃହୀତ ହୋଇଛି । ଏହାର କାର୍ଯ୍ୟକାରିତାପରେ ଅର୍ଥମନ୍ତ୍ରାଳୟ, ପ୍ରତିରକ୍ଷା ମନ୍ତ୍ରାଳୟ ଓ ରିଜର୍ଭବ୍ୟାଙ୍କ ପରି ସର୍ବୋଚ୍ଚ ଅନୁଷ୍ଠାନମାନେ 'ସେଜ୍' କୁ ନେଇ ଆଶଂକା ଓ ଆପତ୍ତି କରିବା ଅତି ଗୁରୁତ୍ୱପୂର୍ଣ୍ଣ ଓ ଚିନ୍ତାଜନକ ସ୍ଥିତି । ଏଥିରୁ ପ୍ରମାଣିତ ହେଉଛି ଯେ, ଏହି ଆଇନ ସର୍ବସମ୍ମତିରେ ହୋଇନାହିଁ । ଦେଶର ସୁରକ୍ଷାକୁ ନେଇ ଅଧ୍ୟୟନ ହୋଇନାହିଁ । ତାହାହେଲେ ପ୍ରଧାନମନ୍ତ୍ରୀ ଓ ବାଣିଜ୍ୟମନ୍ତ୍ରୀ ଏହାକୁ କରାଇନେଲେ ? ଏମାନଙ୍କ ପଛରେ କିଏ ? ନିଶ୍ଚିତ ଭାବେ ଏହାପରେ ଅଛନ୍ତି ଦେଶୀବିଦେଶୀ କମ୍ପାନୀମାନେ ଆଉ ବିଶ୍ୱବ୍ୟାଙ୍କ ଓ ବିଦେଶୀ ପୁଞ୍ଜିକୁ ନେଇ ଆସୁଥିବା ବେପାରୀମାନେ ।

ସବୁଠାରୁ ଆଶ୍ଚର୍ଯ୍ୟ ହେଉଛି, ଏସବୁ ପ୍ରତିକ୍ରିୟା ସତ୍ୱେ ଦେଶର ସଂସଦରେ ଝଡ଼ ନାହିଁ । କାରଣ ଭାରତୀୟ ଜନତାପାର୍ଟି ଆରମ୍ଭ କରିଥିବା 'ସେଜ୍' ପ୍ରକ୍ରିୟାକୁ କଂଗ୍ରେସ ସରକାର ଚୂଡ଼ାନ୍ତ କରିଛନ୍ତି । ୨୦୦୦ ସାଲରେ ରପ୍ତାନି-ଆମଦାନୀ ନୀତିରେ ପରିବର୍ତ୍ତନ କରି ବାଜପେୟୀ ସରକାର ଦେଶର କାର୍ଯ୍ୟରତ ୮ଟି ଏକ୍ସପୋର୍ଟ ପ୍ରମୋସନ୍ ଜୋନ୍‌କୁ 'ସ୍ପେସାଲ୍ ଇକନାମିକ୍ ଜୋନ୍' ରେ ପରିଣତ କରି ଏହାକୁ କରମୁକ୍ତ ବିଦେଶୀ ଅଞ୍ଚଳ ରୂପେ ମାନ୍ୟତା ଦେଲେ । ମନମୋହନ ସିଂହଙ୍କ ସରକାର ପ୍ରତିଦିନ ରାତିପାହିଲେ 'ସେଜ୍' ଘୋଷଣା କରି ଚାଲିଛନ୍ତି । ସମଗ୍ରଦେଶରେ 'ସେଜ୍ ହଟାଅ' ଆନ୍ଦୋଳନ ଜନତାଙ୍କ ଦ୍ୱାରା ଆରମ୍ଭ ହେଲାଣି । ଏହି ଆନ୍ଦୋଳନକୁ ଦେଶର ସାର୍ବଭୌମ ଓ ସ୍ୱାଧୀନତାର ସୁରକ୍ଷା

Digitized by srujanika@gmail.com

ପାଇଁ ଏବଂ ସାମ୍ରାଜ୍ୟବାଦର ମୁକାବିଲାପାଇଁ ଏକ ଦୁର୍ବାର ଜନ ଆନ୍ଦୋଳନ ଗଢ଼ିତୋଳିବା ଏକାନ୍ତ ଜରୁରୀ । ନଚେତ୍ ଏ ଦେଶର ଶାସକମାନେ ଦେଶଟାକୁ କେତେବେଳେ ବିକିଦେବେ, ସେଥିପାଇଁ ସାବଧାନ ।

ଦେଶର ଅନ୍ୟତମ ବଡ଼ ଶିଳ୍ପପତି ରାହୁଲ ବାଜାଜ କହିଲେଣି ସେଜ୍ ଦ୍ୱାରା ଦୁର୍ନୀତି ବଢ଼ିବ ଓ କେତେକ ଶିଳ୍ପ ଗୋଷ୍ଠୀ ଏହାର ଲାଭ ଉଠାଇବେ । ଅନ୍ୟ ଶିଳ୍ପମାନଙ୍କ ପ୍ରତି ଅବିଚାର ହେବ । ସେ ପୁଣି କହିଛନ୍ତି ଯେ, ଆମ ଦେଶପାଇଁ ଏହାର ଆବଶ୍ୟକତା ନାହିଁ । ଯେଉଁମାନେ ଦୁଇଫସଲି ଚାଷଜମି ବ୍ୟତୀତ ଅନ୍ୟ ଜମିକୁ 'ସେଜ୍' ପାଇଁ ଦିଆଯାଉ ବୋଲି କହୁଛନ୍ତି, ସେମାନେ ଜାଣିବା ଉଚିତ୍ ଯେ ଦେଶରେ ୮୦ ଭାଗ ଜମି ଏକ ଫସଲି । ତାହାହେଲେ ସେହି ଚାଷଜମି ଅଣଚାଷରେ ପରିଣତ ହେଲେ ଖାଦ୍ୟ ସମସ୍ୟା ଓ ଜୀବିକା ଉପରେ ପ୍ରଭାବ ପଡିବ ନାହିଁ ବୋଲି କହିବା ସେଜ୍ ସପକ୍ଷରେ ଦଲାଲି ମାନସିକତାର ଏକ ପ୍ରତିଫଳନ । ଗୋଟିଏ ପକ୍ଷରେ 'ସେଜ୍' ପାଇଁ ଲକ୍ଷ ଲକ୍ଷ ଏକର ଚାଷ ଜମି ଚାଲିଯିବାବେଳେ ଶିଳ୍ପାୟନ ଓ ସହରୀକରଣ ଦ୍ୱାରା ପୁଣି ଲକ୍ଷ ଲକ୍ଷ ଏକର ଜମି ଅଣଚାଷରେ ପରିଣତ ହେବାରେ ଲାଗିଛି । ଚାଷୀ ହାତରୁ ଜମି ନେଇ ଠିକାଚାଷ କରିଆରେ କର୍ପୋରେଟ୍ ଚାଷ ପାଇଁ କମ୍ପାନୀ ପାଖରେ ସମର୍ପଣ କରିବା ବାଟ ଖୋଲାଯାଇଛି । ସେଥିପାଇଁ କୃଷି ବିପଣନ ଆଇନର ସଂଶୋଧନ କରାଯାଇଛି । ଏହାର ପରିଣାମ ହେବ ଚାଷଜମି କମି କମି ଯିବ ଓ ସେଜ୍ ଓ ଠିକାଚାଷ ପାଇଁ ଅକ୍ତିଆର କରିଥିବା ଜମିରେ କମ୍ପାନୀମାନେ ଅର୍ଥକରୀ ଫସଲକରି ରପ୍ତାନି କରିବେ ଓ ସେଥିପାଇଁ ପ୍ରଦତ୍ତ କୃଷି ରିହାତି ମଧ ସେମାନେ ହିଁ ଭୋଗ କରିବେ । ଚାଷୀ ହାତରୁ ଜମି ଯିବ ଓ ଖାଦ୍ୟ ଉତ୍ପାଦନ କମିବାକୁ ବାଧ । ବଜାରରେ ଚାଉଳ, ଗହମ, ଡାଲିର ଦାମ ବଢ଼ିବାକୁ ବାଧ । ସାଧାରଣ ଚାଷୀ ଓ କୃଷି ଶ୍ରମିକ ଜୀବିକା ହରାଇବା ସହ ଖାଦ୍ୟାଭାବର ଶିକାରହେବେ । ଏହି ସ୍ଥିତିଯେ ଏବେ ଆମ ଦେଶରେ ହେବ, କିନ୍ତୁ ତାହା ବିଶ୍ୱରେ ନୂଆ ନୁହଁ । ଏପରି ଅନୁଭବ ମେକ୍‌ସିକୋ, ବଲଭିଆ ତଥା ଲାଟିନ୍ ଆମେରିକା ଦେଶମାନଙ୍କରେ ବହୁଆଗରୁ ହୋଇସାରିଲାଣି । ତେଣୁକରି ସେହି ଦେଶମାନଙ୍କରେ କୃଷକ ବିଦ୍ରୋହ ଦ୍ୱାରା ରାଜନୈତିକ ପରିବର୍ତ୍ତନ ହେଉଛି ଜମି, ପ୍ରାକୃତିକ ସଂପଦକୁ ଲୁଟ୍‌କରଣରୁ ମୁକ୍ତକରିବା ପାଇଁ ।

## ଆମର କର୍ତ୍ତବ୍ୟ କ'ଣ ?

ଦେଶର ସ୍ୱାଧୀନତାର ସୁରକ୍ଷାପାଇଁ ଜମି, ଜଳ, ଜଙ୍ଗଲ ତଥା ପ୍ରାକୃତିକ ସଂପଦର ସୁରକ୍ଷା କରାଯାଉ । ଜମି ସହ ସାଧାରଣ ମାଟିର ମଣିଷମାନଙ୍କ ଜୀବନ ଓ ଜୀବିକାର ସଂପର୍କକୁ ସ୍ୱୀକାର କରି କୃଷି ଓ କୃଷକଙ୍କୁ ସାମର୍ଥ୍ୟ କରିବାପାଇଁ ବିକଳ୍ପ ଅର୍ଥନୀତି ଲାଗୁକରାଯାଉ । କାଶୀପୁର, କଳିଙ୍ଗନଗରଠାରୁ ନନ୍ଦିଗ୍ରାମ ପର୍ଯ୍ୟନ୍ତ ମାଟିର ମଣିଷମାନେ

Digitized by srujanika@gmail.com

ପ୍ରଚଳିତ ବିକାଶ ଦ୍ୱାରା ବିନାଶକୁ ବରଦାସ୍ତ ନକରି ଜୀବନ ଦେଇ ବି ଜମିକୁ ରକ୍ଷାକରିବାକୁ ଚଳାଇଥିବା ସଂଗ୍ରାମରୁ ସରକାର ଓ ଶାସକ ରାଜନୈତିକ ଦଳମାନେ ଶିକ୍ଷା ଲାଭ କରନ୍ତୁ ଓ ନିଜ ନିଜ ଜନବିରୋଧୀ ନୀତିକୁ ବର୍ଜନକରି ବିକଳ୍ପ ବିକାଶ ପାଇଁ ପ୍ରସ୍ତୁତ ହୁଅନ୍ତୁ । ନଚେତ କାନ୍ଥ ଲେଖା ଅତି ସ୍ପଷ୍ଟ, ଲୋକଶକ୍ତିର ଉତ୍‌ଥାନ ଅନିବାର୍ଯ୍ୟ ।

'ସେଜ୍' ଆଇନକୁ ସଂପୂର୍ଣ୍ଣ ହଟାଇ ଦିଆଯାଉ । ଯେଉଁମାନେ 'ସେଜ୍'ର ଓକିଲାତି କରୁଛନ୍ତି, ସେମାନଙ୍କ ଦେଶପ୍ରେମ ଉପରେ ପ୍ରଶ୍ନ କରିବା ଏକାନ୍ତ ଜରୁରୀ । ଦେଶକୁ ବିକିଦେଇ ଇଂଲଣ୍ଡ, ନ୍ୟୁୟର୍କ ପରି ସହରମାନଙ୍କ ସହ ଯୋଡ଼ି ଦିଆଯିବା ପ୍ରସ୍ତାବ ଆସିଲେ ଏ ଦେଶର ବଡ଼ ବଡ଼ ପ୍ରଶାସକ ଓ ରାଜନୈତିକ ପରାମର୍ଶଦାତାମାନେ ଏହାକୁ ଜଗତୀକରଣର ଏକ ସଫଳତା ବୋଲି କହିବାକୁ କୁଣ୍ଠାବୋଧ କରିବେ ନାହିଁ । ଏଣୁ 'ସେଜ୍' ସମର୍ଥକମାନଙ୍କୁ ସାମାଜିକ ବାସନ୍ଦ କରିବାକୁ ଡ଼ାକରା ଦେଇ ''କୃଷି ବଞ୍ଚାଅ, ଦେଶ ବଞ୍ଚାଅ'' ''ଜମି, ଜଙ୍ଗଲ, ଜଳ ବଞ୍ଚାଅ, ଜୀବିକା ବଞ୍ଚାଅ'' ଅଭିଯାନକୁ ଶକ୍ତିଶାଳୀ ଓ ପ୍ରସାରିତ କରାଯାଉ ।



Digitized by srujanika@gmail.com

# ବିକାଶ ନୀତି ଆର୍ଥିକ ପରାଧୀନତା ଆଡ଼କୁ ନେଉଛି

ଇତିହାସର ପୃଷ୍ଠାରେ ଆଖି ପକାଇବାକୁ ହେବ । ଇତିହାସ ସମୟେ ସମୟେ ବହୁ କ୍ରୁର ହୋଇଛି । ଏହାର ମୂଳରେ ତତ୍‌କାଳୀନ ସମାଜ ଓ ଶାସନକର୍ତ୍ତାମାନଙ୍କ ଚରିତ୍ର ଦାୟୀ ରହିଲାବେଳେ ସାଧାରଣ ଜନତାଙ୍କ ଅଜ୍ଞତା ଓ ଉଦାସୀନତା ସେପରି ବିଡ଼ମ୍ବନାକୁ ସୁଯୋଗ ଦେଇଛି । ଆମ ଦେଶର ଇତିହାସ ବହୁ ଘଟଣାପୂର୍ଣ୍ଣ । ଐତିହ୍ୟ ଖୁବ୍ ପ୍ରେରଣାଦାୟକ । ଆଧାତ୍ମିକ ଓ ନୈତିକତା ମାପକାଠିରେ ଇତିହାସର ନାୟକମାନଙ୍କୁ ଚିତ୍ରଣ କରାଯାଇଛି । ରାମାୟଣ ଓ ମହାଭାରତ ପରେ ଭଗବାନ ବୁଦ୍ଧଙ୍କ ଇତିହାସ ଆଉ ଏକ ପର୍ଯ୍ୟାୟ । ପୁଣି ନୂତନତାର ଦିଗ୍‌ବଳୟରେ ମହାତ୍ମାଗାନ୍ଧୀଙ୍କ ଆବିର୍ଭାବ । କିନ୍ତୁ ଏକ ମଧ୍ୟମ ସମୟର ଅନ୍ତରାଳେ ଉତ୍‌ଥାନ ଓ ପତନର ଇତିହାସରେ ଅନେକ ଆସିଛନ୍ତି ପୁଣି ଯିବାକୁ ବାଧ୍ୟ ହୋଇଛନ୍ତି ।

କେତେକ ଆସିଛନ୍ତି ପ୍ରକୃତିଦତ୍ତ ସଂପତ୍ତିକୁ ଲୁଣ୍ଠନ କରିବାକୁ । କ୍ରମଶଃ ଆର୍ଥିକ ଓ ରାଜନୈତିକ କ୍ଷମତାର ମାଲିକ ହୋଇ ଉପନିବେଶବାଦ ପ୍ରତିଷ୍ଠା କରିଛନ୍ତି । ଇତିହାସର ଶେଷ ଭାଗରେ ଦେଖିପାରିବା ଫିରିଙ୍ଗିଦଳ ଆସିଥିଲେ । ଡ଼ଚ ଓ ଗ୍ରୀକ ବହୁ ଆଗରୁ ଆସିଥିଲେ । ବାଣିଜ୍ୟ ଥିଲା ପ୍ରଧାନ ଲକ୍ଷ୍ୟ । କିନ୍ତୁ ଆମ ସମାଜ ଓ ଶାସନ ବ୍ୟବସ୍ଥାରେ ପରିଚାଳକମାନେ ସ୍ୱାର୍ଥ ଓ ଅହଂକାରର ବଶବର୍ତ୍ତୀ ହୋଇ ପରସ୍ପର ବିବାଦରେ ଜଡ଼ିତ ଥିବାବେଳେ ବାହାର ବେପାରୀ ଲୁଣ୍ଠନକାରୀମାନେ ଆମ ସ୍ୱାଧୀନତାକୁ ଅପହରଣ କରି ନେଇଥିଲେ । ସେମାନଙ୍କୁ ହଟାଇବାକୁ ଲାଗିଲା ଦୁଇଶହ ବର୍ଷରୁ ଅଧିକ । ସ୍ୱାଧୀନତା ଆନ୍ଦୋଳନର ଦିଗ ବଦଳିଲା ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ । ଗାନ୍ଧୀ ଠିକ୍‌ଭାବେ ଇତିହାସକୁ ଅନୁଧ୍ୟାନ କରିଥିଲେ । ଭାରତର ଜନମାନସକୁ ଠଉରେଇ ପାରିଥିବାରୁ ଲବଣ ସତ୍ୟାଗ୍ରହ ଓ ବିଦେଶୀ ବସ୍ତ୍ର ବର୍ଜନ ପରି ଦୁଇଟି ଐତିହାସିକ ଆନ୍ଦୋଳନ ଜରିଆରେ ନୂଆ ଉନ୍ମାଦନା ସୃଷ୍ଟି କରିପାରିଥିଲେ । ସେହି ଐତିହାସିକ ପୃଷ୍ଠଭୂମିରେ ମୂଲ୍ୟବୋଧର ଦର୍ଶନଥିଲା । ବିଦେଶୀ ଶାସନରେ ଆମ ଆର୍ଥିକ ମେରୁଦଣ୍ଡ କୃଷି, କୁଟୀର ଶିଳ୍ପକୁ ଦୁର୍ବଳ କରିବାପାଇଁ ଆମ କପା ନେଇ ମଞ୍ଚେଷ୍ଟର ଓ ଲାଙ୍କାସାୟାରରେ ଲୁଗା ତିଆରି ହୋଇ ଆମ ଦେଶରେ ବିକ୍ରି କରାଯାଉଥିଲା । ହସ୍ତତନ୍ତର ବୁଣାକାରମାନଙ୍କ ହାତକୁ ଖଣ୍ଡିଆ କରିଦିଆଗଲା । ବୁଣାକାର ବେକାର ହୋଇଗଲେ । ଏପରି ଅନେକ କ୍ଷେତ୍ରରେ କରାଗଲା । ଦାରିଦ୍ର୍ୟ ବଢ଼ିଲା । ଏଣୁ ଉପନିବେଶବାଦର ସମାପ୍ତି ପାଇଁ ବିଦେଶୀ ବସ୍ତ୍ର ବର୍ଜନ ମୂଳରେ ଥିଲା-

Digitized by srujanika@gmail.com

"ସ୍ୱଦେଶୀ ଓ ସ୍ୱାବଲମ୍ବନଶୀଳ ଅର୍ଥନୀତିର ବିଚାର ସହ ଦେଶପ୍ରେମ" । ସବୁଠାରୁ ମୌଳିକ ଆବଶ୍ୟକତା ଲୁଣ ଉତ୍ପାଦନ (ଆମର ଅଧିକାର) ଥିଲା ଲବଣ ସତ୍ୟାଗ୍ରହର ଲକ୍ଷ୍ୟ । ସ୍ୱାଭିମାନର ଝଲକ ସୃଷ୍ଟି ହୋଇଥିଲା । ସ୍ୱାଧୀନତାର ଲକ୍ଷ୍ୟ ଓ ସାଧନାର ପରିକଳ୍ପନା ସେଥିରେ ଫୁଟି ଉଠିଥିଲା । ଜୀବିକାର ସ୍ରୋତ ପ୍ରାକୃତିକ ସଂବଳ ଓ ଶ୍ରମଭିତ୍ତିକ ଉତ୍ପାଦନ କେନ୍ଦ୍ରର ସ୍ଥାୟିତ୍ୱ ଏକ ଅନିବାର୍ଯ୍ୟ ସ୍ୱପ୍ନ ଥିଲା ।

ବିଦେଶୀମାନେ ଆମ କୁଟୀର ଶିଳ୍ପକୁ ମାରିଲେ । ଆମ କଳା ଓ ଭାସ୍କର୍ଯ୍ୟକୁ ଚୋରିକଲେ । ଆମ ଦକ୍ଷତାକୁ ସେମାନଙ୍କ ଲାଭରେ ନିୟୋଜିତ କଲେ । ଆମ ଭାଷାକୁ ଗୌଣକରି ସେମାନଙ୍କ ଭାଷାକୁ ରାଜଭାଷା ରୂପେ ଲଦିଦେଲେ । ଆମ ଆତ୍ମପରିଚୟର ରାସ୍ତା ରୁଦ୍ଧ କରିଦେଲେ । ସେଇଥିପାଇଁ "ଭାରତ ଛାଡ଼" ଆନ୍ଦୋଳନ ମୂଳରେ ଥିଲା - ସେମାନଙ୍କୁ ଏ ଦେଶରୁ ଯିବାକୁ ହେବ । ଶେଷରେ ସେମାନେ ହଟିଲେ । ଅନେକ ପ୍ରାଣ ବଳି ଓ ତ୍ୟାଗର ମୂଲ୍ୟ ଦେବାକୁ ହେଲା । ଆମେ ସ୍ୱାଧୀନ ହେଲୁ । ନୂଆ ସପନ ଦେଖିବା ସହ ତତ୍କାଳୀନ ଦେଶପ୍ରେମୀ ଜନନେତାମାନେ ଏକ ସୁନ୍ଦର ଅଖଣ୍ଡ ଭାରତ ପରିକଳ୍ପନାରେ ନିଜକୁ ହଜାଇ ଦେଇଥିଲେ । ସ୍ୱଦେଶୀ ବାର୍ତ୍ତାରେ ଗଗନପବନ ପ୍ରକମ୍ପିତ ହେଲା ପ୍ରତ୍ୟେକ ଗାଁ ହେବ ସ୍ୱାବଲମ୍ବନଶୀଳ ଓ ବ୍ୟକ୍ତିହେବ ଆତ୍ମନିର୍ଭରଶୀଳ । ସ୍ୱରାଜ ଚିନ୍ତାରେ ନିଜ ଆବଶ୍ୟକତାକୁ ନେଇ ନିଜେ ଉତ୍ପାଦନ କରିବା, କ୍ଷମତାର ଅଂଶୀଦାର ହୋଇ ନିଜ ସ୍ୱାଧୀନତାକୁ ବଞ୍ଚାଇ ରଖିବାର ଶକ୍ତି ହାସଲ କରିବା ।

ଅଦ୍ୟାବଧି ଇଂରେଜ ହଟିଲେ ମଧ୍ୟ ଇଂରେଜୀ ଭାଷାର ଆଧିପତ୍ୟ ହଟିଲା ନାହିଁ । ସେମାନଙ୍କ ବ୍ରିଟାନିଆ କମ୍ପାନୀ ହଟିଲା ନାହିଁ । ବରଂ ଏପରି ଅନେକ ବହୁରାଷ୍ଟ୍ରୀୟ କମ୍ପାନୀ ଆମ ବଜାରରେ ଅଧିକରୁ ଅଧିକ ଏକଚାଟିଆ ଅଧିକାର ସାବ୍ୟସ୍ତ କରିଚାଲିଛନ୍ତି । ପଶ୍ଚିମ ବିଦେଶୀ ଢ଼ାଞ୍ଚା ହେଲା ଆଧୁନିକତାର ମାପକାଠି । ସମୟାନୁକ୍ରମେ ଆମେ ଉନ୍ନତି କରିବା ନାଆଁରେ ବିଦେଶୀକରଣକୁ ବିକାଶର ପ୍ରତୀକ ରୂପେ ଧରିନେଲୁ । ସ୍ୱାଧୀନତାର ୬୦ ବର୍ଷ ମଧ୍ୟରେ ଅନେକ ସରକାର ଗଲେଣି, ଅନେକ ଯୋଜନା ଶେଷ ହେଲାଣି । ଦିଲ୍ଲୀ, ବମ୍ବେ, କଲିକତା, ବାଙ୍ଗାଲୋର ପରି ଅନେକ ସହର ଲଣ୍ଡନ-ନିୟୁର୍କ ସହର ପରି ଅନୁଭୂତ ହେଲାଣି । କିନ୍ତୁ ସ୍ୱାଧୀନତାର ସଫଳତାର ଅସଲ ମାପକାଠି ଆର୍ଥିକ ସ୍ୱାଧୀନତାକୁ ଯଦି ଧରି ନିଆଯିବ, ତାହା ହେଲେ ଆମ ସ୍ୱାଧୀନତାର ସ୍ଥାୟିତ୍ୱ ସନ୍ଦେହଜନକ ହୋଇପଡ଼ିଛି । ସରକାର ଆମର, ଜନ୍ମଭୂମି ଆମର, କିନ୍ତୁ ଆମ ପରିଚାଳନାର ଚାବିକାଠି ଆଉ କେଉଁଠି ଥିଲାପରି ଆଶଙ୍କା ଘନୀଭୂତ ହେବାରେ ଲାଗିଛି । ଆମ ସ୍ୱଦେଶୀ ସତେ ଯେପରି ବିଦେଶୀଙ୍କ ମାୟାଜାଲରେ ଛନ୍ଦି ହୋଇଯାଇଛି ।

ଆମ ଶିକ୍ଷା ଓ ସଂସ୍କୃତିରେ ବିଦେଶୀ ଭାଷାର ପ୍ରାଧାନ୍ୟକୁ ଅନିବାର୍ଯ୍ୟ ବୋଲି ଯେପରି ଅନେକ ଶାସକ ଓ ବୁଦ୍ଧିଜୀବୀ ଯୁକ୍ତିକରି ପଛୁଆ, ଅନଗ୍ରସର ଅଶିକ୍ଷିତ ଗରିବ

Digitized by srujanika@gmail.com

ଲୋକଙ୍କୁ ଶିକ୍ଷିତ ଆଧୁନିକ ଲୋକଙ୍କଠାରୁ ଅଲଗା କରିବାରେ ମାନସିକତା ତିଆର କରୁଛନ୍ତି, ସେପରି ଆମର ଆର୍ଥିକ ଅଭିବୃଦ୍ଧି ଓ ସାମୂହିକ ବିକାଶରେ ବିଦେଶୀଙ୍କୁ ପ୍ରଶ୍ରୟ ଦିଆଚାଲିଛି । ପରିଶେଷରେ ବିଦେଶୀ କମ୍ପାନୀ ପ୍ରେମରେ ଆମେ ଅନ୍ଧହେବାକୁ ବସିଲେଣି । ସତେ ଯେପରି ସେହି ବିଦେଶ ସାହୁକାରମାନଙ୍କ ଦୟାରେ ଆମେ ଆଶ୍ରିତ । ସେମାନଙ୍କ ଋଣ ସର୍ତ୍ତକୁ ମାନିନେବା ଆମର ଜାତୀୟତା ବୋଧ ? ଯିଏ ଏହାକୁ ବିରୋଧ କରିବ ସେ ବିକାଶ ପଥର ଅନ୍ତରାୟ ବୋଲି ସମାଲୋଚିତ ହେବ । ବିଚିତ୍ର ବିଡ଼ମ୍ବନା ମାତ୍ର ।

ବର୍ତ୍ତମାନ ବିଦେଶୀ ଋଣ ପ୍ରାୟ ୧୧ ଲକ୍ଷ କୋଟି ଟଙ୍କାରେ ପହଞ୍ଚିଲା ପରେ ବି ଋଣ କରିବା ପାଇଁ ଆମ ଯୋଜନାକାରୀମାନେ ପାଗଳ । ଆମ ସ୍ୱାଧୀନ ମୁଦ୍ରା ଏକ ଟଙ୍କାର ମୂଲ୍ୟ ୧୦ ପଇସାରେ ପହଞ୍ଚିଲାଣି । ବାର୍ଷିକ ବଜେଟର ଆୟର ହିସାବରେ ଏକ ଟଙ୍କାରେ ୨୪ ପଇସା ଋଣ ଦେଖାଇଲାବେଳେ, ବ୍ୟୟ ତାଲିକାରେ ୨୫ ପଇସା ଋଣ ସୁଧ ପଇଠ କରୁଛୁ । ଏହାସତ୍ୱେ "ଋଣକର ବନ୍ଧାପଡ଼" ପ୍ରବକ୍ତାମାନଙ୍କ ଭାଷଣ ଚାଲିଛି, ଆମକୁ ନିଜ ଗୋଡ଼ରେ ଠିଆ ହେବାକୁ ହେବ । କାହାରି ଗୋଡ଼ରେ ଠିଆ ହେବା ? ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ଯୁକ୍ତରାଷ୍ଟ୍ର ଆମେରିକା କିମ୍ବା ସେହି ସାହୁକାର ଦେଶମାନଙ୍କର ବହୁ ରାଷ୍ଟ୍ରୀୟ କମ୍ପାନୀ କାବୁଲିବାଲାଙ୍କ ପୁଞ୍ଜି ଆଉ ପରାମର୍ଶରେ ନା ଆଉ କିଛି ନିଜସ୍ୱ ସ୍ୱାଭିମାନୀ ବିକଳ୍ପକୁ ଗ୍ରହଣ କରିବା ?

ମୁକ୍ତ ବଜାର ଅର୍ଥନୀତି ଘରୋଇକରଣ ପାଇଁ ସମତା ଓ ସମାଜବାଦର କବର ଖୋଳୁଛି । ଦାରିଦ୍ର୍ୟ ହଟାଇବାର ମାପ କାଠି କ'ଣ ମାତ୍ର କୋଡ଼ିଏ ଶତାଂଶ ଲୋକଙ୍କୁ ନେଇ ଏକ ସ୍ୱତନ୍ତ୍ର ସୁବିଧା ଶ୍ରେଣୀ ସୃଷ୍ଟି କରିବା ? ଯେଉଁମାନଙ୍କ ପାଇଁ ବିଦେଶୀ ପୁଞ୍ଜି, ବିଦେଶୀ ମୁଦ୍ରା ଖର୍ଚ୍ଚରେ ବିଳାସ ସାମଗ୍ରୀ ଉତ୍ପାଦନ ବୃଦ୍ଧି ଓ ପ୍ରସାର କରିବାରେ ସମସ୍ତ ଶକ୍ତି ଖର୍ଚ୍ଚ କରାଯାଉଛି । ଅନ୍ୟ ପକ୍ଷରେ ସ୍ୱଦେଶୀ ଆନ୍ଦୋଳନର ଉପଲବ୍ଧିକୁ ନେଇ ନିଜ ଚାହିଦା ପୂରଣ ପାଇଁ ନିଜ କଞ୍ଚାମାଲକୁ ନିଜ ଶ୍ରମ ଓ ବୁଦ୍ଧିର ସାଧନାରେ ବ୍ୟବହାର କରିବା ଇଚ୍ଛା ଶକ୍ତି ହରାଇଛୁ । ସବୁଠାରେ ଦେଖୁଛୁ, ବିଦେଶୀ ଟ୍ରେଡ଼ ମାର୍କା ଯାହାକୁ ଦେଶୀ ବୋଲି ଆପଣେଇ ନେଲୁଣି ।

ସକାଳୁ ଉଠି ଦାନ୍ତଘଷା ଠାରୁ ଆରମ୍ଭ କରି ରୋଷେଇଶାଳ ଓ ଶୟନ କକ୍ଷ ପର୍ଯ୍ୟନ୍ତ ବ୍ୟବହୃତ ଜିନିଷ ପ୍ରତି ନଜର ଦେଲେ ଆମେ ଜାଣି ପାରିବା ଆମେ କୁଆଡ଼କୁ ଯାଉଛୁ ! ଆମେ କିଣିବାକୁ ନିତିଦିନିଆ ଅଭ୍ୟାସରେ ପରିଣତ କରିଥିବା ଜିନିଷ ଗୁଡ଼ାକୁ ନେଇ ବିଶ୍ୱ ସଭାରେ ଆମେ କହିପାରିବା କି ଏସବୁ ଆମର ? ଭାରତ ମାଟିରେ ବିଦେଶୀ କମ୍ପାନୀ ଦ୍ୱାରା ତିଆରି ଖାଉଟି ଦ୍ରବ୍ୟ ଆମ ଦେଶୀୟ ଶିଳ୍ପଜାତ ଦ୍ରବ୍ୟକୁ ପଛରେ ପକାଇ ଖାଉଟିଙ୍କ ମନ କିଣି ନେଉଛି । ସେମାନେ, ବହୁଳ ଖର୍ଚ୍ଚରେ ଅପସଂସ୍କୃତି ପୂର୍ଣ୍ଣ ବିଜ୍ଞାପନ ଜରିଆରେ ଆମ ମାନସିକ ଦାରିଦ୍ର୍ୟକୁ ଶୋଷଣ କରି ଆସ୍ଥାନ ଜମାଇଛନ୍ତି । ଏତିକିରେ

Digitized by srujanika@gmail.com

ସନ୍ତୁଷ୍ଟ ନ ହୋଇ ଆଳୁଚିପ୍‌ସ ଓ ମୃଦୁ ପାନୀୟ ଜିନିଷ ତିଆରି କରିବାକୁ ପେପ୍‌ସି ଓ କୋକାକୋଲା କମ୍ପାନୀମାନଙ୍କୁ ଡ଼ାକି ଆଣିଲୁ । ଏହା ଦ୍ୱାରା ଆମ ବଜାରର ବୁଲାବିକାଳୀ, ପାନ ଦୋକାନୀ ଯେଉଁମାନେ ରସନା ଓ ଘରେ ଘରେ ଆଳୁ ଚିପ୍‌ସ ତିଆର କରି ଘର ଚଳାଉଛନ୍ତି ସେମାନେ କ'ଣ କରିବେ ? ଏପରିକି ମିଠା ଜଳଖିଆ ଦୋକାନ କରିବାକୁ ବିଦେଶୀ ମେକ୍‌ଡ଼ୋନାଲଡ଼ କମ୍ପାନୀ ଓ କେଣ୍ଟୁସି ଚିକନକୁ ଅନୁମତି ଦେଇ ଦେଲୁଣି । ସେମାନେ ବିଭିନ୍ନ ସହରରେ ଦୋକାନ ଖୋଲି ସାରିଲେଣି । ବହୁ ଆଗରୁ ଏହି ବିଦେଶୀ କମ୍ପାନୀମାନେ ଆମ ଭାରତକୁ ସେମାନଙ୍କ ଚରା ଭୂଇଁରେ ବ୍ୟବହୃତ କରି ଆସିଛନ୍ତି । ସେଭଳି ଔଷଧ ଭିତରୁ ପ୍ରାୟ ଶତକଡ଼ା ୭୫ ଭାଗ ସେମାନଙ୍କ ଦ୍ୱାରା ନିୟନ୍ତ୍ରିତ, ଯଦ୍ୱାରା ଅନେକ ଅଦରକାରୀ ଓ ଅନ୍ୟ ଦେଶରେ ବାଜ୍ୟାପ୍ତି ହୋଇଥିବା ଔଷଧ ଏଠାରେ ବିକ୍ରି କରାଯାଉଛି । ଉନ୍ନତ ବିହନ ଯୋଗାଇବା ନାମରେ ବହୁ କମ୍ପାନୀ ଆମ ଦେଶରେ ଏକଚାଟିଆ କାରବାରକୁ ସବୁ ଦିନିଆରେ ପରିଣତ କରି ଆମ କୃଷି ଓ ଗବେଷଣା ଉପରେ ନିୟନ୍ତ୍ରଣ ଜାରି ପାଇଁ ବିଶ୍ୱବାଣିଜ୍ୟ ସଂସ୍ଥାକୁ ବ୍ୟବହାର କରିବା ଆରମ୍ଭ କଲେଣି । ବର୍ତ୍ତମାନ ଆମେରିକାର କାର୍ଗିଲ କମ୍ପାନୀ ପଞ୍ଜାବରୁ ଗହମ କିଣିବ ଓ ଆମକୁ ହିଁ ବିକିବ । ଏହା ମଧ୍ୟ ଆମ ସରକାରମାନେ ଲଜ୍ଜାବୋଧ କରନ୍ତି ନାହିଁ । ଏବେ ଖୁଚୁରା ଦୋକାନ କାରବାର ମଧ୍ୟ ବହୁରାଷ୍ଟ୍ରୀୟ କମ୍ପାନୀ ୱାଲ ମାର୍ଟ, ରିଲାଏନସ୍‌ର, ଟାଟାପରି କମ୍ପାନୀମାନେ କରିବେ । ଏହା ଦ୍ୱାରା ପ୍ରାୟ ଏକ କୋଟି ପରିବାର ଜୀବିକାରୁ ବଞ୍ଚିତ ହେବେ ।

ସବୁ ସ୍ତରରେ ଯୁକ୍ତି–ଆମ ଅର୍ଥ ବ୍ୟବସ୍ଥାକୁ ବିଶ୍ୱୀକରଣ ପ୍ରକ୍ରିୟାରେ ସମର୍ଥ କରାଇବା । ୮୦ ଭାଗ ଲୋକଙ୍କ ଖୋଲା ବଜାର ଅର୍ଥନୀତି ସହ ସମ୍ପର୍କ ନାହିଁ । ୫୦ ଭାଗରୁ ଅଧିକ ଦରିଦ୍ର ଲୋକ ପିଇବା ପାଣି, ଦୁଇଓଳା ପେଟପୂରା ଖାଦ୍ୟ ପାଉନଥିବାବେଳେ ଆମେ କାହାପାଇଁ ଓ କ'ଣ ନେଇ ପୃଥିବୀ ବଜାରରେ ପ୍ରତିଯୋଗିତା କରିବୁ ଓ କ'ଣ ପାଇବୁ ? ଏହା ପ୍ରତ୍ୟେକ ନାଗରିକ ହୃଦବୋଧ କରିବାକୁ ହେବ । ୭ଟି ଧନୀ ଦେଶର ବାଣିଜ୍ୟ କାରବାର ପୃଥିବୀର ଶତକଡ଼ା ୭୦ ଭାଗ ଥିଲାବେଳେ, ଅନ୍ୟ ୧୧ଟି ଛୋଟଧନୀ ଦେଶମାନଙ୍କର ୧୩ ଭାଗ ଅଛି । ଆମ ଭାରତର ବାଣିଜ୍ୟ କାରବାର ଶତକଡ଼ା ମାତ୍ର ଶୂନ ଦଶମିକ ଏକରେ ମଧ୍ୟ ପହଞ୍ଚିପାରି ନାହିଁ ଆମେ କେଉଁଠେ ଅଛେ ?

ଇଷ୍ଟ ଇଣ୍ଡିଆ କମ୍ପାନୀ ଆସିଥିଲା ବେପାର ପାଇଁ । ଶାସନ କଲେ ଦୁଇଶହ ବର୍ଷରୁ ଅଧିକ । ଆଜି ସେମାନଙ୍କ ଭାଇ, ବହୁ ବହୁ ସଂଖ୍ୟାରେ ଆସିଗଲେଣି । ଆମ ଜୀବନଧାରାକୁ ନିୟନ୍ତ୍ରଣ କରିବାପାଇଁ ସମସ୍ତ ଚକ୍ରାନ୍ତ କରିବାରେ ସେମାନେ ସଫଳ ହେଉଛନ୍ତି । ନିଜ ଆସନକୁ ମଜବୁଦ୍ କରିବାକୁ କୌଶଳ ଚାଲିଛି । ବିକାଶ ନାମରେ ବିନାଶକୁ ଆମ ଉପରେ ଥୋପଦିଆ ଯାଉଛି । ଆମ ଜମି କ'ଣ ପୃଥିବୀର ଧନୀ ମାଲିକଙ୍କ ପାଇଁ ଚରା ଭୂମି ? ଗୋଟିଏ ପରେ ଗୋଟିଏ କରି ହଜାର ହଜାର ସଂଖ୍ୟାରେ ସେମାନଙ୍କ

Digitized by srujanika@gmail.com

ଆସ୍ଥାନ ଜମିଲାଣି, ଅନ୍ୟ ପକ୍ଷରେ ବିଭିନ୍ନ ଗରିବ ଦେଶରେ ସେମାନଙ୍କ ଦୌରାତ୍ମ୍ୟ ଓ ଶୋଷଣ ଫଳରେ ସ୍ୱାଧୀନତା ବିପନ୍ନ ହୋଇଥିବା ସତ୍ୟ ଖବର ଜନସାଧାରଣଙ୍କୁ ଜଣାଇ ଦିଆଯାଉନାହିଁ । ଅଜ୍ଞତା ଓ ଉଦାସୀନତାରୁ ମୁକ୍ତ କରି ସ୍ୱଦେଶୀ, ସ୍ୱାବଲମ୍ବନ ଓ ରୋଜଗାରକ୍ଷମ କରିବାକୁ ଜାଗରିତ କରିବାକୁ ପଡ଼ିବ ।

ସବୁଠାରୁ ବିଡ଼ମ୍ବନା – ଆମ ଶାସକମାନେ ବିଦେଶୀଙ୍କ ପ୍ରେମରେ ପାଗଳ । ନରସିଂହ ରାଓଙ୍କ ସରକାର ଓ ତାଙ୍କ ଅର୍ଥମନ୍ତ୍ରୀ ଡ.ମନମୋହନ ସିଂହ ଯେଉଁ ବିଦେଶୀ ପୋଷା ଅର୍ଥବ୍ୟବସ୍ଥାକୁ ଆରମ୍ଭକଲେ, ତାକୁ ପାଟିରେ କୁଟାଧରି ଦେବଗୌଡ଼ା ଓ ଗୁଜରାଲ ସରକାରଙ୍କ ଅର୍ଥମନ୍ତ୍ରୀ ଶ୍ରୀ ଚିଦାମ୍ବରମ ଅକ୍ଷରାଙ୍କେ ପାଳନ କଲେ । ଏପରିକି ଆଉ ଦୁଇଶହ ବର୍ଷ ଉପଭୋଗ କରିବାକୁ ବିଦେଶୀ ବେପାରୀଙ୍କୁ ସେ ନିମନ୍ତ୍ରଣ ଦେଇଥିଲେ । ସ୍ୱଦେଶୀ ମାର୍କା ରାଜନୀତିର ଅସଲ ପ୍ରତିନିଧି ବୋଲି ଦାବି କରି ଆସୁଥିବା ବିଜେପି ନେତୃତ୍ୱରେ ବାଜପେୟୀ ସରକାରଙ୍କ ଅର୍ଥମନ୍ତ୍ରୀ ଯଶୋବନ୍ତ ସିହ୍ନା ଦାୟିତ୍ୱନେବା ମୁହୂର୍ତ୍ତରେ ବହୁ ରାଷ୍ଟ୍ରୀୟ ବିଦେଶୀ କମ୍ପାନୀମାନଙ୍କ ପାଇଁ ଅଭୟ ବାଣୀ ଦେଲେ "ତୁମେ ଡ଼ର ନାହିଁ ।" ବିଜେପି ପରେ ଏବେ ପୁଣି କେନ୍ଦ୍ରରେ କଂଗ୍ରେସ ନେତୃତ୍ୱରେ ମିଳିତ ସରକାର ? ପୁଣି ଅର୍ଥମନ୍ତ୍ରୀ ପି. ଚିଦାମ୍ବରମ୍, ପ୍ରଧାନମନ୍ତ୍ରୀ ମନମୋହନ ସିଂହ ଯିଏକି ବିଶ୍ୱ ବ୍ୟାଙ୍କର କର୍ମଚାରୀ ରୂପେ କାର୍ଯ୍ୟ କରିଥିଲେ । ଏବେ ସବୁକିଛି ବିଦେଶୀକରଣ, ଘରୋଇ କରଣ ଓ ଉଦାରୀକରଣ । ଆଜି ସରକାର ଓ ବିରୋଧୀ ଦଳରେ ବସିଥିବା ଅଧିକାଂଶ ମୁଖ୍ୟ ରାଜନୈତିକ ଦଳମାନେ ସାଧାରଣ ଲୋକଙ୍କ ପେଟ ପାଟଣା ଅର୍ଥନୀତିକୁ ମୁଖ୍ୟ ପ୍ରସଙ୍ଗ କରି ନଥିବା ଯୋଗୁଁ କେବଳ କ୍ଷମତା ପାଇଁ ଦେଶୀ ଓ ବିଦେଶୀ ପୁଞ୍ଜିପତିଙ୍କ ଅନୁଗ୍ରହ ଉପରେ ନିର୍ଭରଶୀଳ ହୋଇପଡ଼ିଛନ୍ତି । ତେଣୁ ସ୍ୱାଭିମାନୀ ସ୍ୱଦେଶୀ ଅର୍ଥ ବ୍ୟବସ୍ଥା ପାଇଁ ସାଧାରଣ ନାଗରିକମାନଙ୍କୁ ହିଁ ବିକଳ୍ପ ବାଟ ଖୋଜିବାକୁ ହେବ ।

ଆସନ୍ତାକାଲି ବିଦ୍ୟାଳୟରେ ବିଦ୍ୟାର୍ଥୀ ନିଜ ସ୍ୱାଧୀନ ଭାରତର ଇତିହାସ ପଢ଼ିଲାବେଳେ ପଚାରି ପାରେ-"ମୋ' ଭାରତ ବର୍ଷରେ ଆମ୍ଭ ପରିଚୟ କଣ ?" କାରଣ ନିଜ ଶରୀର ବ୍ୟତୀତ ଆଉ ସବୁ ବିଦେଶୀକରଣ ହୋଇ ସାରିଥିବ । ସେତିକି ବେଳେ ଆଜିର ବଂଶଧରଙ୍କୁ ସେ ଦାୟୀ କରିବ । ସେଥି ପାଇଁ ଅନ୍ତତଃ ବର୍ତ୍ତମାନ ଚିନ୍ତା ଓ ଚେତନାରେ ପ୍ରଶ୍ନ ହେଉ "ସେମାନେ ପୁଣି ଆସିଗଲେଣି, ଆମେ ଯିବୁ କୁଆଡ଼କୁ ।"

**ବିଶ୍ୱକରଣର ତ୍ରାହି :–** ସୋଭିଏତ ଋଷର ସାମ୍ୟବାଦୀ ଶାସନ ଭାଙ୍ଗିଯିବା ପରେ ଯୁକ୍ତରାଷ୍ଟ୍ର ଆମେରିକା ଓ ଅନ୍ୟ ପୁଞ୍ଜିବାଦ ଦେଶମାନେ ସମାଜବାଦର ଅବସାନ ହେଲା ବୋଲି ଯେପରି ପ୍ରଚାର ଓ ବକ୍ତବ୍ୟ ରଖିଲେ– ତାହା ଐତିହାସିକ ଭୁଲ । ଗଣତାନ୍ତ୍ରିକ ସମାଜବାଦ ବଦଳରେ ଏକ ଦଳର ଏକଛତ୍ରବାଦ ସମାଜବାଦକୁ ଜୀବନ୍ତ କରି ପାରିଲା ନାହିଁ । ବହୁଆଗରୁ ଯୁଗ ପୁରୁଷ ମାନବବାଦୀ ମହାତ୍ମା ଗାନ୍ଧୀ ଓ ତାଙ୍କପରେ ସମାଜବାଦୀ ଆନ୍ଦୋଳନର ସ୍ରଷ୍ଟା

Digitized by srujanika@gmail.com

ଡଃ ରାମମନୋହର ଲୋହିଆ ସମାଜବାଦର ସ୍ଥାୟିତ୍ୱ ଓ ବିକାଶପାଇଁ କମ୍ୟୁନିଷ୍ଟମାନଙ୍କୁ ଗଣତାନ୍ତ୍ରିକ ସମାଜବାଦରେ ବ୍ୟକ୍ତି ସ୍ୱାଧୀନତାକୁ ପ୍ରାଥମିକତା ଦେବାକୁ ସତର୍କ କରାଇଥିଲେ । କିନ୍ତୁ କମ୍ୟୁନିଷ୍ଟ ଶାସନ ଅବସାନର ବିକଳ୍ପ ପୁଞ୍ଜିବାଦ ନୁହେଁ । ସମାଜବାଦ ଏକ ଚିରନ୍ତନ ସତ୍ୟ । ମଣିଷ ମଣିଷ ଭିତରେ ସମତା ପାଇଁ ଏକ ସମାଜବାଦୀ ଅର୍ଥ ବ୍ୟବସ୍ଥା ସହ ଜନବାଦୀ ରାଜନୈତିକ ବ୍ୟବସ୍ଥା ଅପରିହାର୍ଯ୍ୟ । ସମାଜବାଦକୁ ବିକୃତ ଅର୍ଥ କରି ପୃଥିବୀର ଅଳ୍ପକେତେକ ଧନଶାଳୀଙ୍କ ଭୋଗବିଳାସର ଚାହିଦା ପୂରଣ କରିବା ପାଇଁ ବହୁ ଦରିଦ୍ର ଜନତାଙ୍କ ସଂବଳ ଓ ସଂପତ୍ତିକୁ ବ୍ୟବହାର କରିବାପାଇଁ ଯେଉଁ ଅର୍ଥନୀତି ଉଦ୍ଦିଷ୍ଟ, ତାହା ସମାଜବାଦକୁ ନିଜର ଶତ୍ରୁ ମନେକରିବା ସ୍ୱାଭାବିକ । ଯେ କୌଣସି ରାଷ୍ଟ୍ରର ଅର୍ଥନୀତି ସେଠାରେ ବହୁଜନ ସମାଜ ପାଇଁ । କେବଳ ବିକାଶ ନାମରେ ୧୦ ଭାଗ ଲୋକଙ୍କ (ଯେଉଁମାନେ ଉଚ୍ଚ ଶ୍ରେଣୀ, ଉଚ୍ଚ ଅଧିକାରୀ ଉଚ୍ଚ ଆୟକାରୀ ଓ ଉଚ୍ଚ ବ୍ୟବସ୍ଥିତ ବ୍ୟକ୍ତିବିଶେଷ) ମତାମତକୁ କେନ୍ଦ୍ର କରି ସମସ୍ତ ନୀତି ତିଆରି କରାଗଲେ ଆଉ ନବେଭାଗ ଲୋକ ଅସହିଷ୍ଣୁ ହୋଇ ନିଜର ଅଧିକାରକୁ ସାବ୍ୟସ୍ତ କରିବାପାଇଁ ଉଗ୍ର ହେବାକୁ ବାଧ ହେବେ । ସେଥିପାଇଁ ବର୍ତ୍ତମାନ ଅଧିକ ପାଦ ଆଗକୁ ନଯାଇ ବିଶ୍ୱକରଣ ମିଥ୍ୟା ସ୍ଲୋଗାନରେ ନିଜ ଦେଶର ସ୍ୱାଭିମାନକୁ ଜାଣି ଶୁଣି ବିକ୍ରୀ କରାନଯାଉ ।

ଆଉ ଏକ ଦିଗରୁ ବିଶ୍ଳେଷଣ କରାଗଲେ ଜଣାଯିବ, ଉତ୍ତର ବିଶ୍ୱର ଧନୀଦେଶମାନେ କିପରି ସମଗ୍ର ବିଶ୍ୱର ପ୍ରାକୃତିକ ସମ୍ପଳକୁ ଉପଭୋଗ କରିଚାଲିଛନ୍ତି । ବିଶ୍ୱର ମୋଟ ୮୦% ଭାଗ କେବଳ ମୋଟ ଜନସଂଖ୍ୟାର ୨୦ ଭାଗ ଲୋକ ଯେଉଁମାନେ ଉତ୍ତର ବିଶ୍ୱର ଧନୀ ରାଷ୍ଟ୍ରମାନଙ୍କରେ ରହି ଉପଭୋଗ କରୁଛନ୍ତି । ଉଦାହାରଣ ସ୍ୱରୂପ – ଶକ୍ତି ୭୫%, ଜାଳେଣୀ ୮୦%, କାଠ ଜାତୀୟ ପଦାର୍ଥ ୮୫% ଏବଂ ଇସ୍ପାତ ଜାତ ପଦାର୍ଥ ୭୨% ଯାହାକି ଦକ୍ଷିଣ ବିଶ୍ୱରେ ଥିବା ଗରିବ ଦେଶମାନଙ୍କର ଅଧିକାଂଶ ସଂବଳର ଅଧିକାଂଶ ଅଟେ । ଏକ ଅନୁନ୍ନତ ଦେଶ ବାଙ୍ଗଲା ଦେଶର ଜଣେ ନାଗରିକ ତିନି ବ୍ୟାରେଲ୍ ତେଲ ସମାନ ଶକ୍ତି ଖର୍ଚ୍ଚ କରୁଥିବା ବେଳେ ଜଣେ ସାଧାରଣ ଆମେରିକୀୟ ବ୍ୟକ୍ତି ପଞ୍ଚାବନ ବ୍ୟାରେଲ ତେଲର ସମଶକ୍ତି ଖର୍ଚ୍ଚ କରୁଅଛି । ଜଣେ ସୁଇଜରଲ୍ୟାଣ୍ଡବାସୀ ଯେତିକି ପ୍ରାକୃତିକ ସଂପଦ ବ୍ୟବହାର କରେ, ତାହା ବୁଭୁକ୍ଷୁ ପ୍ରପୀଡ଼ିତ ସୋମାଲିୟାର ଜଣଙ୍କର ୪୦ ଗୁଣ ସହ ସମାନ । ଖୋଲାଅର୍ଥନୀତି ସହ ବିଶ୍ୱକରଣ ନାମରେ ଯଦି ଖୋଲା ଆନ୍ତର୍ଜାତିକ ବାଣିଜ୍ୟକୁ ଗ୍ରହଣ କରାଯାଏ, ତାହାହେଲେ ତୃତୀୟ ବିଶ୍ୱର ସମସ୍ତ ସଂବଳ ଧ୍ୱଂସ ହେବ ଏବଂ ନିଃସ୍ୱ ହୋଇଯିବେ ଗରିବ ଲୋକେ ।

ଆମେ ପ୍ରତିଯୋଗିତା କରିବାକୁ ଚାହିଁଲେ ଆମ ପାଇଁ ଦ୍ୱାର ମୁକ୍ତ ହେବ କି ? ଗତ ଦୁଇବର୍ଷ ଧରି ଭାରତ ସରକାର କାହାର ଚାପରେ ବିଦେଶରୁ ୩୦ ଲକ୍ଷ ଟନ୍ ଗହମ ଆମଦାନୀ କରିବାକୁ ରାଜିହେଲେ, କାହିଁକି ? ଆମର ଚାଷୀର ଗହମକୁ କିଣିବାକୁ ସରକାରଙ୍କ

Digitized by srujanika@gmail.com

ଶକ୍ତି ନାହିଁ କି ଇଚ୍ଛା ନାହିଁ ? ଅଧିକା ଦାମ୍ ଦେଲୁ ଏବଂ ବୈଦେଶିକ ମୁଦ୍ରା ହରାଇଲୁ କିନ୍ତୁ ଅନ୍ୟପକ୍ଷରେ- ଆମେ ଆମର ଶିଳ୍ପ ଆଧୁନିକୀକରଣ ପାଇଁ ବିଦେଶୀ ପୁଞ୍ଜିନିବେଶ ଆଣିବା ପାଇଁ ଦ୍ୱାର ଖୋଲା ଯାହାଦ୍ୱାରା ଅଧିକାଂଶ ସେଠାରୁ ଶେଷଦ୍ରବ୍ୟ ରୂପେ ଆଣି କେବଳ ଏଠାରେ ଖଞ୍ଜିଦେଇ ଶେଷ ଶିଳ୍ପଜାତ ଜିନିଷ ରୂପେ ବିକ୍ରି କରାଯାଉଛି ପୁଣି ସେଥିରେ ବହିଃଶୁଳ୍କ ଛାଡ଼ ହେଉଛି । ଏହାଦ୍ୱାରା ଆମ ଦେଶରେ ବିଦେଶୀ ଜିନିଷ ଠୁଳ ହେବାପରେ ଦେଶୀୟ ଶିଳ୍ପଜାତ ଦ୍ରବ୍ୟ ବିକ୍ରି ବନ୍ଦ । ଛଟେଇ ହେବାକୁ ବାଧ ଏପରି ଅନେକ ଶିଳ୍ପ ବନ୍ଦ ହୋଇଗଲାଣି ତେଣୁ ବିଶ୍ୱକରଣର ଲକ୍ଷ୍ୟ ଯଦି ବିଶ୍ୱର ଆଗୁଆ ଦେଶମାନଙ୍କ ଶିଳ୍ପ, ଦ୍ରବ୍ୟ, ପୁଞ୍ଜି ପ୍ରବେଶ କରିବାପରେ ସେମାନଙ୍କର ଏଜେଣ୍ଟମାନେ ବସି ଆମ ଜନତାଙ୍କ ମନରେ ଉପଭୋକ୍ତାବାଦର ଭୋଗଲାଳସାର ଲୋଭ ଦେଖାଇ ସମସ୍ତଙ୍କ ମନକୁ ସେଇ ଆଡ଼କୁ ଟାଣି ନେବା ହିଁ ଅର୍ଥ ହୁଏ ତାହାହେଲେ ସେହି ଦେଶମାନଙ୍କର ଉଦ୍ଭଟ ସାଂସ୍କୃତିକ ଚେତନା ହିଂସା ଓ ନିଶାସକ୍ତ କରାଇବାରେ ମଧ ସଫଳ ହେବ । ଆମ ଦରିଦ୍ର ଓ ବେକାର ଯୁବକମାନେ ଉପଭୋକ୍ତାବାଦର ଆକାଂକ୍ଷାରେ ଜର୍ଜରିତ ହୋଇ ହିଂସ୍ର ହୋଇ ଯେଉଁ ସ୍ଥିତି ସୃଷ୍ଟି କରିବେ ତାହା ସମ୍ଭାଳିବ କିଏ ? ସେତିକିବେଳେ ବିଦେଶୀ ସାହୁକାର ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ଆମ ଆର୍ଥିକ କ୍ଷେତ୍ରରେ ପ୍ରଭୁତ୍ୱ ଜାହିର ହୋଇଥିବ- ଆମ ସ୍ୱାଧୀନତା ଓ ସାର୍ବଭୌମତ୍ୱ ଉପରେ ଆକ୍ରମଣ ହେଲେ କିଏ ସୁରକ୍ଷା ଦେବ ? ଏହାର ଉତ୍ତର ଖୋଜି ବାହାର କରିବାକୁ ହେବ ।

ବିଦେଶୀ କାରିଗରୀ କୌଶଳର ଆମଦାନୀ କରିବା ଭୁଲ ନୁହଁ । କିନ୍ତୁ ଆମ ଦେଶରେ ଶ୍ରମ ଓ ଦେଶୀୟ ବୈଜ୍ଞାନିକ କାରିଗରୀ ବିଦ୍ୟାରେ ଯେଉଁ ଜିନିଷ ତିଆରି ହୋଇପାରିବ ଏବଂ ଯାହା ଆମର ନିମ୍ନ ଆବଶ୍ୟକତା ସମସ୍ତଙ୍କ ପାଖରେ ପହଞ୍ଚିବା ପର୍ଯ୍ୟନ୍ତ ବିଳାସ ସାମଗ୍ରୀ ଉତ୍ପାଦନ ବନ୍ଦ କରାଗଲେ କ୍ଷତି କ'ଣ ହେବ ? ଖାଉଟି ଦ୍ରବ୍ୟ ଶିଳ୍ପ କ୍ଷେତ୍ରରେ ପର୍ଯ୍ୟାପ୍ତ ପରିମାଣର ବିଦେଶୀ ପୁଞ୍ଜି ଓ ବିଦେଶୀ ମାଲିକାନାତ୍ୱକୁ ଖୋଲା ପ୍ରଶ୍ରୟ ଦିଆନଗଲେ ହିଁ ଆର୍ଥିକ ବିକାଶକୁ ସ୍ୱାବଲମ୍ବନଶୀଳ କରାଯାଇପାରିବ । ନଚେତ୍ ଭବିଷ୍ୟତରେ ଆମ ବିକାଶର ଚାବିକାଠି ସେମାନଙ୍କ ହାତରେ ରହିବ । ସେଇଥିପାଇଁ ଓଡ଼ିଶା ପରି ଗରିବ ରାଜ୍ୟ ନୂତନ ଅର୍ଥନୀତିର ଶିକାର ହେଉଛି ।

ଏବେ ଦେଶର ଜଙ୍ଗଲ ଓ ଖଣିଜ ସଂପଦକୁ ଲୁଟପାଇଁ ବିଦେଶୀ ପୁଞ୍ଜିକୁ ଆମନ୍ତ୍ରଣ କରିବାପରେ ଦେଶ ଭିତରେ ବିଦେଶୀ ଭୂଖଣ୍ଡ ସୃଷ୍ଟି ପାଇଁ ବିଶେଷ ଆର୍ଥିକ ଅଞ୍ଚଳ ଆଇନ ୨୦୦୫ ରେ ହୋଇଗଲା । ଏବେ ଏହି ଆଇନ ଦ୍ୱାରା ଲକ୍ଷ ଲକ୍ଷ ଚାଷଜମି ଦେଶୀ ବିଦେଶୀ କମ୍ପାନୀ ହାତ ଦେଇଦେବା ପ୍ରକ୍ରିୟା ଆରମ୍ଭ ହୋଇଛି । ଏହାର ପ୍ରତିରୋଧ ମଧ ଜନତା କରୁଛନ୍ତି । ଏବର ଆଇନ ପରେ ଆମ ସାର୍ବଭୌମତ୍ୱ ଓ ସ୍ୱାଧୀନତାର ଭବିଷ୍ୟତ ପୁଣି ଇତିହାସର ଚକ୍ର ହୋଇଯିବ ।



Digitized by srujanika@gmail.com



ନିମୟଗିରି



ନିୟମଗିରି ସୁରକ୍ଷା ସମିତିର ଶୋଭାଯାତ୍ରା



ନବରଙ୍ଗପୁର ଜିଲ୍ଲାର ଡ଼ଙ୍ଗୁରିଗୁଡ଼ା ଗ୍ରାମ

Digitized by srujanika@gmail.com



ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦର କେନ୍ଦ୍ର କୁଚେଇପଦର



୧୬ ଡ଼ିସେମ୍ବର ୨୦୦୦ ମାଇକଞ୍ଚ ପୋଲିସ ଗୁଳିକାଣ୍ଡର ଶହୀଦ ସ୍ମୃତି ପୀଠ



୨ ଜାନୁଆରୀ ୨୦୦୬ କଳିଙ୍ଗନଗର ପୋଲିସ୍ ଗୁଳିକାଣ୍ଡରେ ୧୨ ଜଣ ଶହୀଦଙ୍କ ଗଣ ଜୁଇ

Digitized by srujanika@gmail.com



ଖଣି ଖନନ ପରେ ମରୁଭୂମି



ବୀରମିତ୍ରପୁର ଅଞ୍ଚଳର ସ୍ପଞ୍ଜ୍ ଆଇରନ୍ ଦ୍ୱାରା ପ୍ରଦୁର୍ଷିତ କୂଅ ଜଳ



ପଶ୍ଚିମ ଓଡ଼ିଶା ଚାଷୀ ଆନ୍ଦୋଳନ ଦ୍ୱାରା ହିରାକୁଦ ଜଳ ସୁରକ୍ଷା ପାଇଁ ଆଇନ ଅମାନ୍ୟ ଆନ୍ଦୋଳନ

Digitized by srujanika@gmail.com



**ଲେଖକ ଶ୍ରୀ ପ୍ରଫୁଲ୍ଲ ସାମନ୍ତରାଙ୍କ ଜନ୍ମସ୍ଥାନ :** ଜଗତ୍ସିଂହପୁର ବ୍ଲକ ଅନ୍ତର୍ଗତ ନିମୁଣିଆ ଗ୍ରାମ ।

**ଜନ୍ମ ତାରିଖ :** ୧୨, ମେ, ୧୯୫୧

**ପିତା :** ଶ୍ରୀ ଦିନବନ୍ଧୁ ସାମନ୍ତରା

**ମାତା :** ଶ୍ରୀମତୀ ରମା ଦେବୀ

**ପତ୍ନୀ :** ଡ଼. ଉଷାରାଣୀ ଆଚାର୍ଯ୍ୟ

**ଶିକ୍ଷାସ୍ଥାନ :** ପୋଲସରା ଗୋପବନ୍ଧୁ ହାଇସ୍କୁଲ, ବ୍ରହ୍ମପୁର ଖଲିକୋଟ କଲେଜ, ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି କଲେଜ (ପାରଳାଖେମୁଣ୍ଡି), ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ଲିଙ୍ଗରାଜ ଆଇନ ମହାବିଦ୍ୟାଳୟ ।

୧୯୭୫ ଜୁନ୍ ୨୫ ତାରିଖରେ ଦେଶରେ ଜରୁରୀ ପରିସ୍ଥିତି ଜାରି ହେବାପରେ ସଂପୂର୍ଣ୍ଣ କ୍ରାନ୍ତିର ସ୍ରଷ୍ଟା ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ ସମେତ ହଜାର ହଜାର ଯୁବଛାତ୍ର ଓ ବିଭିନ୍ନ ବିରୋଧୀ ରାଜନୈତିକ ଦଳର ନେତା ଓ କର୍ମୀମାନଙ୍କୁ ଜେଲରେ ଅଟକ ରଖାଗଲା ବେଳେ ଶ୍ରୀ ସାମନ୍ତରା ମଧ୍ୟ ଏକବର୍ଷ ଜେଲରେ ବନ୍ଦୀ ଥିଲେ । ୧୯୭୭ ରୁ ରାଜନୈତିକ ଜୀବନ ଆରମ୍ଭ । ଜନତା ଦଳରେ ବିଦ୍ରୋହ କରି ଭ୍ରଷ୍ଟାଚାର ରାଜନୀତିର ବିରୋଧରେ ବିକଳ୍ପ ଗଣତାନ୍ତ୍ରିକ ସାମାଜବାଦୀ ରାଜନୀତି ପାଇଁ ଅନ୍ୱେଷଣ ଜାରୀ ରଖିଛନ୍ତି ।

୧୯୯୬ ରୁ ପ୍ରାକୃତିକ ସଂପଦର ସଂରକ୍ଷଣରେ ଜୀବନ ଓ ଜୀବିକାର ସୁରକ୍ଷା ପାଇଁ ବିସ୍ଥାପନ ବିରୋଧୀ ଜନ ଆନ୍ଦୋଳନ ମାନଙ୍କ ସହଯୋଗୀ ରୂପେ ପରିଚିତ । ସେ ଜଣେ ଓଡ଼ିଶାର ବିଭିନ୍ନ ଖବରକାଗଜ ଓ ପତ୍ରିକା ମାନଙ୍କର ସ୍ତମ୍ଭକାର । ତାଙ୍କରି ଦ୍ୱାରା ଲିଖିତ 'ସ୍ୱାଭିମାନର ଅନ୍ତଃସ୍ୱର', ଦୁଇଟି କବିତା ବହି 'ସବୁରି ଉପରେ ମଣିଷ ସତ୍ୟ' ଓ 'ମାଟି ମଣିଷର କବିତା' ପ୍ରକାଶିତ ହୋଇଛି । ପରିବେଶ ସୁରକ୍ଷା ଆନ୍ଦୋଳନ ଓ ମାନବିକ ଅଧିକାର ସୁରକ୍ଷା କ୍ଷେତ୍ରରେ ସର୍ବଦା ସକ୍ରିୟ ।

ତାଙ୍କରି ସଂପାଦନାରେ ପାକ୍ଷିକ ପତ୍ରିକା 'ମଣିଷର ବାର୍ତ୍ତାବହ ସ୍ୱାଭିମାନ' ୧୯୯୮ ରୁ ପ୍ରକାଶିତ ହୋଇ ଆସୁଛି । ବିକଳ୍ପ ବିକାଶ ପାଇଁ ବିକଳ୍ପ ରାଜନୀତି ନିର୍ମାଣ ପାଇଁ ଜାତୀୟସ୍ତରରେ ଗଠିତ ଲୋକଶକ୍ତି ଅଭିଯାନ ର ଜଣେ କର୍ମକର୍ତ୍ତା । 'ଜନଆନ୍ଦୋଳନ ମାନଙ୍କ ଜାତୀୟ ସମନ୍ୱୟର' ଅନ୍ୟତମ ଜାତୀୟ ଆବାହକ । ମାଟିର ମଣିଷଙ୍କ ଜୀବନ ଓ ଜୀବିକାର ଉତ୍ସ ଜମି, ଜଳ ଓ ଜଙ୍ଗଲର ସୁରକ୍ଷା ପାଇଁ ଜନ ଜାଗରଣ ସହ ଲୋକ ସାହିତ୍ୟ ସୃଷ୍ଟି ପାଇଁ ଉଦ୍ୟମରତ ।

- ପ୍ରକାଶକ -

Digitized by srujanika@gmail.com




".... ପ୍ରଫୁଲ୍ଲବାବୁଙ୍କୁ ଅନେକ ପରିବେଶବିତ୍ ରୂପେ ଜାଣନ୍ତି ଯେହେତୁ ସେ ପ୍ରାକୃତି ସଂପଦର ସରଂକ୍ଷଣ ଓ ସୁରକ୍ଷା ପାଇଁ ସଂଗ୍ରାମରତ । ପ୍ରାକୃତିକ ପରିବେଶ ମାଟିର ମଣିଷମାନଙ୍କ ଜୀବନ ଓ ଜୀବିକାର ମୂଳ ଉତ୍ସ । ପ୍ରାକୃତିକ ସମ୍ବଳଗୁଡ଼ିକର ସୁରକ୍ଷା ବିସ୍ଥାପନ ବିରୋଧୀ ଜନ ଆନ୍ଦୋଳନମାନଙ୍କର ଆଧାର ରୂପେ ପ୍ରତିପାଦିତ କରିଛନ୍ତି ଲେଖାମାନଙ୍କରେ । ଏହି ଲେଖାମାନଙ୍କରେ ବିଶ୍ୱରେ ଜଗତୀକରଣ ନାମରେ ସାମ୍ରାଜ୍ୟବାଦର ବିକାଶ ରାଜନୀତି ଆମ ପରିବେଶକୁ ଧ୍ୱଂସକରି କିପରି ବିନାଶର ଖେଳ ଖେଳୁଛି ତାରି ଉପରେ କେତେକ ପ୍ରବନ୍ଧ ଆଧାରିତ । ଏହି ପୁସ୍ତକ ବିକଳ୍ପ ବିକାଶ ସହ ବିକଳ୍ପ ରାଜନୀତିର ଅନ୍ୱେଷଣରେ ଚିନ୍ତା ଓ ଚେତନା ପାଇଁ ଖାଦ୍ୟ ଯୋଗାଇବ ବୋଲି ବିଶ୍ୱାସ ।"

ପ୍ରକାଶକ

ଲୋହିଆ ଏକାଡ଼େମୀ
ଭୁବନେଶ୍ୱର-୭୫୧୦୨୨

ମୂଲ୍ୟ : ଟ. ୧୮୦/-

Digitized by srujanika@gmail.com